# ଆହ୍ୱାନ

ଅଗ୍ରଗାମୀର ରଜତଜୟନ୍ତୀ ଉପଲକ୍ଷେ ପ୍ରକାଶିତ



ସମ୍ପାଦନା
ବିଦ୍ୟା ଦାସ

ଅଗ୍ରଗାମୀ ପ୍ରକାଶନ

# ଆରୋହଣ

ସଂପାଦନା: ବିଦ୍ୟା ଦାସ

ପ୍ରକାଶକ: ଅଗ୍ରଗାମୀ
କାଶୀପୁର-୭୬୫୦୧୫
ଜିଲ୍ଲା ରାୟଗଡା, ଓଡିଶା

ପ୍ରକାଶନ କାଳ:
ଜୁଲାଇ - ୨୦୦୭

ମୁଦ୍ରଣ : ଶିକ୍ଷା ପ୍ରକାଶନୀ
ଭୁବନେଶ୍ୱର

ମୂଲ୍ୟ: ଟ.୧୫୦.୦୦

**AROHAN**

*Edited by*
**Vidhya Das**

*Published by*
**AGRAGAMEE**
Kashipur - 765015
Dist- Rayagada (Orissa)

*Published in*
**July, 2007**

*Printed at :* **Siksha Prakasani**
Bhubaneswar

Price: **Rs.150/-**

# ପ୍ରକାଶକଙ୍କ କଲମରୁ ...

କାଶୀପୁରର ଆଦିବାସୀ ଓ ଦଳିତ ମାଆ ଭଉଣୀମାନେ ଗତ ପଚିଶବର୍ଷଧରି ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପରିବର୍ତ୍ତନ ପାଇଁ ଯେଉଁ ସଂଗ୍ରାମ କରିଆସୁଛନ୍ତି ତାହା ଅନ୍ୟ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳର ମାଆ ଭଉଣୀମାନଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇ ପାରିଛି । ଖାଲି ନେତୃତ୍ୱ ନୁହେଁ, ଏକ ଅଭିନବ ମୂଲ୍ୟବୋଧ ଓ ପରିଚୟ ସୃଷ୍ଟି କରିବାରେ ମଧ୍ୟ ଏହା ସହାୟକ ହୋଇଛି । ଏହି ଆଦିବାସୀ ଦଳିତ ମାଆ ଭଉଣୀଙ୍କ ଭିତରେ ଯୋଗାଯୋଗ ଓ ଭାବ ବିନିମୟ ପାଇଁ ସୃଷ୍ଟି ହୋଇଥିଲା 'ଆରୋହଣ' ପତ୍ରିକା । ଆରୋହଣ ଶବ୍ଦର ଅର୍ଥ ହେଉଛି ଉପରକୁ ଉଠିବା ଓ ଆଗେଇ ଚାଲିବା । ଆହୁରି ମଧ୍ୟ "ଆରୋହଣ" ପତ୍ରିକାର ଅନ୍ତର୍ନିହିତ ଉଦ୍ଦେଶ୍ୟ ଥିଲା ଏକ ଶକ୍ତିଶାଳୀ ମହିଳା ସଂଗଠନ ସୃଷ୍ଟି କରିବା । କାଶୀପୁରରେ ଜନ୍ମ ନେଇଥିବା ଆଦିବାସୀ ମହିଳା ଶକ୍ତି ସଂଗଠନ ଅବା ସଂକ୍ଷେପରେ 'ଆମ ସଂଗଠନ' ଏହାକୁ ଉଦାହରଣ ହିସାବରେ ଗ୍ରହଣ କରି ଆହୁରି ତିନୋଟି ଆଦିବାସୀ ମହିଳା ମହାସଂଘ ଯଥା; ଫିରିଙ୍ଗିଆ ଆଞ୍ଚଳିକ ମହିଳା ମହାସଂଘ(କନ୍ଧମାଳ ଜିଲ୍ଲା), ଇନ୍ଦ୍ରାବତୀ ମହିଳା ମହାସଂଘ(ନବରଙ୍ଗପୁର ଓ କଳାହାଣ୍ଡି ଜିଲ୍ଲା) ଏବଂ ଦଶମନ୍ତପୁର ମହିଳା ମହାସଂଘ(କୋରାପୁଟ ଜିଲ୍ଲା)ମଧ୍ୟ ଗଢ଼ି ଉଠିଲା । ଏହାକୁ ଛାଡି ଅନେକ ଛୋଟ ଛୋଟ ମହିଳା ମଣ୍ଡଳ ସୃଷ୍ଟି ହେଲା । ତାସହିତ ସୃଷ୍ଟି ହେଲା ମହିଳା ନେତୃତ୍ୱ । ସବୁ କିନ୍ତୁ ମହିଳା ସଶକ୍ତିକରଣର ଏକ ନୂଆ ଅଧ୍ୟାୟ ଆରମ୍ଭ କରିଥିଲା ।

ଆଜି ପଛକୁ ଅନେଇଲେ କାଶୀପୁରର ସୁମନୀ ଝୋଡିଆ, ଅନ୍ଧାରୀ ମାଝୀ, ଘାସେନ ଝୋଡିଆ, ଉଜ୍ଜଳ ଦେଈ, ନବରଙ୍ଗପୁର ଜିଲ୍ଲାର ଲକ୍ଷ୍ମୀ ମାଝୀ, କନ୍ଧମାଳର ଜଟଣି କଅଁର ଓ କୋରାପୁଟର ଅଁଳା ମିଣିଆକା ଆଦି ଅନେକ ମହିଳାଙ୍କ ନେତୃତ୍ୱ

ବିକଶିତ ହୋଇସାରିଛି । କେବଳ ନିଜ ଗାଁରେ ନୁହେଁ ନିଜ ଅଞ୍ଚଳରେ ସେମାନଙ୍କ ପ୍ରଭାବ ଓ ପ୍ରତିଷ୍ଠା ଦୃଢୀଭୂତ କରିଛି ।

'ଆରୋହଣ' ପତ୍ରିକା ଆଗରୁ ପ୍ରତି ଦୁଇମାସରେ ପ୍ରକାଶିତ ହେଉଥିଲା । ଏବେ ଏହା ନିୟମିତ ପ୍ରକାଶିତ ହେଉନାହିଁ । କିନ୍ତୁ ମହିଳା ନେତୃତ୍ୱର ଯେଉଁସବୁ ଝଲକ ଏହି ପତ୍ରିକାରେ ପ୍ରକାଶିତ ହୋଇଥିଲା ତାହାକୁ ଏକତ୍ରିତ କରି ଏକ ପୁସ୍ତକ ଆକାରରେ ପ୍ରକାଶିତ ହେବାର ଯୋଜନା ବହୁତ ଦିନରୁ ଥିଲା । ଆଉ ଜଣେ ଶୁଭେଚ୍ଛୁ ବନ୍ଧୁ ଏ ପ୍ରସ୍ତାବ ଦେଇଥିଲେ ଯେ ଆରୋହଣରେ ପ୍ରକାଶିତ ହୋଇଥିବା ମହିଳା ନେତୃତ୍ୱ ଗୁଡିକର ଇଂରାଜୀ ଅନୁବାଦ ସଂକଳିତ ହୋଇ ପୁସ୍ତକ ଆକାରରେ ଆମ୍ଭ ପ୍ରକାଶ କରୁ । ମୁଁ ଭାବୁଛି, ଏହା ମଧ୍ୟ ଅଳ୍ପ ଦିନରେ କାର୍ଯ୍ୟକାରୀ ହେବ । ସାରା ପୃଥିବୀ ଜାଣୁ ଆଦିବାସୀ ଦଳିତ ମହିଳାମାନେ ସବୁ ପ୍ରକାର ଅନ୍ୟାୟ ଅତ୍ୟାଚାର ଶୋଷଣ ସତ୍ତ୍ୱେ ନିଜକୁ ସଂପୂର୍ଣ୍ଣ ଧ୍ୱଂସ ହେବାକୁ ଦେଉନାହାଁନ୍ତି । ପ୍ରତ୍ୟେକଙ୍କ ଚରିତ୍ର ଜଣେ ଜଣେ ମହିୟସୀ ମହିଳାଙ୍କ ବ୍ୟକ୍ତିତ୍ୱର ପରିଚୟ ଓ ପରିପ୍ରକାଶ । ମୁଁ ସେମାନଙ୍କୁ ପ୍ରଣାମ କରୁଛି ।

'ଅଗ୍ରଗାମୀ' ଆଶା କରୁଛି ଯେ ପୁସ୍ତକ ଜରିଆରେ ଏକ ନିର୍ଦ୍ଦିଷ୍ଟ ବର୍ଗର ମହିଳାମାନଙ୍କ ସଂଘର୍ଷ ଓ ସଂକଳ୍ପ ସହ ପାଠକମାନେ ପରିଚିତ ହେବେ ।

**ଅଚ୍ୟୁତ ଦାସ**
ନିର୍ଦ୍ଦେଶକ, ଅଗ୍ରଗାମୀ
କାଶୀପୁର, ରାୟଗଡ଼ା



# ସଂପାଦିକାଙ୍କ କଲମରୁ...

ସେ ଖୁବ୍ ଛୋଟ । ତା'ର ଶରୀର ଖୁବ୍ କ୍ଷୀଣ ଓ ଦୁର୍ବଳ । ମୁକ୍ତା - ଚେହେରା ଖୁବ୍ ସୁନ୍ଦର । ହେଲେ ଆମେ ଆଲମାଇ, ଗଞ୍ଜୁଲି, ସୁମନୀ, କମଳା, ତାରାମଣି, ଗୋରିମଣି, ଉତ୍ତମ, ଜଟଣୀ ଏମାନଙ୍କୁ ତା'ସହିତ ହିସାବରେ ନବା ନାହିଁ । ନଉରତି କଥା ମୋର ଆଜି ମନେପଡୁଛି । ତା'ଠାରୁ ସବୁକଥା ଆରମ୍ଭ କରିବା । ସେ ରାଜସ୍ଥାନରେ ମହିଳାମାନଙ୍କର ଦୁଃଖ ସୁଖର ସଂସାର ସମ୍ପର୍କରେ ମୋତେ ପ୍ରଥମେ ସୂଚନା ପ୍ରଦାନ କରିଥିଲା । ହେଲେ ମହିଳାମାନଙ୍କ କାର୍ଯ୍ୟ କ'ଣ ? ମୁଁ ସେମାନଙ୍କ ସହ ରାଜସ୍ଥାନର ଦୁର୍ଭିକ୍ଷ ପ୍ରପୀଡିତ ଅଞ୍ଚଳକୁ ଯାଇଥିଲି । ସେଠି ଦେଖିଲି ମହିଳାମାନେ ଗୋଟିଏ ଶାଢ଼ୀରେ ସେମାନଙ୍କ ଶିଶୁକୁ ଗଛରେ ଓହଳାଇ ଦେଇ କାମକୁ ଯାଆନ୍ତି । ସେମାନେ ମୁଣ୍ଡରେ ମାଟି ବୋହିକରି ନେଇ ପୋଖରୀ ହୁଡାରେ ପକାନ୍ତି । ପିଲାମାନଙ୍କୁ ଏପରି ଓହଳାଇ ରଖାଯାଏ ଏକଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି । ନଉରତୀର ବୋଝ ବହୁତ ବଡ । ସେ ଅସଲରେ ହେଉଛି ମହିଳାମାନଙ୍କର ପ୍ରକୃତ ନେତ୍ରୀ । ବହୁଦିନ ଧରି ଖରାରେ କାମ ଚାଲିଥାଏ । ପିଲାଗୁଡିକ ଭୋକରେ ଆଉଟୁ ପାଉଟୁ ହେବା ସହ ପେଟ୍ ରୋଗରେ ପଡନ୍ତି । 'ମେଟ୍' ଛୁଟିକଲେ ଯାଇ ସେମାନେ ପିଲାଙ୍କୁ ଦେଖିବାକୁ ଆସନ୍ତି । ଟିକିଏ ବଡ ପିଲାମାନଙ୍କୁ ସେମାନଙ୍କର ମାଆମାନେ ବାଜରା ରୁଟି ଖାଇବାକୁ ଦିଅନ୍ତି । ଏକଥା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏମାନେ ପିଲା । ବାସି, ଶୁଖିଲା ରୁଟିରୁ ଏମାନେ କ'ଣ ପାଇବେ ?

ତା'ପରେ ଆମେ ଶୁଣିଲୁ ପିଲାମାନେ ରୁଗ୍‌ଣ ହୋଇ ଯାଉଛନ୍ତି । ଆମେ ହର୍‌ମାଡା ଗଲୁ । ସେମାନଙ୍କୁ ଡାକ୍ତର ଖାନାରେ ଭର୍ତ୍ତି କରିବା ପାଇଁ ଚେଷ୍ଟା କଲୁ । ନଉରତୀ କେବଳ ଆମ ସହିତ ଯିବାପାଇଁ ରାଜି ହେଲା । 'ଭନ୍‌ୱାରୀ' ତାର ଆଠ ମାସର ଶିଶୁ । ତରଳ ଝାଡା ଓ ବଦହଜମୀରେ ପଡିଥାଏ । ସେଇ ଦୁର୍ବଳ ରୋଗୀଣା ଶିଶୁକୁ ସାଲାଇନ୍ ଦେବାପାଇଁ

ମେଡିକାଲ ଆଟେଣ୍ଡାଣ୍ଟ ଶିରା ଖୋଜି ପାଉନଥାନ୍ତି । କିନ୍ତୁ ଭନଓ୍ୱାରି ବଞ୍ଚିଗଲା । ସୁନ୍ଦରୀ ବାଳିକା ଭାବରେ ବଢ଼ିବାରେ ଲାଗିଲା । ସେହି ସମୟରେ ଆଉ ଗୋଟିଏ ଶିଶୁ ରୋଗରେ ପଡି ମୃତ୍ୟୁ ବରଣ କରିଥିବା କଥା ଆମେ ଜାଣିବାକୁ ପାଇଲୁ ।

ମୁଁ ରାଜସ୍ଥାନରୁ ଆସି କାଶୀପୁରରେ ଆଦିବାସୀ ପ୍ରକଳ୍ପରେ ଯୋଗଦେଲି । ଏଠାକାର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ । ବଣ, ବୃକ୍ଷଲତା ଓ ବର୍ଷା । ଆଉ ବର୍ଷାର କବିତା ଆପଣଙ୍କୁ ଆକର୍ଷିତ କରିବ । ଏହି ମହିଳାମାନେ ତା'ଭିତରେ ହଜିଗଲେ । ପ୍ରାୟ ସେଠାରେ ସେମାନେ ଆଉ ମିଳିଲେ ନାହିଁ । ସେମାନଙ୍କୁ ଖୋଜିପାଇବା ପାଇଁ ମୋତେ ମାସ ମାସ ସମୟ ଲାଗିଗଲା । ମୁଁ ଆଲମାଈଠାରୁ ଆରମ୍ଭ କରୁଛି । ଭାରି ଶାନ୍ତ ଓ ଭଦ୍ର ମାଆଟିଏ । ତା' ସହିତ ଗାଁ ବୁଲିବାକୁ ଗଲି । ଯେଉଁ ଗାଁର କି ଶୁଷ୍କ ସୌନ୍ଦର୍ଯ୍ୟ ହେଉଛି ସେମାନଙ୍କର ସମ୍ପଦ । ହେଲେ ବି ସେଠାରେ ଜୀବନ ଅଛି । ମହିଳାମାନେ ଲଜ୍ଜା ନମାନି ଆସିଲେ । ସେମାନଙ୍କ ଗହଣରେ ମୋତେ ପୂରାଇଦେଲେ । ସେମାନେ ବୃତ୍ତାକାରରେ ରହି ତା'ଭିତରେ ମୋତେରଖି ନଚେଇଲେ । ମୁଁ ଅତି ସହଜରେ ସେମାନଙ୍କର ସରଳ ପାଦପକାକୁ ପୂରାପୁରି ଶିଖିଗଲି । ହେଲେ ତାଳ ଓ ମାନ ମୋ ପାଇଁ ଅସୁବିଧା ହେଲା । ସେମାନେ ମୋତେ ଧରି ନାଚିବା ଆରମ୍ଭ କରିଦେଲେ । ଅନ୍ଧାରୁଆ ପଥୁରିଆ ପଡିଆ ତା'ଭିତରେ ନିଆଁ ଜଳାହୋଇ ଆଲୁଅ ଦେଖା ଯାଇଥାଏ । ମୁଁ ତାରି ଭିତରେ ଲୟ ରଖିଲି । ପାଦପକାଇବାରେ ଭୁଲ ହୋଇଯିବାବେଳେ ମୋ ଆଣ୍ଠୁ ବଙ୍କା ହୋଇ ଯାଉଥାଏ । ସେହି ମହିଳାମାନେ ହସୁ ଥାଆନ୍ତି । ସେମାନେ ତ ଛୋଟପିଲାଦିନୁ ଏଥିରେ ଅଭ୍ୟସ୍ତ । ଏହା ସେମାନଙ୍କ ପାଇଁ ଭାରୀ ସହଜ ।

ସେମାନଙ୍କୁ ଧରି ତାଲିମ କାର୍ଯ୍ୟ ଆରମ୍ଭ କଲୁ । ଏଠାରେ ସତକଥା କହିବାକୁ ଗଲେ ସେମାନେ ମୋତେ ଓ ମୋର ସହକର୍ମୀମାନଙ୍କୁ ତାଲିମ ଦେଲେ । ଗାତ ଖୋଳିବା, ଠିକ୍ ଭାବରେ ଗଛଲତା ଓ ବୁଦା ଚିହ୍ନଟ କରିବା ଆମେ ଜାଣିଲୁ । ପାହାଡି ଝରଣାକୁ ବନ୍ଧେଇଲୁ । ପାହାଡ ତଳୁ ମାଛ, କଙ୍କଡା ଧରିଲୁ । ମୁଁ ଆଗରୁ ଅଭିଜ୍ଞ ନଥିଲି । କିନ୍ତୁ ଏଥିରେ ଶିକ୍ଷା ଓ କୌତୂହଳ ଥିଲା । ମୁଁ ଅଧିକରୁ ଅଧିକ କଠୋରତା ଉପଲବ୍ଧ କଲି ଯାହାକି ଏଠାରେ ଢାଙ୍କି ହୋଇ ରହିଥିଲା । ଆମେ ସେମାନଙ୍କୁ ଶୋଷଣର ହିସାବ ଶିଖେଇଲୁ । ସେମାନେ କଷ୍ଟରେ ଶିଖି ଭଲଭାବରେ ମନେ ରଖିଲେ । ପୁରୁଷ ପୁରୁଷ ଧରି ସେମାନେ ଶୋଷଣର ଶିକାର ହେଉଥିବା କଥା ଭଲଭାବରେ ବୁଝିପାରିଲେ । ସେମାନେ ଆଉଥରେ ନ୍ୟାୟ ସଂପର୍କରେ ଜ୍ଞାନ ଲାଭ କଲେ । ସେମାନେ ଅନୁଭବ କଲେ ସେମାନଙ୍କର ଅଧିକାର ଅଛି । ଏହିକଥା ଚାରିଆଡେ ଖେଳିଥିଲା । ମହିଳାମାନେ ଗୋତିରୁ ମୁକ୍ତ ହେବା

ପାଇଁ ଚେଷ୍ଟା ଜାରି ରଖିଲେ । ଏହା ସହଜ ନୁହେଁ । କିନ୍ତୁ ଯେତେହେଲେ ବି ଏମାନେ ନାରୀ ଯେଉଁମାନେ କି କେବେ ସହଜ ସରଳ ଜୀବନ ବିତାଇ ନାହାନ୍ତି । ଫଳରେ ସେମାନେ ଲଢ଼େଇକୁ ଧୈର୍ଯ୍ୟ, ସାହାସ ଓ ଆତ୍ମବିଶ୍ୱାସର ସହ ଗ୍ରହଣ କରିନେଲେ । ଏହି ଆହ୍ୱାନ ବିଭିନ୍ନ ମହିଳାମାନଙ୍କ ଠାରେ ଭିନ୍ନ ରୂପରେ ଦେଖାଦେଲା । ଅନ୍ୟମାନଙ୍କର ସହଯୋଗ ଓ ଏକାଗ୍ରତା ଲାଭ କଲା । ସେମାନେ ପରସ୍ପରଠାରୁ ଶିକ୍ଷା ଲାଭକଲେ । ଏହି କାର୍ଯ୍ୟକ୍ରମ ଅନ୍ୟ ପଞ୍ଚାୟତ ଓ ଅନ୍ୟ ଜିଲ୍ଲାକୁ ମଧ୍ୟ ବ୍ୟାପିବାରେ ଲାଗିଲା । ସେମାନେ ଏହାକୁ ଛୋଟ ଆକାରରେ ଆରମ୍ଭ କଲେ କିନ୍ତୁ ବଡ ବିଷୟ ଭାବରେ ତାକୁ ଗ୍ରହଣ କରିନେଲେ । ଭୁଲ କ'ଣ ସେମାନେ ଜାଣିପାରିଲେ । ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ ।

ଏମାନେ ସରକାରଙ୍କ ମୁଣ୍ଡ ବ୍ୟଥାର କାରଣ ହୋଇ ପଡିଲେ । ସର୍ବପ୍ରଥମେ ସରକାର ଏମାନଙ୍କୁ ହାତକରିବାକୁ ଚେଷ୍ଟାକଲେ । ସୁମନୀ, ଅନ୍ଧାରୀ ଓ ଅନ୍ୟ ଛ'ଜଣଙ୍କୁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଉପଦେଷ୍ଟା ଭାବରେ ବାଛି ନେଲେ । ମଦଭାଟି ତଦାରଖ କରିବା ପାଇଁ ସେମାନଙ୍କୁ ପୋଲିସ କ୍ଷମତା ଦିଆଗଲା । ଏହି ମହିଳାମାନେ ଶକ୍ତିଶାଳୀ ହୋଇଗଲେ । କେବଳ ମଦଭାଟି ବିରୁଦ୍ଧରେ ସେମାନେ ଲଢ଼ିଲେ ନାହିଁ । ସେମାନେ ଆହୁରି ନୂଆ ନୂଆ କାର୍ଯ୍ୟ କରିବା ପାଇଁ ଦାବି କଲେ । ଶୁକୁରୀ, ସାଲପେଇ, ଗୁଞ୍ଜୁଲି ଲଘୁ ବନଜାତ ଦ୍ରବ୍ୟର ଦୁର୍ନୀତି ବିଷୟରେ ସରକାରଙ୍କୁ ସଚେତନ କଲେ । ପ୍ରଚଳିତ ଆଇନର ପରିବର୍ତ୍ତନ ପାଇଁ ଦାବି କଲେ । କେତେ ରାଲି ଆନ୍ଦୋଳନ ହେଲା । କିନ୍ତୁ ସରକାର ସେମାନଙ୍କ ପ୍ରତି କର୍ଣ୍ଣପାତ କଲେ ନାହିଁ । ବରଂ ସେମାନଙ୍କୁ ଓ ମୋତେ ମିଥ୍ୟା ମକଦମାରେ ଫସେଇ ଦେଲେ । ମହିଳାମାନେ ଏଥିପାଇଁ ନିରୁତ୍ସାହିତ ହେଲେ ନାହିଁ । ଏହା ମୋତେ ଗର୍ବିତ କଲା । ଜଙ୍ଗଲ ଉପରେ ପୂରା ଅଧିକାର ଓ ସରକାରୀ କାର୍ଯ୍ୟକ୍ରମ ଗୁଡିକର ସଫଳତା ପାଇଁ ସେମାନେ ଦାବି କଲେ । ସେମାନେ ନିଜର ସଞ୍ଚୟ ପାଣ୍ଠି ଗଠନ କଲେ । ସେଥିରୁ ଛୋଟକାଟିଆ ବେପାର ଆରମ୍ଭ କଲେ । ସେମାନେ ଦଳ ଗଠନ କଲେ । ଏସ୍.ଏଚ୍.ଜି ଓ ମହିଳାମଣ୍ଡଳ ଗଠନ କରି ସାହୁକାର ଓ ଦଲାଲଙ୍କ କେସ୍‌ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ ନିଜର କଷ୍ଟ ଲବ୍ଧ ସଞ୍ଚୟ ମାଧ୍ୟମରେ । ସରକାରଙ୍କ ଲଘୁବନଜାତ ଦ୍ରବ୍ୟ ଉପରେ ନୀତି ମଧ୍ୟ ବଦଳିଗଲା ଓ ଜଙ୍ଗଲ ବିଭାଗର କଟକଣା ହ୍ରାସ ହେଲା । ସାମାନ୍ୟ ଝାଡୁକୁ ନେଇ ଆରମ୍ଭ ହୋଇଥିବା ଆନ୍ଦୋଳନ ଆଦିବାସୀ ମହିଳାଙ୍କ ସଂଘର୍ଷର ଏକ ଅଭୂଲା କାହାଣୀ ଓ ସଫଳତାର ଜ୍ୱଳନ୍ତ ଉଦାହରଣ ମଧ୍ୟ । ଅଦାଲତରେ ଲାଗିଥିବା ବିଚାରର ଦିନ ଆସିଲା । ମାଜିଷ୍ଟ୍ରେଟ ମୋତେ ଛାଡିଦେଲ । କିନ୍ତୁ ଆଦିବାସୀ ମହିଳାଙ୍କୁ ଦୋଷୀ ସାବ୍ୟସ୍ତ କଲେ ।

ଏହା ସହ୍ୟ କରିହେଲା ନାହିଁ । ମୁଁ ମାଜିଷ୍ଟ୍ରେଟ୍‌ଙ୍କୁ ପ୍ରାର୍ଥନା କଲି, ଏହି ମହିଳାମାନେ ସାଧାରଣ ମହିଳା ନୁହନ୍ତି । ଦୋଷୀ ବି ନୁହନ୍ତି । ସେମାନେ ଆଦିବାସୀ ମହିଳା । ସେମାନଙ୍କର ସ୍ୱତନ୍ତ୍ର ଐତିହ୍ୟ ଅଛି । ସେମାନଙ୍କର ସୃଜନଶୀଳତାର ଇତିହାସ ବହୁ ଉଚ୍ଚରେ । ମୋ କଥା ଶୁଣି ମାଜିଷ୍ଟ୍ରେଟ ବ୍ୟସ୍ତ ହୋଇପଡିଲେ । "ମହିଳାମାନଙ୍କୁ ନିର୍ଦ୍ଦୋଷରେ ଛାଡି ଦିଆଗଲା ।" ଏକଥା ଶେଷରେ ମାଜିଷ୍ଟ୍ରେଟ କହିଥିଲେ ।

ସେମାନେ ଶକ୍ତିଶାଳୀ ହୋଇ ଉଠିଲେ । ମୁକ୍ତା, ଅନ୍ଧାରୀ, ରତନଦେଈ ଓ ଉଜଳ ଓ ଅନ୍ୟମାନେ ସେମାନଙ୍କ ବଣ ପାହାଡ ଓ ଭିଟାମାଟିକୁ ଟାଟା ଓ ଆଲ୍‌କାନ୍ ହାତରୁ ରକ୍ଷା କରିବା ପାଇଁ ବଦ୍ଧ ପରିକର ହେଲେ । ସେମାନଙ୍କର ଶକ୍ତି ଓ ଉତ୍ସାହ ଅନ୍ୟମାନଙ୍କୁ ଆକର୍ଷିତ କଲା । ପୁରୁଷମାନେ ସେମାନଙ୍କ ସହ ମିଶିଲେ । ପ୍ରାୟ ଦୀର୍ଘ ୧୫ବର୍ଷ ଯାଏ ଏହି ନିଗମ ଗୁଡିକ ଦୂରେଇ ହୋଇ ରହିଥିଲେ । ତା'ପରେ ପୋଲିସ ଆସିଲା । ମହିଳାମାନେ ମାଡ ଖାଇଲେ । ପୁରୁଷମାନେ ଜେଲ ଗଲେ । ଘର ଖାନ୍‌ତଲାସ୍ ହେଲା । ବହୁ ଆଦିବାସୀ ମଲେ । ମହିଳା-ପୁରୁଷ ସଂଗଠିତ ହେଲେ । ସେମାନେ ବିକ୍ଷୋଭ ପ୍ରଦର୍ଶନ କଲେ । ବିଭିନ୍ନ ପ୍ରକାର ଆନ୍ଦୋଳନରେ ମିଶିଲେ । ଅନ୍ୟମାନେ ମିଶିବା ପାଇଁ ସେମାନେ ଉତ୍ସାହିତ କଲେ । ପ୍ରକୃତିର ଦାନକୁ ସୁରକ୍ଷା ପାଇଁ ସେମାନଙ୍କର ଏହାଥିଲା ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ ।

ସରକାର ସରଳ ଓ କଠିନ ହେଲେ । କେତେକ ମହିଳାଙ୍କୁ ପି.ଡି.ଏସ୍ ଡିଲର କରାଗଲା । ଅନ୍ୟମାନଙ୍କୁ ମଧ୍ୟାହ୍ନ ଭୋଜନ ପରିଚାଳନା ପାଇଁ ଦାୟିତ୍ୱ ଦିଆଗଲା । କିନ୍ତୁ ସେମାନଙ୍କୁ ବ୍ଲକ୍ ସ୍ତରକୁ ଭର୍ତ୍ତି କରି ଦିଆଗଲା ନାହିଁ । ଯେଉଁ ଜାଗାକି ଠିକାଦାର ଓ ରାଜନୈତିକ ଲୋକମାନଙ୍କ ଚରାଭୂଇଁ । ସେମାନେ ଗାଁକୁ ପୋଲିସ ପଠାଇଲେ । ସରଳ ଲୋକଙ୍କୁ ଭୟଭୀତ କଲେ । ପୁରୁଷମାନଙ୍କୁ ଗିରଫ କଲେ । ଘର ଖାନ ତଲାସ କଲେ । ବହୁତ ମିଥ୍ୟା ମକଦମା ଦାଏର ହେଲା । ମହିଳା-ପୁରୁଷ ଉଭୟ ଦଣ୍ଡ ଭୋଗିଲେ ।

ଏହି ସଂଘର୍ଷ ଭିତରେ 'ଆରୋହଣ' ମହିଳାମାନଙ୍କର ସ୍ୱରକୁ ରେକର୍ଡ କଲା ଏବଂ ଗୋଟିଏ ପତ୍ରିକା ହିସାବରେ ଆମ୍ ପ୍ରକାଶ ଲାଭ କଲା । ଉଦ୍ଦେଶ୍ୟ ଥିଲା ଯେ ସାହସୀ ମହିଳାଙ୍କ ନିଜସ୍ୱ କଥନ ସାରା ପୃଥିବୀ ଜାଣୁ । ଯେଉଁମାନେ 'ସର୍ବସ୍ୱ ହରାଇଲୁ', ବୋଲି କିପରି କହିବେ ଜାଣି ନଥିଲେ ସେମାନେ ପୁରୁଷମାନଙ୍କ ଦ୍ୱାରା ନିର୍ଯ୍ୟାତିତ ମହିଳା ନୁହନ୍ତି , ସେମାନେ ହେଉଛନ୍ତି ପୁରୁଷମାନଙ୍କୁ ସାଙ୍ଗରେ ଧରି ନ୍ୟାୟ ଓ ସମାନତା ଲାଭ କରିବା ଆଶାରେ ଦୃଢ଼ କଣ୍ଠରେ ସ୍ୱରଉତ୍ତୋଳନ କରିଥିବା ସଂଗ୍ରାମୀ ମହିଳା । ବହୁ ଯୁବକ

ଆରୋହଣକୁ ସାହାଯ୍ୟ କରିଥିଲେ । ସାଗରିକା, ନମିତା, ସୁଜାତା, ଦେବପ୍ରିୟା ଓ ମଧୁ ବିଭିନ୍ନ ସମୟରେ ବହୁଶ୍ରମ ସ୍ୱୀକାର କରି ପ୍ରତିଶ୍ରୁତିବଦ୍ଧ ହୋଇ ଏଗୁଡିକ ସଂଗ୍ରହ କରି ଏକାଠି କରିଛନ୍ତି । ଆରୋହଣ କ୍ଷେତ୍ରକୁ ଯାଇଥିଲା ଆଦିବାସୀ ମହିଳାମାନଙ୍କ ଶକ୍ତି ଓ ସାହାଯ୍ୟରେ । ଏଥିରେ ସହଯୋଗ କରିଥିଲେ କ୍ଷେତ୍ରରେ ଥିବା ବହୁଯୁବକ । ଅଗ୍ରଗାମୀ ସହ ସହଯୋଗ କରି ଏହି ଶିକ୍ଷିତ ଯୁବକମାନେ ବହୁ ଅଜଣା କଥା ଜାଣିବାକୁ ପାଇଲେ । ବହୁବର୍ଷ ଧରି ପାଠଶାଳାରେ ରହି ସେମାନେ ଯେଉଁକଥା ଜାଣିନଥିଲେ ତାହା ଦେଖିବାକୁ ପାଇଲେ ମହିଳାମାନଙ୍କର ଏହି ନୂତନ ଆଲୋକରୁ । ସେମାନେ ଗଭୀରଭାବରେ ନିରୀକ୍ଷଣ କଲେ ।

ଏହି ବହିଟି 'ଆରୋହଣ'ରେ ପ୍ରକାଶିତ କେତେଗୁଡିଏ ଲେଖାର ସଂକଳନ ମାତ୍ର । ଏହି ଲେଖାଗୁଡିକରେ ମହିଳା ଓ ପୁରୁଷମାନଙ୍କର ଅଭିଜ୍ଞତା ଭରି ରହିଛି । ବହୁ ସମୟରେ ଆଦିବାସୀ ଓ ଗାଁ ଗହଳିର ଲୋକମାନେ ଶୋଷଣର ଶିକାର ହେଉଥିଲେ । ସେମାନଙ୍କର ସ୍ୱର ଏଥିରେ ପ୍ରତିଫଳିତ ହୋଇଛି । ବହିର ନାମକରଣ ସଂକେତ ଦିଏ, "ଲଢ଼େଇ ବହୁତ ଲମ୍ବା ଓ ତାର ପଥ ବହୁତ କଠିନ ।"

**ବିଦ୍ୟା ଦାସ**



# ସୂଚୀପତ୍ର

## ବିକାଶ

## ସଫଳ କାହାଣୀ





# ଜଣେ ନେତ୍ରୀ : ସୁମନୀ ଝୋଡ଼ିଆ

ସୁମନୀ ତା ଜୀବନର ପ୍ରଥମ ଥର ପାଇଁ ଯେତେବେଳେ କଫିର ସ୍ୱାଦ ଚାଖିବାର ସୁଯୋଗ ପାଇଥିଲା, ସେ ଦୃଢ଼ତାର ସହ ପ୍ରତିବାଦ କରି କହିଥିଲା, "ନା, ଧନ୍ୟବାଦ ! ଆମେ ଚାହୁଁ ମାଣ୍ଡିଆ, ପେଯ, ଧାନ, ଆମ୍ବ, ବିନ୍‌ସ ଯାହାକୁ ଖାଇ ବଞ୍ଚି ପାରିବୁ, ବିକି ପାରିବୁ" ଏହି ସାଧାରଣ ଆଦିବାସୀ ମହିଳାଟିର ସରଳ ଯୁକ୍ତି ସବୁ ଆଦିବାସୀ ମହିଳାମାନଙ୍କ ହୃଦୟରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ଅକ୍ଟୋବର ଷୋହଳ ତାରିଖ - 'ବିଶ୍ୱ ଖାଦ୍ୟ ଦିବସ' ଅବସରରେ ସମସ୍ତ ଆଦିବାସୀ ଦଳିତ, ନିଷ୍ପେସିତ, ଶୋଷିତ ମହିଳାମାନଙ୍କ ପ୍ରତି ସୁମନୀର ଆହ୍ୱାନ ଥିଲା, - "କେବଳ ଜୀବନ ଧାରଣ ପାଇଁ ନୁହେଁ ଆମ କୁଲି ମଜୁରିଆ ଗରିବ ଆଦିବାସୀଙ୍କ ଉତ୍ତରୋତ୍ତର ଉନ୍ନତି ପାଇଁ ଆନ୍ଦୋଳନ, ଅନେକ ଆନ୍ଦୋଳନ ଆମକୁ କରିବାକୁ ପଡ଼ିବ । ସେଥିମଧ୍ୟରୁ କଫି ଆନ୍ଦୋଳନ ଗୋଟିଏ ।"

ଓଡ଼ିଶାର ଆଦିବାସୀ ଉନ୍ନୟନ ପ୍ରକଳ୍ପ ଜରିଆରେ ଆନ୍ତର୍ଜାତିକ କୃଷି ଉନ୍ନୟନ ପାଣ୍ଠି ସହାୟତାରେ ୩୨ କୋଟି ଟଙ୍କାର କଫି ଚାଷ ଯୋଜନା ଦୁର୍ଗମ କାଶୀପୁରର ପାହାଡ଼ିଆ ଅଞ୍ଚଳରେ ଚାଲିଥା'ନ୍ତା । ସୁମନୀ ପରିଚାଳନା କମିଟି ସଭାରେ କହିଲା - "କଫି ବଡ଼ ବଡ଼ ବାବୁମାନଙ୍କ ପାଇଁ - ଆମ ସାଧାରଣ ଆଦିବାସୀଙ୍କ ଅଭାବ ପୂରଣ ପାଇଁ ନୁହେଁ ।"

ସତକୁ ସତ ଗୋଟିଏ ଗାଁରେ କଫି ଚାଷ ପରୀକ୍ଷା କରାଗଲା, ଯାହାକି ୨୦ ବର୍ଷ ପରେ ସ୍ୱଳ୍ପ ଅମଳ ଓ ଉପଯୁକ୍ତ ବଜାର ଅଭାବର ଶିକାର ହେଲା ।

ବନ୍ଦ ହେଲା କଫି ଚାଷ । ପରିବର୍ତ୍ତନ ହେଲା ସରକାରଙ୍କ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମ । ତା' ବଦଳରେ କୃଷିଭିତ୍ତିକ ଜଙ୍ଗଲ ଆରମ୍ଭ ହେଲା । ସୁମନୀ ଜଣେ ୪୩ ବର୍ଷ ତରୁଣୀ ଆଦିବାସୀ ଅଧ୍ୟୁଷିତ ରାୟଗଡ଼ା ଜିଲ୍ଲାର, କାଶୀପୁର ବ୍ଲକର ଶିରିଗୁଡ଼ା ଗ୍ରାମକୁ ଗୋଟିଏ ଛୋଟ ଚାଷୀ ପରିବାରରେ ତାର ଜନ୍ମ । ମନରେ ତାର ଅସୁମାରୀ ଆଶା, ଆଉ ଅଟଳ ବିଶ୍ୱାସ ।

ଶହ ଶହ ଆଦିବାସୀ ମହିଳାଙ୍କ ଗହଣରେ ସୁମନୀ ସାରା ରାଜ୍ୟରୁ ମଦ ବିକ୍ରୀ ଲାଇସେନ୍ସ ରଦ୍ଦ କରିବା ପାଇଁ ଆନ୍ଦୋଳନ କରିଥିଲା । ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ସମ୍ମୁଖରେ ଠିଆ ହେବାର ପ୍ରଥମ ସୁଯୋଗ ପାଇଥିଲା । ହେଲେ ତାଙ୍କ ସମ୍ମୁଖରେ ଠିଆ ହେବା ପାଇଁ ଭୟଭୀତ ହୋଇ ଯାଇଥିଲା । ବଡ଼ ବଡ଼ ହାକିମମାନେ ତାଙ୍କ ଅଫିସକୁ ଆସୁଥିଲେ, ସେ କଥା କହିବା ପାଇଁ ଶଙ୍କି ଯାଉଥିଲା । ଅନ୍ୟପକ୍ଷରେ ଫୁଲବାଣୀ ଜାତିଗତ ଦଙ୍ଗା ଶାନ୍ତ କରିବା ପାଇଁ ମୁଖ୍ୟମନ୍ତ୍ରୀ ଦେଇଥିବା ପ୍ରସ୍ତାବକୁ ସୁମନୀ ଦୃଢ଼ ଯୁକ୍ତି ସହ ମନା କରିଥିଲା । କହିଥିଲା, "ଏହା ମୋର ଜନ୍ମ ମାଟି ନୁହେଁ । ଏଇଟା ମୋର ସଂଗ୍ରାମ ନୁହେଁ - ମୁଁ ଚାହେଁ ଶାନ୍ତି । ତା ବୋଲି ଫୁଲବାଣୀରେ ମୋ ଦ୍ୱାରା ଶାନ୍ତି ଫେରି ଆସିବ ଏହା ମୋର କଳ୍ପନା ବାହାରେ ।"

ସେ ସାକ୍ଷର ହେବା ପାଇଁ ଆମ ଗହଣକୁ ଆସିଲା । ତାଲିମ୍‌ର ପ୍ରଥମ ଦିନରେ ତାଲିମ ଗୃହର ଗୋଟିଏ ଖୁମ୍ବ ନିକଟରେ ନିଜକୁ ଲୁଚାଇ କରି ବସିଥିଲା । ସେ ଥିଲା ଖୁବ୍ ଲାଜକୁଳି । କିନ୍ତୁ ତାର ଚିନ୍ତାଧାରା ଥିଲା ଅତ୍ୟନ୍ତ ଶକ୍ତିଶାଳୀ । ନିଜ ପାଇଁ ନୁହେଁ ସରଳ ନିଷ୍ପେଷିତ ଆଦିବାସୀ ସମାଜର ଉନ୍ନତି ପାଇଁ ସେ ଚିନ୍ତା କରୁଛି । ସୁମନୀ-ପଞ୍ଚାୟତ ନିର୍ବାଚନରେ ଲଢ଼ିବା ପାଇଁ ଇଛା କରେନି । ସେ କହେ "ଆମେ ଆମର ସର୍ବନିମ୍ନ ମଜୁରି ଚାହୁଁ ଆମେ ସ୍ୱଇଛାରେ ଖାଦ୍ୟ ଭଣ୍ଡାର ସଂଚୟ କରିବା ଚାହୁଁ । ମହିଳା ସଂଗଠନ ଦ୍ୱାରା ଜଙ୍ଗଲ ଜାତ ଲଘୁ ଦ୍ରବ୍ୟଗୁଡ଼ିକର ବିକ୍ରୟ କରିବା ପାଇଁ ଚାହୁଁ ।"

ବାସ୍ତବରେ 'ସୁମନୀ' କାଶୀପୁରରେ ଏକ ନୂଆ ଆଲୋକ ବତୀ ଜଳେଇବାର ନେତ୍ରୀ । ତାହା ସଙ୍ଗେ ସଙ୍ଗେ ସେ ନିଜ ଜିଲ୍ଲା ଓ ନିଜ ରାଜ୍ୟ ପାଇଁ ବିଭିନ୍ନ ସମସ୍ୟା ଉପରେ ସ୍ୱର ଉଠାଉଛି । ସଫଳ ମଧ୍ୟ ହେଉଛି । ଏବେ ସେ ଜାତୀୟ ସ୍ତରରେ ଜଣେ ସାଙ୍ଗଠନିକ ଆଦିବାସୀ ନେତ୍ରୀ ବୋଲି ବିଭିନ୍ନ ସଭା, ସମାବେଶ ଓ ସମ୍ବାଦପତ୍ରରେ ଦେଖିବାକୁ ମିଳୁଛି ।

(ସଣ୍ଡେ ରିଭ୍ୟୁ: ଅକ୍ଟୋବର ୧୬, ୧୯୯୪)

ଜାନୁୟାରୀ - ୧୯୯୫



# ଅବଳା ନୁହନ୍ତି, ସେ ଦୁଇ ମା'

ରାୟଗଡ଼ା ଜିଲ୍ଲା କାଶୀପୁର ବ୍ଲକ, ଡଙ୍ଗାସିଲି ପଞ୍ଚାୟତରେ ପାଯିଆସିଲି ନାମରେ ଗୋଟିଏ ଗାଁ ଅଛି । ଏହି ଗାଁରେ ଝୋଡ଼ିଆ ଆଦିବାସୀ ୪୬ ଘର ଓ ହରିଜନ ୨୦ ଘର ବାସ କରନ୍ତି । ଆଦିବାସୀଙ୍କ ସଂଖ୍ୟା ଅଧିକ ଥିଲେ ବି ହରିଜନଙ୍କ ଭିତରେ ନେତୃତ୍ୱ ନେଲା ଭଳି କେତେକ ଲୋକ ଅଛନ୍ତି ।

୧୯୯୨ ମସିହାରେ ଲକ୍ଷ୍ମୀ ଝୋଡ଼ିଆ ଓ ପାର ଝୋଡ଼ିଆ ତାଙ୍କର ନେତୃତ୍ୱର ବିକାଶ ପାଇଁ 'ଅଗ୍ରଗାମୀ'ର ୩୦ ଦିନିଆ ତାଲିମ୍ ଶିବିରରେ ଯୋଗଦେଇ ତାଲିମ୍ ନେଇଥିଲେ । ସେହି ସମୟରେ ତାଙ୍କ ଗାଁରେ ଜବାହାର ରୋଜଗାର ଯୋଜନାରେ ରାସ୍ତା କାମଟି ଗାଁର ଜଣେ ହରିଜନ ଲୋକ ଠିକାରେ ନେଇଥିଲା । ସେହି କାମରେ ସେ ମହିଳାମାନଙ୍କୁ ୧୫ ଟଙ୍କା ଓ ପୁରୁଷମାନଙ୍କୁ ୧୮ ଟଙ୍କା ହିସାବରେ କୁଲି ମଜୁରି ଦେଉଥିଲା । ଲକ୍ଷ୍ମୀ ଜାଣିଲେ, ଜବାହାର ରୋଜଗାର ଯୋଜନାରେ ଥିବା ଗାଁର ଉନ୍ନତିମୂଳକ କାମ ସବୁ ଗାଁ କମିଟି ଦ୍ୱାରା ଆଣି କରିହେବ । ଦୈନିକ ୮ ଘଣ୍ଟା କାମ କଲେ ମହିଳା ହେଉ କି ପୁରୁଷ ହେଉ ୨୫ ଟଙ୍କା କୁଲି ମଜୁରି ପାଇବାର ନିୟମ ସରକାର କରିଛନ୍ତି । ଗାଁକୁ ଯାଇ ସେ ସମସ୍ତ ମହିଳାଙ୍କୁ ବସାଇ ଏହିକଥା ବୁଝାଇଲେ । ଗାଁର ମହିଳାମାନେ ପ୍ରଥମେ ସାହସ କରୁନଥିଲେ । ଲକ୍ଷ୍ମୀ ସମସ୍ତଙ୍କୁ ସାହସ ଦେଲେ । କହିଲେ ଆମେ କିଛି ଜାଣି ପାରୁନେ ବୋଲି ଆମର ପରିଶ୍ରମର ମୂଲ୍ୟ ଆମେ ପାଇ ପାରୁନେ । ସମସ୍ତେ ମିଶିଲେ ଆମେ ଗାଁର ଉନ୍ନତି କାମ କରିପାରିବା । ଆମେ ସମସ୍ତେ ଏକାଠି ହୋଇ ପାରିଲେ ଆମର ଦାବି ହାସଲ କରି ପାରିବା । ନହେଲେ ସବୁବେଳେ ଯେତେ କଷ୍ଟ କଲେ ବି ଆମର ପେଟ ପୂରିବ ନାହିଁ ।

ଏହି କଥା ଗାଁର ମହିଳାମାନେ ଧୀରେ ଧୀରେ ବୁଝିଲେ । ବିଭିନ୍ନ ବିଷୟରେ ସଚେତନ ହେଲେ । କିଛିଦିନ ପରେ ସେହି ଗାଁର ମଝି ଦାଣ୍ଡରେ ପାଣି ଯିବା ପାଇଁ

ଗୋଟିଏ ନଳା କାମ ଗାଁର ୱାର୍ଡ଼ମେମ୍ବର ନିଜ ନାମରେ ଠିକାରେ ଆଣିଲେ । ଲକ୍ଷ୍ମୀ ଯେତେବେଳେ ଏଇକଥା ଜାଣିବାକୁ ପାଇଲେ, ସେ ମହିଳାମାନଙ୍କୁ ଡାକି ଗୋଟିଏ ସଭା କଲେ । ସଭାରେ ସେ କହିଲେ, "ଯେ ଗାଁର କାମ ଆମେ ଗାଁ କମିଟିରେ କରିବା । ସମସ୍ତେ କାମ କରିବେ । ସମାନ ମଜୁରି ମଧ୍ୟ ପାଇବେ । ଠିକାଦାର କାମ କଲେ, ତାର ଲାଭ ଖାଇବା ପାଇଁ ଆମର କାମରେ ଠକିବ । ସମସ୍ତଙ୍କୁ ମଜୁରି ଠିକ୍‌ରେ ମିଳିବ ନାହିଁ କି କାମ ମଧ୍ୟ ସମସ୍ତଙ୍କୁ ମିଳିବ ନାହିଁ ।"

ମହିଳାମାନେ ଉକ୍ତ କଥାକୁ ହୃଦୟଙ୍ଗମ କରି ସମସ୍ତେ ମିଶି ଗୋଟିଏ ଦରଖାସ୍ତ ଲେଖିଲେ ସରପଞ୍ଚ ପାଖକୁ । ଗାଁର ୭/୮ ଜଣ ମହିଳାଙ୍କୁ ସଂଗରେ ଧରି ଲକ୍ଷ୍ମୀ ଓ ପାର ଦରଖାସ୍ତ ଧରି ଗଲେ । ସରପଞ୍ଚ ଦରଖାସ୍ତଟିକୁ ପଢ଼ି କହିଲେ "ତମେ ମହିଳାମାନେ ହିସାବ କରି ଜାଣିବ ନାହିଁ, ବ୍ଲକ୍‌କୁ ଏତେବାଟ ଯାଇ ପାରିବ ନାହିଁ, ତୁମେ ଏତେ ସାହସ କେମିତି କରି ପାରୁଛ ? ତେଣୁ ତୁମକୁ ମୁଁ କାମ କରିବାକୁ କାର୍ଯ୍ୟାଦେଶ ଦେଇ ପାରିବି ନାହିଁ ।"

ଲକ୍ଷ୍ମୀ ସେ ସରପଞ୍ଚଙ୍କୁ କହିଲେ, "ତୁମେ କାମ ପାଇଁ ଅନୁମତି ଦେବା କଥା ଦେବ, ଆମେ କାମ କରିପାରିବୁ କି ନାହିଁ ସେ ଦାୟିତ୍ୱ ଆମର । ମାତ୍ର କାର୍ଯ୍ୟାଦେଶ ନଦେଲେ ଆମେ ଏଠାରୁ କେବେହେଲେ ଗାଁକୁ ଯିବୁ ନାହୁଁ । ଦରକାର ପଡ଼ିଲେ ଜିଲ୍ଲାପାଳଙ୍କୁ ଏକଥା ଜଣାଇବୁ ।" ବେଶି କଟାଳ କରିବାରୁ ସରପଞ୍ଚ ବାଧ୍ୟ ହୋଇ କାର୍ଯ୍ୟାଦେଶ ଦେଲେ । ସେହି କାର୍ଯ୍ୟାଦେଶରେ ଟ୧୫,୦୦୦ଙ୍କାର ଅନୁଦାନ ବିଷୟ ଲେଖାଥିଲା ।

କାର୍ଯ୍ୟାଦେଶ ପାଇଲେ ସିନା, ହେଲେ ପଞ୍ଚାୟତକୁ ସିମେଣ୍ଟ ଆସିଲେ ଯାଇ କାମ ଆରମ୍ଭ କରିବା କଥା । କିନ୍ତୁ ସିମେଣ୍ଟ ପାଇଁ ନିର୍ଦ୍ଦିଷ୍ଟ ଦିନ ଜଣାଇ କରି କି ଦିନକୁ ଦିନ ସରପଞ୍ଚ ସମୟ ଘୁଞ୍ଚାଇଲେ । ଫଳରେ ଗାଁରେ ମହିଳାମାନେ ତିନିଚାରିଥର ପଞ୍ଚାୟତକୁ ଆସି ଫେରିଗଲେ । ତଥାପି ଆଶା ବାନ୍ଧି ସିମେଣ୍ଟ ନେବାପାଇଁ ଆସିବା ବେଳକୁ ବର୍ଷାଦିନ ପହଞ୍ଚିଯାଇ ଥିଲା ।

କାମ ଆରମ୍ଭ କରିବା ପୂର୍ବରୁ ଲକ୍ଷ୍ମୀ ଓ ପାର କାଶୀପୁର ବ୍ଲକ କନିଷ୍ଠ ଯନ୍ତ୍ରୀଙ୍କ ପାଖକୁ କାର୍ଯ୍ୟାଦେଶ ଆଣି ଆସିଲେ । କନିଷ୍ଠ ଯନ୍ତ୍ରୀଙ୍କୁ କାମ ଆରମ୍ଭ କରିବା ପୂର୍ବରୁ ଅଟକଳ କରିଦେବାପାଇଁ ଅନୁରୋଧ କଲେ । କନିଷ୍ଠ ଯନ୍ତ୍ରୀ ସହୃଦୟତାର ସହିତ ମହିଳାମାନଙ୍କୁ ଦେଇଥିବା ସମୟ ଅନୁସାରେ ଯାଇ ଗାଁରେ ପହଞ୍ଚିଥିଲେ । ଅଟକଳ କରି କହିଥିଲେ ଯେ, ଗାଁର ମା'ମାନେ ଏତେ ସାହସ କରି କାମ ନେଇଛ କିନ୍ତୁ ଏହା ଏତିକି ଟଙ୍କାରେ ସଂପୂର୍ଣ୍ଣ ହୋଇ ପାରିବ ନାହିଁ । ତଥାପି ଗାଁର ମହିଳାମାନେ ଏକାଠି

ହୋଇ ସେ କାମର ଦାୟିତ୍ୱ ନେଇ କାମଟି ଅଧା କରିଥିବା ବେଳେ ବେଶି ବର୍ଷା ହେବାରୁ କାମଟି ବନ୍ଦ କରି ଦେଲେ ।

କାମଟି ଅଧା ରହିବାରୁ ସେ ଗାଁର ଟଙ୍କା ମିଳିଲା ନାହିଁ । କାମଟିକୁ ଆଗରୁ ଠିକାରେ ନେଇଥିବା ୱାର୍ଡ଼ମେମ୍ବର, ଲକ୍ଷ୍ମୀ ଓ ପାରଙ୍କ ସହ ଝଗଡ଼ା ଆରମ୍ଭ କରି କହିଲା, "କାମ କଲ ଟଙ୍କା କାହିଁ?" ଲକ୍ଷ୍ମୀ ଏହି କାମର ନେତୃତ୍ୱ ନେଇଥିବାରୁ ଲକ୍ଷ୍ମୀ ଓ ତାର ପରିବାର ସଙ୍ଗେ ୱାର୍ଡ଼ମେମ୍ବର ଝଗଡ଼ା କଲା । ଲକ୍ଷ୍ମୀ ନାମରେ ବିଭିନ୍ନ ପ୍ରକାର ନିନ୍ଦା କଥା କହିବାକୁ ଆରମ୍ଭ କଲା । ଲକ୍ଷ୍ମୀର ପୁଅ ଏହି ସବୁ କଥାର ବିରୋଧ କରିବାରୁ ତାକୁ ଟାଙ୍ଗିଆ ଧରି ମାରିବାକୁ ବାହାରିଲା । ଗାଁର ଅନ୍ୟାନ୍ୟ ମହିଳାମାନେ ସେ ଠିକାଦାରକୁ ବହୁତ ବିରୋଧ କଲେ । ତଥାପି ସେ ସେହି ରାଗରେ ଲକ୍ଷ୍ମୀର ପରିବାର ସଙ୍ଗେ ବାରମ୍ବାର କଳି କରୁଛି ।

ଲକ୍ଷ୍ମୀ ତାର ନେତୃତ୍ୱରେ ଅଟଳ ରହି ଗାଁର ପୁରୁଷ ଓ ମହିଳାମାନଙ୍କୁ ନେଇ ସେହି କାମଟିକୁ ସୁଚାରୁରୂପେ ସଂପୂର୍ଣ୍ଣ କରି ସାରିବା ପରେ ପୁଣି ୪ଜଣ ମହିଳାଙ୍କୁ ସଂଗରେ ଧରି କାଶୀପୁରରୁ କନିଷ୍ଠ ଯନ୍ତ୍ରୀଙ୍କୁ ଡାକି କାମ ମାପଚୁପ କରାଇଲା । ପୂରା କାମଟି ମାପଚୁପ ହେବା ପରେ ଟ୩,୦୦୦ର କାମ ଅଧିକ ହୋଇଛି ବୋଲି କନିଷ୍ଠ ଯନ୍ତ୍ରୀ ମାପରେ ଦର୍ଶାଇଲେ । ସେମାନଙ୍କୁ ତିନିହଜାର ଟଙ୍କା ଅଧିକ ମିଳିଲା । କାର୍ଯ୍ୟରେ ଶ୍ରମ କରିଥିବା ପ୍ରତି ଘରର ଲୋକେ ଦୈନିକ ୨୫ ଟଙ୍କା ମଜୁରି ପାଇଥିଲେ ମଧ୍ୟ ୩,୦୦୦ ଟଙ୍କାକୁ ଗାଁ କମିଟି ପାଣ୍ଠିରେ ଜମା କରିଥିଲେ ।

ପାହାଡ଼ ଜଙ୍ଗଲ ଘେରା କାଶୀପୁର ପରି ଦୁର୍ଗମ ଅଂଚଳରେ ଆଦିବାସୀ ମହିଳାମାନେ ସଂଗଠନ ଜରିଆରେ ବିଭିନ୍ନ ସଭା ସମିତିରେ ଏକାଠି ହୋଇ ପାରୁଛନ୍ତି । ସେଠାରେ କଥାବାର୍ତ୍ତା କରି ପରସ୍ପର ବିଷୟରେ ଓ ପରସ୍ପରର କାର୍ଯ୍ୟ ବିଷୟରେ ଜାଣି ପାରୁଛନ୍ତି । ଗୋଟିଏ ଗାଁ ବା ପଞ୍ଚାୟତରେ ମା'ମାନେ ଯେଉଁ କାର୍ଯ୍ୟକରି ସଫଳ ହେଉଛନ୍ତି ଅନ୍ୟ ଗାଁର ମା'ମାନେ ସେମିତି କାର୍ଯ୍ୟରେ ହାତ ଦେବାକୁ ଆଦୌ ଡରୁ ନାହାନ୍ତି । ଏମିତି ଅନେକ ସଫଳ ପ୍ରଚେଷ୍ଟା ଏବେ ସାରା କାଶୀପୁରର କ'ଣ ଓଡ଼ିଶାରେ 'ଅଗ୍ରଗାମୀ'ର ସମସ୍ତ କାର୍ଯ୍ୟକ୍ଷେତ୍ରକୁ ସଂକ୍ରମିତ ହେବାରେ ଲାଗିଛି ।

ଜାନୁୟାରୀ - ୧୯୯୫



# ମୁଁ ସୁମନୀ କହୁଚି

ମୋ ନାଁ ସୁମନୀ ଝୋଡ଼ିଆ । ଗାଁ ଶିରିଗୁଡ଼ା । ବ୍ଲକ- କାଶୀପୁର । ଜିଲ୍ଲା- ରାୟଗଡ଼ା । ମୁଁ ଆଇଫାଡ଼ ଷ୍ଟିୟରିଂ କମିଟିରେ ସାତ ବର୍ଷହେଲା ମେମ୍ବର ରହିଛି । ସେଠାରେ ମିଟିଂ ହେଲେ ମୋତେ ଚିଠି ପଠାଉଛନ୍ତି, ନହେଲେ ନିଜେ ଡାକିବାକୁ ଆସନ୍ତି । ଯେତେବେଳେ ପୋଡ଼ାପଦର ଗାଁରେ ବେଶି ଲୋକ ମରିଗଲେ, ସେତେବେଳେ ଆମର ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି କାଶୀପୁର ଆସିଥିଲେ । କିନ୍ତୁ ପୋଡ଼ାପଦର ଗାଁକୁ ଯାଇ ପାରିଲା ନାହିଁ । କାଶୀପୁର ବୁଲିଦେଖିଲା ଓ କହିଲା "ଏଠାରେ ସବୁ ଆଡ଼େ ଲଣ୍ଡା ପାହାଡ଼ । କେଉଁଠି ହେଲେ ଗଛ ନାହିଁ । ଗଛ ନଥିବା ହେତୁ ବର୍ଷା ହେଉ ନାହିଁ । ତେଣୁ ସବୁ ବେଳେ ମରୁଡ଼ି ହେବା ଫଳରେ ଖାଇବାକୁ ନ ପାଇ ଲୋକ ମରୁଛନ୍ତି । ମୁଁ ଦେଖିକରି ଗଲି । ଯାଇକି ଟଙ୍କା ପଠାଇଲେ ତୁମ ଅଞ୍ଚଳରେ ଗଛଲଗା କାମ ହେବ ।" ସେ ଏଠାରୁ ଗଲା ପରେ କାଶୀପୁରର ବିଭିନ୍ନ ପ୍ରକାର ଉନ୍ନତି ଲାଗି ୩୨ କୋଟି ଟଙ୍କା ଦେଇ 'ଆଇଫାଡ଼ ସଂସ୍ଥା'କୁ ପଠାଇଲା । ସେହି ୩୨ କୋଟି ଟଙ୍କାରେ ଏହି ଅଞ୍ଚଳ ପାଇଁ କି କି କାମ ହେଲେ ଭଲ ହେବ ଭାବି ଏକ କମିଟି କରାଗଲା । ସେହି କମିଟିରେ ମତେ ଜଣେ ମେମ୍ବର ରଖିଲେ । ମେମ୍ବର ହିସାବରେ ଆମ ଅଞ୍ଚଳ ପାଇଁ ଯାହା ଭଲ ହେବ ତାହା ମୁଁ ମିଟିଂରେ କୁହେ । ବହୁତ ମିଟିଂ ଯାଇଚି, ବହୁତ କଥା କହିଛି, ସେଥିରୁ କେତେ କଥା ଶୁଣିଛନ୍ତି, କେତେକଥା ବି ଶୁଣିନାହାନ୍ତି ।

ଗତ ଜୁନ୍ ମାସର ୧୭ ତାରିଖରେ ଗୋଟିଏ ମିଟିଂ ଥିଲା । ସେହି ମିଟିଂରେ କଲେକ୍ଟର ଏମ୍.ଏଲ୍.ଏ., ବଡ଼ ବଡ଼ ଅଫିସର ଓ ଠିକାଦାରମାନେ ଥିଲେ । ସେହି ମିଟିଂରେ ସକାଳ ୧୦ଟାରୁ ଦିନ ୧ଟା ପର୍ଯ୍ୟନ୍ତ ଖାଲି ବଡ଼ ବଡ଼ ରାସ୍ତା ଘାଟ କଥା ଚାଲିଛି, କେମିତି ଚାରିଆଡ଼କୁ ରାସ୍ତାଘାଟ ଫିଟିବ । ମୁଁ ଭାବିଲି, ଆରେ ଏଠି ଖାଲି ବଡ଼ ବଡ଼ ରାସ୍ତାଘାଟ ଓ ଠିକାଦାରମାନଙ୍କ କଥା ଚାଲିଛି । ଆମ କାଶୀପୁର ବ୍ଲକରେ ୪୧୪ ଖଣ୍ଡ ଗାଁ ଅଛି । ସବୁଆଡ଼େ ଗାଁ କମିଟି ଜରିଆରେ କାମ ନେଇଛନ୍ତି, ସେକଥା କାହିଁକି

ଟିକିଏ ଆଲୋଚନା କରୁନାହାନ୍ତି । କୋଉ ଗାଁରେ ଝିଅ ପିଲା, କୋଉ ଗାଁରେ ପୁଅ ପିଲା କାମ ନେଇଛନ୍ତି । କଣ ଭଲ ମନ୍ଦ ହେଲା ସେ ବିଷୟରେ ଟିକେ ବୁଝୁନାହାନ୍ତି । ଖାଲି ବଡ଼ ବଡ଼ କଥା ମିଟିଂରେ ପଡ଼ିଛି । ମୁଁ ଜିଲ୍ଲାପାଳ ଆଜ୍ଞାଙ୍କୁ କହିଲି, ଆଜି କାହିଁକି ଖାଲି ବଡ଼ବଡ଼ ମିଟିଂ ଚାଲିଛି । ସେଥିପାଇଁ ମୋତେ ମେମ୍ବର ରଖିଛୁ କି ? ମୁଁ ଖାଲି ୫୦ ଟଙ୍କା ଓ ଚା'କପେ ପାଇଁ ମିଟିଂକୁ ଆସିଛି କି ? କ'ଣ ହେଲେ ଭଲ ମନ୍ଦ କଥା ପଦେ କହିବା ପାଇଁ ତ ଆସିଛି ।

କାଶୀପୁରର ଆଇଫାଡ୍ ଅଫିସ୍‌ରେ ଦୁଇଜଣ ଆସିଷ୍ଟାଣ୍ଟ ଇଞ୍ଜିନିୟର୍ ଅଛନ୍ତି । ଆହୁରି କେତେ ଇଞ୍ଜିନିୟର୍ ବି ଅଛନ୍ତି । ମୁଁ ଜାଣି ପାରିବି ନାହିଁ । କାଶୀପୁରରୁ ଶିରିଗୁଡ଼ା ୬ କି.ମି. ବାଟ ବୋଲି ସିନା ମୁଁ ସବୁବେଳେ ଯିବା ଆସିବା କରିପାରୁଛି । ପନ୍ଦର କୋଡ଼ିଏ କି.ମି. ଦୂରରୁ ଲୋକମାନେ ଆସି କେଉଁ ଗଛ ମୂଳେ ତ କେଉଁ ଅଫିସ୍ ଦୁଆରେ ଶୋଇ ଯାଉଛନ୍ତି । ସେମାନେ କେତେ ହଇରାଣ ହୋଇ ଏଠାକୁ ଦୌଡ଼ିବେ । କାମ ସରିଥିବା ଗାଁକୁ କାହିଁକି ଠିକ୍‌ରେ ମେଜରମେଣ୍ଟ କରିବାକୁ ଯାଉ ନାହାନ୍ତି । ଆଗରୁ ଥିବା ପି.ଏମ୍. ବଦଳି ହେଲା ପରେ କାହିଁକି ଏଠାରେ ପି.ଏମ୍ ରହିବାର ନାହିଁ । ଅନ୍ୟ ଜାଗାମାନଙ୍କରେ ସବୁ ଅଫିସରମାନେ ଅଛନ୍ତି । ଆମ ଆଦିବାସୀମାନଙ୍କୁ କାହିଁକି ଏମିତି ହଇରାଣ କରାଯାଉଛି ? ଏକଥା କାହିଁକି ବୁଝାଯାଉ ନାହିଁ ? କାମ କରି ଆମେ ବହୁତ ହଇରାଣରେ ପଡ଼ିଯାଉଛୁ । ଆଜି ଗଲେ ପି.ଏମ୍ ନାହିଁ ତ କାଲି ଗଲେ ଇଞ୍ଜିନିୟର୍ ନାହିଁ । ଏମିତି 'ନାହଁ' 'ନାହିଁ' ଆମେ କେତେ ଶୁଣିବୁ । ଏମିତି କଲେ କିମିତି କରି କାମ କରିବୁ, ଆଉ ବଞ୍ଚିବୁ । କଲେକ୍ଟର କହିଲା, 'ସୁମନୀ କେଉଁ ଗାଁରେ କ'ଣ ଅସୁବିଧା ହେଉଛି, ଲେଖିକରି ଜଣାଇବୁ । ଆମେ ନିଶ୍ଚୟ ବୁଝିବା । ସେଠିଥିବା ଇଞ୍ଜିନିୟରମାନଙ୍କୁ ପଚାରିବାରୁ ସେମାନେ କହିଲେ ଆମେ ସବୁ ବେଳେ ଯାଉଛୁ । ତା'ପରେ ମୋତେ କହିଲା, ସୁମନୀ କୋଉ ଗାଁରେ କ'ଣ ଅସୁବିଧା ହୋଇଛି କହ ।

ମୁଁ ପାଇକ କୁପାକାଲ ଗାଁ କଥା, ଗାଦିଆଗୁଡ଼ା ମୁକ୍ତାମଣି ଝୋଡ଼ିଆଣୀର କାମ କଥା କହିଲି । ଚମ୍ପାକୋଡ଼ିର ହାର୍ସୁ ମାଝୀର କାମ । ଏ କଥା କହିବା ସମୟରେ ହାର୍ସୁ ମାଝୀ ଆସି ପହଞ୍ଚିଲା । ପି.ଏମ୍. ଥିବା ଜାଗାରେ ଆସି ଚିଠି ଦେବାରୁ ସେ ଚିଠି ଦେଖି ଜାଣିଲା । ଗାଁ କମିଟିର ମହିଳା ଓ ପୁରୁଷମାନଙ୍କୁ କାମ ଦେଉଛନ୍ତି, ସତ ଏକା । ଗାଁ କମିଟିରେ ଅଧେ ଖାଇ ଅଧେ ପାଣ୍ଠି ରଖିବା ପାଇଁ ଆମେ କମିଟିରେ କାମ ନେଉଛୁ । ଦେଖିଲା ବେଳକୁ ଏମିତି ହଇରାଣ କରୁଛନ୍ତି ଯେ, ବିଲ୍ ଠିକ୍‌ରେ ହେଉନାହିଁ କି ଟଙ୍କା ବି ଠିକ୍‌ରେ ମିଳୁ ନାହିଁ । ବିଲ୍‌ରେ ଠିକ୍‌ରେ ହେଲେ ସିନା ଲୋକେ ଶରଧାରେ କାମ ନେଇ କରିବେ । ବିଲ୍ ନହେଲେ ଲୋକଙ୍କ ମନୋବଳ ଭାଙ୍ଗିଯାଉଛି । ତା'ପରେ

କଲେକ୍ଟର କହିଲା, "କ'ଣ ହେଲା ସୁମନୀ ? ମୁଁ କହିଲି "କାହା ନାଁ ଏଠି କହିବି ନାହିଁ ।"

ଧର ଜଣେ ଲୋକ ୧୫ ହଜାର ଟଙ୍କା ବିଲ୍ ଉଠାଇଲା । ସେଥିରୁ ଜଣେ ହଜାରେ, ଆଉ ଜଣେ ୭୦୦ ନେଲେ କେତେ ହେଲା ମୁଁ ଜାଣି ପାରିବି ନାହିଁ । ସେଥିରୁ ଆଉ କେତେ ରହିଲା ଯେ, ସେ ନେଇ ଗାଁରେ କୁଲିକୁ ଓ ଅନ୍ୟଜିନିଷ ବାବଦକୁ ଦେବ ! ଏକଥା ସମସ୍ତେ ଜାଣିଲେ ମଧ୍ୟ ମୋତେ କେହି ଖରାପ ଭାବିବ ନାହିଁ । ଯାହା ସତ ତାହା ମୁଁ ଏଠି କହୁଛି । ଏହାପରେ ମିଟିଂ ସରିଲା । ପି.ଏମ୍. ମୋତେ କହିଲା, 'ହାର୍ସୁକୁ କାହିଁକି ଶିଖାଉନୁ ? ଏହି କାଶୀପୁରରେ ସୁମନୀ ପରି ଆଉ ଦଶଜଣ ବାହାରିଲେ, କାଶୀପୁରରେ ଆଉ ଅସୁବିଧା ହେବ ନାହିଁ ।' ମୁଁ କହିଲି, ହାର୍ସୁକୁ ନ ଶିଖାଇଥିଲେ, ହାର୍ସୁ ଆସିଥାଆନ୍ତା କି ? ମୋ ଭଳି ଆହୁରି କେତେ ସୁମନୀ ଅଛନ୍ତି, ତୁ ଜାଣି ପାରୁ ନାହୁଁ । ଆମେ ଯଦି ଏକାଠି ହୋଇ କିଛି ଦାବି କରିବୁ, ତୁମେ ଆମକୁ ଟାଉଟର ବୋଲି କହିବ ।

ପି.ଏମ୍ ମୋତେ କହିଲା, ଗୋଟିଏ ଏକର ଲେଖାଁ ଜମିରେ ବେଣାଘାସ ଲଗାହୋଇ ଆଦିବାସୀମାନଙ୍କୁ ଦୁଇଟି ମଇଁଷି ଦେବେ, ଆଦିବାସୀମାନେ ଦୁଇ ଭାଗ ଋଣ ସୁଝିବେ ଗୋଟିଏ ଭାଗ ଛାଡ଼ ହେବ । କଲେକ୍ଟର କହିଲା, 'ମେମ୍ବରମାନଙ୍କୁ ପଚାର ସେମାନେ ଯାହା କହିବେ, ତାହା କରିବା ।' ମୁଁ କହିଲି, ଯଦି ଆଦିବାସୀମାନେ ଋଣ ଶୁଝିବେ ତାହେଲେ ମଇଁଷି ଦେବା ଦରକାର ନାହିଁ । ଜମି ଥିଲେ ଆମେ ଚାଷ କରି ବଞ୍ଚିବୁ । ମଇଁଷି କେତେ ଦିନରେ ଛୁଆଦେବ । ସେ ଛୁଆ ବଞ୍ଚିବ କି ମରିବ, ମଇଁଷି କେତେ କ୍ଷୀର ଦେବ ଆମକୁ  କିଛି ଜଣାନାହିଁ । ଯଦି ଋଣ ସୁଝିବାକୁ ପଡ଼ିବ, ତାହେଲେ ଦେବା ଦରକାର ନାହିଁ । କଲେକ୍ଟର କହିଲା ସୁମନୀ କଥା ମାନିଯିବା । ଖାଲିରେ ସମସ୍ତଙ୍କୁ ଦୁଇଟି ଲେଖାଏଁ ମଇଁଷି ଦେଇଦେବା ।

ଆହୁରି ମୁଁ ଶୁଣିବାକୁ ପାଉଛି, କେବଳ ମୋର ଗାଁରେ ମଇଁଷି ଦେବେ,  ଅନ୍ୟ ଗାଁକୁ ମେଣ୍ଢା ଦେବା ପାଇଁ ସ୍ଥିର କରିଛନ୍ତି । ଯଦି ମତେ ଡରି ମୋ ଗାଁରେ ମଇଁଷି ଦେବାକୁ ଠିକ୍ କରିଥାନ୍ତି, ତାହେଲେ ସବୁ ଗାଁ ପାଇଁ ମୁଁ ଲଢ଼ିବି । ମଇଁଷି ଦେଲେ ସମସ୍ତଙ୍କୁ ଦେବେ, ମେଣ୍ଢା ଦେଲେ ସମସ୍ତଙ୍କୁ ଦେବେ । ପାତର ଅନ୍ତର ରହିବ ନାହିଁ ।

ଜୁଲାଇ- ୧୯୯୬



# ସମିତି ସଭ୍ୟା : କୁନ୍ଦ ଭୋଇ

ଦଶମନ୍ତପୁର ପଞ୍ଚାୟତ ସମିତିର ମୁଜାଙ୍ଗ ପଞ୍ଚାୟତରେ କଙ୍କଡ଼ାପୁଟ ଗାଁ । ସେହି ଗାଁରେ କୁନ୍ଦ ଭୋଇଙ୍କ ଘର । ପିଲା ଦିନେ ପାଠ ପଢ଼ିବାକୁ ତାର ଖୁବ୍ ଇଚ୍ଛା ଥିଲା । ଏଥିପାଇଁ ସେ ଅଝଟ ବି କରୁଥିଲା । କିନ୍ତୁ କଙ୍କଡ଼ାପୁଟ ଗାଁରେ କୌଣସି ସ୍କୁଲ ନଥିବାରୁ ବାପା ମା' କୁନ୍ଦର ଅଳି ରଖିପାରିଲେ ନାହିଁ । କୁନ୍ଦ ୬ ବର୍ଷର ହେଲାବେଳକୁ ଗାଁରେ ନୂଆ କରି ସ୍କୁଲଟିଏ ଖୋଲିଲା । ସମସ୍ତଙ୍କ ଘରୁ ପାଠ ପଢ଼ିବା ପାଇଁ ପିଲାମାନେ ଗଲେ । ହେଲେ କୁନ୍ଦ ଓ ତା'ର ଭାଇଙ୍କୁ ତାଙ୍କ ବାପା ପାଠ ପଢ଼ିବାକୁ ନଛାଡ଼ି କାମରେ ଲଗାଇଲେ । ଦିନେ ସ୍କୁଲର ଶିକ୍ଷକ କୁନ୍ଦର ବାପା ଦାନୁ ଖୋସ୍‌ଲାଙ୍କୁ କହିଲେ, "ତୁମେ କୁନ୍ଦ ଓ ତା'ର ଭାଇକୁ ପାଠ ପଢ଼ିବାକୁ ଛାଡ଼ ।" ହେଲେ ତାଙ୍କ ବାପା ଏ କଥାରେ ରାଜି ହେଲେ ନାହିଁ । ସେ କାମର ଆଳ ଦେଖାଇ ପୁଅକୁ ପାଠ ପଢ଼ାଇବାକୁ ଛାଡ଼ିଲେ ନାହିଁ । ହେଲେ କେଉଁ ଆଗ୍ରହରେ ସେ କୁନ୍ଦକୁ ପାଠ ପଢ଼ାଇବାକୁ ଛାଡ଼ିବେ ?

ଗାଁ ପ୍ରାଥମିକ ସ୍କୁଲରୁ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିବା ପରେ ଅଧିକ ପାଠ ପଢ଼ିବାର ଇଚ୍ଛା ତାଙ୍କ ମନରେ ଥିଲା । କିନ୍ତୁ ଘରର ଅଭାବ ଅବସ୍ଥା ଯୋଗୁଁ ସେ ଅଧିକ ପଢ଼ିପାରିଲେ ନାହିଁ । ତାଙ୍କୁ ୧୨ ବର୍ଷ ହେଲା ବେଳକୁ ତାଙ୍କ ବାପା ତାଙ୍କୁ ମୁଜାଙ୍ଗ ଗାଁରେ ବାହା ଦେଇଦେଲେ । ବିବାହ ହେବାର ବର୍ଷେ ପରେ ସେହି ପୁରୁଷ, କୁନ୍ଦଙ୍କୁ ପସନ୍ଦ ନଲାଗିବାରୁ ସେ ବାପା ଘରକୁ ଚାଲି ଆସିଲେ । ଘରେ ୫ ବର୍ଷ ରହିବା ପରେ ତେନ୍ତୁଳିଗୁଡ଼ା ଗାଁର ଅନ୍ଧାରୁ ଭୋଇଙ୍କୁ ବିବାହ କଲେ । ଏବେ ସେ ଗୋଟିଏ ପୁଅ ଓ ଗୋଟିଏ ଝିଅର ମାଆ ।

ତେନ୍ତୁଳିଗୁଡ଼ା ଗାଁରେ ଏକ ମହିଳା ସମିତି ଥିଲା । ଗତ ୧୪ ବର୍ଷ ଧରି କୁନ୍ଦ ସେହି ସମିତିର ସଂପାଦିକା ରୂପେ କାର୍ଯ୍ୟ କରିଥିଲେ । ସେ ପ୍ରଥମେ ମହିଳା ସମିତି ପାଇଁ ଚାଉଳ, ଡାଲି, ବ୍ଲକ ଅଫିସ୍‌ରୁ ଆଣି ପିଲା ଓ ବୁଢ଼ୀମାନଙ୍କୁ ଖାଇବାକୁ ଦେଉଥିଲେ । ପ୍ରତି ମାସରେ ସେ ୧ ବସ୍ତା ଚାଉଳ ଓ ୫୦ କିଲୋଗ୍ରାମ୍ ଡାଲି ଉଠାଉଥିଲେ । ଏ ବାବଦକୁ

ସେ ବର୍ଷକୁ ୮୦୦ ଟଙ୍କା ପାଉଣା ପାଉଥିଲେ । ମହିଳା ସମିତିର ଜଣେ ଦକ୍ଷ ସଂପାଦିକା ଭାବରେ କାର୍ଯ୍ୟ ତୁଲାଇ ସେ ସମସ୍ତଙ୍କର ପ୍ରିୟ ଭାଜନ ହୋଇ ପାରିଥିଲେ । ଫଳରେ ସେ ସମିତି ସଦସ୍ୟା ହେବାର ମର୍ଯ୍ୟାଦା ହାସଲ କରିପାରିଥିଲେ ।

କୋରାପୁଟ ଜିଲ୍ଲାର ଦଶମନ୍ତପୁର ବ୍ଲକର ମୁଜାଙ୍ଗ ଗ୍ରାମ ପଞ୍ଚାୟତ । ଗତ ପଞ୍ଚାୟତ ନିର୍ବାଚନରେ ମୁଜାଙ୍ଗ ପଞ୍ଚାୟତର ସମିତି ସଦସ୍ୟା ସ୍ଥାନ ଆଦିବାସୀ ମହିଳା ପ୍ରାର୍ଥୀଙ୍କ ପାଇଁ ସଂରକ୍ଷିତ ଥିଲା । କିନ୍ତୁ ମୁଜାଙ୍ଗ ପଞ୍ଚାୟତରେ କୌଣସି ଆଦିବାସୀ ମହିଳା ସନ୍ତକ ଜାଣି ନଥିବାରୁ କୁନ୍ଦ ଅପ୍ରତିଦ୍ୱନ୍ଦୀ ଭାବରେ ସମିତି ସଦସ୍ୟା ହେଲେ । କୁନ୍ଦ କହନ୍ତି, "ଯେତେବେଳେ ମୋତେ ସମିତି ସଦସ୍ୟା କରାଗଲା, ମୁଁ ପ୍ରଥମେ ଡରିଗଲି । କାରଣ ମୁଁ ଭାବିଲି ସମିତି ସଦସ୍ୟା ଗୋଟିଏ ବଡ଼ ପଦବୀ, ମୁଁ ତ କିଛି କଥା କହି ପାରିବି ନାହିଁ, ତେଣୁ କ'ଣ କରିବି ? ପରେ ବିଭିନ୍ନ ମିଟିଂରେ ବସିଲା ପରେ ମୋ ମନରୁ ଭୟ କୁଆଡ଼େ ଉଭେଇଗଲା !"

ବ୍ଲକ ଚେୟାରମ୍ୟାନ୍ ନିର୍ବାଚନ ବେଳେ ତାଙ୍କୁ ବହୁତ ଡର ଲାଗିଲା । ସେ କହନ୍ତି, ଭୋଟ୍ ହେବାର କିଛି ଦିନ ଆଗରୁ କଂଗ୍ରେସ ଦଳର ଲୋକମାନେ ଟାଙ୍ଗିଆ ଓ ଖଣ୍ଡାଧରି ଜିପ୍‌ରେ ଆସି ମୋ ଘରେ ପହଞ୍ଚିଲେ । ମୋତେ ଅନେକ ସମୟ ଧରି ଧମକାଇଲେ ଓ ତାଙ୍କ ଦଳର ପ୍ରାର୍ଥୀଙ୍କୁ ଭୋଟ୍ ଦେବା ପାଇଁ କହିଲେ । ସେହି ଦଳର ଲୋକମାନେ ମୋତେ କହିଲେ, 'ତୁ ଆମ ସହିତ ଆ', ଭୋଟ୍ ସରିଲେ ଫେରିଆସିବୁ ।''ମୁଁ କହିଲି, 'ଏବେ ମୋର କାମ ଅଛି, ଭୋଟ ଦିନ ଯିବି । ମୋ କଥା ଶୁଣି ସେହି ଲୋକମାନେ ପଳେଇଗଲେ । ଠିକ୍ ଦୁଇଦିନ ପରେ ଜନତା ଦଳର ଲୋକମାନେ ସେହିଭଳି ଆସି ମାରଣାସ୍ତ୍ର ଧରି ମୋ ଘର ଆଗରେ ଠିଆ ହେଲେ । ମହିଳା ସମିତିର ଖାଦ୍ୟ ଆଣିଛୁ କି, ବୋଲି ପଚାରିଲେ । ମୁଁ କହିଲି ଏବେ ତ ମୁଁ ମହିଳା ସମିତିର ସଂପାଦିକା ନାହିଁ, ଖାଦ୍ୟ କିପରି ଆଣିବି ? ହେଲେ ସେମାନେ କହିଲେ, ତୁ ମହିଳା ସମିତିର ସଂପାଦିକା ଅଛୁ । ତୋ ନାଁ କଟି ନାହିଁ । ତୁ ଆମ ସହିତ ବ୍ଲକ ଅଫିସକୁ ଚାଲ୍ । ସେଠି ଗୋଟେ ମିଟିଂ ସରିଲେ, ତୁ ମହିଳା ସମିତି ଖାଦ୍ୟ ନେଇ ଘରକୁ ଆସିବୁ । ମୁଁ ସେମାନଙ୍କ କଥାରେ ବିଶ୍ୱାସ କରି ବ୍ଲକ ଅଫିସକୁ ଗଲି । କିନ୍ତୁ ସେଠାରେ କୌଣସି ମିଟିଂ ହେଉନଥିଲା । ମୋତେ ସେମାନେ ମାଛପୁଟ ଗାଁର ଜନତା ଦଳ ନେତାଙ୍କ ଘରେ ଅଟକ ରଖିଲେ ।

ମୁଁ ସେଠି ଏକା ନଥିଲି, ମୋ ସହିତ ଆହୁରି ୪ଜଣ ସମିତି ସଭ୍ୟ ସଭ୍ୟା ସେଠାରେ ଥିଲେ । ସେହି ଘର ମଧ୍ୟରେ ଆମମାନଙ୍କ ପାଇଁ ସବୁ ପ୍ରକାର ସୁବିଧା ଥିଲା । ଆମେ କେଉଁ ପ୍ରାର୍ଥୀଙ୍କୁ ଭୋଟ୍ ଦେବୁ; ପ୍ରତି ଦିନ ସେ ବିଷୟରେ ଆମମାନଙ୍କୁ ରୀତିମତ ତାଲିମ୍ ଦିଆଯାଉଥିଲା । ଯିଏ ଭୋଟ ଦେଇ ନ ପାରିବ, ତାକୁ ଜୀବନରେ ମାରି ଦେବା ପାଇଁ

ମଧ୍ୟ ଧମକ ଦିଆଯାଉଥିଲା । ଏହି କଥାଗୁଡିକ କୁନ୍ଦ ଖୁବ୍ ଦୁଃଖରେ କହୁଥିଲେ । "ସେହି ଘର ମଧ୍ୟରେ ୧୫ଦିନ ଅଟକ ରଖିବା ପରେ ଭୋଟ ଦେବା ଦିନ ଆମକୁ ପଦାକୁ ବାହାର କରାଗଲା । ମୁଁ ଭୋଟ ଦେଇ ଆମ ଗାଁକୁ ଫେରିଥିଲି । ପରେ ସେହି ପ୍ରାର୍ଥୀ ଜିତିଥିଲେ ।"

ସେ ପ୍ରତି ମାସରେ ବ୍ଲକ ଅଫିସ୍ ଆସି ମିଟିଂରେ ଯୋଗ ଦେଉଥିଲେ । ନିଜ ପଞ୍ଚାୟତର ସବୁ ପ୍ରକାର ଉନ୍ନତି ପାଇଁ ଦାବି କରୁଥିଲେ । ହେଲେ ତାଙ୍କର କୌଣସି ଦାବିକୁ ଗ୍ରହଣ କରାଯାଉ ନଥିଲା । ଅନେକ ଚେଷ୍ଟା ପରେ ମୁଜାଙ୍ଗ ପଞ୍ଚାୟତ ରାସ୍ତା ତିଆରି ପାଇଁ ଏକଲକ୍ଷ ଟଙ୍କା ଓ ପୋଲ ତିଆରି ପାଇଁ ୫୦ହଜାର ଟଙ୍କା ମଞ୍ଜୁର ହୋଇଥିଲା । ହେଲେ ସେ ଏକଥା ଜାଣି ନ ଥିଲେ କି ଚେୟାରମ୍ୟାନ, ମିଟିଂରେ କହିନଥିଲେ । ପରବର୍ତ୍ତୀ ମିଟିଂରେ ସେ ଯେତେବେଳେ ବ୍ଲକ୍‌କୁ ଗଲେ, ସେତେବେଳେ ଗ୍ରାମପଞ୍ଚାୟତ ଅଧିକାରୀ ତାଙ୍କ ସବୁ କଥା କହିଲେ । ହେଲେ ସେତେବେଳକୁ ରାସ୍ତା କାମଟି ମୁଜାଙ୍ଗ ଗାଁର ଜଣେ ଲୋକ ଆରମ୍ଭ କରିଦେଇଥାନ୍ତି ଓ ପୋଲ ତିଆରି କାମଟିକୁ ତେନ୍ତୁଳିଗୁଡା ଗାଁର ଜଣେ ଲୋକ କରାଉଥାନ୍ତି । ଏହି କାମ କିଏ ଦେଲା ବୋଲି କୁନ୍ଦ ମିଟିଂରେ ପଚାରିଲେ । ସରଳ ଓ ସାଧୁ ବୋଲାଉଥିବା ବି.ଡି.ଓ ଓ ଚେୟାରମ୍ୟାନ ତାଙ୍କ କଥାକୁ ହସରେ ଉଡାଇ ଦେଲେ । କୁନ୍ଦ ତାହାର ଘୋର ପ୍ରତିରୋଧ କରିଥିଲେ । ଏହାର ଜବାବରେ କୁନ୍ଦଙ୍କୁ କିଛି ପଇସାର ପ୍ରଲୋଭନ ଦେଖାଇ କାହାରି ଆଗରେ ଏକଥା ପ୍ରକାଶ ନ କରିବାକୁ କୁହାଯାଇଥିଲା କାରଣ ଠିକା ନେଇଥିବା ଲୋକମାନେ ଚେୟାରମ୍ୟାନଙ୍କ ସଂପର୍କୀୟ ଥିଲେ ।

ଏହାପରେ କୁନ୍ଦଙ୍କ ଗ୍ରାମରେ ଅନେକ କାମ ହୋଇଛି । ହେଲେ ପୂର୍ବ କାମ ପରି ଚେୟାରମ୍ୟାନଙ୍କ ସଂପର୍କୀୟମାନେ ଠିକା ନେଇଛନ୍ତି । ପ୍ରଥମେ ପ୍ରଥମେ କୁନ୍ଦ ଏହାର ପ୍ରତିରୋଧ କରିଛନ୍ତି । ପରବର୍ତ୍ତୀ କ୍ଷଣରେ ସେ କୌଣସି କଥାରେ ମୁଣ୍ଡ ଖେଳାଇ ନାହାଁନ୍ତି । କାରଣ ତାଙ୍କୁ ସାହାଯ୍ୟ କରିବାପାଇଁ କୌଣସି ବ୍ୟକ୍ତି ଆଗଭର ହେଉ ନ ଥିଲେ । କୁନ୍ଦଙ୍କର ମତ ଯେ ଏପରି ଏକ କଳୁଷିତ ରାଜନୀତି ମଧ୍ୟରେ ପ୍ରବେଶ କରି ଲୋକନିନ୍ଦା ପାଇବା ଅପେକ୍ଷା ସାଧାରଣ ମଣିଷ ପରି ଚଳିବା ହିଁ ଭଲ । ଆଗାମୀ ପଞ୍ଚାୟତ ନିର୍ବାଚନରେ ପ୍ରାର୍ଥୀ ହେବା ପାଇଁ ମୋର ଜମାରୁ ଇଚ୍ଛା ନାହିଁ ଯଦି କୌଣସି ଜାଣିବା ଶୁଣିବା ଭଦ୍ରବ୍ୟକ୍ତି ମୋତେ ପଞ୍ଚାୟତ ନିୟମ କାନୁନ୍ ଶିଖାଇ ଦିଅନ୍ତେ ଏବଂ ମୋତେ ସବୁ କାମରେ ସାହସ ଦିଅନ୍ତେ, ତେବେ ମୁଁ ପୁଣି ନିର୍ବାଚନ ଲଢ଼ନ୍ତି ମୋର ଏହି ଆଦିବାସୀ, ହରିଜନ ଭାଇ ଭଉଣୀମାନଙ୍କ ପାଇଁ କିଛି କରିବାର ଚେଷ୍ଟା ରଖନ୍ତି ।

ନଭେମ୍ବର - ୧୯୯୫

# ମାଲତୀ ସେ ଏଇ ମୁଲକର

ନୁମା, ଏହି ଶତାବ୍ଦୀର ଜଣେ ଉଜ୍ଜ୍ୱଳ ପ୍ରତିଭା । ସେ ଏକାଧାରରେ ଜଣେ ସମାଜ ସେବୀ, ରାଜନୀତିଜ୍ଞ, ସଂଗୀତଜ୍ଞ ଓ ଚିତ୍ରକାର । ଏହା ସଂଗେ ସଂଗେ ସେ ସ୍ୱାଧୀନତା ସଂଗ୍ରାମରେ ପୂରାପୁରି ଜଡିତ ଥିଲେ । ଗାନ୍ଧି ଓ ରବୀନ୍ଦ୍ରନାଥଙ୍କ ଆଦର୍ଶରେ ଅନୁପ୍ରାଣିତ 'ନୁମା' ବା ମାଲତୀ ଚୌଧୁରୀ, ମଣିଷ ଭାବରେ ଅତି ସରଳ ଜଣା ପଡୁଥିଲେ ମଧ୍ୟ ସେ ନିଜ ଭିତରେ ଏକ ବ୍ୟତିକ୍ରମ ଥିଲେ । ଜୀବନରେ ବହୁତ ଦୁଃଖ କଷ୍ଟ, ଝଡ ଝଞ୍ଜା ସହି ସେ ଜୀବନ ବିତାଇଛନ୍ତି । ସେ କେବେ ବି ଏ କଷ୍ଟକୁ କାହା ଆଗରେ ପ୍ରକାଶ କରିନାହାନ୍ତି । ବରଂ ସେ ଅଧିକ ଉତ୍ସାହରେ ଆଗକୁ ଆଗକୁ ପାଦ ବଢ଼ାଇଛନ୍ତି । ସ୍ୱଭାବରେ ସେ ଖୁବ୍ ଜିଦ୍‌ଖୋର ଓ ଦୃଢ଼ମନା ଥିଲେ । ସବୁବେଳେ ତାଙ୍କ ମନରେ କିଛି ଗୋଟେ କରିବାର ଆଗ୍ରହ ତାଙ୍କୁ ବ୍ୟସ୍ତ କରୁଥିଲା । ତାଙ୍କର କୌଣସି କାର୍ଯ୍ୟକୁ ବାରଣ କଲେ ମଧ୍ୟ ସେ ଭାରୀ ଆଗ୍ରହରେ ସେଥିରେ ଲାଗିପଡୁଥିଲେ । ଏପରିକି କେତେକ କ୍ଷେତ୍ରରେ ସେ ଗାନ୍ଧି, ରବୀନ୍ଦ୍ରନାଥଙ୍କ କଥାରେ ମଧ୍ଯ ଅମାନିଆ ହୋଇଛନ୍ତି ।

ସେ କଲିକତା ମହାନଗରୀରେ ୨୪ଜୁଲାଇ ୧୯୦୪ରେ ଜନ୍ମ ହୋଇଥିଲେ । ମାଟ୍ରିକ୍ ପାଶ୍ କଲାପରେ ସେ ଶାନ୍ତି ନିକେତନରେ ଉଚ୍ଚ ଶିକ୍ଷା କଲେ । ସେହିଠାରେ ନବକୃଷ୍ଣ ଚୌଧୁରୀଙ୍କ ସହିତ ତାଙ୍କର ଚିହ୍ନା ହେଲା । ସେ ଦୁହିଁଙ୍କର ବିବାହ ହେଲାପରେ ସେମାନେ ଓଡ଼ିଶା ଆସିଲେ । ସେତେବେଳେ ସେ ଗାଁ ଗାଁ ବୁଲି ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କଲେ । ଗାନ୍ଧି, ବିନୋବା, ରମାଦେବୀ(ନୁମାଙ୍କ ଯାଆ), ଠକ୍କର ବାପାଙ୍କ ସହ ବହୁ ଆନ୍ଦୋଳନରେ ମିଶି ବହୁବାର ଜେଲ ଯାଇଛନ୍ତି । ସେହିଥିରେ ସେ ଦବି ନଯାଇ ଆହୁରି ଆଗ୍ରହର ସହିତ ନିଜ କାର୍ଯ୍ୟରେ ଆଗେଇ ଯାଇଥିଲେ । ଅନୁଗୁଳର ବାଜି ରାଉତ ଛାତ୍ରାବାସ ତାଙ୍କର ସୃଷ୍ଟି । ତାଙ୍କର ଏହି ଆଶ୍ରମର ଅନାଥ ପିଲାମାନଙ୍କ ପାଇଁ ସେ ସବୁବେଳେ ଚିନ୍ତିତ । ଏବେ ୯୩ ବର୍ଷ ବୟସରେ ପୀଡିତ ଅବସ୍ଥାରେ ମଧ୍ଯ ସେ କର୍ମମୟ ଜୀବନରୁ ଅବସର ନେଇନାହାନ୍ତି ।

ତାଙ୍କର ସେବାମୟ ଜୀବନର ଫଳ ସ୍ୱରୂପ ସେ ୧୯୯୫ର ସମ୍ମାନଜନକ 'ରବୀନ୍ଦ୍ରନାଥ ଠାକୁର ଜାତୀୟ ସାକ୍ଷରତା ପୁରସ୍କାର' ପାଇଛନ୍ତି । ଏହି ପୁରସ୍କାର ୧୯୮୭ ମସିହାରୁ ଆରମ୍ଭ ହୋଇଛି । ତାଙ୍କର ସୁସ୍ଥ କର୍ମମୟ ଶତାୟୁ ଜୀବନ କାମନା କରି 'ଆରୋହଣ' ପରିବାର ତାଙ୍କୁ ଆନ୍ତରିକ ସମ୍ମାନ ଜଣାଉଛି ।

ନଭେମ୍ବର – ୧୯୯୫

# ଗୋଡ଼ି ଗାଁର ଲକ୍ଷ୍ମୀ

କଳାହାଣ୍ଡି ଜିଲ୍ଲାର କୁବେରବାଫଲା ଗାଁରେ ଏକ ନିମ୍ନ ମଧ୍ୟବିତ ପରିବାରରେ ଲକ୍ଷ୍ମୀର ଜନ୍ମ । ପିଲାଟିଦିନରୁ ଲକ୍ଷ୍ମୀ ଦୁଃଖ କ'ଣ ଜାଣିନଥିଲା । କାରଣ ଜମିବାଡ଼ି, ହଳବଳଦ ସବୁଥିବାରୁ ଅଭାବ କ'ଣ ପରିବାରରେ ଜଣା ପଡୁନଥିଲା । ପରିବାର କହିଲେ ବାପା, ମାଆ, ଭାଇ ଭଉଣୀ ମିଶି ଚାରି ଜଣ । ଦୁଇ ଭଉଣୀଙ୍କ ମଧ୍ୟରୁ ଲକ୍ଷ୍ମୀ ଥିଲା ସାନ । ଦୁଃଖ ସୁଖେ ସେମାନେ ଚଳି ଯାଉଥିଲେ । ପନ୍ଦରବର୍ଷ ବୟସରେ ସୁନ୍ଦରକଡ଼ ଗାଁର ଡମ୍ବୁ ମାଝୀକୁ ଲକ୍ଷ୍ମୀ ବିବାହ କଲା । ସ୍ୱାମୀ ସାଙ୍ଗରେ ଚାରି ପାଞ୍ଚବର୍ଷ ଖୁସିରେ କଟିଗଲା ଏବଂ ଦୁଇଟି ଝିଅ ଜନ୍ମହେଲେ ।

ଅଦିନିଆ ବର୍ଷା ପରି ହଠାତ୍ ମାଡ଼ି ଆସିଲା ଉପର ଇନ୍ଦ୍ରାବତୀ ନଦୀବନ୍ଧ ପ୍ରକଳ୍ପ । ଯାହାର ଫଳ ସ୍ୱରୂପ ସୁନ୍ଦରକଡ଼ ଗାଁର ଲୋକମାନଙ୍କୁ ନିଜର ଭିଟାମାଟି, ଜମିଜମା, ହଳବଳଦ, ଘରଡ଼ିହ ଆତ୍ମୀୟ ସ୍ୱଜନ ଓ ସମାଜ ସମସ୍ତଙ୍କୁ ହରାଇବାକୁ ପଡ଼ିଲା । ଲକ୍ଷ୍ମୀର ଗାଁ ପରି ଆହୁରି ଅନେକ ଆଦିବାସୀ ଗାଁ ମଧ୍ୟ ଉଠିଗଲା । କିଏ କୁଆଡ଼େ ରହିଲେ ତାର ଠିକଣା ମିଳିଲା ନାହିଁ । ଲକ୍ଷ୍ମୀ ଏବଂ ଡ଼ମ୍ବୁ କେମିତି ଏଥିରୁ ବାଦ୍ ପଡ଼ିଥା'ନ୍ତେ ? ଲକ୍ଷ୍ମୀ କହେ, "ସରକାର ଏଇ ଯେଉଁ ଯୋଜନା କଲେ, ସେଥିରେ ଆମମାନଙ୍କୁ ବହୁତ ଲୋଭ ଦେଖାଯାଇଥିଲା । ଆମେତ ସେତେବେଳେ କିଛି ଜାଣୁନଥିଲୁ । ବାବୁ ଭାୟା ଲୋକମାନଙ୍କୁ ଦେଖୁଥିଲେ ଡରିକରି ପଳାଇଯାଉଥିଲୁ । ସେମାନେ ଆମକୁ କହୁଥିଲେ ଚାକିରି ଦେବେ, ଜମି, ଘର ଇତ୍ୟାଦି କେତେ କ'ଣ ଦେବେ, ମାତ୍ର କାହାରିକୁ କିଛି ମିଳିଲା ନାହିଁ ।

ଜମି ବାବଦକୁ ଯେଉଁ ଟଙ୍କା ମିଳିଲା, ସେହି ଟଙ୍କା କିଛି କୁଆଡୁ ହେଲାନାହିଁ । କାହାର ୧୦ ଏକର ଜମି ଗଲା ସେ କିଣିଲା ବେଳକୁ ୨ ଏକର, କାହାର ୩୦ ଏକର, କାରଣ କିଣିଲା ବେଳକୁ ଜମି ଦର ବହୁତ ବଢ଼ିଗଲା । କିପରି ଉଠିକି ଆସିଲ ବୋଲି ପଚାରିବାରୁ ଲକ୍ଷ୍ମୀ ଏବେ ମଧ୍ୟ କାନ୍ଦି ପକାଇ କହେ- "ସେ କଥା

କାହିଁକି ପଚାରୁଛ । ଦୁଇତିନି ଥର ଉଠିବାକୁ କହିଥିଲେ ମଧ୍ୟ ଆମେ ଉଠିନଥିଲୁ । ଦିନେ ଅନ୍ଧାର ରାତି, ବର୍ଷା ଜୋରରେ ହେଉଛି, ସେତିକିବେଳେ ଗୋଟିଏ ଟ୍ରକ ଆଣି ଡ୍ରାଇଭର ମୋତେ କହିଲା, "ଆଜି ମତେ ନିର୍ଦ୍ଦେଶ ହୋଇଛି, ତୁମକୁ ନେଇ ଅନ୍ୟ ଜାଗାରେ ଛାଡ଼ିବି । ସେତେବେଳକୁ ଆମେ ଜାଗା ଠିକ୍ କରି ନଥାଉ । ସେ କହିଲା, ଶୀଘ୍ରଶୀଘ୍ର ଆସି ଗାଡ଼ିରେ ବସ । ଆମେ ଯେତେ ମନା କଲେ ସେ ମାନିଲା ନାହିଁ । ପୋଲିସ୍ ଡାକି ଆଣିବ ବୋଲି ଧମକ ଦେଲା । ପୋଲିସ ନାଁ ଶୁଣି ଆମେ ଡରିକରି ପିଲାଛୁଆଙ୍କୁ ଧରି ଗାଡ଼ିରେ ବସିଲୁ । ସେ ଡ୍ରାଇଭର ଆମମାନଙ୍କୁ ଅଧା ବାଟରେ ଛାଡ଼ି ପଳାଇ ଗଲା । ଆମେ କୁଆଡ଼େ ଯିବୁ ଠିକ୍ କରି ନଥିଲୁ । ବର୍ଷାରେ ଭିଜିଭିଜି ପିଲାଙ୍କୁ ଧରି ବହୁତ ହଇରାଣରେ ଆମେ ଗୋଡ଼ି ଗାଁରେ ପହଞ୍ଚିଲୁ ।"

ସେଠାରେ ଆମର ଜମିବାଡ଼ି ତ କିଛି ନଥିଲା । ସରକାର ଯେତିକି ଟଙ୍କା ଦେଇଥିଲେ ଅଳ୍ପ କେତେ ଦିନପରେ ସରିଗଲା । ବର୍ତ୍ତମାନ ଆମ ପାଖରେ ଟଙ୍କା ନାହିଁ କି କମଣି କରି ଖାଇବାକୁ ଜମି ନାହିଁ । ଜଙ୍ଗଲକୁ କାଠ ଖଣ୍ଡେ ପାଇଁ ଗଲେ ବୁଡ଼ି ଅଞ୍ଚଳର ଲୋକ କହି ଖେଦି ଦିଅନ୍ତି । ଆମ ପିଲା ପାଠପଢ଼ି ପାରୁ ନାହାନ୍ତି, ଆମକୁ ସରକାରୀ ଯୋଜନା କିଛି ମିଳୁନି, କାରଣ ଆମେ ବୁଡ଼ି ଅଞ୍ଚଳର ଲୋକ । ପାଠତ ପଢ଼ିନୁ, ଚାକିରି କ'ଣ କରିବୁ । ମୂରୁଖ ଆଦିବାସୀମାନଙ୍କୁ ଚାକିରି ବା ଦେବ କିଏ ? ବନ୍ଧ ବାନ୍ଧିଲାବେଳେ ଆମକୁ କେତେ ପ୍ରତିଶ୍ରୁତି ଦେଲେ । ଭଲ ଘର ତୋଳିଦେବେ । ଚାକିରି ଦେବେ । ସ୍କୁଲ, କଲେଜ ଡାକ୍ତରଖାନା କରି ଦେବେ । ରଣବଡ଼ିର ସୁବିଧା କରି ଦେବେ । କିନ୍ତୁ ଯେଉଁ ଜାଗା ଦେଇଛନ୍ତି ସେଠାରେ ମଞ୍ଜି ଗଜା ହେଉନି । ଘରକଥା ଛାଡ଼ । ପିଇବାକୁ ପାଣି ଟୋପେ ମଧ୍ୟ ମିଳୁନାହିଁ । ଏମିତି ଅବସ୍ଥାରେ ମୁଁ ମୋର ପରିବାର ଧରି ଆସି ଗୋଡ଼ିଗାଁରେ ରହିଛି । ଆଗରୁ ମୁଁ କେତେ ଖୁସିରେ ଥିଲି । ଏବେ ମୋର ପରିବାରକୁ ଦୁଇଓଳି ଦୁଇମୁଠା ଖାଇବାକୁ ମିଳୁନି ବୋଲି ସେ କହେ ।

ଏତେ ସବୁ ଦୁଃଖ କଷ୍ଟ ଭିତରେ ସେ କିଛିକଥା ବୁଝି ଆଗକୁ ବାହାରି ଆସିଛି, ତା'ଭଳି ଆଦିବାସୀ ମହିଳାମାନଙ୍କର ଉନ୍ନତି କରିବା ଲାଗି । ଆଦିବାସୀ ମହିଳାମାନଙ୍କୁ ଅନ୍ଧାରରୁ ଆଲୁଅକୁ ଆଣିବା ଲାଗି ସେ ଯେତିକି ପାରୁଛି ଚେଷ୍ଟା କରୁଛି । ଗାଁ ଗାଁରେ ମିଟିଂ କରୁଛି । ମହଳିଳାମାନଙ୍କୁ ଏକତ୍ର କରି ସେମାନଙ୍କ ସମସ୍ୟା ଉପରେ ଆଲୋଚନା କରୁଛି । ଚାରି ପାଞ୍ଚଖଣ୍ଡ ଗାଁର ଲୋକମାନଙ୍କୁ ସଂଗଠିତ କରି ସାଧାରଣ ବଣ୍ଟନ ବ୍ୟବସ୍ଥା ମାଧ୍ୟମରେ ଚାଉଳ, ଚିନି, କିରୋସିନି ଅଣାଇ ପାରିଛି । ସରକାରଙ୍କ ଯୋଜନାରେ ସମସ୍ତେ ମାସକୁ କିଲୋ ଦୁଇ ଟଙ୍କା

ଦରରେ ୧୦ କିଲୋ ଚାଉଳ ପାଇବା କଥା ଜାଣି ବି.ଡ଼ି.ଓଙ୍କ ପାଖକୁ ସଂଗଠିତ ହୋଇ ଯାଇ ଦାବିକରି ଚାଉଳ ଏବେ ଖୁସିରେ ପାଇ ପାରୁଛନ୍ତି । ଆଦିବାସୀ ମହିଳାମାନେ ନିଜ ନିଜର ଅସୁବିଧା ବୁଝିପାରିଲେଣି । ସେମାନଙ୍କ ମଧ୍ୟରେ ଥିବା ଭୟ କମିଲାଣି । ସେମାନେ ଅଫିସର, ହାକିମ ହୁକୁମାଙ୍କ ସାମନାରେ କଥା କହିପାରିଲେଣି । ଏଥିପାଇଁ ଲକ୍ଷ୍ମୀର ଅବଦାନ ବହୁତ ବେଶୀ । ସେ କହେ- "ଏ ସବୁ କାମ କରିବା ପାଇଁ ଅଗ୍ରମାଗୀ ଆଞ୍ଚାମାନଙ୍କଠାରୁ ପ୍ରେରଣା ପାଇଛି ।" ପୁଣି କହେ,- "ଆଗକୁ ଯଦି ଏମିତି ଜାଣି ଥାଆନ୍ତୁ, ତାହେଲେ ଇନ୍ଦ୍ରାବତୀ ବନ୍ଧ ହେବାପାଇଁ ଆମେ କେବେ ଛାଡ଼ି ଦେଇ ନଥାନ୍ତୁ କି ଆଜି ଏପରି ଅସୁବିଧା ଭୋଗକରୁ ନଥାନ୍ତୁ ।"

ଏବେ ସବୁ ଯେଉଁ ଅଞ୍ଚଳରେ ସରକାର ନଦୀବନ୍ଧ, ଖଣି, କାରଖାନା ଇତ୍ୟାଦି କାମ କରିବାକୁ କହୁଛନ୍ତି; ସେଠାକୁ ଯାଇ ମଧ୍ୟ ଲକ୍ଷ୍ମୀ ମିଟିଂକରି, ନିଜ ଲୋକଙ୍କୁ ବୁଝାଇବା ପାଇଁ ଆଗଭର ।

ପିଲାବେଳରୁ ପାଠ ପଢ଼ିବାକୁ ଇଛା ଥିଲେ ମଧ୍ୟ ଆଦିବାସୀ ପରମ୍ପରାକୁ ଭାଙ୍ଗି ସେ ପଢ଼ିବା ପାଇଁ ଯାଇପାରି ନଥିଲା । ଏବେ କିନ୍ତୁ ନିଜ ଇଛାରେ ସେ ନିଜର ନାମ ଲେଖିପାରୁଛି । ସେ ଆଜି ଅନୁଭବ କରିପାରିଛି, ଅଶିକ୍ଷିତ ହେବାର ଫଳ । ବୁଝି ପାରିଛି ଶିକ୍ଷାର ମୂଲ୍ୟ । ଭାରତ ସରକାରଙ୍କ ଅଷ୍ଟମ ଯୋଜନାରେ ଜନମଙ୍ଗଳ ମନ୍ତ୍ରଣାଳୟ ଦ୍ୱାରା ଆଦିବାସୀ ଝିଅମାନଙ୍କ ପାଇଁ ଖୋଲା ଯାଇଥିବା ଆଦିବାସୀ ବାଳିକା ଶିକ୍ଷାୟତନରେ ନିଜର ଦୁଇଟି ଝିଅଙ୍କୁ ପାଠ ପଢ଼ିବାକୁ ପଠାଇବା ସଙ୍ଗେସଙ୍ଗେ ଗାଁରେ ବୁଝାଇ ଅନ୍ୟ ଝିଅମାନଙ୍କୁ ପାଠ ପଢ଼ିବାକୁ ପଠାଉଛି ।

ଲକ୍ଷ୍ମୀ କହେ, "ମୋର ଦୁଇଟି ଝିଅ ପାଠ ପଢୁଛନ୍ତି । କେବଳ ଦୁନିଆର, ଦେଶବିଦେଶର କଥା ଜାଣିବେ । ସେହି କଥାକୁ ଗାଁ ଲୋକଙ୍କୁ ଜଣାଇବେ । ଚାକିରି କରିବା ଲାଗି ମୋ ଝିଅକୁ ମୁଁ ପଢ଼ାଉ ନାହିଁ । ଏବେ ମୋ ଝିଅ ମୋ ପାଖକୁ ଚିଠି ଲେଖୁଛି । ହେଲେ କ'ଣ ହେବ ? ମୁଁ ତ ପାଠ ପଢ଼ି ଜାଣିନାହିଁ । ତାକୁ ରଖିଦେଇଥାଏ ସେ ଛୁଟିରେ ଘରକୁ ଆସିଲେ ମତେ ପଢି ଶୁଣାଇ ଦିଏ । ସେତେବେଳେ ମତେ ବହୁତ ଖୁସି ଲାଗେ ।" ଏକଥା କହିଲା ବେଳେ ସେ ସତକୁ ସତ କାନ୍ଦି ପକାଉଥିଲା । ଏଥିରୁ ଜଣା ପଡୁଥିଲା ପାଠପ୍ରତି ତାର କେତେ ଆଗ୍ରହ ରହିଛି । ଘରର ସବୁ କାମ ସାରି ଏବେ ମଧ୍ୟ ସେ ଗାଁରେ ଚାଲିଥିବା ରାତି ସ୍କୁଲରେ ଆସି ବସେ । ପିଲାମାନେ ପାଠ ପଢୁଥିବାର ଦେଖେ, ଗୀତ, ଗପ ଶୁଣି ଖୁସିହୁଏ ।

ମହିଳାମାନଙ୍କ ସମସ୍ୟା ସବୁ ଜାଣିବାପରେ ଏବେ ସେ କେବଳ ଆଗକୁ ଆସିନି,

ତା'ରି ପରି ଅନେକ ଆଦିବାସୀ ମହିଳାମାନଙ୍କୁ ଆଗକୁ ଆସିବାକୁ ରାସ୍ତା ଦେଖାଇଛି । ନିଜ ଗାଁ ତଥା ଆଖପାଖ ଗାଁ ବୁଲି ମହିଳାମାନଙ୍କୁ ନେଇ ମିଟିଂକରି ଜଣାଇ ଦେଇଛି- ଆଦିବାସୀ ମହିଳାମାନଙ୍କର ପ୍ରକୃତ ସମସ୍ୟା । ସେ ଲାଗିପଡ଼ିଛି ମହିଳାମାନଙ୍କୁ ସଂଗଠିତ କରାଇବାରେ ଏବଂ ବୁଝାଇଦେଇଛି ସଂଗଠିତ ହେଲେ ଅସାଧ୍ୟ କାମକୁ ସାଧ୍ୟ କରାଯାଇପାରିବ । ଏହିସବୁ କାମ ପାଇଁ ସେ ଆଜି ଗାଁ ଲୋକଙ୍କ ନିକଟରେ ଆପଣାର ହୋଇପାରିଛି । ଏବେ ପ୍ରତି କଥାରେ ଗାଁରେ ଆଗ ଖୋଜା ହେଉଛି ଲକ୍ଷ୍ମୀକୁ ।

କୁବେରବାଫଲା ଗାଁରେ ଅତି ଅଲିଳଅଳରେ ବଢ଼ିଥିବା, ସୁନ୍ଦରକଡ଼ରେ ବୋହୂ ହୋଇ ସୁଖରେ ରହୁଥିବା ଲକ୍ଷ୍ମୀ ସରକାର ଯୋଜନାରେ ହଠାତ୍ ଗାଁ ଛାଡ଼ି ଅନ୍ୟତ୍ର ଯିବାକୁ ବାଧ୍ୟ ହୋଇ ଗୋଡ଼ିଗାଁରେ ଆସି ରହିଲା । ପ୍ରଥମେ ପ୍ରଥମେ ସ୍ଥାନୀୟ ଲୋକଙ୍କଠାରୁ ଅନେକ ପ୍ରକାର ଗାଳି ଗୁଲଜ ଶୁଣିଥିଲା । ମାତ୍ର ଏହି ସବୁ କଥାକୁ ଖାତିର ନକରି, ସମସ୍ତ ବନ୍ଧନକୁ ଦୂରେଇ ଦେଇ ନିଜର ନେତୃତ୍ୱ ନେବାର ଗୁଣଯୋଗୁଁ ସେ ଆଜି ସମସ୍ତଙ୍କର ଆଦରର ପାତ୍ରୀ ହୋଇ ପାରିଛି ।

ଏପ୍ରିଲ୍ - ୧୯୯୬



# ଉଜ୍ଜଳ ଦେଈର ନିଜକଥା

ଉଜଳ ଦେଈଙ୍କ ବୁଆ (ବାପା) ଘର ଯୋଡ଼ାମ୍ବ ଗାଁରେ । ବୁଆର ନାଁ ହେଉତୁ ମାଝୀ, ଆୟା (ମା)ର ନାଁ ଲକ୍ଷ୍ମୀ ଦେଈ । ଲକ୍ଷ୍ମୀ ଦେଈଙ୍କ ତିନିଝିଅ ଭିତରେ ଉଜଳ ସମସ୍ତଙ୍କଠାରୁ ବଡ଼ । ତାର ନାଁ କାହିଁକି ଉଜଳ ଦେଲେ ପଚାରିବାରୁ ସେ କହେ "ଜନମ ବେଳେ ମୁଁ ସୁନାପରି ଉଜଳ ଦିଶୁଥିବାରୁ ମୋର ନାମ ଉଜ୍ଜଳ ଦେଇଛନ୍ତି ।"

ତିନୋଟି ଝିଅ ଛୋଟ ଛୋଟ ହୋଇଥିବା ବେଳେ ତା'ର ମା' ମରିଗଲେ । ପିଲାଙ୍କ ଦେଖାଶୁଣାପାଇଁ ତାର ବୁଆ ଗୁରୁବାରୀ ଦେଈଙ୍କୁ ଦ୍ୱିତୀୟ ବିବାହ କଲେ । ପଛ ମାଆର ମଧ୍ୟ ଦୁଇଟି ଝିଅ ଦୁଇପୁଅ । ଏହିପରି ଭଉଣୀ ଭାଇ ମିଶି ସାତଜଣ । ସମସ୍ତଙ୍କ ମଧ୍ୟରେ  ବଡ଼ ଥିବାରୁ ଉଜଳ ସବୁପିଲାଙ୍କର ଦେଖାଶୁଣା କରେ । ଭାଇ ଭଉଣୀଙ୍କ ଖବର ବୁଝିବା, ରୋଷେଇ କରିବା, ବିଲ କାମରେ ବୁଆ ଆୟାଙ୍କୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ସାଥୀ ମେଳରେ ବଣକୁ ଯାଇ କୋଳି ତୋଳିବା, କନ୍ଦା ଖୋଳିବା ଏବଂ କାଠ ଆଣିବା ଉଜଳର ନିତିଦିନିଆ କାମ ଥିଲା । ଏତେ ସବୁ କାମକୁ ସେ ବାପାମାଆଙ୍କ ସ୍ନେହ ଆଦର ପାଇ ଖୁସିରେ କରି ଯାଉଥିଲା । ବାପଘର ଚଳଣି ମଧ୍ୟ ବହୁତ ଭଲ ଥିଲା । ପାଖାପାଖି ୫୦ ଏକର ଜମିରେ ଚାଷ କରୁଥିଲେ । "ସବୁ କାମ ଭିତରେ ସାଙ୍ଗମାନଙ୍କ ମେଳରେ ବଣକୁ ଯାଇ ଗୀତ ଗାଇଗାଇ ଫଳମୂଳ, କନ୍ଦା, କାଠ ସଂଗ୍ରହ କରିବାକୁ ମତେ ବହୁତ ଭଲ ଲାଗୁଥିଲା" ବୋଲି ସେ କହେ ।

"ଯେତେବେଳେ ମତେ ୧୫ ବର୍ଷ ବୟସ ହେଲା ମୋର ବୁଆ ମତେ ସିନ୍ଦୁରଘାଟି ଗାଁର ହୂର୍ତ୍ତି ମାଝୀର ପୁଅ ଫୁଲକୁମାରକୁ ୪୫୦ ଟଙ୍କା ଏବଂ ୬ଡବା ମଦ ଝୋଲା ନେଇ ବାହା କରାଇ ଦେଲା । ଶଶୁର ଘର ମଧ୍ୟ ଜମି ଅଧିକ ଥିଲା । ଶଶୁରଙ୍କର ୪ ପୁଅ ମଧ୍ୟରୁ ମୋର ଅଣ୍ଡିରା ଥିଲା ବଡ଼ । ମୁଁ ଆସିଲା ବେଳକୁ ସେମାନେ ସମସ୍ତେ ସାନ ଥିଲେ । ଏବେ ସବୁ ବଡ଼ ବଡ଼ ହୋଇଗଲେ । ଜମି ସବୁ

ମଧ୍ୟ ଭାଗଭାଗ ହୋଇଗଲା । ତେଣୁ ଚଳିବାକୁ ଟିକେ ଅସୁବିଧା ହେଉଛି । ଆଗରୁ ମୁଁ ଭଲରେ ଚଳୁଥିବାରୁ ଏବେ ଟିକେ କଷ୍ଟ ଲାଗୁଛି । ଯେମିତି ହେଉ ଚଳିବାକୁ ତ ପଡ଼ିବ ।

ଉଜ୍ଜଳ ଦେଈର  ଦୁଇଟି ଝିଅ ଓ ଗୋଟିଏ ପୁଅ । ଗୋଟିଏ ଝିଅକୁ ବାହାଦେଇ ସାରିଲାଣି । ଆଉ ଝିଅଟିଏ ଓ ପୁଅଟିଏ ପାଖ ସ୍କୁଲରେ ପାଠ ପଢୁଛନ୍ତି । ପିଲାଦିନରୁ ପାଠ ପଢ଼ିବାକୁ ଉଜ୍ଜଳର ପ୍ରବଳ ଇଚ୍ଛା ଥିଲେ ବି ଆଦିବାସୀ ଝିଅ ପାଠ ପଢ଼ିବା ବ୍ୟବସ୍ଥା ନଥିବାରୁ ଗାଁରେ ସ୍କୁଲ ଥିଲେ ବି ପରମ୍ପରାକୁ ଭାଙ୍ଗି ସେ ପଢ଼ିପାରି ନଥିଲା । ନିଜର ଆଗ୍ରହ ବଳରେ ସାନବାପାଙ୍କ ପାଖରୁ ଅ,ଆ, ଇ,ଈ... ଅକ୍ଷର ଏବଂ ନିଜ ନାମ ଲେଖି ଶିଖିଥିଲା । ତୁ ତ ପାଠ ପଢ଼ିନୁ, ତୋର ପିଲାକୁ କାହିଁକି ପଢ଼ାଉଛୁ ବୋଲି ପଚାରିବାରୁ ସେ କହେ - "ଏବେ କଣ ସେ ଯୁଗ ଆଉ ଅଛି । ଦେଖୁନୁ ପାଠ ଦି  ଅକ୍ଷର ପଢ଼ିନୁ ବୋଲି କେତେ ହଇରାଣ ହେଉଛୁ । କାହାରି ଆଗକୁ ଟିକେ ଯାଇ ପାରୁନୁ ! ବଡ଼ ବଡ଼ ଆଜ୍ଞାମାନଙ୍କୁ ଦେଖୁ ଦେଖୁ ଘର ଭିତରେ ଲୁଚି ଯାଉଥିଲୁ । ବାହାର ଦୁନିଆରେ କଣ ସବୁ ହେଉଛି, ଆମେ ସେ ସବୁ ବିଷୟରେ ଜାଣି ପାରୁନୁ । ଆମେ ସବୁ ଦିନେ କନ୍ଧ-ଅନ୍ଧ ହୋଇ ରହି ଯାଉଛୁ ।  ମୋର ପିଲାମାନେ ଆମ ପରି ଅନ୍ଧ ନ ରହି ଚାଲାକି ଚତୁର ହୋଇ ଦୁନିଆର କଥା ଜାଣିବେ  । ଭଲରେ ରହିବେ । ଖୁସିରେ ସେ ଗାଇ ଦେଉଥିଲା, ପଢ଼ିଲେ ପାଠ ଦିଶିବ ବାଟ । ଏଥିରୁ ଅନୁମାନ କରି ହେଉଛି ପାଠ ପ୍ରତି ତାର କେତେ ଆଗ୍ରହ । ଗାଁର ସବୁ ପିଲାଙ୍କୁ ପାଠ ପଢ଼ିବାକୁ କହିବା ସଂଗେ ସଂଗେ ବାପା ମାଆଙ୍କୁ ମଧ୍ୟ ବୁଝାଉଛି । ତାର କଥା ଶୁଣି ସମସ୍ତେ ପିଲାଙ୍କୁ ପାଠ ପଢ଼ିବାକୁ ପଠାଉଛନ୍ତି । ଗାଁରେ ଚାଲିଥିବା ରାତ୍ରି ସ୍କୁଲରୁ ପାଠ ପଢ଼ା ଶେଷ କରି କେତେ ପିଲା ଏବେ ଯାଇ ଆଶ୍ରମ ସ୍କୁଲରେ ପଢୁଛନ୍ତି ।

ଆଗରୁ କେମିତି ଥିଲୁ, ଏତେ ଆଗକୁ କିପରି ଆସି ପାରି ଏତେ କଥା କହି ପାରୁଚୁ ପଚାରିବାରୁ ସେ କହିଲା, ସତରେ ଆଗରୁ ମୁଁ ପେଣ୍ଟ ଜାମା ପିନ୍ଧା ଆଜ୍ଞାମାନଙ୍କୁ ଦେଖିଲେ ଘରୁ ଜମାରୁ ପଦାକୁ ଆସୁନଥିଲି । କିଛିଦିନ ପରେ ଆମ ଗାଁରେ ଅଗ୍ରଗାମୀ ସଂସ୍ଥା କାମ କଲା । ସେଥିର ଆଜ୍ଞାମାନେ ସବୁବେଳେ ଆମ ଗାଁକୁ ଆସନ୍ତି, କେତେ ଭଲ ଭଲ କଥା କହନ୍ତି, ଅଣ୍ଡିରା ଲୋକମାନେ ବସି ଶୁଣନ୍ତି । ଆମେ ମାଇପି ଲୋକ ତ ଡରି କରି ଘର ଭିତରେ ଲୁଚିଥାଉ । କେତେବେଳେ କେମିତି ଆମକୁ ସେମାନେ କହନ୍ତି ନହେଲେ ନାହିଁ । ସେହି ଆଜ୍ଞାମାନେ ଆମ ଗାଁରେ ରାତିରେ ସ୍କୁଲ ଚଲାଇଲେ, କୁଟୁମ୍ବରେ ପାଚି (ଶସ୍ୟ) ପାଣ୍ଠି ରଖିବାକୁ କହିବାରୁ ତାର ଉପକାର ବିଷୟରେ ଜାଣି ପାଣ୍ଠି ରଖିଲୁ । ଗାଁଲୋକଙ୍କର  ଟିକେ

ଚେତନା ହେଲା । ତାର କିଛିଦିନ ପରେ ଦୁଇ ତିନି ଜଣ ମା'ଙ୍କୁ ତାଲିମ୍ ପଠାଇବାକୁ କହିବାରୁ ଆମ ଗାଁର ତାଲିମ୍ ପଠାଇବାକୁ କହିବାରୁ ଆମ ଗାଁର ଲୋକମାନେ ମତେ ଯିବାକୁ କହିଲେ । କେବେ ବାହାରକୁ ନ ଆସିବା ଲୋକ, ମୁଁ ନେଚି (ନାହିଁ) କରି ଦେଲି ।

ମାତ୍ର ଗାଁ ଲୋକଙ୍କ କଥାକୁ କାଟି ନପାରି ମୁଁ ଆସିଲି । ଯେତେବେଳେ 'ଅଗ୍ରଗାମୀ' ଅଫିସ୍‌ରେ ପହଞ୍ଚିଲି, ସେତେବେଳେ ମୋ ଗୋଡ଼ ହାତ ଖାଲି ଥରୁଥାଏ । ବେଶୀ ଡର ଲାଗୁଥାଏ । ସେହି ଦିନ ମୋ ପରି ଆହୁରି ୧୦/୧୫ ଜଣ ମା' ସେଠାକୁ ଆସିଥିବାର ଦେଖି ମୋର ଟିକେ ସାହସ ଆସିଲା । ସେତେବେଳେ ମୁଁ କଣ ଜାଣିଥିଲି ସମସ୍ତଙ୍କ ଭିତରେ ମୁଁ ଜଣେ ହୋଇ ବାହାରିବି ବୋଲି ? ଆମକୁ ସେଠାରେ କାମ କରୁଥିବା ମା' ନୁନୀମାନେ ତାଲିମ୍ ଦେଉଥିଲେ । ସେମାନେ ଯେଉଁ କଥାମାନ କହୁ ଥିଲେ ମତେ ବେଶୀ ଭଲ ଲାଗୁଥିଲା । ମୁଁ ସବୁ କଥା ଶୀଘ୍ର ମନେ ରଖିପାରୁଥିଲି । ଆସ୍ତେ ଆସ୍ତେ ମୋର ଭୟ ଦୂର ହୋଇଗଲା । ତାଲିମ୍‌ରେ ଶୁଣୁଥିବା କଥା ଆସି ଗାଁରେ ସମସ୍ତଙ୍କୁ କହୁଥିଲି । ସମସ୍ତେ ଖୁସି ହେଉଥିଲେ । ତା ପରେ ମୁଁ ଆହୁରି ବେଶୀକଥା ଜାଣିବାକୁ ଆଗ୍ରହ ପ୍ରକାଶ କରି ପଚାରେ । ଆଜ୍ଞାମାନେ ମଧ୍ୟ ସବୁ ବିଷୟରେ କହି ଦିଅନ୍ତି । ମୋର ଲାଜ ଭୟ କୁଆଡ଼େ ସବୁ ପଳେଇଲା । ମୁଁ ଅନୁଭବ କରିପାରିଲି, ଆମ ପରି ଗରିବ ଆଦିବାସୀମାନଙ୍କୁ କିପରି ସାହୁକାର ମହାଜନମାନେ ଠକୁଛନ୍ତି । ସେହି ଦିନଠାରୁ ମୋ ମନରେ ରିଷାଭାବ ଆସିଗଲା । ମୁଁ ଗାଁ ଉନ୍ନତି ପାଇଁ ଲାଗି ପଡ଼ିଲି । ଗାଁ ଗାଁ ବୁଲି ମାଆମାନଙ୍କୁ ସଂଗଠିତ କରାଇ ଆମର ଅଧିକାର ଦାବି କଲୁ । କେତେକ କ୍ଷେତ୍ରରେ ସଫଳତା ମଧ୍ୟ ପାଇଲୁ ।"

କି କି କାମ ସବୁ କରିଛୁ ପଚାରିବାରୁ ଜଣାପଡ଼ିଲା ଯେ ସେ ଯା ଭିତରେ ନିଜ ଗାଁ ତଥା ପାଖ ଆଖ ଗାଁରେ ଅନେକ ଉନ୍ନତି ମୂଳକ କାମ କରିଛନ୍ତି । ଗାଁରେ କୁଟୁମ୍ବ ପାଣ୍ଠି ସାଙ୍ଗକୁ ମହିଳା ପାଣ୍ଠି ମଧ୍ୟ କରିଛନ୍ତି । ପଞ୍ଚାୟତର ସବୁ ଗାଁର ମାଆମାନେ ମିଶି ସଞ୍ଚୟ ଦଳ କରି ଚାନ୍ଦା ଆଦାୟ କରି ବ୍ୟାଙ୍କରେ ରଖିଛନ୍ତି । ମହିଳା ମଣ୍ଡଳ ଗଠନ କରି ପଞ୍ଜିକୃତ କରି ମହିଳା ମଣ୍ଡଳ ଜରିଆରେ ଗାଁର କାମ ସବୁ ବ୍ଲକରୁ ନେଇଛନ୍ତି । କୁଲି ମଜୁରି ବିଷୟରେ ମହିଳାମାନଙ୍କୁ ଏକଜୁଟ କରି ସରକାରୀଦର ଦୈନିକ ୨୫ ଟଙ୍କା ଦାବି କରି ଆଣିପାରିଛନ୍ତି । ଏହାର ଏକ ଉଦାହରଣ ଦେଇ ସେ କହିଲା "ଆମ ଗାଁରେ ଆଇଫାଡ଼ କାମ ଚାଲିଥିଲା । ନିୟମ ଅଛି ୮ଘଣ୍ଟା କାମ କଲେ ୨୫ ଟଙ୍କା ମଜୁରି ମିଳିବ । ଆମେ ଗାଁ ସାରା ମାଆମାନେ ତିନିଦିନ

ପଲିଥିନ୍‌ରେ ମାଟି ଭରିଥିଲୁ, ଟଙ୍କା ପଇଠ କଲା ବେଳକୁ ଟିପ ଚିହ୍ନ ଦେଇ ଯାଇ ଦିନକୁ ୧୨.୫୦ ଦେଇ ପଳାଇ ଯାଉଥିଲା । ମୁଁ ଏ କଥା ମା'ମାନଙ୍କୁ କହିଦେଲି । ସମସ୍ତେ ମିଶି ତାକୁ ଆଉ ତା ମଟର ସାଇକେଲକୁ ଧରି ପକାଇ ଘେରି ଗଲୁ । ସେ ଡରି ଯାଇ କହିଲା ମୋ ପାଖରେ ଟଙ୍କା ନାହିଁ, କାଲିକୁ ଆଣିଲେ ଦେବି । ଆମେ ମୋଟେ ଛାଡ଼ିଲୁ ନାହିଁ । ଟଙ୍କା ଠିକ୍‌ରେ ନଦେଲେ ଘରେ ପୂରାଇ ତାଲା ପକାଇ ଦେବୁ ବୋଲି ଧମକେଇବାରୁ ବ୍ୟାଙ୍କକୁ ଯାଇ ଟଙ୍କା ଆଣି ଆମକୁ ଦେଲା । ଉଜ୍ଜଳ କହିଲା ମୁଁ ଜାଣିଥିଲି ୨୫ ଟଙ୍କା ମଜୁରି ଏବଂ ଆମେ ଗାଁ ସାରା ମାଆମାନେ ଏକାଠି ହୋଇ ଦାବି କରି ଟଙ୍କା ପାଇଲୁ । ନହେଲେ ସେ ଆମକୁ ଠକି ପକାଇ ଯାଉଥାନ୍ତା । ତେଣୁ ଯେଉଁ କାମ କରିବାକୁ ହେଲେ ଆମ ଭିତରେ ଏକତା ରହିବା ନିହାତି ଦରକାର ।"

ଗାଁକୁ ଗଲେ ଦେଖାଯାଏ, ଉଜ୍ଜଳର ନେତୃତ୍ୱରେ ସବୁ ମାଆମାନଙ୍କ ମଧ୍ୟରେ ଗୋଟିଏ ଏକତା ଭାବ ରହିଛି । ଡାକି ଦେଲେ ସମସ୍ତେ ପାଖକୁ ଚାଲି ଆସୁଛନ୍ତି । ଆଗ୍ରହ ସହକାରେ ସବୁ କଥା ଶୁଣୁଛନ୍ତି । ପଚାରିଲେ କହୁଛନ୍ତି ଉଜ୍ଜଳ ଦେଇ ଆମକୁ ସବୁ କଥା ଶିଖାଇଛି । ଆଗକୁ ଆସିବାକୁ ବାଟ ଦେଖାଇଛି । ସେ ଆମ ଗାଁରେ ଥିଲେ ଆମକୁ କିଛି ଡ଼ର ନାହିଁ । ଯେ କୌଣସି କାମରେ ସେ ଆଗରେ ବାହାରିଲେ ଆମେ ସମସ୍ତେ ତାର ପଛରେ ବାହାରୁଛୁ । ସେଥିପାଇଁ ସବୁ କାମ ସହଜରେ ହୋଇ ପାରୁଛି । ଏଥିରୁ ଜଣାପଡୁଛି, ଉଜ୍ଜଳ ସତରେ ଗାଁକୁ ଉଜ୍ଜଳ କରି ରଖିଛି ।

ଆଉ ଏକ ଉଦାହରଣ ଦେଖିବାକୁ ଗଲେ ଜଣାପଡ଼େ - ଏହି ଅଞ୍ଚଳରେ କୁଟୁରୁ ମାଳି, ସିଜି ମାଳି ନାମରେ ଦୁଇଟି ମାଳି ରହିଛି । ସର୍ଭେ ପରେ ଜଣା ପଡ଼ିଛି ସେହି ମାଳି ତଳେ ରହିଛି ବହୁ ମୂଲ୍ୟବାନ ବକ୍‌ସାଇଟ୍ । ମାଳି କେତେବେଳେ ସର୍ଭେ କରାଯାଇଛି, ଗାଁ ଲୋକ କାହାରିକୁ ଜଣାନାହିଁ, କି ଯେଉଁମାନେ ସର୍ଭେ କଲେ ଗାଁ ଲୋକମାନଙ୍କୁ କିଛି ଜଣାଇଲେ ନାହିଁ ଆସ୍ତେ ଆସ୍ତେ ମାଇନିଂ ଲୋକମାନେ ଆସି ବସା ବାନ୍ଧି ରହି ମାଳି ଉପରକୁ ଯାଇ ଯନ୍ତ୍ର ପକାଇ କେତେ କ'ଣ ପରୀକ୍ଷା କଲେ । ଶୁଣା ଶୁଣିରୁ ଗାଁ ଲୋକ ଜାଣିବାକୁ ପାଇଲେ ଖଣି କାମ ହେବ । ବକ୍‌ସାଇଟ୍ ବାହାରିବ । ତେଣୁ ଏହି ଅଞ୍ଚଳରୁ କେତେ ଗାଁ ଉଠିଯିବ । ଆଗରୁ ଉଜ୍ଜଳ ଦେଇ ଜାଣିଥିଲା ଏହିପରି କାମ ସବୁ ଅନେକ ଜାଗାରେ ହୋଇ ଅନେକ ଗାଁ ଉଠିଛି । ଲୋକମାନେ ଠିକ୍ ଭାବରେ ଥଇଥାନ ହୋଇ ନପାରି ବହୁତ ହଇରାଣ ହୋଇଛନ୍ତି ।

ଏବେ ମଧ୍ୟ ସେହି ସବୁ ଲୋକ ଏପଟ ସେପଟ ହେଉଛନ୍ତି । ଦାମନଯୋଡ଼ି, ଇନ୍ଦ୍ରାବତୀ ଇତ୍ୟାଦି ଜାଗାକୁ ସେ ନିଜେ ଯାଇଛି ଏବଂ ଲୋକମାନଙ୍କ ସଂଗେ

କଥାବାର୍ତ୍ତା କରିଛି । ଶୁଣିଛି ସେମାନଙ୍କ ଦୁଃଖକଷ୍ଟର କାହାଣୀ । ଦେଖିଛି ସେମାନଙ୍କ ହୀନସ୍ଥା ଜୀବନ । ସେହି ପରି ଅବସ୍ଥା ନିଜ ଅଞ୍ଚଳ ଲୋକ ନ ଭୋଗିବା ଲାଗି ସେ ଗାଁ ଗାଁ ବୁଲି ମିଟିଂ କରି ଲୋକମାନଙ୍କୁ ବୁଝାଇଛି । ମହିଳାମାନଙ୍କୁ ଏକଜୁଟ୍ କରାଇ ଏହାର ବିରୋଧ କରିବାକୁ ଚେଷ୍ଟା କରିଛି । କେତୋଟି ଦାବି ନେଇ ପ୍ରାୟ ୫୦୦୦ ମହିଳା ପୁରୁଷ ମିଶି ଏକ ମାଇନିଂ କ୍ୟାମ୍ପ ପର୍ଯ୍ୟନ୍ତ ଶୋଭାଯାତ୍ରା କଲେ । ମାଳି ଉପରକୁ କୌଣସି ଗାଡ଼ି ଛାଡ଼ିବେ ନାହିଁ ବୋଲି ସ୍ଥିର କରି ଦୁଇ ପାଖରେ ଦୁଇଟି ଗେଟ୍ କରି ଗାଁ ଗାଁ ପାଳିକରି ଜଗିଲେ । ମାଇନିଂ ଲୋକ ମାଳି ଉପରକୁ ଆଉ ଯାଇ ପାରିଲେ ନାହିଁ । ଏକଥା ପବନ ବେଗରେ ଚାରି ଆଡ଼େ ଖେଳିଗଲା । ମାଇନିଂ ଲୋକ ଉପରକୁ ଯିବେ ବୋଲି ପୁଲିସ୍ ନେଇ ଆସିଲେ । ମାତ୍ର ଲୋକଙ୍କ ମଧ୍ୟରେ ଏକତାଭାବ ଥିବାରୁ ଯିଏ ଆସିଲେ ସମସ୍ତେ ପଳାଇ ଗଲେ । ଉପଜିଲ୍ଲାପାଳ, ବି.ଡ଼ି.ଓ, ଏମ୍.ଏଲ୍.ଏ ତହସିଲ୍‌ଦାର ଏପରିକି ଜିଲ୍ଲାପାଳ ମଧ୍ୟ ଆସିଲେ । ତଥାପି ଲୋକମାନେ ଗେଟ୍ ଖୋଲିଲେ ନାହିଁ । ସେମାନଙ୍କର ଗୋଟିଏ ଜିଦ୍ ଏହି ଯେଉଁ କାମ ହେବ ତା ବିଷୟରେ ସବୁକଥା ଆମକୁ ଜଣାଇଲେ ଆମେ ଗେଟ୍ ଖୋଲିବୁ । ମାତ୍ର ସବୁ କଥା ଜଣାଇବାକୁ ଖଣିବାଲା ଓ ସରକାର ରାଜି ନୁହନ୍ତି ।"

"ଦିନେ ଗେଟ୍ ପାଖରେ ଦୁଇ ଚାରି ଜଣ ଥିବା ସମୟରେ କଲେକ୍ଟର ସାଙ୍ଗରେ ପୁଲିସ୍ ଆଣି ନିଜେ ଗେଟ୍ ଭାଙ୍ଗି ମାଳି ଉପରକୁ ଗଲେ । ସେତେବେଳେ ସେଠାରେ କେବଳ ମୋ ସହ ଆଉ ଦୁଇତିନିଜଣ ମା' ଥିଲେ ।" ପଚାରିଲେ ସେ ମନ ଦୁଃଖ କରି କହେ "କିସ୍ କରିବି ମୋ ସାଥୀରେ ଯଦି ଅଧିକା ମା' ଥାଆନ୍ତେ ତାହାହେଲେ ସେମାନେ ଗେଟ୍ ଭାଙ୍ଗି ପାରି ନଥାନ୍ତେ । ଏତେଶୀଘ୍ର ମୁଁ ସବୁ ଆଡ଼କୁ ଖବର ମଧ୍ୟ କରି ପାରିଲି ନାହିଁ । ଯାହାବି ହେଉ ଏବେ କାମ ବନ୍ଦ ରହିଛି ।" ଉଜ୍ଜଳ ଦେଈଙ୍କ ନେତୃତ୍ୱରେ ଚାଲିଥିବା ଏହି ଆନ୍ଦୋଳନ ବନ୍ଦ ହୋଇ ଯାଇ ନାହିଁ । " ପୁଣି ଯେତେବେଳେ କାମ ଆରମ୍ଭ ହେବ ସେତେବେଳେ ପୁଣି ଆମ ଆନ୍ଦୋଳନ ଆରମ୍ଭ ହେବ ବୋଲି ସେ କହେ । ତାର ଦୃଢ଼ ମନୋବଳର ପରିଚୟ ଏଥିରୁ ବୁଝାପଡୁଛି । ତା'ସଙ୍ଗେ କଥା ହେଲେ ଲାଗେ, ଗର୍ବ ଅହଙ୍କାର ତା' ମନ ଭିତରେ ନାହିଁ । ନିଜ ସ୍ୱାର୍ଥ ପାଇଁ ସେ କାମ କରୁନି, ସମୂହ ସ୍ୱାର୍ଥ ପାଇଁ ସେ ଜୀବନ ଦେବା ଲାଗି ପ୍ରସ୍ତୁତ ଅଛି । ତାର ସ୍ୱାମୀ ଫୁଲକୁମାର ମଧ୍ୟ ତାକୁ ଏ ଦିଗରେ ସହଯୋଗ କରୁଛି ।

ଫୁଲ କୁମାର କହେ, "ମୋର ସ୍ତ୍ରୀକୁ ବହୁତ ଧମକ ଦେଉଛନ୍ତି ଜୀବନରୁ ମାରି

ଦେବା ପାଇଁ । ମୁଁ ଡରୁନି । ସେ ଏକୁଟିଆ ସବୁ ଆଡ଼କୁ ଯାଉଛି । ମୁଁ କେବେ ତାକୁ ବାରଣ କରିନି । କାରଣ ତା ଭିତରେ ଯଦି କାମ କରିବାକୁ ଏତେ ଆଗ୍ରହ ଅଛି, ତାକୁ ଘରେ ରଖି ଲାଭ କଣ ? ଆମର ଜାତି ପାଇଁତ କାମ କରିବ ।"

ଶେଷରେ ସେ କହେ "ଆଦିବାସୀ ଲୋକେ ଯଦି ଆଗରୁ ଏମିତି ଚାଲାକି ହୋଇ ଥାଆନ୍ତେ, ତେବେ ଏତେ ଅସୁବିଧାରେ ପଡୁ ନଥାନ୍ତେ । ଏବେ ବି ସମୟ ଅଛି, ଆମେ ସମସ୍ତେ ନିଜେ ପଢ଼ି ନିଜର ଝିଅ ପୁଅଙ୍କୁ ପାଠ ପଢ଼ାଇଲେ ଆମର କୌଣସି ଅସୁବିଧା ରହିବ ନାହିଁ । ଆମେ ଖୁସିରେ ରହିବୁ । ଆମ ପିଲାଛୁଆ ଖୁସିରେ ରହିଲେ ଆମ ମୁହଁରେ ହସ ଫୁଟିବ । ଆମେ ହସିଲେ ଆମ ଗାଁ ହସିବ । ଆଉ ଗାଁ ହସିଲେ, ଆମ ଦେଶ ହସିବ । ଦେଶକୁ ହସାଇବା ପାଇଁ ମାଆମାନଙ୍କର ଭୂମିକା ବହୁତ । ଏକଥା ମୁଁ ଜାଣିଲିଣି । ମାଆମାନେ ଝିଅମାନଙ୍କୁ ପାଠ ପଢ଼ାଇବା ଦରକାର ।" ଟିକେ ଲାଜ ମିଶା ହସ ହସି ଦେଇ ସେ ଖୁସିରେ ଗାଇ ଦେଉଥିଲା, "ମାଆ ହେଲେ ପାଠୋଇ ଦେଶ ଯିବ ଆଗେଇ ।"

ଜୁଲାଇ - ୧୯୯୬



# ସେଦିନର ମନହର

ରତାଚୁଆଁ ଗାଁଠାରୁ ଚଲା ରାସ୍ତାଟିଏ ଲମ୍ବି ଯାଇଛି ଗୌଡ଼ଗୁଡ଼ା-ଶିରିଗୁଡ଼ା ଗାଁକୁ । ଗାଁଟିରେ କୌଣସି ସରକାରୀ ସୁବିଧା ନାହିଁ କିମ୍ବା କେହି ସରକାରୀ ଲୋକ କେବେ ସେ ଗାଁକୁ ଆସନ୍ତି ନାହିଁ । ଗାଁଠାରୁ ଡାକ୍ତରଖାନା, ସ୍କୁଲ, ବ୍ୟାଙ୍କ, ଡାକଘରର ଦୂରତା ୧୮ କିଲୋମିଟର ।

ଗାଁରେ ୬୦ ଟି ଆଦିବାସୀ, ୩ଟି ସାହୁ, ୩ଟି ଲହରା ପରିବାର ବାସ କରୁଛନ୍ତି । କାହାରି ଜମିବାଡ଼ି ଅଧିକ ନାହିଁ, ଯାହା ଅଳ୍ପ ଜମି ଅଛି ତାକୁ ଚାଷ କରି ଏବଂ କୁଲିଭୂତି ଯାଇ କୌଣସି ମତେ ଗୁଜୁରାଣ ମେଣ୍ଟାଇ ଦିଅନ୍ତି । ସେହି ଗାଁର ଶ୍ରୀଯୁକ୍ତ ବୁଦ୍ଧୁ ଝୋଡ଼ିଆ ଓ ଶ୍ରୀମତୀ ପୁରନ୍ତି ଝୋଡ଼ିଆଙ୍କର ପୁଅ ମନହର ।

ଜମିବାଡ଼ି ନଥିବାରୁ ପିଲା ଦିନରୁ ମନହରର ଜୀବନ ଦୁଃଖରେ କଟିଛି । ଗୋଟିଏ ପିଲା ହୋଇଥିବାରୁ ଚଳିବା ଯେତେ କଠିନ ହେଉ ପଛେ, ବୁଆ ଘେନା ମାଷ୍ଟ୍ର ରଖି ମନହରକୁ କେତେ ଦିନ ପାଠ ପଢ଼ାଇଲା । ଘେନା ମାଷ୍ଟ୍ରପାଖରୁ ପାଠପଢ଼ା ସରିଯିବାରୁ ୧୯୭୫ ମସିହାରେ ସେ ଗୋରଖପୁର ଆଶ୍ରମ ସ୍କୁଲରେ ନାମ ଲେଖାଇଲା । ଦିନକୁ ଦିନ ବୁଦ୍ଧୁ ଝୋଡ଼ିଆର ବୟସ ସରି ଆସିଲା । ସେ ଚାଷ ବାସ କି ଘର କାମ କିଛି କରି ପାରିଲା ନାହିଁ । ତେଣୁ ୫ମ ଶ୍ରେଣୀରୁ ପାଠ ପଢ଼ାର ଡୋରି ବନ୍ଧା ହେଲା ମନହରର । ଚାଷ କରିବା ପାଇଁ ହଳ ବଳଦ ନଥିଲା କି ବାପାକୁ ଔଷଧ ଦେବାକୁ ପଇସା ନାହିଁ । ତେଣୁ କମ୍ ବୟସରେ ସେ ଯାଇ ରାୟଗଡ଼ାରେ କୁଲି କାମ କଲା ।

ମାତ୍ର ଯେଉଁ ବୟସରେ ଖେଳି ବୁଲି ପାଠ ପଢ଼ିବା କଥା, ସେହି ବୟସରେ କାମ କରିବା ତା ଦେହରେ ଗଲା ନାହିଁ । ଆଠ ଦଶ ଦିନ କାମ କଲା ପରେ ତାକୁ ପ୍ରବଳ ଜର ହେଲା । ହାତରେ ୪୦ ଟଙ୍କା ଧରି ସେ ଫେରି ଆସିଲା ଘରକୁ । ଖାଦ୍ୟ ଏବଂ ଔଷଧ ଅଭାବରୁ ପ୍ରାୟ ଦୁଇ ମାସ ବେମାର ଭୋଗିଲା ପରେ ତାର ଦେହ ଟିକେ ଭଲ ହେଲା । ଦେହ ଭଲ ହେବା ପରେ ନାରଙ୍ଗୀଯୋଡ଼ି ଗାଁର ଗୁରୁନାଥ ଘରେ ବର୍ଷକୁ ୬୦

ଟଙ୍କାରେ ଗୋତି ରହିଲା । ସେହି ଟଙ୍କାରେ ହଳ କିଣାଗଲା ଚାଷ ପାଇଁ । ସକାଳ ୬ଟାରୁ ସାହୁକାରର ୬୦ ଟି ଗାଈ ନେଇ ବଣକୁ ଯାଇ ସନ୍ଧ୍ୟା ୭ଟାରେ ଫେରେ । ଦିନକୁ ଖାଇବାକୁ ଅଧା କେଜି ଚାଉଳ ସାହୁକାର ଦିଏ । ସେଥିରୁ ବୁଆ ଆୟାଙ୍କୁ ଅଧା ଦିଏ, ବାକି ଅଧା ଚାଉଳର ଭାତ ଖାଇ ତାକୁ ଦିନମାନ ରହିବାକୁ ପଡ଼ିଥାଏ । ୬୦ଟି ଗାଈଙ୍କଠାରୁ ଦୈନିକ ୨୦/୨୫ ଲିଟର କ୍ଷୀର ପାଉଥିଲେ ମଧ୍ୟ ସେ କ୍ଷୀରର ସୁଆଦ କ'ଣ ଚାଖି ନଥିଲା । କିମ୍ୱା ସାହୁକାର ମଧ ତାକୁ କେବେ ଦେଇ ନଥିଲା । ତା'ପର ବର୍ଷଠାରୁ ୨ବର୍ଷ ପାଇଁ ଓଡ଼ିଆଗୁଡ଼ା ଗାଁର ପିତ ଗଉଡ଼ ପାଖରେ ସେ ଗୋତି ଖଟିଲା । ଗୋତି ବାବଦକୁ ଗୋଟିଏ ଛେଳି ଆଣି ଘରେ ରଖିଲା ।

ଏଇଠି ଶେଷ ହେଲା ତାର ଗୋତି ଖଟିବା ଜୀବନ । ଆରମ୍ଭ ହେଲା ତାର ସାଂସାରିକ ଜୀବନ । ଆଦିବାସୀ ପ୍ରଥା ଅନୁଯାୟୀ ସେ ୧୮୦ ଟଙ୍କା ଝୋଲା ବାନ୍ଧି ଭଗବତୀକୁ ବାହା ହେଲା । ବିବାହ ପରେ ସ୍ୱାମୀ ସ୍ତ୍ରୀ ମିଶି ଚାଷ ବାସ କରି ସୁଖରେ ଚଳିଲେ । ୧୯୮୬ ମସିହାର ଦିନକର ଘଟଣା । 'ଅଗ୍ରଗାମୀ' ସଂସ୍ଥାର କେତେକ କର୍ମୀ ଯାଇ ଗାଁରେ ମିଟିଂ କରି ଅନେକ ବିଷୟରେ ବୁଝାଇଲେ । ତା ପରେ ଗାଁର ଲୋକ ଏକଜୁଟ ହୋଇ କୁଟୁମ୍ବରେ ଶସ୍ୟ ପାଣ୍ଠି ରଖିଲେ । ତା ଆଗରୁ 'ଅଗ୍ରଗାମୀ' ଆଖପାଖ ଅନେକ ଗାଁରେ 'କୁଟୁମ୍ବ ପାଣ୍ଠି' କରାଇ ଥିଲା । ସେହି ଗାଁ ମାନଙ୍କର ପ୍ରଭାବ ମଧ୍ୟ ଏହି ଗାଁରେ ପଡ଼ିଥିଲା । 'ଅଗ୍ରଗାମୀ'ର ଡଙ୍ଗାଶିଳ ଉପକେନ୍ଦ୍ରରେ ତାଲିମ୍ ଦିଆଯାଇଥିଲା । ତାଲିମ୍‌ରେ ଗାଁର ଉନ୍ନତି ପାଇଁ ବିଭିନ୍ନ ବିଷୟରେ ଆଲୋଚନା କରାଯାଉଥିଲା ।

ମନହରର ଗାଁରେ ସରକାରୀ ସ୍କୁଲର କୌଣସି ସୁବିଧା ନଥିବାରୁ ଦିନବେଳା ଛୋଟ ଛୋଟ ପିଲାମାନେ ପାଠ ପଢ଼ିପାରୁ ନଥିଲେ । ଘରକାମରେ ବୁଆ ଆୟାଙ୍କୁ ସାହାଯ୍ୟ କରିବାରେ ହିଁ ପିଲାମାନଙ୍କର ଦିନ କଟିଯାଉଥିଲା । ଏହି ଅସୁବିଧାକୁ ଆଖି ଆଗରେ ରଖି 'ଅଗ୍ରଗାମୀ' ସେଠାରେ ଏକ ରାତ୍ରିସ୍କୁଲ କରିବାକୁ ସ୍ଥିର କରି ଗାଁ ଲୋକମାନଙ୍କୁ ବୁଝାଇଲେ । ଗାଁ ଲୋକେ ମନହରକୁ ଗୁରୁଭାଇ ରୂପେ ବାଛିଲେ । ସେଠାରେ ସ୍କୁଲ ଚାଲିଲା ।

ତାଲିମ୍ ପାଇ ମନହର ବିଭିନ୍ନ ନାଚ, ଗୀତ, ଖେଳ ମଧ୍ୟମରେ ପିଲାମାନଙ୍କୁ ପାଠ ପଢ଼ାଇଲା । ପିଲାମାନେ ମଧ୍ୟ ମନହରକୁ ଗୁରୁ ରୂପେ ମାନି ଭଲ ପାଠ ପଢ଼ିବା ସଂଗେ ସଂଗେ ନାଚ, ଗୀତ ଖେଳ କୁଦ କରୁଥିଲେ । କୈଡଗୁଡ଼ା ଶିରିଗୁଡ଼ା ଗାଁରୁ ରାତି ସ୍କୁଲରୁ ପାଠ ପଢ଼ି ସରକାରୀ ସ୍କୁଲ ଓ ଆଶ୍ରମ ସ୍କୁଲରେ ନାମ ଲେଖାଇ ପାଠ ପଢୁଛନ୍ତି । ଯେତେବେଳେ ପିଲାମାନେ ଛୁଟିରେ ଗାଁକୁ ଆସନ୍ତି, ସେତେବେଳେ ମନହରର ଆନନ୍ଦ କହିଲେ ନସରେ । ସତେ ଯେପରି କୌଣସି ଏକ କାମରେ ସେ ବିଜୟ ହାସଲ

କରିପାରିଛି । ରାତିସ୍କୁଲର ପିଲାମାନେ ୧୮ ପୁଟି ଶସ୍ୟ ରଖିଛନ୍ତି । ଅଭାବ ସମୟରେ ଗାଁଲୋକେ ମଧ୍ୟ ସେହି ପାଣ୍ଠିରୁ ନେଇଥାଆନ୍ତି ।

ଥରେ ଜଣେ ସରକାରୀ ଶିକ୍ଷକ ତାଙ୍କ ଗାଁକୁ ଆସିଥା'ନ୍ତି । ସେହି ସମୟରେ ମନହର ସ୍କୁଲ କରୁଥିଲା । ଶିକ୍ଷକ ଜଣକ କହିଲେ, "ତୁମେ ଯଦି ୪ଟି ଲଣ୍ଠନ ବିକି ଦେବ, ତେବେ ୪ଶହ ଟଙ୍କା ପାଇବ ।" ମନହର ତାଙ୍କୁ କହିଲେ "ତୁମେ ତ ମାସକୁ ୨ହଜାର ଟଙ୍କା ଦରମା ପାଇ ବଡ଼ ହୋଇ ପାରୁନ, ମୁଁ କେମିତି ୪ଶହ ଟଙ୍କାରେ ବଡ଼ ହୋଇଯିବି ?" ମନହରର ଅକ୍ଳାନ୍ତ ପରିଶ୍ରମ ଏବଂ ସରଳିଆ କଥା ଗାଁ ଲୋକଙ୍କୁ ବହୁତ ପରିବର୍ତ୍ତନ କରି ପାରିଛି । ଆଗରୁ ସେହି ଗାଁର କେହି ପାଠ ପଢୁ ନଥିଲେ, ବାବୁଭାୟାଙ୍କୁ ଦେଖିଲେ ଡରି ପଳାଇ ଯାଉଥିଲେ । ଏବେ ମନହର ପାଖରୁ ପାଞ୍ଚ କଥା ଶୁଣୁଛନ୍ତି ଏବଂ ପାଞ୍ଚ କଥା କହି ପାରୁଛନ୍ତି । ସେମାନଙ୍କ ମନରୁ ଭୟ ଦୂର ହୋଇ ଯାଇଛି । ନିଜ ଗାଁର ଉନ୍ନତି କଥା ନିଜେ ଚିନ୍ତା କରୁଛନ୍ତି । ପାଣ୍ଠି ରଖି ସାହୁକାର ଶୋଷଣରୁ ନିଜକୁ ରକ୍ଷାକରି ପାରିବା ସହ ପିଲାମାନଙ୍କୁ ପାଠ ପଢ଼ାଇ ନିଜର ଅଧିକାର ହାସଲ କରିବା ପାଇଁ ଦାବି କରୁଛନ୍ତି ।

ବାହାର ଦୁନିଆ ବିଷୟରେ ଜାଣିବା ଲାଗି ମନହରର ଖୁବ୍ ଆଗ୍ରହ । ତେଣୁ ସେ 'ଅଗ୍ରଗାମୀ' ପାଠାଗାରରୁ ବିଭିନ୍ନ ପ୍ରକାର ବହି ନେଇ ପିଲାଙ୍କୁ ପାଠ ପଢ଼ାଇବା ପରେ ସମୟ ଦେଖି ପଢ଼େ । ଏବେ ତା'ର ଗୋଟିଏ ଚିନ୍ତା, ଗାଁର ସବୁ ପିଲା କିପରି ପାଠ ପଢ଼ି ଭଲ ମଣିଷ ହେବେ ଓ ଗାଁ ଲୋକ କିପରି ଭଲରେ ରହିବେ ।

ସେ କହେ, "ପାଠ ପଢ଼ିଥିଲେ ସିନା ଶୋଷଣରୁ ମୁକ୍ତି ପାଇବା । ଆମ ଅଧିକାର ବିଷୟରେ ଜାଣି ଲଢ଼େଇ କରି ପାରିବା । ଅନ୍ଧ ବିଶ୍ୱାସକୁ ନମାନି ଭଲରେ ଚଳିବା । ଆମେ ସିନା ପଢ଼ିଲୁନି, ମାତ୍ର ଆମ ପିଲାମାନଙ୍କୁ ଅପାଠୁଆ ରଖିବୁ ନାହିଁ ।"

ଜୁଲାଇ - ୧୯୯୬



# ଜଣେ ଆଦିବାସୀ ନାରୀ : ଶୁକ୍ରୁରୀ

ବାହାରୁ ଦେଖିଲେ କେବେ ଜଣାପଡ଼ିବ ନାହିଁ ଯେ 'ହଳିଆ ସାହି'ର ସେହି ସରଳ ଆଦିବାସୀ ମାଆଟି ଭିତରେ ଲୁଚି ରହିଥିଲା ଏତେ ଭଲ ଗୁଣ । ତ' କଥାକୁ ବହୁତ ଗୁରୁତ୍ୱ ଦେଉଛନ୍ତି କେବଳ  ହଳିଆ ସାହି ନୁହେଁ, ପାଖ ଆଖ ୩୦/୩୫ ଖଣ୍ଡ ଗାଁର ଲୋକମାନେ । ସେଦିନ ସନ୍ଧ୍ୟା ସମୟରେ ହଳିଆ ସାହି ଗାଁ ଭିତରକୁ ପଶିଗଲା ବେଳକୁ ଗାଁ ଗୋଟାକର ମାଆ ବାପା ଗାଁରେ ଥିବା ଗୁଡ଼ି ଘର ଆଗରେ ରୁଣ୍ଡ ହୋଇଥିବାର ଦେଖିଲି । ଆଶ୍ଚର୍ଯ୍ୟ ହୋଇ କିଛି ସମୟ ଖଣ୍ଡେ ଦୂରରେ  ଛିଡ଼ା ହୋଇ ଦେଖିଲି ଜଣେ ମାଆ  ଛିଡ଼ା ହୋଇ କଣ ସବୁ କହି ଚାଲିଛି । ତାର କଥାରେ ଭରି ରହିଥାଏ ଗାମ୍ଭୀର୍ଯ୍ୟ। ବେଳେବେଳେ ମୁହଁରେ  ଲୁଗା ଦେଇ ଦେଉଥାଏ ତ କେବେକେବେ କ'ଣ କହିଦେଇ ବାହାରକୁ ଚାଲି ଯାଉଥାଏ । ପୁଣି ଆସି କ'ଣ ସବୁ କହୁଥାଏ ନିଜର 'କୁଭୀ' ଭାଷାରେ । ଆଉ ସେଠାରେ ଥିବା ସବୁ ଲୋକ ନୀରବରେ ଖୁବ୍ ଆଗ୍ରହରେ ତାର କଥା ଶୁଣୁଥାନ୍ତି ଏବଂ ପଚାରୁଥାନ୍ତି ମଧ୍ୟ । ତାର କଥାବାର୍ତ୍ତା ଭାବଭଙ୍ଗୀ ଦେଖି ମନ ହେଲା ତା ସଂଗେ ଦୁଇପଦ କଥାହେବାପାଇଁ । ଆଉ ସେତିକି ସୁଯୋଗ ମଧ୍ୟ ସେଦିନ ହଳିଆସାହି ଗାଁ ଲୋକେ ଦେଇଥିଲେ । ତାହାକୁ ଆପଣମାନଙ୍କ ଜାଣିବା ପାଇଁ ଏ ସଂଖ୍ୟା ଆରୋହଣରେ ପ୍ରକାଶ କରୁଛୁ ।

ଯାହାଙ୍କ କଥା ଏଠାରେ ପ୍ରକାଶ କରୁଛୁ ସେ ହେଉଛନ୍ତି ସମସ୍ତଙ୍କର ପରିଚିତ ଶୁକ୍ରୁରୀ ମାଆ । ଯିଏକି ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇ ଆଦିବାସୀ ମହିଳାମାନଙ୍କ ପାଇଁ କିଛି କାମ କରି ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ସାମନାରେ ଆଦିବାସୀ ଅଞ୍ଚଳରେ ମିଳୁଥିବା ଲଘୁ ବନଜାତ ଦ୍ରବ୍ୟ କିଣାବିକାରେ ଆଦିବାସୀମାନେ କିପରି ଶୋଷଣର ଶିକାର ହେଉଛନ୍ତି ସେ ବିଷୟରେ ଅତି ଦୃଢ଼ ଭାବରେ କହିଥିଲେ, ଯାହାକି ଆଜି ସମଗ୍ର ଓଡ଼ିଶାରେ ଏକ ଜଟିଳ ରୂପ ଧାରଣ କରିଛି ଏବଂ ଆଦିବାସୀମାନେ ଏଥିପାଇଁ ବିଭିନ୍ନ ପଦକ୍ଷେପମାନ ନେଉଛନ୍ତି ।

*ତେବେ ଆସନ୍ତୁ ଜାଣିବା ତାଙ୍କରି ବିଷୟରେ -*

ସରାମବାଇ ଗାଁରେ ଶୁକୁରୀ ମାଝୀଙ୍କ ଜନ୍ମ। ପିତା ଗୁଣଧର ମାଝୀ ଓ ମାତା ରଇବାରୀ ଦେଈଙ୍କ କୋଳରେ ଶୁକୁରୀ ବଡ଼ ହୋଇଛନ୍ତି। ପିତାମାତା (ଆୟାବୁଆ)ଙ୍କର ଗୋଟିଏ ସନ୍ତାନ ହୋଇଥିବାରୁ ସେମାନେ ଚାହିଁଥିଲେ ଝିଅକୁ ଗେହ୍ଲାରେ ବଢ଼ାଇବାକୁ। ମାତ୍ର ଦାରିଦ୍ର୍ୟ ଭିତରେ ସେ ପିଲାବେଳରୁ ହିଁ କଠିନ କରିଶ୍ରମ କରି ଆସିଛନ୍ତି। ଆଦିବାସୀ ଘରର ଝିଅ ହିସାବରେ ଘର କାମ କରିବା ସହିତ କୁଲି, ଭୁତି ଓ ଡଙ୍ଗର କାମ ମଧ୍ୟ କରିବାକୁ ଯାଆନ୍ତି। ଏବଂ ସାଙ୍ଗ ସାଥୀ ମେଳରେ ଜଙ୍ଗଲକୁ କନ୍ଦା, ମହୁଲ, ଟୋଲ, ଆମ୍ବ ତଥା ବିଭିନ୍ନ ପ୍ରକାରର ବନଜାତ ଦ୍ରବ୍ୟ ସଂଗ୍ରହ କରିବାକୁ ଯାଆନ୍ତି। ଗରୀବ ପରିବାରରେ ଜନ୍ମ ହୋଇ ମଧ୍ୟ ପିଲା ଦିନଟି ତାଙ୍କର ହସଖୁସିରେ କଟିଥିଲା ବୋଲି ସେ କହନ୍ତି।

ଯେତେବେଳେ ସେ ଯୁବା ବୟସରେ (ଆଦିବାସୀ ଭାଷାରେ ଧାଙ୍ଗଡ଼ୀ) ପହଞ୍ଚିଲେ ପିତାମାତା (ଆୟା, ବୁଆ) ଚିନ୍ତା କଲେ ତାଙ୍କର ବାହାଘର କଥା। ଆଲତୁଙ୍ଗା ଗାଁର ପିସ୍ତୁ ମାଝୀଙ୍କ ସହିତ ଆଦିବାସୀ ପ୍ରଥା ଅନୁଯାୟୀ ବିବାହ ହୋଇଯାଇଥିଲା। ବିବାହ ସମୟରେ ଆଦିବାସୀ ସମାଜରେ ପ୍ରଥା ଅଛି ଯେ, ପୁଅ ଘର ଝିଅ ଘରକୁ କିଛି ଝୋଲା ଦେବେ। ଶୁକୁରୀ କହନ୍ତି ଯେ, "ମୋର ଶ୍ୱଶୁର ମୋର ବୁଆକୁ ତିନିଶୋ (୩୦୦ଟଙ୍କା) ତିନି ଡବା ମଦ ଓ ମୋର ଆୟାକୁ ଲୁଗା ପାଇଁ ୫୦ ଟଙ୍କା ଦେଇଥିଲା।

ସ୍ୱାମୀ ଘର ମଧ୍ୟ ଚଳଣୀ ଭଲ ନଥିଲା। ଜମି, ବାଡ଼ି କିଛି ନଥିଲା, ଡଙ୍ଗର ଚିକିରା ମାରି ସେମାନେ ଚଳୁଥିଲେ। ଶୁକୁରୀ ମଧ୍ୟ ସ୍ୱାମୀ ଦୁଃଖରେ ଦୁଃଖୀ ହୋଇ ସ୍ୱାମୀ ସହିତ ଡଙ୍ଗର କାମ କରି ଅନ୍ୟର କୁଲିଭୁତି ଯାଇ ଦି'ପଇସା ଆଣି ତାଙ୍କର ସଂସାରକୁ ଚଳାଇ ନେଉଥିଲା।

ବିବାହର ଗୋଟିଏ ବର୍ଷ ପରେ ସେମାନଙ୍କର ଝିଅଟିଏ ଜନ୍ମ ହେବା ପରେ ଆରମ୍ଭ ହେଲୁ ଶୁକୁରୀଙ୍କ ଜୀବନର ଦୁଃଖର ଅଧ୍ୟାୟ। ଝିଅଟି ଜନ୍ମ ହେବାର ବର୍ଷକ ପରେ ପିସ୍ତୁ ମାଝୀ ଆଉ ଗୋଟିଏ ସ୍ତ୍ରୀ ଆଣିବାକୁ ଇଛା କରନ୍ତି। ଏକଥା ସେ ଶୁକୁରୀକୁ ଜଣାନ୍ତି। ଶୁକୁରୀ ଏହାର ପ୍ରତିବାଦ କରିଥିଲେ ମଧ୍ୟ ପିସ୍ତୁ ମାଝୀ ମାନି ନଥିଲେ। ସେ କହନ୍ତି, "ମୁଁ ଯଦି ପାଠ ପଢ଼ି ଚାଲାକ, ଚତୁର ହୋଇଥାଆନ୍ତି ତାହାହେଲେ ତା' ନାମରେ ସଂଗେ ସଂଗେ ମକଦ୍ଦମା କରି ଥାଆନ୍ତି।" ଅନ୍ୟ କନିଆଁ ଆଣିବା ପରେ ଶୁକୁରୀ ଆଉ ସେଠାରେ ରହିବାକୁ ଇଛା କରନ୍ତି ନାହିଁ। ନିଜ ଝିଅକୁ

ସାଙ୍ଗରେ ଧରି ଫେରି ଆସନ୍ତି ବାପଘର ସରାମବାଇକୁ । ସେତେବେଳକୁ ବୁଆ (ବାପା) ଘରେ ମଧ୍ୟ ସବୁ ଓଲଟ ପାଲଟ ହୋଇଯାଇଥାଏ । ବଡ଼ ଭାଇ ମରିଯିବା ପରେ ବାପା ଗୁଣଧର ମାଝୀ ତାଙ୍କ ଭାଉଜଙ୍କୁ ନିଜେ ବାହା ହୋଇ ରଖିଲେ । ଫଳରେ ଶୁକୁରୀଙ୍କ ମା' ଉଇବାରୀ ଦେଇ ସେଠାରେ ନରହି ପଳାଇ ଆସି ରହିଲେ ତାଙ୍କ ଭାଇଙ୍କ ପାଖରେ ମାଣ୍ଡିବିଶିରେ । ଶୁକୁରୀ ମଧ୍ୟ ବାପା ପାଖରେ ନରହି ପଳାଇ ଆସିଲେ ତାଙ୍କ ଆୟା(ମା')ଙ୍କ ପାଖକୁ । ଦୁଃଖ କଷ୍ଟରେ ଆୟାଙ୍କ ପାଖରେ ଗୋଟିଏ ବର୍ଷ କଟିଗଲା ।

ଏହି ମାଣ୍ଡିବିଶିରେ ତାଙ୍କର ପରିଚୟ ହୁଏ କୁଆଁରୁ ମାଝୀଙ୍କ ସହିତ । ଜମି, ବାଡ଼ି କିଛି ନଥିବାରୁ ଜଣେ ବାବୁଙ୍କ ଘରେ ସେ କାମ କରୁ ଥାଆନ୍ତି । ମାସକୁ ଚାରିମାଣ ଧାନ ଓ ବର୍ଷ ଶେଷକୁ ଦରମା ପାଆନ୍ତି ୨୦ ଟଙ୍କା । ସେ ମଧ୍ୟ ଆଗରୁ ଗୋଟିଏ ବାହା ହୋଇଥିଲେ । ତା'ପରେ ଆଉ ଜଣଙ୍କୁ ଆଣିବାରୁ ପ୍ରଥମ ସ୍ତ୍ରୀ ଝିଅକୁ ଛାଡ଼ି ପଳାଇ ଯାଆନ୍ତି । ଛୁଆଟି ଦ୍ୱିତୀୟ ସ୍ତ୍ରୀଙ୍କ ପାଖରେ କାନ୍ଦିବାରୁ ଦ୍ୱିତୀୟ ସ୍ତ୍ରୀ ମଧ୍ୟ ପଳାଇ ଗଲେ । ପରେ ଛୁଆଟିକୁ ଆସି ତା'ର ମା' ନେଇଗଲେ । ତେଣୁ କୁଆଁରୁ ମାଝୀ ଏକା ଥାଆନ୍ତି । ଏପଟେ ଶୁକୁରୀ ଦେଈ ମଧ୍ୟ ତାଙ୍କ ମା'ଙ୍କ ପାଖରେ ଏକା ଥାଆନ୍ତି । ଏହି ସମୟରେ କୁଆଁରୁଙ୍କ ବାପା, ମା', ଶୁକୁରୀଙ୍କ ମା'କୁ ପ୍ରସ୍ତାବ ଦିଅନ୍ତି ନିଜ ପୁଅ ସହିତ ଶୁକୁରୀଙ୍କ ବିବାହ ପାଇଁ । ଏତିକି ବେଳେ ମତ ନେବା ପାଇଁ ମା' ପଚାରିଲେ ଶୁକୁରୀଙ୍କୁ ମାତ୍ର ଶୁକୁରୀ ସିଧା ସଳଖ ମନା କରି କହିଲେ, "ସେ ଆଗରୁ ଦୁଇଟା ମାଇଜୀ ଛାଡ଼ିଛି, ମୁଁ ତାକୁ ବାହା ହେବି ନାହିଁ ।" ମାତ୍ର ମାଁମୁମାନେ ଗାଳି ଗୁଲଜ କରିବାରୁ ସେ ବାଧ୍ୟ ହୋଇଥିଲେ କୁଆଁରୁଙ୍କୁ ବିବାହ କରିବା ପାଇଁ । ବିବାହ ପରେ ସେ ସ୍ୱାମୀ ଘରେ ହଳିଆସାହିରେ ରହିଲେ । ସେହି ଗାଁରେ ଜମିଦାର ଘରେ କାମ କରୁଥିବା ଆହୁରି କେତେକ ପରିବାର ରହୁଥିଲେ । ସେଠାରେ ଡଙ୍ଗର ମାରି କୁଲିଭୁତି କରି ଶୁକୁରୀଙ୍କ ଜୀବନ ସୁଖରେ କଟିଯାଏ । ସେଠାରେ ପୁଣି ତାଙ୍କର ଝିଅଟିଏ ଜନ୍ମ ହେଲା ।

୧୯୮୩-୮୪ ମସିହାରେ 'ଅଗ୍ରଗାମୀ' ସଂସ୍ଥା ଉଦ୍ୟମରେ ଗୋତି ଲାଗିଥିବା ହଳିଆ ସାହିର ୧୪ଟି ପରିବାର ଗୋତି ମୁକ୍ତ ହୋଇଥିଲେ । ତେଣୁ କୁଆଁରୁ ଆଉ ମହାଜନ ଘରେ କାମ ନକରି ପଳାଇ ଆସିଲେ । ଡଙ୍ଗର ଚାଷ କରି ଜଙ୍ଗଲରୁ କାଠ, ଡାଳ, ମୂଳ, କନ୍ଦା ଆଣି ସ୍ୱାଧୀନ ଭାବେ ଜୀବନ ଯାପନ କଲେ ।

ଶୁକୁରୀ ଦେଈଙ୍କ ନେତୃତ୍ୱ ନେବାର ଦକ୍ଷତା ଥିଲେ ମଧ୍ୟ ଭୟରେ ସେ ଆଗକୁ ଆସିପାରୁ ନଥିଲେ । "ଇଚ୍ଛାଥିଲେ ଉପାୟ ବଳେ ବଳେ ଆସେ ।" 'ଅଗ୍ରଗାମୀ' ସଂସ୍ଥାରେ ଟ୍ରେନିଂ ନେବା ପାଇଁ ଶୁକୁରୀଙ୍କୁ ସୁଯୋଗ ମିଳେ । ପ୍ରଥମେ ପ୍ରଥମେ ସେ ତାଲିମ୍‌କୁ ଆସିବାକୁ ବା ବାବୁମାନଙ୍କୁ ଦେଖି ଡରୁଥିଲେ । ମାତ୍ର ପରେ ସବୁ ଡ଼ର ଭୟ ତାଙ୍କର ଦୂର ହୋଇଯାଇଥିଲା । ସେ ପ୍ରଥମେ ପାଠ ପଢ଼ିବାକୁ ଆରମ୍ଭ କରି ନିଜ ନାଁ ଓ ଠିକଣା ଲେଖି ଜାଣିଲେ । ତା'ପରେ ଗାଁର ଉନ୍ନତି ମୂଳକ କାମ କରିବା ପାଇଁ କେତେକ ବିଷୟରେ ତାଲିମ୍ ନେଇଥିଲେ । ଅଗ୍ରଗାମୀ ସଂସ୍ପର୍ଶରେ ଆସି ତାଙ୍କର ନେତୃତ୍ୱ ନେବାର ଗୁଣ ବିକାଶ ହେଲା । ତାପରେ ତାଙ୍କର ଆଖି ଖୋଲିଯିବା ପରି ଅନୁଭବ କରିଥିଲେ ବୋଲି ସେ କହନ୍ତି । ତା'ପରେ ସେ ଗାଁ କମିଟି କରି ଗାଁରେ 'କୁଟୁମ୍ବ ପାଣ୍ଠି' ବଢ଼ାଇବା ପାଇଁ ଚେଷ୍ଟା କରିଥିଲେ । ପିଲାମାନଙ୍କୁ ପାଠ ପଢ଼ାଇବାକୁ ପଠାଇବା ପାଇଁ ସମସ୍ତଙ୍କୁ ବୁଝାଇଥିଲେ । ବିଭିନ୍ନ ପ୍ରକାର କାମ କରି କୁଲି ମଜୁରିରୁ ଟଙ୍କା ସଞ୍ଚୟ କରି ଗାଁର କୋଠ ଜମି କିଣିଛନ୍ତି । ସରକାରଙ୍କଠାରୁ ବଳଦ ଋଣ ଆଣି ବଳଦ କିଣି ଚାଷ ବାସ କରି ଚଳୁଛନ୍ତି । 'ଇନ୍ଦିରା ଆବାସ ଯୋଜନା' ମାଧ୍ୟମରେ ଭଲ ଘର ଖଣ୍ଡିଏ କରିଛନ୍ତି । ପାଠ ପଢ଼ାର ମହତ୍ୱ ବୁଝିପାରି ନିଜ ଝିଅକୁ ରାତି ସ୍କୁଲକୁ ପଠାଇବା ସଂଗେ ସଂଗେ ସରକାରୀ ସ୍କୁଲରେ ତୃତୀୟ ଶ୍ରେଣୀରେ ପଢ଼ାଉଛନ୍ତି । ଆଦିବାସୀ ମହିଳାମାନଙ୍କୁ ସେ କହନ୍ତି, 'ସମସ୍ତେ ଝିଅମାନଙ୍କୁ ପଢ଼ାଇବା ଉଚିତ୍ । କାରଣ ପାଠ ନପଢ଼ିଲେ କୌଣସି କଥା ଜାଣି ହେବନାହିଁ । ଶୋଷଣ, ଠକେଇ ଓ ଅତ୍ୟାଚାରରୁ ରକ୍ଷା ପାଇବାକୁ ହେଲେ ଝିଅମାନେ ପାଠ ପଢ଼ିବା ନିହାତି ଦରକାର ।"

ଲଘୁବନଜାତ ଦ୍ରବ୍ୟ କିଣାବିକାରେ ଆଦିବାସୀ ମହିଳାମାନେ କିପରି ଶୋଷଣର ଶିକାର ହେଉଛନ୍ତି ସେ ସଂପର୍କରେ ବିଗତ ମୁଖ୍ୟମନ୍ତ୍ରୀଙ୍କ ଆଗରେ ସେ ପ୍ରଥମେ ଦାବି ଉପସ୍ଥାପନ କରିଥିଲେ । ଏବଂ ମୁଖ୍ୟମନ୍ତ୍ରୀଙ୍କଠାରୁ ଅନୁମତି ଆଣି ସେ ପ୍ରଥମେ ମାଣ୍ଡିବିଶି ପଞ୍ଚାୟତର ୧୨ ଖଣ୍ଡ ଗାଁର ମହିଳାମାନଙ୍କୁ ଏକଜୁଟ କରି ଏକ ମହିଳା ମଣ୍ଡଳ ଗଠନ କରାଇ ତାକୁ ପଞ୍ଜିକୃତ କରାଇ ସେହି ଅଞ୍ଚଳରେ ମିଳୁଥିବା ଫୁଲ ଝାଡୁ କିଣିବାରେ ଅଗ୍ରଣୀ ଭୂମିକା ନେଇଥିଲେ । ତାପରେ ସେହି ମହିଳାମାନେ କିପରି ଟି.ଡ଼ି.ସି.ସିର ଅତ୍ୟାଚାରକୁ ସମ୍ମୁଖୀନ ହୋଇଛନ୍ତି, ସେସବୁ ବିଷୟରେ ଆପଣମାନେ ଆରୋହଣ ଗତ ସଂଖ୍ୟାମାନଙ୍କରେ ପଢ଼ିଛନ୍ତି । ଏହି ଆନ୍ଦୋଳନକୁ ସେମାନେ ଏପର୍ଯ୍ୟନ୍ତ ଚାଲୁରଖିଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ଆଦେଶରେ ଆଦିବାସୀ ଅଞ୍ଚଳରେ ଦେଶୀ ମଦ ରାନ୍ଧିବା ପାଇଁ ଲାଇସେନ୍‌ସ୍ ବନ୍ଦ ହେବା ପରେ ଗାଁର ମହିଳାମାନଙ୍କୁ ଏକାଠି

କରାଇ ପ୍ରଥମେ ନିଜ ଗାଁରୁ ମଦ ବନ୍ଦ କରାଇ ପାରିଛନ୍ତି । ଏଥିପାଇଁ ନେତୃତ୍ୱ ନେଇଛନ୍ତି ଶୁକୁରୀ ଦେଈ । ମଦ ବିଷୟରେ ସେ କହନ୍ତି, "ଆଗେ ଯାହା ରୋଜଗାର ହେଉଥିଲା ସବୁ ମଦଭାଟିରେ ଯାଉଥିଲା । ପିଲା ଛୁଆ ଭୋକ ଉପାସରେ ଛଟପଟ ହେବା ସଂଗେସଂଗେ ସବୁବେଳେ ପାଟିଗୋଳ, ଘରେ ମାଇଜୀ ଉପରେ ମାଡ଼ଗାଳି ସାଙ୍ଗକୁ ସବୁବେଳେ ଅଶାନ୍ତି ଲାଗିରହୁଥିଲା । ଏବେ ଆଉ ସେପରି ନାହିଁ ।

ଏହିପରି ଶୁକୁରୀ ଦେଈ ବିଭିନ୍ନ ଉନ୍ନତିମୂଳକ କାମକରି ଆଦିବାସୀ ମହିଳାମାନଙ୍କୁ ବାଟ ଦେଖାଇ ପାରୁଛନ୍ତି । ଯେଉଁ କାମକି ଅନ୍ୟ ମହିଳାମାନଙ୍କୁ ଆଗକୁ ନେବାଲାଗି ନିଶ୍ଚୟ ପ୍ରେରଣା ଯୋଗାଇବାରେ ସାହାଯ୍ୟ କରିବ ।

ଶେଷରେ ସେ କହନ୍ତି, "ନାରୀ କେବେ ଦୁର୍ବଳା, ଅବଳା ନୁହେଁ । ଆଗକୁ ଆଗେଇବାକୁ ହେଲେ ମହିଳାମାନଙ୍କ ମଧ୍ୟରେ ଥିବା ଭୟକୁ ପ୍ରଥମେ ଦୂର କରିବାକୁ ପଡ଼ିବ । ଏବଂ ଯେ କୌଣସି କାମ ସଂଗଠିତ ହୋଇ କଲେ ସଫଳତା ହାସଲ କରାଯାଇପାରିବ । "ସଂଗଠନ ତାଙ୍କର ଲକ୍ଷ୍ୟ ବୋଲି ସେ ଦୃଢ଼ ସ୍ୱରରେ କହନ୍ତି ।"

ମାର୍ଚ୍ଚ - ୧୯୯୭



# ତିଲୁକି କହଁର

ଆଦିବାସୀ ଅଞ୍ଚଳରେ ଜନ୍ମ ହୋଇ ମଧ୍ୟ ପିଲାଟି ଦିନରୁ ମଦ ପ୍ରତି ଥିଲା ପ୍ରବଳ ଘୃଣା । ସେଥିପାଇଁ ତିଲୁକି ସବୁବେଳେ ବାପା, ମାଆ ତଥା ନିଜ ଭାଇକୁ ମଦ ପିଇବା ପାଇଁ ମନା କରେ । ତିଲୁକିର ଗୋଛାପଡ଼ା ପଞ୍ଚାୟତର ପିପଲମାଳ ଗାଁରେ ଜନ୍ମ । ସେମାନେ ତିନି ଭଉଣୀ ଏବଂ ଗୋଟିଏ ଭାଇ । ଆଦିବାସୀ ହିସାବରେ ସେମାନେ ଥିଲେ ଖୁବ୍ ଗରିବ । ତା ସାଙ୍ଗକୁ ବାପା, ମାଆ, ଭାଇ ମଦ ପିଇ ସବୁ ରୋଜଗାରକୁ ମଦ ବେପାରୀମାନଙ୍କ ପାଖରେ ଦେଇ ଦିଅନ୍ତି । ଫଳରେ ଚାରି ଭାଇ ଭଉଣୀଙ୍କ ପାଠପଢ଼ା କଥା ଦୂରେ ଥାଉ, ଗଣ୍ଡେ ଖାଇବାକୁ ଏବଂ ଖଣ୍ଡେ ପିନ୍ଧିବାକୁ ମଧ୍ୟ ମିଳେ ନାହିଁ । ଏସବୁ ସତ୍ତ୍ୱେ ତିଲୁକି ଡ଼ରି ନଯାଇ ନିଜର ଭଉଣୀମାନଙ୍କ ସହିତ ପରିଶ୍ରମ କରି ଘର ଚଳାଇବା ସଙ୍ଗେ ସଙ୍ଗେ ବାପା, ଭାଇ ତଥା ତାର ଗାଁର ମଦୁଆ ଲୋକମାନଙ୍କର ମଦ ଛାଡ଼ିବା ପାଇଁ ଉଦ୍ୟମ କରିଥିଲେ । ସେ ସମୟରେ ଆଦିବାସୀମାନେ କେବଳ ଖୁସି ପାଇଁ ମଦ ପିଉ ପିଉ, ତାହା ଅଭ୍ୟାସରେ ପରିଣତ ହୋଇଛି ବୋଲି ସେ କହେ । ତଥାପି ତା'ର ଚେଷ୍ଟା ଫଳରେ ନିଜ ଗାଁର କେତେ ଜଣକୁ ମଦ ମନ୍ଦ କରିଥିଲା । ସେ ବହୁତ ଅଳ୍ପ ବୟସରେ ନିଜର ବାପା, ମାଆଙ୍କୁ ହରାଇଥିଲା ।

ତିଲୁକି ଦେଖିବାକୁ ବହୁତ ସୁନ୍ଦର ଥିବାରୁ ତାକୁ ଅନେକ ଗାଁରୁ ଆଦିବାସୀ ପରମ୍ପରା ଅନୁଯାୟୀ କନିଆ ମାଗି ଆସୁଥିଲେ । ମାତ୍ର ବାପା, ମାଆ ନଥିବାରୁ ବାହାଘର କୌଣସି ଜାଗାରେ ଠିକ୍ ହୋଇ ପାରୁ ନଥିଲା । ବଉପଙ୍ଗାର ଗବି କହଁର ବାଲନ୍ଦାପଡ଼ାରୁ ଗୋଟିଏ ଦିନ ଯାତ୍ରାରୁ ଆଦିବାସୀ ଚଳଣି ଅନୁସାରେ ତିଲୁକିକୁ ଝିକି ଆଣିଲା । ସେତେବେଳକୁ ତିଲୁକିକୁ ୧୨ ବର୍ଷ । ବାପା, ମାଆ ନଥିବାରୁ ତାକୁ କେହି କିଛି ସୁନା ରୂପା ଦେଇ ନଥିଲେ । ଶାଶୁ ଘରର ଅନେକ ସମ୍ପତ୍ତି ଥିଲା, ମାତ୍ର ତାର ସ୍ୱାମୀ ଏବଂ ଶ୍ୱଶୁର ମଦ ପିଇ ସମସ୍ତ ସମ୍ପତ୍ତିକୁ ହରାଇ ଦେଇଥିଲେ । ତେଣୁ

ତିଲୁକି ନିଜେ ପ୍ରଥମେ ବାହାରି କେତେ ଜଣ ମାଆମାନଙ୍କୁ ଏକଜୁଟ କରି ଗାଁରେ ମଦ ବନ୍ଦ ପାଇଁ ଅଭିଯାନ ଆରମ୍ଭ କଲା । କେତେ ଦିନ ମଧ୍ୟରେ ସେ ସଫଳତାର ସହିତ ନିଜ ଗାଁରେ ମଦ ବନ୍ଦ କରି ପାରିଲା । ସେ କହେ, "ବୁଢ଼ା, ମୁନ୍ନୀମାନେ ମଦ ପିଇଲେ ମଧ୍ୟ ପିଲାମାନଙ୍କୁ ନଦେଲେ ଆମର ଗୋଟିଏ ପୁରୁଷ(ପୀଢ଼ି)ପରେ ମଦ ବନ୍ଦ ହୋଇଯିବ ।

ଗାଁରେ ବିକାଶ ପାଇଁ ଗାଁ ରାସ୍ତାରେ ତିଲୁକିର ନେତୃତ୍ୱ ଧୀରେ ଧୀରେ ଜଣାପଡ଼ିଲା । ଗାଁ ସଫା ସୁତୁରା, ଗାଁ ଜଙ୍ଗଲ ରଖିବା, ପିଲାମାନଙ୍କୁ ପାଠ ପଢ଼ିବା ପାଇଁ ସ୍କୁଲକୁ ପଠାଇବାକୁ ମାଆମାନଙ୍କୁ ବୁଝାଇବା, ନିଜେ ପାଠ ନପଢ଼ିଥିଲେ ମଧ୍ୟ ନିଜର ଦୁଇ ପୁଅ ଓ ତିନୋଟି ଝିଅକୁ ପାଠ ପଢ଼ାଇ ମଣିଷ କରିଛି । ତାର ବଡ଼ ପୁଅ ସୁଦର୍ଶନ ରାତିରେ ଚାଲିଥିବା ସ୍କୁଲରେ ପାଠ ପଢ଼ାଏ । ବଡ଼ ଝିଅ ସମିତି ସଭ୍ୟା ହୋଇ ଗାଁର ଉନ୍ନତି ମୂଳକ କାମକରେ । ନିଜ ଗାଁର ମାଆମାନଙ୍କୁ ସଂଗଠିତ କରି ସେ ଗୋଟିଏ ମହିଳା ମଣ୍ଡଳ ଗଠନ କରିଛି (ନାରାୟଣୀ ମହିଳା ମଣ୍ଡଳ) । ମହିଳା ମଣ୍ଡଳ ସଭ୍ୟାମାନଙ୍କୁ ସଚେତନ କରାଇ ମଦ ବିରୋଧରେ ସ୍ୱର ଉତ୍ତୋଳନ କରାଇ ଗାଁରେ ମଦ ବନ୍ଦ କରିଛି । ମଦ ପାଇଁ ବାଲ୍‌ଦାପଡ଼ାର ଜଣେ ହରିଜନ ଓ ପାଖ ଗାଁର ଗୋଟିଏ ଲୋକ ନାମରେ ପୁଲିସ୍ କେଶ୍ କରି ଯଥାକ୍ରମେ ତିନି ଶହ ଏବଂ ଦୁଇ ଶହ ଟଙ୍କା ଜୋରିମାନା କରି ମାଆମାନଙ୍କ ପାଣ୍ଠିରେ ରଖିଛନ୍ତି । ମହିଳାମାନଙ୍କୁ ଏକାଠି କରି ସେ ପାଣ୍ଠି ଗଠନ କରିଛନ୍ତି । ପାଣ୍ଠି ବଢ଼ାଇବା ଓ ପାଣ୍ଠିର ପରିଚାଳନା ଦାୟିତ୍ୱ ମାଆମାନେ ନିଜେ ତୁଲାଉଛନ୍ତି । ପାଣ୍ଠି ବଢ଼ିବା ପାଇଁ ସେମାନେ ମିଳିତ ପନିପରିବା ଚାଷ ଏବଂ ଗାଁରେ ଏକ ଦୋକାନ କରିଛନ୍ତି ।

ଏହି ନେତୃତ୍ୱ ଖାଲି ମହିଳାମାନଙ୍କ ଭିତରେ ସୀମିତ ହୋଇ ରହିଲା ନାହିଁ । ଧୀରେ ଧୀରେ ଗାଁର ପୁରୁଷ ଲୋକମାନଙ୍କ ମଧ୍ୟରେ ପ୍ରଭାବ ପକାଇଲା । ୧୯୯୧ ମସିହାରେ ଯେତେବେଳେ କାପାର୍ଟ ତରଫରୁ ବନ୍ଧ ଖୋଳିବା ପାଇଁ ବଉପଙ୍ଗା ଗାଁରେ ପୁରୁଷମାନଙ୍କର ମିଟିଂ ଚାଲିଥିଲା ସେତେବେଳେ କେହି ହେଲେ ଠିକ୍ କରି ପାରିଲେ ନାହିଁ । ପୋଖରୀ କେଉଁଠାରେ ଖୋଳାଯିବ । ସେହି ସମୟରେ ତିଲୁକି ଯାଇ ପିଣ୍ଡାରେ ଲୋକମାନଙ୍କ କଥା ଶୁଣୁଥିଲା । ସେ ନିଜେ ବାହାରି ଏମିତି ଏକ ଜାଗା ଠିକ୍ କରି କହିଲା ତାକୁ ପୁରୁଷ ଲୋକମାନେ ମାନିବାକୁ ବାଧ୍ୟ ହେଲେ । ବନ୍ଧ ଖୋଳା ଆରମ୍ଭ ହେବା ପରେ ବାଲ୍‌ଦାପଡ଼ା ପଞ୍ଚାୟତର ସରପଞ୍ଚ ଏହି ଜାଗାର କେତେକାଂଶ ପଞ୍ଚାୟତର ଜାଗା ବୋଲି କହି କାମ ବନ୍ଦ କରିଦେଲା । ଗାଁର ଲୋକମାନେ ବାରମ୍ବାର ଜିଲ୍ଲାପାଳଙ୍କ ନିକଟକୁ ଯାଇ ବିଫଳ ହେଲେ । ସେତେବେଳେ ତିଲୁକି କେତେ ଜଣ ମାଆମାନଙ୍କୁ ସାଙ୍ଗରେ ନେଇ ଉପ-ଜିଲ୍ଲାପାଳଙ୍କ ନିକଟକୁ ଯାଇ କହିଲା ଯେ "ଆପଣ ଆଜି ନଗଲେ

ଆମେ ଏଠାରେ ବସି ରହିବୁ । ଘରକୁ ଫେରିବୁ ନାହିଁ ।" ତା' କଥାରେ ଜିଲ୍ଲା-ଗ୍ରାମ୍ୟ- ଉନ୍ନୟନ- ସଂସ୍ଥାର ପ୍ରକଳ୍ପ ଅଧିକାରୀ, ଉପଜିଲ୍ଲାପାଳ, ବିଡ଼ିଓ ଯାଇ ସେ ସମସ୍ୟାର ସମାଧାନ କରିଥିଲେ । ବର୍ତ୍ତମାନ ସେ ବନ୍ଧ ଖୋଳା କାମ ସଂପୂର୍ଣ୍ଣ ରୂପେ ତିଲୁକିକୁ ଦିଆଯାଇଛି ।

ଗାଁ ପାଣି, ଶିକ୍ଷାତଥା ଗାଁର ବିକାଶ କଥା ଚିନ୍ତା କରିବା ସଙ୍ଗେସଙ୍ଗେ ଆଦିବାସୀମାନଙ୍କ ଜୀବନ ବଞ୍ଚାଉଥିବା ଜଙ୍ଗଲ କିପରି ସଂରକ୍ଷଣ କରାଯାଇ ପାରିବ, ସେ ବିଷୟରେ ସେ ଖୁବ୍ ସଚେତନ । ବଉପଙ୍ଗା ମହିଳାମାନଙ୍କ ଦ୍ୱାରା (କପୁଡ଼ଙ୍ଗାମରୁ) ଜଙ୍ଗଲ ସଂରକ୍ଷଣ କରି ତାର ଦେଖାଶୁଣା କରୁଥିଲେ । ତା ୧୪.୧୧.୯୬ରେ ବାଲନ୍ଦାପଡ଼ା ପଞ୍ଚାୟତର ପଞ୍ଚାୟତସ୍ତରୀୟ ମହିଳା ମିଟିଂ ଚାଲୁଥିବା ସମୟରେ ଗାଁର ମାଆମାନେ ମିଟିଂରେ ବସିଥିଲେ । ସେତେବେଳେ ବାଲନ୍ଦାପଡ଼ାର ଜଣେ ଲୋକ ମାଆମାନଙ୍କ ସଂରକ୍ଷିତ ଜଙ୍ଗଲରୁ ୪୦ ଗୋଟି ଶାଳ ଗଛ କାଟିଦେଲା । ଗଛ କଟା ଶବ୍ଦ ଶୁଣି ଗାଁରେ ଥିବା ଜଣେ ମହିଳା ଦୌଡ଼ି ଯାଇ ମିଟିଂରେ ଏକଥା କହିଦେବାରୁ ସମସ୍ତ ମହିଳା ଆସି ସେଠାରେ ରୁଣ୍ଡ ହୋଇ ଯାଇଥିଲେ । ଏତେ ମାଆଙ୍କୁ ଦେଖି ସେ ଲୋକ ଡରରେ ପଳାଇ ଯାଇଥିଲା । ତାପରେ ସେହି କାଠକୁ ମାଆମାନେ ଗାଁକୁ ବୋହି ଆଣି ରଖିଲେ । ଗାଁରେ ମିଟିଂ କରି ନିଷ୍ପତ୍ତି ନେଲେ ଯେ ସେହି ଲୋକକୁ ଡାକି ତାକୁ ଜୋରିମାନା କରିବା ସଂଗେ ସଂଗେ ସମସ୍ତ କାଠର ମୂଲ୍ୟ ଦେବାକୁ କହିବେ । ଯଦି ସେ ମାନିବ ନାହିଁ ତାହାହେଲେ ଜିଲ୍ଲାପାଳଙ୍କୁ ମଧ୍ୟ ଏ ବିଷୟରେ ଜଣାଇବେ । ତାପରେ ଏକ ମିଟିଂ ଡକାଇ ତାକୁ ଡାକିଲେ, ମାତ୍ର ଡରରେ ସେ ଲୋକ ଆସିଲା ନାହିଁ । ମାଆମାନେ ତାଙ୍କ କଥାରେ ଅଟଳ ରହି ତାପାଖରୁ ଯେମିତି ହେଲେ ଜୋରିମାନା ଆଦାୟ କରିବେ ବୋଲି କହୁଛନ୍ତି ।

ଏ ବିଷୟରେ ତିଲୁକି କହେ, " ଯଦି ଥରେ ଆମେ ଏମିତି ଲୋକଙ୍କୁ ଛାଡ଼ି ଦେବୁ, ଆମର ସଂରକ୍ଷିତ ଜଙ୍ଗଲ ଆଉ ରହିବ ନାହିଁ । ତେଣୁ ଆମେ ସମସ୍ତେ ଏକାଠି ହୋଇ ଏହାର ସମାଧାନର ବାଟ କାଢ଼ିବୁ ।"

ତାଙ୍କ ନେତୃତ୍ୱ ଓ ସାହସ ଯୋଗୁଁ ଗାଁର ମହିଳା ଓ ପୁରୁଷ ଲୋକେ ତଥା ପଞ୍ଚାୟତର ଲୋକେ ଏକଜୁଟ ହୋଇଛନ୍ତି । ଯେଉଁମାନେ ବାହାରକୁ ଆସିବାକୁ ଭୟ କରୁଥିଲେ, ସେମାନେ ଏବେ ନିଜର କଥା ଗାଁର ଉନ୍ନତି ପାଇଁ ସରକାରଙ୍କ ଆଗରେ ମଧ୍ୟ ଦାବି କରି, ଶୋଷଣ ବିରୁଦ୍ଧରେ ପାଟି ଖୋଲି ପାରୁଛନ୍ତି ।

ମାର୍ଚ୍ଚ - ୧୯୯୭

# କସ୍ତୁରବା ମହିଳା ମଣ୍ଡଳ

କନ୍ଧମାଳ ଜିଲ୍ଲାର ମୁଖ୍ୟ କାର୍ଯ୍ୟାଳୟଠାରୁ ୫୦ କି.ମି. ଦୂରରେ ଲୁଇସିଂ ପଞ୍ଚାୟତ ଅବସ୍ଥିତ । ଏହି ପଞ୍ଚାୟତର ଲାଠିକୁମ୍ପା, ଲୁଇସିଂ, କିଲୁକୁମ୍ପା ଗାଁଗୁଡ଼ିକ ଲାଗି ଲାଗି ରହିଛି । ଏହି ଗାଁମାନଙ୍କରେ ଆଦିବାସୀ, ହରିଜନ, **କ୍ଷୁଣ୍ଡି ଇତ୍ୟାଦି** ଜାତିର ଲୋକମାନେ ବାସ କରନ୍ତି । ଏହି ତିନିଖଣ୍ଡ ଗାଁର ମହିଳାମାନେ ମିଶି ଗୋଟିଏ ମହିଳା ମଣ୍ଡଳ ଗଠନ କରି ତାର ନାମ ଦେଇଛନ୍ତି 'କସ୍ତୁରୁବା ମହିଳା ମଣ୍ଡଳ' । ମହିଳା ମଣ୍ଡଳ ଗଠନ କରିବା ପୂର୍ବରୁ ସେମାନେ ବାରମ୍ବାର ମିଟିଂ କରି ନିଜ ଅଞ୍ଚଳରେ ହେଉଥିବା ଶୋଷଣ, ଦୁର୍ନୀତି, ଠକେଇ, ଅତ୍ୟାଚାର ଇତ୍ୟାଦି କେଉଁମାନେ କରୁଛନ୍ତି ଏବଂ କଣ ପାଇଁ ଏହି ସବୁ ପ୍ରକାର ଶୋଷଣ ହେଉଛି ଆଲୋଚନା କରୁଥିଲେ । ମହିଳା ମଣ୍ଡଳ ଗଠନ କରି ସାରିବା ପରେ ସେମାନେ ଠିକ୍ କଲେ ଏକାଠି ହୋଇ କିପରି ଏହି ସବୁ ସମସ୍ୟାର ସମାଧାନ କରିବେ ?

ଆଦିବାସୀମାନେ ଖରା, ବର୍ଷା ଶୀତ, କାକରରେ କଠିନ ପରିଶ୍ରମ କରି ବିପନ୍ନ କରୁଥିବା ଫସଲ ସବୁକୁ ଆଉ ସାହୁକାର ଘରେ ନେଇ ଦେବେ ନାହିଁ । ଆମ ଜିନିଷର ଦାମ୍ ବ୍ୟବସାୟୀମାନେ ଠିକ୍ କରିବେ ଆଉ ଆମେ ସେହି ଜିନିଷକୁ ତାଙ୍କ ପାଖରୁ କିଣିଲା ବେଳକୁ ଅଧିକ ଦାମ୍ ଦେଇ କିଣିବୁ । ହାଟ ବଜାରରୁ ସେମାନେ ଜାଣିଲେ ଯେ ଦୋକାନୀମାନେ ମଧ୍ୟ ସେମାନଙ୍କୁ ସବୁ ଜିନିଷରେ ଠକୁଛନ୍ତି । କେତେବେଳେ ଓଜନରେ ତ କେତେବେଳେ ଦରରେ । ଏହି ସବୁ ସମସ୍ୟାରୁ ମୁକୁଳିବା ପାଇଁ ମହିଳା ମଣ୍ଡଳର ମାଆମାନେ ମିଟିଂ କରି ଠିକ୍ କଲେ ଗୋଟିଏ ଦୋକାନ କରିବେ । ଆଉ ସେହି ଦୋକାନରେ ଯେଉଁଥିରେ ସବୁଠାରୁ ବେଶୀ ଠକେଇ ହେଉଛନ୍ତି ସେହି ଜିନିଷ ଆଣି ବିକିବେ । ଶେଷକୁ ଲୁଗା ସହିତ ବର୍ଷାଦିନ ହୋଇଥିବାରୁ ଛତା ଆଣିବାକୁ ଠିକ୍ କଲେ । ଏହି ଜିନିଷ କିପରି କେଉଁଠୁ ଆଣିବେ ? ଏହା ପାଇଁତ ଟଙ୍କାର ଆବଶ୍ୟକତା ରହିଛି । ତେଣୁ ମହିଳା ମଣ୍ଡଳର

ସଭ୍ୟାମାନେ ଚାନ୍ଦା ଆଦାୟ କରି ଜମାକରିଥିବା ୩୦୦୦ ଟଙ୍କାରେ ଫୁଲବାଣୀରୁ ଜିନିଷ କିଣି ଆଣିଲେ । ବୁଧବାରରେ ବାଲନ୍ଦାପଡ଼ାର ସାପ୍ତାହିକ ହାଟ ହୁଏ । ସେହି ହାଟକୁ ଯିବା ବାଟରେ ଲୁଇସିଂ ଗାଁ ପେଡ । ମହିଳାମଣ୍ଡଳର ସଭ୍ୟାମାନେ ଏହି ଗାଁର ଗୋଟିଏ ଜାଗାରେ ବସି ଜିନିଷ ଗୁଡିକୁ ବିକୁଛନ୍ତି । ଲୁଗା ଏବଂ ଛତା କିଣି ସାରିଲା ପରେ ସେମାନେ କେତେ ଲାଭ ରଖି ବିକିବେ ସେଥିପାଇଁ ଏକ ମିଟିଂ କଲେ । ସେହି ମିଟିଂରେ ସେମାନେ ଠିକ୍ କଲେ ଗୋଟିଏ ଲୁଗାରେ ୫ ଟଙ୍କା ଲାଭ ରଖି ବିକିବେ ଫଳରେ ଲୋକମାନେ କମ୍ ଦରରେ ଲୁଗା ପାଇବା ସଙ୍ଗେ ସଙ୍ଗେ ମହିଳା ମଣ୍ଡଳର ମଧ୍ୟ କିଛି ଲାଭ ହେବ । ଦୋକାନ କରିବା ଦିନଠାରୁ ଦୁଇଥର ଲୁଗା ଆଣିସାରିଲେଣି । ପ୍ରଥମ ଥରରେ ୫୭୦ ଟଙ୍କା ଲାଭ କରିଥିଲେ । ଦ୍ୱିତୀୟ ଥରରେ ୪୩୦ ଟଙ୍କା ଲାଭ କରିଛନ୍ତି ।

କିଛିଦିନ ତଳେ ସେହି ମହିଳା ମଣ୍ଡଳର କେତେଜଣ ମାଆଙ୍କ ସଙ୍ଗେ ଆଲୋଚନାରୁ ଏହି ବିଷୟରେ ଆମେ ଜାଣିଥିଲୁ । ମାଆମାନଙ୍କୁ ପଚାରିବାରୁ ସେମାନେ କହିଲେ, "ଆମେ ଦୋକାନ କରି ନାହୁଁ, ଲୋକମାନଙ୍କୁ ଠକି ଲାଭ କରି ମହିଳା ମଣ୍ଡଳର ପାଣ୍ଠି ବଢ଼ାଇବୁ ବୋଲି । ଆମେ ଲୋକଙ୍କୁ ବହୁତ ଶସ୍ତାରେ ଜିନିଷ ବିକୁଛୁ । ଲୋକମାନେ ବଜାରଠାରୁ ଅନେକ ଶସ୍ତାରେ ଆମଠାରୁ ଜିନିଷ ପାଉଥିବାରୁ ଆଉ ବାହାରକୁ ଜିନିଷ କିଣିବାକୁ ଯାଉ ନାହାନ୍ତି । ଆମ ଗାଁରୁ ବାହାରକୁ ପଳାଇ ଯାଉଥିବା ଟଙ୍କା ଆମ ପାଖରେ ରହୁଛି । ଲୋକମାନେ ମଧ୍ୟ ଉପକୃତ ହେଉଛନ୍ତି । ଆମେ ଚେଷ୍ଟା କରୁଛୁ ଆହୁରି ଅଧିକ ଜିନିଷ ଆଣି ରଖିବାକୁ ।"

ଦୋକାନର ହିସାବପତ୍ର କିଏ କରୁଛନ୍ତି ପଚାରିବାରୁ ସେମାନେ କହନ୍ତି, "ଆମ ଗାଁର ପାଠପଢ଼ିଥିବା ପିଲାକୁ କହିଲେ ସେ ହିସାବପତ୍ର କରି ଦିଏ । ନହେଲେ ଆମ ଗାଁର ରାତି ସ୍କୁଲରେ ପାଠ ପଢ଼ାଉଥିବା ଗୁରୁ ମଧ୍ୟ ବେଳେ ବେଳେ ହିସାବପତ୍ର କରି ଆମକୁ ବୁଝାଇ ଦିଏ ।" ଲାଭ ଟଙ୍କା କ'ଣ କରୁଛ ପଚାରିଲେ ସେମାନେ କହନ୍ତି ଏବେତ ଆମେ ଦୋକାନ ଆରମ୍ଭ କରିଛୁ, ଯାହା ଟଙ୍କା ଲାଭ ହେଉଛି ତାହାକୁ ମିଶାଇ ପୁଣି ଅଧିକ ଜିନିଷ ଆଣୁଛୁ । ଯେତେବେଳେ ଅଧିକ ଲାଭ ହୋଇଯିବ ସେତେବେଳେ ଆମେ ଲାଭ ଟଙ୍କାକୁ ବ୍ୟାଙ୍କରେ ଜମା କରିବୁ ।"

ମାର୍ଚ୍ଚ - ୧୯୯୭



# ସରପଞ୍ଚ : ସମ୍ଧାରୀ ମାଝୀ

ସରପଞ୍ଚ ଏହି ଶବ୍ଦଟିର ଅର୍ଥ ମଧ୍ୟ ବୁଝେ ନାହିଁ ସମ୍ଧାରୀ ମାଝୀ । ସରପଞ୍ଚର କାମ କହିଲେ କେବଳ ଏତିକି ବୁଝେ ସ୍ୱାମୀ ସହିତ ପଞ୍ଚାୟତ ମିଟିଂକୁ ଯିବା । ସେଠାରେ ଗୋଟିଏ ଦସ୍ତଖତ ଦେଇ ଘରକୁ ଫେରିବା । କାଶୀପୁର ବ୍ଲକର ଚନ୍ଦ୍ରଗିରି ପଞ୍ଚାୟତର ଦୂରଖାଲ ଗାଁରେ ବଢ଼ିଛି ସମ୍ଧାରୀ । ପ୍ରଥମେ ପ୍ରଥମେ ସ୍କୁଲକୁ ଯାଉଥିଲା । ସ୍କୁଲକୁ ଯିବା ଭିତରେ କେବଳ ନାଁ ଦସ୍ତଖତ କରି ଶିଖିଛି । ଧାଙ୍ଗଡ଼ୀ ହେବା ପରେ ବାପ, ମା' ତାକୁ ବାହା କରାଇ ଦେଇଥିଲେ ପଦମପୁର ଗାଁର କେଶବ ମାଝୀ ସହିତ । ବାହାଘର ପରେ ଘରେ ରହି ଦୁଇଟି ଝିଅକୁ  ଜନ୍ମ ଦେବା ଏବଂ ବିଭିନ୍ନ ଘର କାମରେ ସମୟ ବିତିଛି ସମ୍ଧାରୀର । ଯେ କୌଣସି ମିଟିଂ ହେଲେ ମଧ୍ୟ ସମ୍ଧାରୀ କେବେ ହେଲେ ଯାଇପାରେ ନାହିଁ ଘର କାମ ଛାଡ଼ି । ପଚାରିଲେ କହେ, ମୋର ଅନ୍ୟ ମା'ମାନଙ୍କ ପରି ମିଟିଂ ଯିବାକୁ ବହୁତ ଇଛା । କିନ୍ତୁ ମୁଁ ଯଦି ମିଟିଂ ଯିବି ତେବେ ମୋ ପିଲାଙ୍କ କଥା ଓ ଘର ଧନ୍ଦା ବୁଝିବ କିଏ ? ସେହି ସମ୍ଧାରୀ ୧୯୯୭ ମସିହାର ପଞ୍ଚାୟତ ନିର୍ବାଚନରେ ସରପଞ୍ଚ ଭାବେ ଜିତିଛି ।

ତମେତ କେବଳ କୁଆଡ଼େ ବାହାରକୁ ମଧ୍ୟ ଯାଇନ । ସରପଞ୍ଚ ହୋଇ ଏତେ ବଡ଼ ପଞ୍ଚାୟତକୁ କେମିତି ଚଳାଇବ ବୋଲି ପଚାରିଲେ ସମ୍ଧାରୀ କହେ, ମୋ ସ୍ୱାମୀ ତ ଅଛନ୍ତି, ସେ ସବୁ କଥା ବୁଝିବେ । ମୁଁ ସରପଞ୍ଚ ହେବା ପାଇଁ ସବୁ ତ ସେ କରିଛନ୍ତି । ସେ କହିଲେ ମୋତେ ସରପଞ୍ଚରେ ଠିଆ ହେବାକୁ । ଫର୍ମ ଆଣି ପୂରଣ କରିଦେଲେ । ମୁଁ କେବଳ ଦସ୍ତଖତ କରିବା ବ୍ୟତୀତ ଅନ୍ୟ କିଛି କରି ନାହିଁ । କିନ୍ତୁ ସ୍ୱାମୀ କେଶବ ମାଝୀ କହନ୍ତି, ପଞ୍ଚାୟତରେ ମିଟିଂ ହୋଇଥିଲା, କଂଗ୍ରେସ ଦଳର ପ୍ରାର୍ଥୀ କିଏ ହେବ ବୋଲି । ଯେହେତୁ ଏ ପଞ୍ଚାୟତର ସ୍ଥାନ କେବଳ ମହିଳାମାନଙ୍କ ପାଇଁ ସଂରକ୍ଷିତ ଏବଂ ଏ ଅଞ୍ଚଳରେ କୌଣସି ମହିଳା ପାଠ ପଢ଼ି ନଥିବା ଯୋଗୁଁ ଯାହାର ସ୍ୱାମୀ କଥା କହିପାରୁଥିବ ଓ ବାହାରକୁ ଯାଇ ସବୁ କଥା ବୁଝାସୁଝା କରି ପାରୁଥିବ, ସେପରି

ମହିଳାଙ୍କୁ ବାଛିବା ପାଇଁ ମତେ ଦାୟିତ୍ୱ ଦେଇଥିଲେ । ଏହି ମତ ଅନୁସାରେ ସମ୍ଯାରୀ ମାଝୀର ନାଁ ସବୁଠାରୁ ବେଶୀ ଉଠିଥିଲା । କାରଣ ତା' ସ୍ୱାମୀ କେଶବ ମାଝୀ ହିଁ ଏ ସବୁ କରି ପାରିବ । ଏହାପରେ ନିର୍ବାଚନ ପାଇଁ ମୋତେ ହିଁ ସବୁଆଡେ ଯିବାକୁ ହେଉଛି । ନିର୍ବାଚନ ଖର୍ଚ୍ଚ ପାଇଁ ମୋର ୧୦ ହଜାର ଟଙ୍କା ଓ ୩୦,୦୦୦ ଟଙ୍କାର ସୁନା ବନ୍ଧା ପଡ଼ିଛି । ସମ୍ଯାରୀ ନିର୍ବାଚନ ପାଇଁ ମୁଁ ପ୍ରାୟ ୭/୮ ରାତି ଶୋଇ ନାହିଁ । ସମ୍ଯାରୀ ତ କଥା କହି ଜାଣେ ନାହିଁ । ସେ ଯାଇ କ'ଣ କରିବ ?

ଏତେ କଷ୍ଟ କରିବା ପରେ ପ୍ରଥମେ ଭୋଟ ଗଣତି ସମୟରେ ୬୧ଟି ଭୋଟରେ ଜିତିଲୁ ବୋଲି ଖବର ପାଇ ବହୁତ ଖୁସି ହୋଇଥିଲୁ । ଏହାପରେ ପୁଣି ଖବର ପାଇଲୁ ଯେ, ଜନତା ଦଳର ପାର୍ଥୀ ଜିତିଛି ବୋଲି । ଏହାପରେ ଦ୍ୱିତୀୟ ଥର ପାଇଁ ଭୋଟ ଗଣତି ହେଲା । ଏଥିରେ ୨୩ଟି ଭୋଟରେ ଜିତିଲୁ । ଏ ଖବର ଶୁଣିବା ପରେ ବହୁତ ଖୁସି ଲାଗିଲା । ଏତେ ପରିଶ୍ରମ ଓ ଏତେ ଟଙ୍କା ଖର୍ଚ୍ଚପରେ ଯଦି ହାରି ଯାଇଥାଆନ୍ତୁ, ତେବେ ନିଶ୍ଚିତ ଭାବରେ ଖରାପ ଲାଗି ଥାଆନ୍ତା ବୋଲି କେଶବ ମାଝୀ କହନ୍ତି ।

ସରପଞ୍ଚ ହେବା ପରେ କ'ଣ କରିଛନ୍ତି ବୋଲି ପଚାରିଲେ ସମ୍ଯାରୀ କହେ, ପଞ୍ଚାୟତ ମିଟିଂକୁ ସ୍ୱାମୀଙ୍କ ସହିତ ଯାଉଛି । ଦସ୍ତଖତ କରୁଛି । ସମସ୍ତେ ଯାହା କହୁଛନ୍ତି ତାହା ଶୁଣୁଛି । କଥା କହିବାକୁ ସାହସ ହେଉନାହିଁ । ଯାହା କହିବା କଥା ମୋ ସ୍ୱାମୀ କହୁଛନ୍ତି । ସେ ନ କହିଲେ ମୁଁ କୌଣସି ଜାଗାରେ ଦସ୍ତଖତ କରେ ନାହିଁ । କେଶବ କହେ ସିଏ ତ ବାହାର ଲୋକଙ୍କ ସହିତ କେବେ କଥାବାର୍ତ୍ତା କରି ନାହିଁ । ତେଣୁ ମୁଁ ତାକୁ ଯେଉଁଠି ଦସ୍ତଖତ ମାରିବା ପାଇଁ କହେ ସେ ମାରେ । ସେ କ'ଣ କରିପାରିବ ତାହା ଚିନ୍ତା କରାଯାଉ ନାହିଁ । ତାକୁ କିଛି କରିବା ପାଇଁ ସୁଯୋଗ ଦେବା ପରିବର୍ତ୍ତେ ସେ କିଛି କରିପାରିବ ନାହିଁ ବୋଲି କହିବା ଦ୍ୱାରା ସମ୍ଯାରୀ ତା'ର ଆତ୍ମ ବିଶ୍ୱାସ ହରାଇ ବସିଛି ।

ସମ୍ଯାରୀ ତ ବାହାଘର ପରେ ଘର ଭିତରେ ରହି ବାହାର ଦୁନିଆଁ କଥା ଭୁଲି ଯାଇଛି ପ୍ରାୟ କହିଲେ ଚଳେ । ଏବେ ମଧ୍ୟ କୌଣସି ମିଟିଂ ହେଲେ ମଧ୍ୟ ତାକୁ ସୁଯୋଗ ଦିଆଯାଉ ନାହିଁ । ଗୋଟିଏ ପଞ୍ଚାୟତର ସରପଞ୍ଚ ହୋଇ ମଧ୍ୟ ସମ୍ଯାରୀ ତା'ର ସ୍ଥିତି ବିଷୟରେ ଅଜ୍ଞ । ବର୍ତ୍ତମାନ ସେ ସଂପୂର୍ଣ୍ଣ ଭାବେ ତା' ସ୍ୱାମୀ ଉପରେ ନିର୍ଭର କରିବାକୁ ବାଧ୍ୟ । ସରପଞ୍ଚ ହେବା ପରେ କ'ଣ କରିବାକୁ ଇଚ୍ଛା କରିଛନ୍ତି ବୋଲି ପଚାରିଲେ ସମ୍ଯାରୀ କହେ ମୁଁ କିଛି ଜାଣି ନାହିଁ । ସେ ଯାହା କହିବେ ତାହା ହେବ । କେଶବ କହେ, ଆଜି ପର୍ଯ୍ୟନ୍ତ ଚନ୍ଦ୍ରଗିରି ପଞ୍ଚାୟତରେ କେବଳ ଜନତା ହିଁ ଜିତିଛି, କଂଗ୍ରେସ କେବେ ହେଲେ ଜିତି ନାହିଁ । ଏଇଟା ପ୍ରଥମଥର ପାଇଁ ଆମେ ଜିତିଛୁ । ତେଣୁ ଏହା ପରେ

ଯେମିତି ଆମକୁ ଲୋକେ ପୁଣି ଥରେ ବାଛିବେ, ଆମେ ସେଭଳି କାମ କରିବାକୁ ଚାହୁଁଛୁ । ଲୋକମାନେ ଯେମିତି ଚାହିଁବେ ସେପରି କାମ ହେବ ।

ଏପରି କେତେ ଦିନ ଚାଲିବ ? ଦିନେ ନା ଦିନେ ତ ସମ୍ଧାରୀକୁ ପାଞ୍ଚଲୋକଙ୍କ ସାମ୍ନାରେ କଥା କହିବା ପାଇଁ ହେବ । ପଞ୍ଚାୟତରେ କେତେ ଟଙ୍କା ଆସୁଛି । ସେଥିପାଇଁ କି କି କାମ ହେବ ଏସବୁ ବିଷୟରେ ନା  ସମ୍ଧାରୀର ଜାଣିବାରେ ଆଗ୍ରହ ଅଛି ନା' ତା' ସ୍ୱାମୀ ତାକୁ ଜଣାଇବାକୁ ଉଚିତ୍ ଭାବୁଛି । କେଶବ କହେ ସେମାନେ କିଛି କରି ପାରିବେ ନାହିଁ ବୋଲି ତ ଯାହା ସ୍ୱାମୀ କଥା କହି ପାରୁଥିବ, ତାକୁ ସରପଞ୍ଚ ହିସାବରେ ବଛା ଯାଇଛି । ବର୍ତ୍ତମାନ ପରିସ୍ଥିତି ଏପରି ହେଲାଣି ଯେ, ଲୋକଙ୍କୁ ସରପଞ୍ଚ କିଏ ବୋଲି ପଚାରିଲେ, 'କେଶବ ମାଝୀ' ବୋଲି କହୁଛନ୍ତି । ସମ୍ଧାରୀର ସରପଞ୍ଚ ପଦବୀ କେବଳ କାଗଜ କଲମରେ ହିଁ ରହିଯାଇଛି । ଦେଖାଯାଉ ପାଞ୍ଚବର୍ଷ ଭିତରେ ସମ୍ଧାରୀ କେତେ ଆଗକୁ ବାହାରୁଛି ଓ କେଶବ ମାଝୀ ଏଥିପାଇଁ ତାକୁ କେତେ ସହଯୋଗ କରୁଛନ୍ତି ?

ଅଗଷ୍ଟ - ୧୯୯୭



# ଏକ ବ୍ୟତିକ୍ରମ: ବାଡ ମୁଦୁଲି

ଅତି ବେଶୀରେ ଋରି ଫୁଟ ଉଚ୍ଚତା ହେବ । ଡାହାଣ ପଟର ଗୋଟିଏ ହାତ ଓ ଗୋଟିଏ ଗୋଡ ବାଆଁ ପଟ ହାତ ଓ ଗୋଡ ତୁଳନାରେ ଛୋଟ । ଚାଲିବା ବେଳେ ଅଣ୍ଟା ଭାଙ୍ଗି ଭାଙ୍ଗି ଚାଲିଲା ପରି ଲାଗେ । ବୟସ ମାତ୍ର ୨୦ବର୍ଷ । ସେ ହେଲା ବାଡ ମୁଦୁଲି । କୋରାପୁଟ ଜିଲ୍ଲାର ଦଶମନ୍ତପୁର ବ୍ଲକ୍‌ର ବାଘଚେମା ଗାଁର ଝିଅ ସେ । ଏତେ କମ୍ ବୟସରେ ବହୁତ କିଛି କରିଛି ସେ, ନିଜ ପାଇଁ , ନିଜ ପରିବାର ପାଇଁ ଓ ସମାଜ ପାଇଁ । ସେଥିପାଇଁ ତ ସେ ଏକ ବ୍ୟତିକ୍ରମ ।

ତିନି ଭାଇଙ୍କ ପରେ ଗୋଟିଏ ବୋଲି ଭଉଣୀ । ବହୁତ ଗେହ୍ଲାରେ ବଢ଼ିଛି । ପିଲାଦିନେ ମାମୁଁଘରେ ରହି ପାଠ ପଢୁଥିଲି । ମାତ୍ର ମୋର ପଢ଼ିବାରେ ଆଗ୍ରହ ନଥିଲା । କାରଣ, ମୋ'ର ପଢ଼ିବା  ପରେ ଗାଁକୁ  ଫେରି ଆସଥିଲି ବହୁତ ଖୁସିରେ । ଏବେ କାହିଁକି ପାଠ ପଢ଼ାନାହିଁ ବୋଲି ଭାବିଲେ ଦୁଃଖ ଲାଗେ । କିନ୍ତୁ ମୁଁ ନିଜକୁ କେବେ ଅସହାୟ ଭାବିନାହିଁ । ନିଜ ଉପରେ ତା'ର ବିଶ୍ୱାସ ବହୁତ ।

ଶାରୀରିକ ଅକ୍ଷମ ହୋଇ ମଧ ଅଭ୍ୟାସ ହେତୁ ସେ ସବୁ କରି ପାରିଛି ।  ଯାହା କି ଜଣେ ସାଧାରଣ ଲୋକ କରିବା କଥା । ଗାଁ'ରେ ମା'ମାନଙ୍କୁ ଏକାଠି କରି ଗୋଟିଏ ସଞ୍ଚୟ ଦଳ ଓ ଗୋଟିଏ ମହିଳାମଣ୍ଡଳ ଗଢ଼ିଛି । ଏସବୁ କୋଉଁଠୁ ଶିଖିଲା ବୋଲି ପଚାରିଲେ କହେ 'ଅଗ୍ରଗାମୀ'ର ଦଶମନ୍ତପୁରରେ ହେଉଥିବା ତାଲିମ୍ ଓ କର୍ମଶାଳାରୁ ଏସବୁ ଶିଖିଛି । ସେଠାରେ  କେତେ ଭଲ କଥା କୁହାଯାଉଛି । ମୁଁ ସେଠାରୁ ଫେରି ଗାଁରେ ସବୁ କଥା ବୁଝାଉଛି । ମୋତେ ଗାଁ'ରେ ସବୁ ଲୋକ ଭଲ ପାଉଥିବାରୁ ମୋ କଥା ସମସ୍ତେ ଶୁଣନ୍ତି ।

ଶାରୀରିକ ବିକଳାଙ୍ଗ ହେଲେ ମଧ୍ୟ ମୋ ମନରେ କେବେ ଦୁଃଖ ହୁଏ ନାହିଁ । ବରଂ ମୋ ଭାଇମାନଙ୍କ ତୁଳନାରେ ମୁଁ ଅଧିକ କାମ କରିପାରେ ବୋଲି ଗର୍ବର ସହିତ ସେ କୁହେ । ବର୍ତ୍ତମାନ ସେ ନିଜେ ରୋଜଗାର କରି ତା'ପରିବାର ଚଳାଉଛି । ସରକାରଙ୍କର

ଆଇ.ଆର.ଡି.ପି. ଯୋଜନାରେ ବ୍ୟାଙ୍କରୁ ଋଣ ଆଣି ଗୋଟିଏ ଗାଈ କିଣିଛି । ସେହି ଗାଈରୁ ସେ ବର୍ତ୍ତମାନ ଦିନକୁ ୫୬ଟଙ୍କା ରୋଜଗାର କରୁଛି । ସେଥିରୁ ୨୦ଟଙ୍କା ଗାଈର ଖାଦ୍ୟ ଯିବା ପରେ ଦିନକୁ ୩୬ଟଙ୍କା ସେ ରୋଜଗାର କରୁଛି । ଗାଈର ଉପଯୁକ୍ତ ଯତ୍ନ ନେବା ଦ୍ୱାରା ତା' ଗାଈ ଦିନକୁ ୭ ଲିଟର କ୍ଷୀର ଦେଉଛି । ସେ କହେ, ଏବେ ମୋ ପରିବାର ଚଳିବାରେ କୌଣସି ଅସୁବିଧା ନାହିଁ । ମୋର ବିଶ୍ୱାସ ମୁଁ ଆଉଥରେ ଗୋଟିଏ ଗାଈ ଆଣି ତା'ର ଯତ୍ନ ନେଇପାରିବି । ତା' ଗାଁ'ର ସେ ଏକ ଆଦର୍ଶ ଯାହାକୁ ଅନୁକରଣ କରି ଅନ୍ୟମାନେ କିଛି ଶିଖିପାରିବେ ।

ସବୁଠୁ ଖୁସିର କଥା ଆଦିବାସୀ ପ୍ରଥା ଅନୁଯାୟୀ ବାଡର ଶାଶୁ ଘର ଲୋକ ମଦ ଡବା ନେଇ କନିଆ ଦେଖିବା ପାଇଁ ଆସିଥିଲେ । ବାଡ ସିଧା ମନା କରି ଦେଇଥିଲା ଆମଘରେ ମଦ ପଶି ପାରିବ ନାହିଁ । ସେମାନେ ମଦ ଧରି ଫେରି ଯାଇଥିଲେ । ଏବଂ ଦିନେ ବାଡକୁ କ୍ଷୀର ଦେବାକୁ ଯିବା ସମୟରେ ଅଧ ବାଟରୁ ଟାଣି ନେଇଥିଲେ । କିନ୍ତୁ ସେ ସେଠାରୁ ମଧ୍ୟ ଲୁଚି ପଳାଇ ଆସିଲା । ମୋତେ ଆମ ଆଦିବାସୀ ପରିବାରରେ ବାହାହେବା ପାଇଁ ଇଚ୍ଛା ନାହିଁ । କାରଣ ଆଦିବାସୀ ପରିବାରରେ ବାହା ହୋଇ ସାରିବା ପରେ ଅନ୍ୟ ଲୋକଙ୍କ ସହିତ ବସି କଥାବାର୍ତ୍ତା ହେବାକୁ ଦେବେ ନାହିଁ । ଗାଁରେ ବସି ମିଟିଂ କରିବାକୁ ଦେବେ ନାହିଁ । ବାହାରକୁ ଯିବାକୁ ଦେବେ ନାହିଁ । ତୁ ଆଦିବାସୀ ନୁହେଁ ବୋଲି ଘରଠାରୁ ଏତେ ଦୂରକୁ ଆସି ରହିଛୁ । ମୁଁ ମଧ୍ୟ ଆମ ଗାଁ ପାଖରେ ବାହା ହେବାକୁ ଚାହୁଁନି । ତା' କଥା ବାର୍ତ୍ତାରୁ ଲାଗୁନଥିଲା ଯେ ସେ ଗୋଟେ ଅପାଠୋଈ ଆଦିବାସୀ ଝିଅ ବୋଲି । ପ୍ରକୃତରେ ବାହାର ଲୋକଙ୍କ ସହିତ ମିଶି ସେ ବହୁତ ଉଚ୍ଚାଭିଳାଷୀ ହୋଇ ଯାଇଛି ।

ଭବିଷ୍ୟତରେ ଆଉ କ'ଣ କରିବାକୁ ଚାହେଁ ବୋଲି ପରିବାରୁ ସେ କହେ, ସରକାରଙ୍କ ଦ୍ୱାରା ଗାଁରେ ଗୋଟିଏ କେନାଲ ଖୋଳାଇବା ପାଇଁ ମୁଁ ସ୍ଥିର କରିଛି । ଏହା ଦ୍ୱାରା ସାରା ଗାଁଲୋକ ଚାଷ କରି ଭଲରେ ରହିବୁ । ଗାଁରେ ସମସ୍ତଙ୍କର କିପରି ଭଲ ଘର ହୋଇପାରିବ ସେଥିପାଇଁ ମଧ୍ୟ ମୁଁ ଚେଷ୍ଟା କରିବି । ଆମ ମହିଳାମଣ୍ଡଳ ପଞ୍ଜିକରଣ ହେବା ପରେ ଗାଁ ଲୋକଙ୍କ ସହିତ ମିଶି ସରକାରୀ ଜମିରେ ଫଳଗଛ ଲଗାଇବା ପାଇଁ ଭବିଷ୍ୟତ ଯୋଜନା କରିଛୁ । ତା' କଥାରୁ ଜଣାଗଲା ସେ ଏ ସବୁ ନିଶ୍ଚୟ କରିବ । କାରଣ ନିଜ ଉପରେ ତା'ର ସେଇ ବିଶ୍ୱାସ ରହିଛି । ଗୋଟିଏ ବିକଳାଙ୍ଗ ଅପାଠୋଈ ୨୦ବର୍ଷର ଆଦିବାସୀ ଝିଅର ମାନବିକତା ଓ ମହନୀୟତା କଥା ଶୁଣିଲେ ବିସ୍ମୟ ଲାଗେ ।

ଅଗଷ୍ଟ - ୧୯୯୭

# ବାସଚ୍ୟୁତ ହୋଇ ଟଙ୍କା ପାଇ ନଥିବା ମହିଳା: ଜେମା ହରିଜନ

କଳାହାଣ୍ଡି ଜିଲ୍ଲାର ଥୁଆମୁଳ ରାମପୁର ବ୍ଲକର ଗାଁଟିଏ । ନାମ ସରଟୁରଘାଟ । ବର୍ତ୍ତମାନ ତାହା ଇନ୍ଦ୍ରାବତୀ ବନ୍ଧର ରିଜରଭର ଭିତରେ । ସେହି ଗାଁରେ ଜନ୍ମନିଏ ମଙ୍ଗଳ ହରିଜନର ଏକମାତ୍ର ଝିଅ ଜେମା ହରିଜନ । ବାପା ମା'ଙ୍କର ଅନ୍ୟ କିଛି ପିଲାପିଲି ନହେବାରୁ ବାପା, ମା' ଅତି ଆଦରରେ ପିଲାଟିର ନାଁ ରଖିଥିଲେ ଜେମା । ପିଲାଦିନୁ ଜେମା ବହୁତ ଆଦରରେ ବଢ଼ି ଆସିଥିଲା । ଠିକ୍ ସମୟରେ ବାପା, ମା'ବର ଖୋଜି ବରମାଞ୍ଜିଗୁଡାର ଚୈତନ୍ୟ ହରିଜନ ସହିତ ଜେମାର ବିବାହ କରିଥିଲେ । ଜେମା ଏକମାତ୍ର ଝିଅ ହୋଇଥିବାରୁ ବାପା, ମା' ତା' ସ୍ୱାମୀକୁ ଘର ଜ୍ୱାଇଁ ଭାବରେ ରଖିଥିଲେ । ତେଣୁ ଅଳ୍ପଦିନ ଶାଶୁ ଘରେ ରହିବା ପରେ ଜେମା ତା' ସ୍ୱାମୀ ସହିତ ବାପ ଘରକୁ ଫେରି ଆସିଥିଲା । ବାପାର ସେମିତି କିଛି ଜମି ନ ଥିଲେ ମଧ୍ୟ କାମ ଦାମ ଭାଗ ଚାଷ କରି ସେମାନେ ଚଳି ଯାଉଥିଲେ । କିନ୍ତୁ ଯେତେବେଳେ ଇନ୍ଦ୍ରାବତୀ ବନ୍ଧ କରାଗଲା ସେତେବେଳେ ତା'ର ସ୍ୱାମୀ ତା' ଗାଁକୁ ପଳାଇଗଲା । ଏବଂ ସେଠାରେ ଜଣଙ୍କ ପାଖରେ ଗୋତି ରହିଥିଲା । ଚୈତନ୍ୟ ଗାଁକୁ ଫେରିବା ପରେ ଜାଣିଲା ଗାଁରେ ସର୍ଭେକାମ ସରିଯାଇଛି । କିନ୍ତୁ ତା'ର ଘର ସର୍ଭେ ହୋଇନାହିଁ । ଜାଣିବା ପରେ ପଚାରିବାରୁ ତା'ର ଦାଦା ଓ ବଡବାପାମାନେ ତା'ର ଗାଁ ଏଇଟା ନୁହେଁ, ସେ ଘରଜ୍ୱାଇଁ ରହିଛି ଏମିତି ବିଭିନ୍ନ କଥା କହି ସର୍ଭେ ଲୋକଙ୍କୁ ମନା କରିଦେଲେ । ତା'ର ସ୍ୱାମୀ ସେମାନଙ୍କୁ ପଚାରିବାରୁ ସେମାନେ ତାକୁ ବିଭିନ୍ନ କଥା କହି ଗାଳି ଗୁଲଜ କରିବାରୁ ଚୈତନ୍ୟ ଆଉ କିଛି କହିଲା ନାହିଁ ।

ଗାଁର ସମସ୍ତଙ୍କୁ ବନବାସୀ ଟଙ୍କା ମିଳିଲା । କିନ୍ତୁ ଜେମାକୁ କିଛି ମିଳିଲା ନାହିଁ । ଜେମାକୁ କିଛି ଟଙ୍କା ପଇସା ନ ଦେଇ ଘର ଛାଡିବାକୁ କହିବାରୁ ସେ ଗାଳିଗୁଲଜ କଲା

ଏବଂ ପରେ ପରେ ତା' ଦାଦା ଓ ବଡବାପାମାନେ ତାକୁ କହିଲେ, ତୋ ବାପାରତ କିଛି ଜମିବାଡି ନାହିଁ। କେବଳ ଘର ଖଣ୍ଡେ। ତେଣୁ ସେହି ଘର ପାଇଁ ୭୦ଟଙ୍କା ଦେଇଦେଲେ। ସମସ୍ତଙ୍କ ସହିତ ଜେମାକୁ ମଧ୍ୟ ଘର ଛାଡିବାକୁ ପଡିଲା। ସ୍ୱାମୀ ଓ ପିଲା ଚାରୋଟିଙ୍କ ସହ ଜେମା ଚାଲି ଆସିଲା ପାଡେପଦରର କଲୋନି ଘରକୁ। ତା' ଗାଁର ଅନ୍ୟକୌଣସି ଲୋକମାନେ ଯିଏ ଯୁଆଡେ ପାରିଲେ ଯାଇ ରହିଲେ। କିନ୍ତୁ ତା' ପାଖରେ ଘର ବାନ୍ଧିବାକୁ କୌଣସି ପଇସାପତ୍ର ନଥିବାରୁ ସେ ବାଧ୍ୟହୋଇ ସେହି କଲୋନୀ ଘରେ ରହିଲା। ଅଳ୍ପ କିଛି ଦିନ ରହିବା ପରେ ତା'ର ସ୍ୱାମୀ ତାକୁ ଛାଡି ତା' ଗାଁକୁ ପଳାଇଲା। ଜେମା ବହୁତ କଷ୍ଟ କରି କାମଦାମ କରି, ଛେଳିଚରାଇ ତା' ପିଲାଙ୍କୁ ପୋଷୁଥିଲା।

ଏତେ କଷ୍ଟ କଲା ପରେ ବି ଜେମା ହାରି ଯାଇ ନାହିଁ। ପିଲାଙ୍କ ପେଟରେ ଆହାର ମୁଠେ ଦେବାପାଇଁ ସଂଘର୍ଷ କରିଛି ନିଜ ସହିତ। ପାଡେପଦରରେ ରହୁଥିବା କଲୋନି ଘର ବର୍ଷା ହେବାରୁ ଭାଙ୍ଗିଗଲା। କ'ଣ କରିବ କ'ଣ ନାହିଁ ଏମିତି ଭାବିବା ସମୟରେ ଅଗ୍ରଗାମୀ ଅଫିସର୍ କର୍ମୀ ଭାଇମାନେ ଖାତୀଗୁଡା ଜୋନ ଅଫିସ୍‌ରେ କୁହାକୁହି କରି ବେଣାଖମାରରେ ଥିବା କଲୋନି ଘରେ ରଖାଇ ଦେଲେ। ସେହିଠାରେ ରହି ସେ ପ୍ରତିଦିନ ଡୁଡୁଙ୍ଗଚୁଆଁ ଗାଁକୁ ପାଖପାଖି ତିନି କି.ମି. ଆସି ସେହି ଗାଁରେ ଛେଳିଗୋରୁ ଚରାଏ। ବର୍ଷଶେଷରେ ତାକୁ କିଛି ଧାନ ଓ ମାଣ୍ଡିଆ ମିଳେ। ଏବଂ ପ୍ରତିଦିନ ସମସ୍ତେ କିଛିକିଛି ଖାଦ୍ୟ ମଧ୍ୟ ଦିଅନ୍ତି। ତାକୁ ଖାଇ ସେ ଓ ତା' ପିଲାମାନେ ବଞ୍ଚନ୍ତି। ତଥାପି ଜେମାର ଦୁଃଖ ସରିନାହିଁ। ତୃତୀୟ ଥର ପାଇଁ ମଧ୍ୟ ତାକୁ ଘର ଛାଡିବାକୁ ପଡିଛି। ଘର ଉପରେ ଟିଣ ଚାଦରକୁ ପଡିଥିବା ଖୋଲି ନେଇଯିବାରୁ ସେ ବାଧ୍ୟ ହୋଇ ପଳାଇ ଆସିଲା ଡୁଡୁଙ୍ଗଚୁଆଁ ଗ୍ରାମକୁ। ସେହି ଗାଁରେ ସେ କୁଡିଆଟିଏ କରି ରହିଲା। ଯେହେତୁ ସେ ସେହି ଗାଁର ଗଉଣିଆ ହିସାବରେ ରହିଛି ଏବଂ ଗାଁ ଲୋକ ତା'ର ଅବସ୍ଥା ସଂପର୍କରେ ଜାଣିଛନ୍ତି, ଗାଁର ପ୍ରତ୍ୟେକ ସୁବିଧା ସୁଯୋଗ କ୍ଷେତ୍ରରେ ସେମାନେ ତାକୁ ସଂପୃକ୍ତ କଲେ।

ରାତିସ୍କୁଲରେ ତା'ର ପିଲାଙ୍କୁ ପାଠ ପଢ଼ାଇବା ପାଇଁ କହିଛନ୍ତି। ଜେମା ମଧ୍ୟ ତା'ର ପିଲାଙ୍କୁ ରାତିସ୍କୁଲରେ ପାଠ ପଢ଼ାଉଛି। ଡୁଡୁଙ୍ଗଚୁଆଁ ଗାଁରେ ରହିବା ପରେ ଜେମାର ସ୍ୱାମୀ ପୁଣି ତା' ପାଖକୁ ଫେରି ଆସିଛି। ଏତେ ଦିନ କଷ୍ଟ ସହି ସେ ପିଲାଙ୍କୁ ଧରି ରହିଛି। ତଥାପି ତା' ମନରେ ରାଗ କି ଅଭିମାନ ନାହିଁ ସ୍ୱାମୀ ଉପରେ। ଖୁସିରେ ପୁଣି ସ୍ୱାମୀକୁ ନେଇ ରହିଛି। ସ୍ୱାମୀ ସ୍ତ୍ରୀ ଦୁଇଜଣ ମିଶି ଛେଳି ଗୋରୁ ଚରାଉଛନ୍ତି। ସମୟ ସମୟରେ ଜେମା ଗାଁରେ ଭୁତି ମଧ୍ୟ କରେ। ପ୍ରତିଦିନ ରାତିରେ ଖାଦ୍ୟ ନେଇ ଜେମା ଅନ୍ଧାରରେ ଏକୁଟିଆ ଫେରିବାଟା ଲୋକଙ୍କୁ ଅସହ୍ୟ ହେଲା। ତେଣୁ ସମସ୍ତେ ମିଶି ଗାଁରେ

ଜେମାକୁ ଖଣ୍ଡିଏ ଜାଗା ଦେଲେ ଏବଂ ସେଠାରେ ରହିବାକୁ କହିଲେ । ତେଣୁ ଜେମା ଏବେ ଉଠିଆସି ସାହିରେ ଘର କରି ରହିଛି । ତୁଡୁଙ୍ଗଚୁଆଁରେ ଅଗ୍ରଗାମୀ ତରଫରୁ ହୋଇଥିବା ଜଳଛାୟା ପ୍ରକଳ୍ପରେ ମଧ୍ୟ ଜେମା ସାମିଲ ହୋଇଛି । ସମସ୍ତଙ୍କ ପରି ସେ ମଧ୍ୟ ସେଠାରେ ଗୋଟିଏ ଏକର ଜମି ପାଇଛି । ସେଥିରୁ କିଛି କିଛି କୋଶଳା, ମାଣ୍ଡିଆ ପାଉଛି । ଗାଁରୁ ମଧ ଧାନ, ମାଣ୍ଡିଆ ମିଳୁଛି । ଜେମାର ବଡପୁଅକୁ ଜଳଛାୟା ପ୍ରକାଳ୍ପରେ ଜଗୁଆଳି ଭାବରେ ରଖାଯାଇଛି । ପିଲାଙ୍କ ସହ ଆରାମରେ ରହୁଥିଲେ ମଧ୍ୟ ସେ ଆଜି ପାଗଳୀ । ପୁରୁଣା ଦିନର କଥା ଦିନର କଷ୍ଟ ବାରମ୍ବାର ଘର ଛାଡିବା ଏସବୁ ତା' ପାଇଁ ଏକ ଅଭୁଲା କାହାଣୀ ।

ସରକାରୀ ହେଉ ବା ବେସରକାରୀ ହେଉ ଯେଉଁ ଲୋକଙ୍କୁ ଦେଖିଲେ କହେ, ଆଜ୍ଞା ସମସ୍ତଙ୍କୁ ଟଙ୍କା ମିଳୁଛି, ମୋତେ କାହିଁକି ମିଳୁନାହିଁ । ମୋତେ ଗୋଟେ ଏକର ଜାଗା ଦିଅ, ଗୋଟେ ଘର କରି ଦିଅ । ଯିଏ ଶୁଣୁଛି ସେ କହୁଛି ପାଗଳୀଟାଏ । ଥର ଥର କରି ତିନି ଥର ଘର ଛାଡି ଯିବାକୁ ପଡିଛି । ସ୍ୱାମୀ ଛାଡି ଚାଲିଯିବା ପରେ ଚାରୋଟି ପିଲାଙ୍କୁ ଆହାର ଦେବାର ଚିନ୍ତା । ବାପାର ପୁଅ ନାହିଁ ବୋଲି କ'ଣ ଟଙ୍କା ପାଇବାର ଅଧିକାର ତାର ନାହିଁ । ବିଭିନ୍ନ ସମସ୍ୟାକୁ ସାମ୍ନା କରି କରି ସେ ଆଜି ପାଗଳ । କିନ୍ତୁ କିଏ କାହିଁ ପାରିବ ତା'ର ଏହି ପାଗଳାମୀ ପାଇଁ ଦାୟୀ କିଏ, ଗାଁ, ସମାଜ ନା ସେ ନିଜେ ?.....

ମାର୍ଚ୍ଚ - ୧୯୯୮



# ସୁନାଧର ଜାନୀ

ମୋ ବାପା ମଦ ପିଇ ମା'କୁ ମାରେ । ମୁଁ ମନା କଲେ ମୋତେ ମଧ୍ୟ ମାରେ । ଫଳରେ ଆମ ଘରେ ଅଶାନ୍ତି ହୁଏ । ଆଦିବାସୀ ଅଞ୍ଚଳରେ ପ୍ରାୟ ସମସ୍ତଙ୍କ ଘରେ ଏମିତି ହୁଏ । ମୋତେ ଜମା ଭଲ ଲାଗେ ନାହିଁ । ତେଣୁ ଯେତେ ଅସୁବିଧା ହେଲେ ମଧ୍ୟ ମୁଁ ବହୁତ ପାଠ ପଢ଼ିବି । ଯେଉଁମାନେ ମଦ ପିଇ ଗଣ୍ଡଗୋଳ କରିବେ, ସେମାନଙ୍କୁ ବାନ୍ଧିନେବି । ତା'ଛଡ଼ା ପୁଲିସ୍ ହେଲେ ବହୁତ ପଇସା ପାଇବି । ଲୋକମାନଙ୍କୁ ବାନ୍ଧିନେଲେ ସେମାନଙ୍କୁ ଛାଡ଼ିବା ପାଇଁ ସେମାନେ ଡାବୁ (ଟଙ୍କା) ଦେବେ । ମୁଁ ଏସବୁ ଝାଲିଆଗୁଡ଼ାରେ ଦେଖିଛି । ଏ ହେଉଛି ସାତ ବର୍ଷର ପିଲା ସୁନାଧର ଜାନୀର ଅନ୍ତରର କଥା । ବାପା, ଦାରିବୀ ଜାନୀ ଓ ମା' ରାଇମତୀର ଏକମାତ୍ର ସନ୍ତାନ ସେ । ଏବେ ଜାନିଗୁଡ଼ା ଆଶ୍ରମ ସ୍କୁଲରେ ତୃତୀୟ ଶ୍ରେଣୀରେ ପାଠ ପଢୁଛି । ଆଶ୍ରମ ସ୍କୁଲ କେମିତି ଲାଗୁଛି ବୋଲି ପଚାରିଲେ କୁହେ, ଭାତିଆ ମିଳୁଛି ବୋଲି ମୋତେ ଆଶ୍ରମ ସ୍କୁଲ ଭଲ ଲାଗୁଛି । ସେଠାରେ ବିଜ୍ଞାନ, ଗଣିତ, ସାହିତ୍ୟ, ସାମାଜିକ, ପଣିକିଆ ଆଦି ପାଠ ପଢ଼ା ହେଉଛି । କିନ୍ତୁ ସେ ସବୁ ଓଡ଼ିଆରେ ପଢ଼ା ହେଉଥିବାରୁ ବୁଝିବାରେ ଅସୁବିଧା ହେଉଛି । ଆଗରୁ ଦ୍ୱିତୀୟ ଶ୍ରେଣୀ ପର୍ଯ୍ୟନ୍ତ ଆମ ଗାଁ ରାତିସ୍କୁଲରେ ପଢୁଥିଲି । ସେତେବେଳେ ଘରୁ ଖାଇକରି ଯାଇ ରାତିସ୍କୁଲରେ ଗୀତ, ଗପ, ନାଚ ମାଧ୍ୟମରେ ପଢୁଥିଲୁ । ବାପାର ଇଛା ମୁଁ ଆଶ୍ରମ ସ୍କୁଲରେ ପଢ଼େ । ମୁଁ ସ୍କୁଲ ନଗଲେ ସେ ମୋତେ ମାରେ । ଥରେ ମୁଁ ସ୍କୁଲରୁ ଚାଲିଆସି ଛେଳି ଚରାଇବାକୁ ଯାଇଥିଲି । ବାପା ଜାଣିପାରି ମୋତେ ମାରିଲା । ପରେ ନିଜେ ନେଇ ଆଶ୍ରମ ସ୍କୁଲରେ ଛାଡ଼ିଦେଇ ଆସିଲା ।

ଏବେ ଭାବୁଛି କଷ୍ଟ ହେଲେ ମଧ୍ୟ ସେଠାରେ ରହି ପାଠ ପଢ଼ିବି । କଷ୍ଟ କରି କାହିଁକି ଆଶ୍ରମ ସ୍କୁଲରେ ପାଠ ପଢ଼ିବ, ଘରେ ରହି କ'ଣ ପାଠ ପଢ଼ିହେବ ନାହିଁ ବୋଲି ପଚାରିଲେ କହେ, ପାଠ ପଢ଼ି ହେବ ସତ କିନ୍ତୁ ନଜାଣିଲାଟା କିଏ

କହିଦେବ ? ଯଦି ରାତିସ୍କୁଲରେ ବହୁତ ପଢ଼ିବାର ସୁଯୋଗ ଥାଆନ୍ତା, ତେବେ ମୁଁ ଆମ ଗାଁ ସ୍କୁଲରେ ହିଁ ପଢ଼ି ଥାଆନ୍ତି । ତା'ଛଡ଼ା ରାତିସ୍କୁଲରେ ଜାମା, ପ୍ୟାଣ୍ଟ ଓ ଭାତିଆ ମିଳୁ ନାହିଁ । ପାଠ ପଢ଼ିଲେ ପୁଲିସ୍ ହେବି । ନପଢ଼ିଲେ କୁଲି କାମ କରିବାକୁ ହେବ । ବଡ଼ ବଡ଼ ପଥରମାନ ବୋହିବାକୁ ହେବ । ଯେମିତି ଗାଁର ଅନ୍ୟ ପିଲାମାନେ କରୁଛନ୍ତି । ବହୁତ କାମ କଲେ ଯାଇ ପୁଣି ୩୦ ଟଙ୍କା ମିଳିବ । ମୁଁ କିନ୍ତୁ ପାଠ ପଢ଼ି ପୁଲିସ୍ ହେବି । କାରଣ ପୁଲିସ୍ ହେଲେ ବହୁତ ପଇସା ।

ଏବେଠାରୁ ପୁଲିସ୍ ହୋଇ ଟଙ୍କା ରୋଜଗାର କରିବାର ନିଶା ସୁନାଧର ମୁଣ୍ଡରେ । ତାକୁ ଦୃଷ୍ଟିରେ ରଖି ସେ ଘରୁ ବାହାରେ ରହି ପାଠ ପଢୁଛି ଓ ଏଥିପାଇଁ ତାକୁ ଯେତେ କଷ୍ଟ ହେଲେ ମଧ୍ୟ ସେ ପାଠ ପଢ଼ିବ, ମଦ ବନ୍ଦ କରିବ । ଆଦିବାସୀ ଅଞ୍ଚଳରେ ସବୁଠାରୁ ବଡ଼ ସମସ୍ୟା ସମାଧାନ କରିବ । ଏଥିପାଇଁ ତାକୁ ସମାଜ କେତେ ସହଯୋଗ କରୁଛି ଦେଖାଯାଉ ।

ମାର୍ଚ୍ଚ - ୧୯୯୮



# ମଞ୍ଜରୀ ନାଏକ

*କିଛି ସ୍ୱପ୍ନ, କିଛି ଆଶା, କିଛି ଉଚ୍ଚାଭିଳାଷ, ଶିକ୍ଷା ଓ ନିଜର ଚେଷ୍ଟା, ଏସବୁ ହିଁ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାର ମାଧ୍ୟମ । ଏହାକୁ ଠିକ୍ ଉପାୟରେ ବିନିଯୋଗ କରି ଆଜି ନିଜ ପିଲା ଦିନର ସ୍ୱପ୍ନକୁ ସଫଳ କରିଛନ୍ତି ମଞ୍ଜରୀ ନାଏକ । ମୟୂରଭଂଜ ଜିଲ୍ଲାର ଶୁକ୍ରୁଳୀ ବ୍ଲକର ଏକ ଆଦିବାସୀ ଚାଷୀ ପରିବାରର ଝିଅ । ୧୯୯୫ ମସିହାରେ ବାରିପଦା ଏମ୍.ପି.ସି. ମହାବିଦ୍ୟାଳୟରୁ ବି.ଏ. ପାସ୍ କରି ବର୍ତ୍ତମାନ ସେ ଶୁକ୍ରୁଳୀ ବ୍ଲକ୍‌ର ଭାଇସ୍-ଚେୟାରମ୍ୟାନ । ତାଙ୍କ ସହିତ କେତୋଟି ମୁହୂର୍ତ୍ତ ।*

**ଆରୋହଣ:** ଆପଣ ପଞ୍ଚାୟତ ନିର୍ବାଚନ କାହିଁକି ଲଢ଼ିଲେ ?

**ମଞ୍ଜରୀ ନାଏକ :** ଛୁଆବେଳୁ ଏଥିପ୍ରତି ଆଗ୍ରହ ଥିଲା । ଏହାଛଡ଼ା ମୁଁ ଭାବିଲି ଲୋକଙ୍କ ପାଇଁ କିଛି କରିବି ଯାହାଦ୍ୱାରା କି ମୁଁ ଲୋକମାନଙ୍କୁ ଓ ଲୋକମାନେ ମୋତେ ଜାଣି ପାରିବେ ।

**ଆରୋହଣ :** ଏଥିପାଇଁ କିଏ ଆପଣଙ୍କୁ ପ୍ରବର୍ତ୍ତାଇ ଥିଲେ ?

**ମଞ୍ଜରୀ ନାଏକ :** ବର୍ତ୍ତମାନ ଆମ ବ୍ଲକର ଯିଏ ଚେୟାରମ୍ୟାନ୍ ଅଛନ୍ତି, ସତୀଶ ସାହୁ ସେ ମୋତେ ଏଥିପାଇଁ କହିଥିଲେ । ତା'ଛଡ଼ା ମୋର ନିଜର ମଧ୍ୟ ଆଗ୍ରହ ଥିଲା । ସେଥିପାଇଁ ମୁଁ ସ୍ୱାଧୀନ ପ୍ରାର୍ଥୀ ଭାବେ ନିର୍ବାଚନ ଲଢ଼ିଲି ।

**ଆରୋହଣ :** ଏହି ଆଗ୍ରହ କ'ଣ ଆପଣଙ୍କର ସ୍କୁଲ ବା କଲେଜ ପଢ଼ିବା ସମୟରୁ ଥିଲା ?

**ମଞ୍ଜରୀ ନାଏକ :** ମୁଁ ଯେତେବେଳେ ଛୋଟ ଥିଲି, ସେତେବେଳେ ଆମ ଗାଁର ଜଣେ ରାଜନୀତି କରୁଥିବା ଲୋକ ଗାଡ଼ି ଚଢୁଥିଲା । ତେଣୁ ମୋର ମଧ୍ୟ ଧାରଣା ଥିଲା ଯେ, ଯଦି ମୁଁ ରାଜନୀତି କରେ, ତେବେ ଗାଡ଼ି ଚଢ଼ି ପାରିବି । କିନ୍ତୁ ବୟସ ବଢ଼ିବା ସଂଗେସଂଗେ ଚିନ୍ତାଧାରା ମଧ୍ୟ ପରିବର୍ତ୍ତନ ହେଲା । ସ୍କୁଲରେ ପଢୁଥିବା ସମୟରେ ମଧ୍ୟ ମୁଁ କେତେବେଳେ ବଗିଚା ମନ୍ତ୍ରୀ, କେତେବେଳେ ଖେଳ ମନ୍ତ୍ରୀ ତ କେତେବେଳେ

ରୋଷେଇ ମନ୍ତ୍ରୀ ହୋଇଥିଲି । ଏ ସବୁ କାମକୁ ସୁରୁଖୁରୁରେ ଚଳାଉଥିଲି । ତେଣୁ ନିଜର ଆତ୍ମବିଶ୍ୱାସ ବଢ଼ିଥିଲା । ସବୁବେଳେ କୌଣସି ଜିନିଷର ନେତୃତ୍ୱ ନେଇ କାମ କରିବାକୁ ମୋତେ ଭଲ ଲାଗୁଥିଲା ।

ଆରୋହଣ : ଆପଣ କିପରି ନିର୍ବାଚନ ଲଢ଼ିଲେ, ଏଥିପାଇଁ ଆପଣଙ୍କୁ କ'ଣ କରିବାକୁ ପଡ଼ିଛି ?

ମଞ୍ଜରୀ ନାଏକ : ଏଥିପାଇଁ ମୋତେ ବହୁତ ଖଟିବାକୁ ପଡ଼ିଛି । ଖାଇବାକୁ ମଧ୍ୟ ସେ ସମୟରେ ମୋତେ ସମୟ ନଥାଏ । ଅଧିକାଂଶ ଦିନ ଉପାସରେ ରହିଛି । ସବୁ ଗାଁ, ବୁଲିଛି । କିନ୍ତୁ ଏହା ଦ୍ୱାରା ମୋତେ ଅନେକ ଲୋକ ଜାଣିଛନ୍ତି । ମୁଁ ମଧ୍ୟ ଅନେକ ଲୋକଙ୍କ ସଂସ୍ପର୍ଶରେ ଆସିଛି । ପ୍ରାୟ ୧୦/୧୨ ହଜାର ଟଙ୍କା ମଧ୍ୟ ଖର୍ଚ୍ଚ କରିବାକୁ ପଡ଼ିଛି । ଖୋଲାଖୋଲି ଭାବେ କହିବାକୁ ଗଲେ ରାଜନୀତିରେ ତ ଏଇଟା ନିଶ୍ଚିତ କଥା । ମୁଁ ପ୍ରାୟ ଗୋଟେ ସାହି ପିଛା ୫୦୦ ଟଙ୍କା ବାଣ୍ଟିଛି ।

ଆରୋହଣ : ଜିତିବା ପାଇଁ କୌଣସି ସମସ୍ୟାର ସମ୍ମୁଖୀନ ହୋଇଛନ୍ତି କି ?

ମଞ୍ଜରୀ ନାଏକ : ସେମିତି କୌଣସି ସମସ୍ୟାର ସମ୍ମୁଖୀନ ମୁଁ ହୋଇନାହିଁ । କିନ୍ତୁ ଯେତେବେଳେ ଭାଇସ୍-ଚେୟାରମ୍ୟାନ୍ ପାଇଁ ଭୋଟ୍ ହେଲା, ସେତେବେଳେ ମୋର ଆଉ ଦୁଇଜଣ ପ୍ରତିଦ୍ୱନ୍ଦୀ ଥିଲେ । ସେମାନେ ମୋତେ ବାଧ୍ୟ କରୁଥିଲେ ଏତେକମ୍ ବୟସରୁ ଭାଇସ୍-ଚେୟାରମ୍ୟାନ୍ ପଦରେ ଠିଆ ନହେବା ପାଇଁ । କିନ୍ତୁ ମୁଁ ଓହରି ଯାଇନଥିଲି । ମୋର ଲୋକ ସଂପର୍କ ଭଲ ଥିବାରୁ ମୋତେ ସେମିତି କୌଣସି ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିନାହିଁ ।

**ଆରୋହଣ :** ଆପଣ କେତେ ଭୋଟରେ ଜିତିଛନ୍ତି ?

**ମଞ୍ଜରୀ ନାଏକ :** ମୁଁ ୧୯୯୧ଟି ଭୋଟରେ ଜିତିଛି । ଭାରତ ସ୍ୱାଧୀନ ହେବାର ୫୦ ବର୍ଷ ମଧ୍ୟରେ ଆମ ପଞ୍ଚାୟତରୁ ଆଜିପର୍ଯ୍ୟନ୍ତ କେହି ଏତେ ସଂଖ୍ୟାରେ ଭୋଟ ପାଇ ଜିତିନାହିଁ । ପ୍ରତି ବୁଥ୍‌ରେ ମୁ ୧୦୦ରୁ ଅଧିକ ଭୋଟ୍ ପାଇଛି । ଏଥିପାଇଁ ମୋତେ ବହୁତ ସହଯୋଗ ମିଳିଛି ଲୋକଙ୍କଠାରୁ ।

**ଆରୋହଣ :** ଜିତିବା ଖବର ଶୁଣିବା ପରେ ଆପଣ କ'ଣ ଅନୁଭବ କରିଥିଲେ ?

**ମଞ୍ଜରୀ ନାଏକ :** ଭୋଟ୍ ଗଣତିର ପୂର୍ବ ଦିନ ମକର ସଂକ୍ରାନ୍ତି ଥାଏ । ଯାହାକି ଆମ ଏ ଅଞ୍ଚଳର ଆଦିବାସୀଙ୍କର ବଡ଼ ପର୍ବ । କିନ୍ତୁ ମୁଁ ସେଦିନ କିଛି ଖାଇ ନଥାଏ । ନିର୍ବାଚନ ବ୍ୟତୀତ ମୋ ମୁଣ୍ଡରେ ଆଉ କିଛି ପଶୁ ନଥାଏ । ଯେତେବେଳେ ମୁଁ ଜିତିବାର ଖବର ପାଇଲି, ସେତେବେଳେ ମୋତେ ଯେତେ ଖୁସି ଲାଗିଛି, ତାହା କେବଳ ମୁଁ ହିଁ ଜାଣିଛି । ଖୁସିରେ ମୁଁ ଓ ମୋର ସାନ ଭାଇ କାନ୍ଦି ପକାଇଲୁ ।

**ଆରୋହଣ :** ଭାଇସ୍-ଚେୟାରମ୍ୟାନ୍ ହେବା ପରେ ଆପଣ ଲୋକଙ୍କ ପାଇଁ କ'ଣ ସବୁ କରିଛନ୍ତି ?

**ମଞ୍ଜରୀ ନାଏକ :** ତଳଗାଁରେ ପୋଖରୀ, ଚରମ୍ପେଇରେ ରାସ୍ତା ଓ ସ୍କୁଲ ଘର, ସାରୁବିଲ ଗାଁରେ ରାସ୍ତା, ଚତୁରାଞ୍ଜଳୀ ଗାଁରେ କୂଅର ଚାନ୍ଦିନୀ, ଇନ୍ଦିରା ଆବାସ ଯୋଜନାରେ ତଳଗାଁରେ ଦୁଇଜଣଙ୍କ ପାଇଁ, ସାରୁବିଲରେ ଜଣେ ଓ ଧାଡ଼ିପାଣିର ଜଣେ ଲୋକଙ୍କ ପାଇଁ ଘର, ଚରମ୍ପେଇ ଓ ଚତୁରାଞ୍ଜଳୀ ସ୍କୁଲର ଟାଇଲ ପଡ଼ିଛି । ତଳଗାଁରେ ଆଉ ଗୋଟିଏ ମାଟି ଓ ମୋରମ ରାସ୍ତା କରିଛି । ମୁଁ ନିଜେ ଲୋକଙ୍କ ସଂସ୍ପର୍ଶରେ ଆସିଛି । ତେଣୁ ଯେଉଁଠି ଯାହା ଦରକାର, ସେ ସବୁ ମୁଁ ମୋ ସ୍ତରରେ କରିବା ପାଇଁ ଚେଷ୍ଟା କରୁଛି ।

**ଆରୋହଣ :** ଜଣେ ଝିଅପିଲା ହିସାବରେ ଆପଣ ସ୍ତ୍ରୀଲୋକଙ୍କ ପାଇଁ କ'ଣ କରିଛନ୍ତି ?

**ମଞ୍ଜରୀ ନାଏକ :** ମୁଁ ସମସ୍ତଙ୍କ ପାଇଁ କାମ କରିବାକୁ ନିର୍ବାଚିତ ହୋଇଛି । ଆଜିପର୍ଯ୍ୟନ୍ତ ସେମିତି କେବେ ଭାବିନାହିଁ ଯେ ଏଇଟା ସ୍ତ୍ରୀଲୋକ ବା ଏଇଟା ପୁରୁଷ ଲୋକଙ୍କ କାମ । ତଥାପି ଏ ପ୍ରଶ୍ନର ଉତ୍ତର ମୁଁ କହିବି ବିଧବା ଭତ୍ତା, ବାର୍ଦ୍ଧକ୍ୟ ଭତ୍ତା, ମାତୃମଙ୍ଗଳ ଯୋଜନାରେ ସେମାନଙ୍କର ପ୍ରାପ୍ୟ ପାଇବାରେ ମୁଁ ସେମାନଙ୍କୁ ସାହାଯ୍ୟ କରିଛି । ଆଜି ପର୍ଯ୍ୟନ୍ତ କୌଣସି ସ୍ତ୍ରୀ ଲୋକଙ୍କୁ ଏଥିପାଇଁ ନିରାଶ କରିନାହିଁ ।

**ଆରୋହଣ :** ଆପଣ ଜଣେ ଭାଇସ୍-ଚେୟାରମ୍ୟାନ ହିସାବରେ ଯାହା ଚାହୁଁଛନ୍ତି, କରିପାରୁଛନ୍ତି କିମ୍ୱା ଏଥିପାଇଁ ଆପଣଙ୍କୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଛ କି ?

**ମଞ୍ଜରୀ ନାଏକ :** ଆଜି ପର୍ଯ୍ୟନ୍ତ ମୋତେ କାମ କ୍ଷେତ୍ରରେ ସଂପୂର୍ଣ୍ଣ ସହଯୋଗ ମିଳିଛି । ସେମିତି କୌଣସି ସମସ୍ୟାର ସମ୍ମୁଖୀନ ମୁଁ ଆଜି ପର୍ଯ୍ୟନ୍ତ ହୋଇନାହିଁ ।

**ଆରୋହଣ :** ଲୋକଙ୍କଠାରୁ କେଉଁ ପ୍ରକାରର ସାହାଯ୍ୟ ପାଇଛନ୍ତି ?

**ମଞ୍ଜରୀ ନାଏକ :** ଆମ ରାଜନୀତିଆ ଲୋକଙ୍କ ପାଇଁ ତ ଲୋକମାନେ ହିଁ ସବୁଠାରୁ ବଡ଼ ଅସ୍ତ୍ର । ଏଇ ଏକବର୍ଷ ମଧ୍ୟରେ ମୁଁ ସେମାନଙ୍କଠାରୁ ପୂର୍ଣ୍ଣ ସମର୍ଥନ ପାଇଛି । ସେମାନେ ହିଁ ମୋତେ ଆଜି ବିପୁଳ ସଂଖ୍ୟାରେ ଭୋଟ ଦେଇ ଜିତାଇଛନ୍ତି । ସେଥିପାଇଁ ମୁଁ ସେମାନଙ୍କ ପାଖରେ କୃତଜ୍ଞ ।

**ଆରୋହଣ :** ରାଜନୈତିକ ଦଳଠାରୁ ଆପଣ କେଉଁପ୍ରକାରର ସହଯୋଗ ପାଇଛନ୍ତି ?

**ମଞ୍ଜରୀ ନାଏକ :** ନିର୍ବାଚନ ସମୟରେ ମୋତେ ପ୍ରାୟ ସବୁଦଳ ଟଙ୍କା ସହିତ ଅନ୍ୟ ସବୁ ପ୍ରକାରର ସହଯୋଗ କରିଛନ୍ତି । ସେତେବେଳେ ମୁଁ ସ୍ୱାଧୀନ ପ୍ରାର୍ଥୀ ଭାବେ ନିର୍ବାଚନ ଲଢୁଥିଲି । କିନ୍ତୁ ବର୍ତ୍ତମାନ ମୁଁ କଂଗ୍ରେସରେ ଯୋଗ ଦେଇଛି ।

**ଆରୋହଣ :** ଜଣେ ଝିଅ ପିଲା ହିସାବରେ ଆପଣ କେଉଁ ପ୍ରକାର ସମସ୍ୟାର ସମ୍ମୁଖୀନ ହୋଇଛନ୍ତି ?

**ମଞ୍ଜରୀ ନାଏକ :** ମୁଁ କଲେଜରେ ପଢ଼ିବାଠାରୁ ଆଜି ପର୍ଯ୍ୟନ୍ତ କୌଣସି ବାହାର ଲୋକଙ୍କଠାରୁ କୌଣସି ଖରାପ ମନ୍ତବ୍ୟ ଶୁଣିନାହିଁ । ମୋ ବାପା ଓ ମା' ମୋତେ ତାଙ୍କର ପୁଅ ବୋଲି ଭାବନ୍ତି । ଆମ ଗାଁ ଲୋକମାନେ କହନ୍ତି, "ଆଜିକାଲି ସମାଜରେ ସମସ୍ତେ ମଞ୍ଜରୀ ପରି ହେବା ଉଚିତ୍ ।" ମୋ ପରିବାର, ମୋ ସାଙ୍ଗସାଥୀ ଓ ମୋ ଗାଁ ଲୋକଙ୍କର ଆଶୀର୍ବାଦ ଓ ଶୁଭେଚ୍ଛା ମୋ ସହ ରହି ଆସିଛି । ଏହା ବ୍ୟତୀତ ମୋ ନିଜ ଉପରେ ମୋର ଆତ୍ମବିଶ୍ୱାସ ରହିଛି ।

**ଆରୋହଣ :** ଏହାପରେ ଆପଣଙ୍କ ପରବର୍ତ୍ତୀ ଯୋଜନା କ'ଣ ହେବ ?

**ମଞ୍ଜରୀ ନାଏକ :** ଏହା ପରେ ମୁଁ ଏମ୍.ଏଲ୍.ଏ. ପଦ ପାଇଁ ନିର୍ବାଚନ ଲଢ଼ିବି ବୋଲି ଭାବିଛି । ଆମ ଅଞ୍ଚଳରୁ ସୁଶୀଳା ତିରିଆ ଯେପରି ଲୋକସଭାରେ ଭାଷଣ ଦେଉଛନ୍ତି, ମୋର ମଧ୍ୟ ସେହିପରି ଲୋକସଭାରେ ଭାଷଣ ଦେବାପାଇଁ ବହୁତ ଇଚ୍ଛା ।

**ଆରୋହଣ :** ଅପଣଙ୍କ ମତରେ ଆମ ଦେଶ ପାଇଁ କେଉଁ ଦଳ ସବୁଠାରୁ ଭଲ, କ'ଣ ପାଇଁ ?

**ମଞ୍ଜରୀ ନାଏକ :** ମୋ ମତରେ ଆମ ଦେଶ ପାଇଁ କଂଗ୍ରେସ ହିଁ ସବୁଠାରୁ ଭଲ । କାରଣ ଗୋଟିଏ ବର୍ଷରେ ତିନି ତିନୋଟି ସରକାର ଭାଙ୍ଗିବା ଅନ୍ୟ ଦଳମାନଙ୍କ ଅପାରଗତା ବ୍ୟତୀତ ଆଉ କ'ଣ ହୋଇପାରେ । ତେଣୁ ମୋ ମତରେ କଂଗ୍ରେସ ହିଁ କେବଳ ସ୍ଥାୟୀ ସରକାର ଗଠନ କରିପାରିବ ।

ଜୁନ୍ - ୧୯୯୮



# ସରପଞ୍ଚ ନରସିଂହ ସାଉନ୍ତା

## (ପରିବର୍ତ୍ତନର ନୂଆ ଦିଗ)

*କାଶୀପୁର ବ୍ଲକର ଡଙ୍ଗାସିଲ ପଞ୍ଚାୟତର ସରପଞ୍ଚ ନରସିଂ ସାଉନ୍ତାଙ୍କ ସହିତ କେତୋଟି ମୁହୂର୍ତ୍ତ ।*

**ଆରୋହଣ :** ଆପଣଙ୍କ ନାମ ଓ ଗାଁ ?

**ନରସିଂ ସାଉନ୍ତା :** ମୋର ନାମ ନରସିଂ ସାଉନ୍ତା ଓ ଗ୍ରାମ ଡ଼ଙ୍ଗାସିଲ ପଞ୍ଚାୟତର ରେଙ୍ଗଣାସିଲରେ । ମୁଁ ବର୍ତ୍ତମାନ ଡଙ୍ଗାସିଲ ପଞ୍ଚାୟତର ସରପଞ୍ଚ ଅଛି ।

**ଆରୋହଣ :** ଆପଣ କେବେ ନିର୍ବାଚିତ ହେଲେ ଓ ନିର୍ବାଚନରେ କେତେ ଟଙ୍କା ଖର୍ଚ୍ଚ କରିଛନ୍ତି ?

**ନରସିଂ ସାଉନ୍ତା :** ମୁଁ ୧୯୯୭ ମସିହା ଜାନୁଆରୀ ୧୩ ତାରିଖରେ ସରପଞ୍ଚ ହେଲି । ନିର୍ବାଚନରେ ମୁଁ ସମୁଦାୟ ୫୦୦୦ ଟଙ୍କା ଖର୍ଚ୍ଚ କରିଛି । ଯଦିଓ ମୁଁ ଜନତା ଦଳରୁ ନିର୍ବାଚିତ ହୋଇଚି, ନିର୍ବାଚନରେ କୌଣସି ଦଳଠାରୁ ସାହାଯ୍ୟ ନେଇନାହିଁ । ମୁଁ ନିର୍ବାଚନ ପ୍ରଚାର ସମୟରେ ଲୋକମାନଙ୍କୁ ଖୋଲାଖୋଲି ଭାବେ କହିଛି, ଯଦି ତୁମେମାନେ ଭାବୁଛ ଯେ, ତୁମମାନଙ୍କ ପାଇଁ କିଛି କାମ କରିପାରିବି, ତାହାହେଲେ ମୋତେ ଭୋଟ ଦିଅ, ନହେଲେ ନାହିଁ ।

**ଆରୋହଣ :** ଆପଣ ଏହା ପୂର୍ବରୁ ଅନ୍ୟ କେଉଁ ନିର୍ବାଚନ ଲଢ଼ିଥିଲେ କି ଏବଂ ଆପଣ କାହିଁକି ଲୋକ ପ୍ରତିନିଧି ହେବାକୁ ଚାହିଁଲେ ?

**ନିରସିଂ ସାଉନ୍ତା :** ମୁଁ ଆଗରୁ ୧୯୯୧ ମସିହାରେ ସରପଞ୍ଚ ଭାବରେ ଠିଆ ହୋଇଥିଲି । କିନ୍ତୁ ୮୩ଟି ଭୋଟରେ ହାରି ଯାଇଥିଲି । ମୋର ବହୁତ ଦିନରୁ ଇଛା ଥିଲା ସରପଞ୍ଚ ହୋଇ ଲୋକମାନଙ୍କ ସେବା କରିବା ପାଇଁ ।

**ଆରୋହଣ :** ଆପଣଙ୍କ ଏକ ବର୍ଷ କାର୍ଯ୍ୟକାଳ ଭିତରେ ପଞ୍ଚାୟତ ପାଇଁ କି କି କାମ କରିଛନ୍ତି ?

**ନରସିଂ ସାଉନ୍ତା :** କାର୍ଯ୍ୟକାଳ ମଧ୍ୟରେ ବିଭିନ୍ନ ଗ୍ରାମର ୩୯ ଜଣ ସୁଖବାସୀ (ଜମିହୀନ)ଙ୍କୁ ଟାଇଲ ଯୋଗାଇ ଦିଆଯାଇଚି । ପଞ୍ଚାୟତ ସମିତି ତରଫରୁ କେତୋଟି ଇନ୍ଦିରା ଆବାସ କଲୋନୀ କାମ ଚାଲିଛି । ଆଇ.ଆର୍.ଡ଼ି.ପି. ଯୋଜନାରେ ୯ ଜଣ ଋଣ ପାଇଛନ୍ତି । ୧୫ ଜଣଙ୍କୁ ମିଳିତ ଭାବରେ ଏକ ଭ୍ୟାନ୍ ଦିଆଯାଇଛି । ଆଇ.ଆର.ଡ଼ି.ପି. (ସମନ୍ୱିତ ଗ୍ରାମାଞ୍ଚଳ ବିକାଶ ଯୋଜନା) ଯୋଜନାରେ ୨୨ ଜଣଙ୍କ ଋଣ ଅନୁମୋଦିତ ହୋଇଛି । ଆଗରୁ ଯେଉଁ ଓ୍ୱାର୍କ ଅର୍ଡ଼ର (କାର୍ଯ୍ୟାଦେଶ) ହୋଇଥିଲା ସେହି ଅନୁଯାୟୀ କାମ ହେଉଛି । ବିପିଏଲ୍ (ଦାରିଦ୍ର୍ୟ ସୀମାରେଖା ତଳେ) ତାଲିକାରେ ଲୋକ ଚାଉଳ ପାଉଛନ୍ତି ।

**ଆରୋହଣ :** ବି.ପି.ଏଲ୍. ତାଲିକାରେ ଅନେକ ତ୍ରୁଟି ଅଛି ବୋଲି କୁହାଯାଉଛି, ଆପଣ ସରପଞ୍ଚ ହିସାବରେ ଏଥିପାଇଁ କ'ଣ କରିଛନ୍ତି ?

**ନରସିଂ ସାଉନ୍ତା :** ୧୯୮୪ ମସିହାରେ ଯେଉଁ ବି.ପି.ଏଲ୍. ତାଲିକା ପ୍ରସ୍ତୁତ ହୋଇଥିଲା, ତାହା ପ୍ରାୟ ଭୁଲ ଥିଲା । କିନ୍ତୁ ଏବେ ପ୍ରାଥମିକ ସ୍କୁଲର ଶିକ୍ଷକମାନେ ଏଥିପାଇଁ ସର୍ଭେ କରିଛନ୍ତି । ମୁଁ ସରପଞ୍ଚ ହିସାବରେ ଡି.ମୁର୍କା ଗାଁକୁ ଯାଇ ଦେଖିଥିଲି ସର୍ଭେ ଠିକ୍ ଅଛିକି ନାହିଁ । ଏହି ତାଲିକା ହେବା ପରେ ପଲ୍ଲୀସଭା ଓ ଗ୍ରାମସଭାରେ ଏହି ତାଲିକା ଉପସ୍ଥାପନା କରାଯିବା କଥା । କିନ୍ତୁ ସରକାର ଏହା ଉପରେ କଡ଼ାକଡ଼ି ନିୟମ ଲାଗୁ କରିନଥିବାରୁ ତାହା ହୋଇପାରିନାହିଁ ।

**ଆରୋହଣ :** ସରପଞ୍ଚ ହିସାବରେ ବ୍ଲକ, ଜିଲ୍ଲାପରିଷଦ ଓ ପଞ୍ଚାୟତ ସମିତି ସହିତ ଆପଣଙ୍କର କିପରି ସଂପର୍କ ଅଛି ?

**ନରସିଂ ସାଉନ୍ତା :** ବ୍ୟକ୍ତିଗତ ଭାବରେ ଜିଲ୍ଲା ପରିଷଦ ସହିତ ଭଲ ସଂପର୍କ ଅଛି । ସେ କିନ୍ତୁ ମୋତେ କୌଣସି କାମରେ ସାହାଯ୍ୟ କରନ୍ତି ନାହିଁ । କାରଣ ସେ କଂଗ୍ରେସ ଦଳର । ମୋ ମତରେ ଉନ୍ନତି କାମରେ ଦଳଗତ ଭାବ ରହିବା ଉଚିତ୍ ନୁହେଁ । ବ୍ଲକ ଓ ସମିତି ସହିତ ଭଲ ସଂପର୍କ ଅଛି । ତେଣୁ ସମସ୍ତଙ୍କ ମିଳିତ ସହାୟତାରେ ଡଙ୍ଗାସିଲ ପଞ୍ଚାୟତରେ ୮ଟି ଚେକ୍ ଡ୍ୟାମ୍ କାମ ଆଣିଛୁ ।

**ଆରୋହଣ :** ଭୁରିଆ କମିଟି ରିପୋର୍ଟ ବିଷୟରେ ଆପଣଙ୍କ କୌଣସି ଧାରଣା ଅଛି କି ନାହିଁ ?

**ନରସିଂ ସାଉନ୍ତା :** ମୁଁ ଭୁରିଆ କମିଟି ରିପୋର୍ଟ ବିଷୟରେ ବିଶେଷ କିଛି ଜାଣିନାହିଁ । ଏଥିରେ ଜଳ, ଜମି, ଜଙ୍ଗଲ ଅଧିକାର ବିଷୟରେ କିଛିନାହିଁ । ଯଦି କୌଣସି

ସରକାରୀ ବା ବେସରକାରୀ ଅନୁଷ୍ଠାନ ଆମ ଜମି ନେବାକୁ ଚାହିଁଲା, ଏହା ପ୍ରଥମେ ପଲ୍ଲୀସଭା ବା ଗ୍ରାମସଭାରେ ନିଷ୍ପତ୍ତି ହେବା କଥା, କିନ୍ତୁ ଏହା ହେଉନାହିଁ। ଆଉ ଗୋଟିଏ କଥା ନାହିଁ, ଯଦି ଜଣେ ଡାକ୍ତର ଛୁଟି ନିଏ ତେବେ ସେ ତା'ର ଦରଖାସ୍ତ ଉପରିସ୍ଥ ଅଫିସରକୁ ଦେଇଥାଏ । କିନ୍ତୁ ଉପରିସ୍ଥି ଅଫିସର ଛୁଟି ଦେଲାବେଳେ ସେ ଅଞ୍ଚଳର ସମସ୍ୟାକୁ ବିଚାରକୁ ନିଏ ନାହିଁ। ସେ ଚିନ୍ତା ମଧ୍ୟ କରେ ନାହିଁ ଯେ ବର୍ତ୍ତମାନ ପରିସ୍ଥିତିରେ ଡାକ୍ତରର ଆବଶ୍ୟକତା କେତେ? ତେଣୁ ସରକାରୀ କର୍ମଚାରୀଙ୍କର ଛୁଟି କିମ୍ବା ସ୍ଥାନାନ୍ତରଣ (ବଦଳି) କ୍ଷେତ୍ରରେ ଯଦି ପଞ୍ଚାୟତର କ୍ଷମତା ଥାଆନ୍ତା, ତେବେ ଭଲ ହୋଇଥାନ୍ତା ।

**ଆରୋହଣ:** ତଫସିଲଭୁକ୍ତ ଉପଜାତି ଯଦି ଅଲଗା ହୋଇଯାଆନ୍ତା, ତେବେ କ'ଣ ହୁଅନ୍ତା ?

**ନରସିଂ ସାଉନ୍ତା:** ଯଦି ଏହା ହୁଅନ୍ତା, ତେବେ ଆମର ଜଳ, ଜମି, ଜଙ୍ଗଲ ଆମର ହୋଇ ଯାଆନ୍ତା। ଆଦିବାସୀମାନଙ୍କର ବହୁତ ଉନ୍ନତି ହୁଅନ୍ତା। ମୋ ମତରେ ଏହା ହେଲେ ଆମର ରାମରାଜ୍ୟ ପ୍ରତିଷ୍ଠା ହେଲା ବୋଲି ଆମେ ଭାବିବୁ।

**ଆରୋହଣ :** ପଞ୍ଚାୟତରେ କ'ଣ, କ'ଣ ସମସ୍ୟା ଅଛି ଓ ସରପଞ୍ଚ ହିସାବରେ ଏହାର ସମାଧାନ ପାଇଁ ଆପଣ କ'ଣ ପଦକ୍ଷେପ ନେଇଛନ୍ତି ?

**ନରସିଂ ସାଉନ୍ତା :** ପଞ୍ଚାୟତରେ ସ୍କୁଲ ନାହିଁ। କେତେକ ସ୍ଥାନରେ ସ୍କୁଲଘର ନାହିଁ, ଶିକ୍ଷକ ବାରମ୍ବାର ଅନୁପସ୍ଥିତ ରହୁଛନ୍ତି । ଆଶ୍ରମ ସ୍କୁଲରେ ଯଥେଷ୍ଟ ପିଲା ରହିବାର ବ୍ୟବସ୍ଥା ନାହିଁ। ଆଦିବାସୀ ପିଲା ଦିନବେଳେ କାମ କରୁଥିବାରୁ ଓ ସରକାରୀ ସ୍କୁଲ ଦିନ ବେଳେ ହେଉଥିବାରୁ ପିଲାମାନେ ପାଠ ପଢ଼ିପାରୁ ନାହାନ୍ତି। ଅଙ୍ଗନଓ୍ୱାଡ଼ି କର୍ମୀମାନେ ଖାଦ୍ୟ ପାଇଁ କାଶୀପୁର/ଟିକିରି ଯାଉଛନ୍ତି। ଏଥିପାଇଁ ସେମାନେ ଖର୍ଚ୍ଚାନ୍ତ ହେବା ସଂଗେ ସଂଗେ ହଇରାଣ ମଧ ହେଉଛନ୍ତି। ତେଣୁ ଯେତିକି ଖାଦ୍ୟ ଗାଁରେ ପହଞ୍ଚିବା କଥା ପହଞ୍ଚି ପାରୁନାହିଁ। ବୋରିଙ୍ଗ, (ନଳକୂଅ) ଖରାପ ହୋଇଗଲେ ସଜାଡ଼ିବା ପାଇଁ ଲୋକ ନାହାନ୍ତି। ସ୍ଥାୟୀ ଭାବରେ ଡାକ୍ତର ରହୁନାହାନ୍ତି। ଡାକ୍ତରଖାନାରେ ଆବଶ୍ୟକତା ଅନୁଯାୟୀ ଖଟ ନାହିଁ। ରୋଗୀ ପାଇଁ ମଧ୍ୟ କିଛି ସୁବିଧା ନାହିଁ। ଏ ସବୁ ସମସ୍ୟାର ସମାଧାନ ପାଇଁ ଆମେ ଅଧିବେଶନ ମାଧ୍ୟମରେ ଉପରିସ୍ଥ କର୍ମଚାରୀଙ୍କ ଦୃଷ୍ଟି ଆକର୍ଷଣ କରିଛୁ ଏବଂ ସରକାରଙ୍କୁ ମଧ୍ୟ ଅବଗତ କରାଇଛୁ। ଆଜି ପର୍ଯ୍ୟନ୍ତ ଏହାର କିଛି ପଦକ୍ଷେପ ନିଆଯାଇନାହିଁ।

**ଆରୋହଣ :** ଆପଣ ସରପଞ୍ଚ ହିସାବରେ କେଉଁ କେଉଁ ଅସୁବିଧାର ସମ୍ମୁଖୀନ ହେଉଛନ୍ତି ?

**ନରସିଂ ସାଉନ୍ତା :** ସରପଞ୍ଚ ହୋଇ ମଧ ବିଭିନ୍ନ ସରକାରୀ କର୍ମଚାରୀଙ୍କ ପାଖରେ ମୁଣ୍ଡ ନୂଆଇଁବାକୁ ପଡୁଛି । ମୁଁ ସରପଞ୍ଚ ହେବା ପୂର୍ବରୁ ଦାବିକରି ସରକାରୀ ଅଫିସରଙ୍କଠାରୁ ଆମେ କାମ ଆଦାୟ କରୁଥିଲୁ । କିନ୍ତୁ ଏବେ ତାହା ହୋଇପାରୁନାହିଁ । ଉଦାହରଣ ସ୍ୱରୂପ ମୁଁ ସବୁ କାମ ଗାଁ କମିଟି ସଭ୍ୟଙ୍କ ଦ୍ୱାରା କରାଇବାକୁ ଚାହୁଁଛି । କିନ୍ତୁ ବାରମ୍ବାର ପଞ୍ଚାୟତ ମିଟିଂରେ ଏହା କହିଲେ ମଧ୍ୟ ସେମାନେ ଏହାର ଭବିଷ୍ୟତ ଯୋଜନାରେ ରଖୁନାହାନ୍ତି । କାରଣ ଏହାଦ୍ୱାରା ସେମାନେ ଲାଞ୍ଚ ପାଇପାରୁନାହାନ୍ତି ।

**ଆରୋହଣ:** ଠିକାଦାରମାନେ ଆପଣଙ୍କୁ କ'ଣ କହୁଛନ୍ତି ?

**ନରସିଂ ସାଉନ୍ତା :** ମୁଁ ଠିକାଦାରମାନଙ୍କୁ ସ୍ପଷ୍ଟ ଭାବରେ କହିଦେଇଛି ଯେ, କାମ ଆଣିବା ଦାୟିତ୍ୱ ମୋର । କିନ୍ତୁ କାମ କିଏ କରିବ, ତାହା ଗାଁ ଲୋକଙ୍କ ଉପରେ ନିର୍ଭର କରେ । ଯଦି ଗାଁ କମିଟି ସଭ୍ୟମାନେ ଚାହିଁବେ, ତେବେ ତୁମେ ତାଙ୍କଠାରୁ କାମ ଆଣିପାର, ମୋର କିଛି ଆପତ୍ତି ନାହିଁ ।

**ଆରୋହଣ:** ଆପଣ ଭବିଷ୍ୟତରେ କ'ଣ କରିବେ ବୋଲି ଭାବୁଛନ୍ତି ?

**ନରସିଂ ସାଉନ୍ତା :** ମୁଁ ଭାବୁଛି ସରପଞ୍ଚ ପଦରୁ ଓହରି ସ୍ୱେଚ୍ଛାକୃତ ଭାବେ କାମ କରିବି । କାରଣ ମୁଁ ଅନୁଭବ କରୁଛି ସରପଞ୍ଚ ହେବା ପୂର୍ବରୁ ମୁଁ ଲୋକମାନଙ୍କ ପାଇଁ ଯେତେ କାମ କରୁଥିଲି, ବର୍ତ୍ତମାନ ତାହା କରିପାରୁ ନାହିଁ ।

ତାଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ ସଂପର୍କରେ ସେ ଏତେ ସ୍ପଷ୍ଟ ଯେ, ଏ ସଂପର୍କରେ ଜଣେ ଶିକ୍ଷିତ ସରପଞ୍ଚ ମଧ୍ୟ ତାଙ୍କ ସହିତ ତାଳ ଦେଇ ପାରିବ ନାହିଁ । ଯଦି ଦେଶର ତୃଣମୂଳ ସ୍ତରରୁ ସବୁ ସରପଞ୍ଚ ଏପରି ଚିନ୍ତା କରନ୍ତେ, ତେବେ ଦେଶ ନିଶ୍ଚିତ ଉନ୍ନତି କରନ୍ତା । ଏଥିରେ ସନ୍ଦେହ ନାହିଁ ।

ଅଗଷ୍ଟ - ୧୯୯୮



# ହେମାବେହେର ଦଳେଇ
# - ଏକ୍ କରୁଣ କାହାଣୀ

ହରଭଙ୍ଗୀ ଜଳ ପ୍ରକଳ୍ପ ପାଇଁ ଯେଉଁମାନେ ବାସଚ୍ୟୁତ ହୋଇଥିଲେ, ସେମାନଙ୍କ ମଧ୍ୟରେ ଥିଲା ହେମା । ଗଜପତି ଜିଲ୍ଲାର ବଡ଼ନଳାର ବେବ୍ରି ଗାଁରୁ ଆସି ବର୍ତ୍ତମାନ ସେ କଣ୍ଟାହୁର କଲୋନିରେ ରହୁଛି । ସାଙ୍ଗରେ ତିନୋଟି ପିଲା ଓ ସ୍ୱାମୀ ।

ସେ କହେ ବେବ୍ରି ଗାଁରେ ତାର ଯେତେ ଚାଷ ଜମିଥିଲା, ସେଥିରେ ସେମାନେ ଏକବର୍ଷ ଚଳିଯାଉଥିଲେ । ଅଭାବ କ'ଣ ସେମାନଙ୍କୁ ଜଣା ନଥିଲା । ହରଭଙ୍ଗୀ ଜଳ ପ୍ରକଳ୍ପ ପାଇଁ ସେମାନଙ୍କୁ ଗାଁ ଛାଡ଼ିବା ପାଇଁ ନିର୍ଦ୍ଦେଶ ଦିଆଯିବାରୁ ଗାଁର ଅନ୍ୟ ଲୋକଙ୍କ ସହିତ ସେ ମଧ୍ୟ ସ୍ୱାମୀ ଓ ପିଲାଙ୍କ ସହିତ ଉଠି ଆସିଲା ଏହି କଣ୍ଟାହୁର କଲୋନିକୁ । ସେମାନଙ୍କୁ ସେତେବେଳେ ପ୍ରତିଶ୍ରୁତି ଦିଆଯାଇଥିଲା ଯେ, କଣ୍ଟାହୁରରେ ତୁମମାନଙ୍କ ପାଇଁ ସରକାରଙ୍କ ତରଫରୁ ଘର ତିଆରି ହେବ । ତୁମମାନଙ୍କର ରହିବାରେ କୌଣସି ଅସୁବିଧା ହେବନାହିଁ । ହେଲେ ସେପରି କୌଣସି ସୁବିଧା ଯୋଗାଇ ଦିଆଯାଇ ନଥିଲା ସେମାନଙ୍କୁ । କଲୋନିର ଏକ ଛୋଟ ନୁଆଣିଆ ଚାଳ ଘରେ ତିନୋଟି ପିଲାଙ୍କୁ ଧରି ରୁହେ ହେମା । ଗୋଟିଏ ବଖରାରେ ରହିବାଠାରୁ ଆରମ୍ଭ କରି ଶୋଇବା ପର୍ଯ୍ୟନ୍ତ ସବୁ କାମ କରେ ।

ହେମା କହେ, 'ମୁଁ ଭାବି ନଥିଲି ଯେ ମୋ ଅବସ୍ଥା ମଧ୍ୟ ଦିନେ ଏପରି ହେବ । ଆଗ ଗାଁରେ ଚାଷ ଜମି ଥିଲା । ସ୍ୱାମୀ ସ୍ତ୍ରୀ ଦୁହେଁ ଆରାମରେ ଚାଷ କରି ଚଳି ଯାଉଥିଲୁ । ମୋ ସ୍ୱାମୀଙ୍କୁ ମଧ୍ୟ କୁଲି କରିବାକୁ ପଡୁନଥିଲା । କିନ୍ତୁ ଏବେ ମୋତେ ମଧ୍ୟ ତାଙ୍କ ସହ କୁଲି କରିବାକୁ ଯିବାକୁ ପଡୁଛି । ନହେଲେ ପରିବାର କେମିତି ଚଳିବ ? ଥଇଥାନ ହେବା ପାଇଁ ସରକାର ଚାରିକିସ୍ତିରେ ୨୫,୦୦୦ ଟଙ୍କା

ଦେଇଥିଲେ । ସରକାରଙ୍କ ନିୟମ ଅନୁଯାୟୀ ସେହି ଟଙ୍କା ସାଧାରଣତଃ ବାସଚ୍ୟୁତ ପରିବାରର ମୁଖ୍ୟଙ୍କୁ ମିଳିଥାଏ । ତେଣୁ ହେମା ପରିବାରର ମୁଖ୍ୟ ହିସାବରେ ତା'ର ସ୍ୱାମୀ ଦୟାକୁ ଏହି ଟଙ୍କା ମିଳିଥିଲା । କିନ୍ତୁ, କଣ୍ଟାହୁର କଲୋନିକୁ ଉଠି ଆସିବା ପରେ ଅନ୍ୟ ସବୁ ଲୋକଙ୍କପରି ହେମାର ସ୍ୱାମୀ ମଧ୍ୟ ମାତ୍ର କେଇଟା ବର୍ଷ ମଧ୍ୟରେ ସବୁ ଟଙ୍କା ଖର୍ଚ୍ଚ କରିଦେଲା । ଯେତେ ଚେଷ୍ଟା କରି ମଧ୍ୟ ସେହି ଟଙ୍କାରୁ କିଛି ହେଲେ ରଖିପାରି ନଥିଲା ହେମା । ଫଳରେ ଏବେ ଉଭୟ ସ୍ୱାମୀ ଓ ସ୍ତ୍ରୀଙ୍କୁ କୁଲି କାମ କରିବାକୁ ପଡୁଛି । କୁଲିକାମ ବର୍ଷସାରା ମିଳିବ ବୋଲି ଆଶା ନେଇ ସେମାନେ ଏହି ଗାଁରେ ଆସି ରହିଥିଲେ । କିନ୍ତୁ ଏହି କୁଲି ପାଇଁ ସେମାନଙ୍କୁ ପ୍ରତିଦିନ ତିନିଚାରି କିଲୋମିଟର ବାଟ ଚାଲି ଚାଲି ଯିବାକୁ ପଡୁଛି । ହେମାର ପିଲା ଛୋଟ ଛୋଟ ହୋଇଥିବାରୁ ସେ ସୁରୁଖୁରୁରେ କାମ କରିବାକୁ ମଧ୍ୟ ଯାଇ ପାରୁନାହିଁ । ଗୋଟିଏ ରୋଜଗାରରେ ତିନିଟା ପିଲାଙ୍କୁ ଚଳାଇବା ମଧ୍ୟ ସମ୍ଭବ ହେଉନାହିଁ । ଯେଉଁଦିନ ଅସୁବିଧା ହେତୁ ହେମା କୁଲି କରିବା ପାଇଁ ଯାଇ ନପାରେ, ସେଦିନ ତା' ସ୍ୱାମୀ ଘର ଚଳାଇବା ପରିବର୍ତ୍ତେ ସବୁ ଟଙ୍କା ମଦରେ ଖର୍ଚ୍ଚ କରିଦିଏ । ଦିନେ ଦିନେ ପରିସ୍ଥିତି ଆସେ ସେ ଦିନ ସେ ଘରକୁ ଫେରି ନାହିଁ । ମଦ ଭାଟିରେ ମାତାଲ ହୋଇ ପଡ଼ିରୁହେ । ତା' ବାଟକୁ ଚାହିଁ ଚାହିଁ ଅଧିକାଂଶ ଦିନ ହେମାକୁ ଓପାସ ରହିବାକୁ ପଡ଼େ । ପ୍ରଥମେ ପ୍ରଥମେ ଏ ସବୁର ପ୍ରତିବାଦ କରୁଥିଲା ହେମା । କିନ୍ତୁ ତାର ପ୍ରତିବଦଳରେ ମାଡ଼ ସହିତ ଗାଳି ମଧ୍ୟ ଶୁଣିବାକୁ ପଡୁଥିଲା ।

ତେଣୁ ଏ ସବୁକୁ ଏବେ ଦେହସୁହା କରିନେଲାଣି ସେ । ସକାଳ ହେଲେ ତା'ସ୍ୱାମୀର ମଦ ନିଶା ଛାଡ଼ିଯାଏ । ସବୁଠିକ୍ ହୋଇଯାଏ । ହେମାର ପ୍ରତି କଥାରେ ସେ ସମ୍ମତି ଜଣାଏ । କିନ୍ତୁ ରାତିରେ ସାଙ୍ଗ ମେଳରେ ମିଶି ମଦ ପିଇବା ବେଳେ ସବୁ ଭୁଲିଯାଏ । ହେମା କୁହେ, 'ଏଠାରେ ମୋର ଆତ୍ମୀୟ ବୋଲି କେହି ନାହାନ୍ତି, ଯାହା ଆଗରେ ମୁଁ ମୋର ଦୁଃଖ ପ୍ରକାଶ କରି ପାରିବି । କେବଳ ତିନୋଟି ପିଲାଙ୍କ ପାଇଁ ବଞ୍ଚି ରହିଛି । ଏକକାଳୀନ ଏତେ ଟଙ୍କା ପାଇବା ପରେ ମୋ ସ୍ୱାମୀ ଏହାର ଠିକ୍ ଭାବରେ ଉପଯୋଗ କରିପାରିଲା ନାହିଁ । ବରଂ ମଦର ଶିକାର ହୋଇଛି । ଆଗ ଗାଁରେ ଥିଲେ ଆମର ଏପରି ଅବସ୍ଥା ହୋଇ ନଥାନ୍ତା ।

ବାସ୍ତବିକ୍ ଦେଖିବାକୁ ଗଲେ ବାସଚ୍ୟୁତଙ୍କ ପାଇଁ ଥଇଥାନ ନୀତିରେ ମହିଳାଙ୍କ ପାଇଁ ହେଉଥିବା ଅବିଚାର ଖୁବ୍ ସୁସ୍ପଷ୍ଟ । ପୁରୁଣା ଗାଁର କଥାକୁ ମନେ ପକାଇ ଲୁହ ଗଡ଼ାଇବା ବ୍ୟତୀତ ଅନ୍ୟ କିଛି ଉପାୟ ନାହିଁ ହେମାର । କାରଣ ଥଇଥାନ ଟଙ୍କା

ଉପରେ ତା'ର କୌଣସି କର୍ତ୍ତୃତ୍ୱ ନାହିଁ । ପ୍ରକଳ୍ପ ତରଫରୁ ନିଯୁକ୍ତିର କୌଣସି ସୂଚନା ନାହିଁ କିମ୍ବା ସ୍ୱାମୀଠାରୁ ମଧ୍ୟ କୌଣସି ସହଯୋଗ ଆଶା ନାହିଁ । ମଣିଷର ସର୍ବନିମ୍ନ ଆବଶ୍ୟକତା ମଧ୍ୟ ତା'ର ଓ ତା' ପିଲାମାନଙ୍କ ପାଇଁ ଆଜି ବିପନ୍ନ ।

ଏହିଭଳି ଶହ ଶହ ହେମା ଆଜି ଆଖିରୁ ଲୁହ ଗଡ଼ାଉଛନ୍ତି ସରକାରଙ୍କ ତଥାକଥିତ ବିକାଶମୂଳକ ପ୍ରକଳ୍ପ ପାଇଁ । କିଏ ଦୂର କରିବ ସେମାନଙ୍କ ସମସ୍ୟା ? ପ୍ରକଳ୍ପ ପୁନଃଥଇଥାନ ନୀତିରେ ମହିଳାଙ୍କ ପାଇଁ କୌଣସି ନିର୍ଦ୍ଦିଷ୍ଟ ନୀତି ନିର୍ଦ୍ଧାରଣ ହୋଇନାହିଁ । ନିଜର ଅର୍ଥ ଅନୁଯାୟୀ ଗୃହପରିଚାଳନା କ୍ଷେତ୍ରରେ ଯେହେତୁ ମହିଳାର ଦକ୍ଷତା ଅଧିକ, ଥଇଥାନ ବ୍ୟବସ୍ଥାରେ ମହିଳାର ଅଧିକାର ରହିଲେ ଏ ସମସ୍ୟା କିଛି ମାତ୍ରାରେ ଦୂର ହୋଇ ପାରନ୍ତା ।

ଅଗଷ୍ଟ - ୧୯୯୮



# ସରପଞ୍ଚ ନିଧନ ନାଏକ

**ଆରୋହଣ:** ଆପଣଙ୍କ ନାଁ ଓ ଠିକଣା ?

**ନିଧନ :** ମୋର ନାଁ ନିଧନ ନାଏକ, ଗାଁ ବେନ୍ତେଜି, ପଞ୍ଚାୟତ ସୁଙ୍ଗେର, ବ୍ଲକ କାଶୀପୁର ଜିଲ୍ଲା ରାୟଗଡ଼ା । ମୁଁ ବର୍ତ୍ତମାନ ସୁଙ୍ଗେର ପଞ୍ଚାୟତର ସରପଞ୍ଚ ଅଛି ।

**ଆରୋହଣ :** ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବା ପୂର୍ବରୁ ଆପଣ କ'ଣ କରୁଥିଲେ ?

**ନିଧନ :** ମୁଖ୍ୟତଃ ଚାଷ କରୁଥିଲି ଏବଂ ଅଧିକାଂଶ ସମୟ ବିଦେଶୀ କମ୍ପାନୀ ଭୟାବହତା ସଂପର୍କରେ ଚିନ୍ତା କରୁଥିଲି ।

**ଆରୋହଣ :** ଆପଣ ଆନ୍ଦୋଳନକୁ କିପରି ଆସିଲେ ?

**ନିଧନ :** ଆମ ଅଞ୍ଚଳରେ ବିଦେଶୀ କମ୍ପାନୀ ଗଢ଼ିଉଠିଲେ ଭବିଷ୍ୟତରେ ଆମମାନଙ୍କର ଶୋଚନୀୟ ଅବସ୍ଥା କ'ଣ ହେବ ସେ ବିଷୟରେ ଲୋକମାନଙ୍କୁ ବୁଝାଇଲି ଏବଂ ପରେ ଲୋକମାନଙ୍କ ସହଯୋଗରେ ଆନ୍ଦୋଳନ ଆରମ୍ଭ କରିଥିଲି ।

**ଆରୋହଣ :** ଆପଣଙ୍କୁ କାହିଁକି ନିର୍ବାଚନରେ ପ୍ରତିଦ୍ୱନ୍ଦିତା କଲେ ?

**ନିଧନ :** ଏ ଅଞ୍ଚଳରେ ମୁଖ୍ୟ ସମସ୍ୟା ହେଉଛି, ଦାରିଦ୍ର୍ୟ, ସାମାଜିକ ଦୁର୍ନୀତି, ଶିକ୍ଷାର ଅଭାବ, ଡାକ୍ତରୀ ଚିକିତ୍ସାର ଅବହେଳା ତଥା ଉନ୍ନୟନ ଯୋଜନାରେ ସରକାରୀ ଅର୍ଥର ସଂପୂର୍ଣ୍ଣ ଅସଦ୍ ବ୍ୟବହାର । ମୁଁ ଦେଖିଲି ମୋ ପୂର୍ବରୁ ଯିଏ କ୍ଷମତାରେ ରହି ଆସୁଥିଲେ ସିଏ ନିଜ କର୍ତ୍ତବ୍ୟରେ ହେଳା କରୁଛନ୍ତି ଏବଂ ଶୋଷଣର ଶିକାର ହେଉଛନ୍ତି । ତେଣୁ ଏ ସବୁକୁ ସାମନା କରିବାର ସାହସ ନେଇ ନିର୍ବାଚନ ଲଢ଼ିବାକୁ ସିଦ୍ଧାନ୍ତ ନେଲି ।

**ଆରୋହଣ :** ଆପଣଙ୍କୁ କୌଣସି ରାଜନୈତିକ ଦଳ ସମର୍ଥନ କରୁଥିଲେ କି ?

**ନିଧନ :** ନା ମୋତେ କୌଣସି ରାଜନୈତିକ ଦଳ ସମର୍ଥନ କରୁନଥିଲେ ଉତ୍ସାହିତ ମଧ୍ୟ କରୁନଥିଲେ ।

**ଆରୋହଣ :** ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବାପାଇଁ କେଉଁମାନେ ଆପଣଙ୍କୁ ପ୍ରେରଣା ଯୋଗାଇଥିଲେ ଓ କାହିଁକି ?

**ନିଧନ :** ବିଶେଷକରି ଏ ଅଞ୍ଚଳର ଗରିବ ଜନସାଧାରଣ ଏବଂ ସ୍ଥାନୀୟ ସ୍ୱେଚ୍ଛାସେବୀ ଅନୁଷ୍ଠାନର ଅଭିଜ୍ଞ କର୍ମକର୍ତ୍ତାମାନେ ମୋତେ ପ୍ରେରଣା ଯୋଗାଇଥିଲେ । ସେମାନେ ଯେଉଁସବୁ ସମସ୍ୟା ଦେଖିବାକୁ ପାଉଥିଲେ ତାର ସୁନିୟନ୍ତ୍ରଣ ପାଇଁ ମୁଁ କିଛି କରିପାରିବି ବୋଲି ସେମାନେ କହୁଥିଲେ ।

**ଆରୋହଣ :** ଆପଣଙ୍କୁ କି ପ୍ରକାର, ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହେବାକୁ ପଡ଼ିଥିଲା ?

**ନିଧନ :** ଆପଣ ଜାଣନ୍ତି ଯେ ମୁଁ ଜଣେ ନିରୀହ, ଗରିବ ତଥା ଦଳିତ ବର୍ଗର ହୋଇଥିବାରୁ ଉଚ୍ଚ ଜାତିର ଲୋକେ (ପାଇକ, ଗଉଡ଼ ଓ ରାଜପୁତ୍) ମୁଁ କ୍ଷମତାକୁ ଆସିବିବୋଲି ଚାହୁଁ ନଥିଲେ । ସେମାନେ ମଧ୍ୟ ମୋ ବିରୁଦ୍ଧରେ ଅନେକ ପ୍ରକାରର ମିଥ୍ୟା ଅପପ୍ରଚାର କରି ଚାଲିଥିଲେ । ବିଶେଷକରି ମୁଁ ଗରିବ ହେତୁ ମୋତେ ବେଶି ଆର୍ଥିକ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

**ଆରୋହଣ :** ଆପଣ କେତେ ଭୋଟ ବ୍ୟବଧାନରେ ଜିତିଲେ ?

**ନିଧନ :** ମୋ ସହ ୧୧ ଜଣ ପ୍ରାର୍ଥୀ ପ୍ରତିଦ୍ୱନ୍ଦିତା କରିଥିଲେ ଏବଂ ମୁଁ ୯ଟି ଭୋଟରେ ଆଗୁଆ ରହି ଜିତିଥିଲି ।

**ଆରୋହଣ :** ଲୋକମାନେ ଆପଣଙ୍କୁ କାହିଁକି ଭୋଟ ଦେଇ ନିର୍ବାଚିତ କଲେ ?

**ନିଧନ :** ଏହା ପୂର୍ବରୁ ଲୋକମାନଙ୍କର ସେମିତି କିଛି ସ୍ୱାଧୀନ ଚିନ୍ତାଧାରା ନଥିଲା । ଜଣେ ଭାରତୀୟ ନାଗରିକ ହିସାବରେ ନିଜର ମତ କିପରି ସାବ୍ୟସ୍ତ କରାଯିବ ତାହା ମଧ୍ୟ ସେମାନେ ଠିକଭାବରେ ଜାଣିନାହାନ୍ତି । ଫଳରେ ଆମ ଗ୍ରାମ ପଞ୍ଚାୟତର ଉଚ୍ଚ ବର୍ଗର ଲୋକେ ସାଧାରଣ ଲୋକଙ୍କୁ ମଦ ଏବଂ ଟଙ୍କାର ପ୍ରଲୋଭନ ଦେଖାଇ ସେମାନଙ୍କଠାରୁ ଭୋଟ ନେଉଥିଲେ । ପରେ ଲୋକମାନେ ମଧ୍ୟ ଅନେକ ସମସ୍ୟାର ସମ୍ମୁଖୀନ ହେଉଥିଲେ । ସେମାନଙ୍କର କୌଣସି ଆପତ୍ତିକୁ କେହି ଶୁଣୁ ନଥିଲେ । ସେଥିପାଇଁ ସେମାନେ ନିଜ ନିଜ ମଧ୍ୟରେ ଚିନ୍ତା କରି ମୁଁ କିଛି ପରିବର୍ତ୍ତନ ଆଣି ପାରିବି ଭାବି ମୋତେ ସରପଞ୍ଚ ରୂପେ ନିର୍ବାଚିତ କଲେ ।

**ଆରୋହଣ :** ନିର୍ବାଚନରେ ଜିତିଲା ପରେ ଆପଣ କେଉଁ ପ୍ରକାର ସମସ୍ୟାର ସମ୍ମୁଖୀନ ହେଉଛନ୍ତି ?

**ନିଧନ :** ସବୁକାର୍ଯ୍ୟ ଠିକ୍‌ରେ ଚାଲିଛି, କିନ୍ତୁ କେତେକ କ୍ଷେତ୍ରରେ ଅର୍ଥନୈତିକ ସଙ୍କଟ ସତ୍ତ୍ୱେ କମ୍ପାନୀ ସପକ୍ଷରେ କେତେକ ମୁଷ୍ଟିମେୟ ବ୍ୟକ୍ତି ମୋ ବିରୁଦ୍ଧରେ ମିଥ୍ୟା ଅଭିଯୋଗ କରୁଛନ୍ତି । ମୁଁ ଆନ୍ଦୋଳନରେ ସଂପୂର୍ଣ୍ଣଭାବେ ଜଡ଼ିତ ବୋଲି ପତ୍ର ପତ୍ରିକାରେ ମଧ୍ୟ ପ୍ରକାଶ ପାଇଛି । ଫଳରେ ପୋଲିସମାନଙ୍କର ଜୁଲମ୍ ମୋ ଉପରେ ବଢ଼ିଯାଇଛି ।

**ଆରୋହଣ :** ଆପଣଙ୍କ କାର୍ଯ୍ୟକାଳ ମଧ୍ୟରେ ଲୋକମାନଙ୍କର ଉନ୍ନତି ପାଇଁ କି ପ୍ରକାର ଯୋଜନାର ପରିକଳ୍ପନା କରିଛନ୍ତି ?

ନିଧନ : ଏହି ସୀମିତ ସମୟ ମଧ୍ୟରେ ଆମ ଅଞ୍ଚଳରେ ଥିବା ସମସ୍ୟାର ଦୂରୀକରଣ ନିମନ୍ତେ ପାରୁପର୍ଯ୍ୟନ୍ତ ଚେଷ୍ଟାକରିବି । ବିଶେଷ କରି ଶିକ୍ଷାର ପ୍ରସାର, ନିୟମିତ ସ୍ୱାସ୍ଥ୍ୟ ସେବା ତଥା ସରକାରୀ ଅନୁଦାନ ସଦ୍‌ବିନିଯୋଗ ପାଇଁ ଚେଷ୍ଟା କରିବି ।

**ଆରୋହଣ :** ସରପଞ୍ଚ ଦାୟିତ୍ୱରେ ରହିବା ପରେ ନିଜ ପରିବାରରେ କୌଣସି ଅସୁବିଧା ଦେଖା ଦେଇଛି କି ?

ନିଧନ : ତାହାତ ହେବ ନିଶ୍ଚୟ ! ଅଧିକାଂଶ ସମୟ ପଞ୍ଚାୟତ କଥା ବୁଝିଲା ବେଳେ ଘର କଥା ବୁଝିବା ପାଇଁ ସମୟ ହେଉନାହିଁ । ପଞ୍ଚାୟତ କଥାକୁ ପ୍ରାଧାନ୍ୟ ଦେଇ ଘର କଥା ମଧ ଠିକ୍ ସମୟରେ ବୁଝି ପାରୁନାହିଁ ।

**ଆରୋହଣ :** ବର୍ତ୍ତମାନ କାଶୀପୁର ଅଞ୍ଚଳରେ ଖଣି ଓ କରଖାନା ବିରୋଧୀ ଆନ୍ଦୋଳନ ସଂପର୍କରେ ଆପଣଙ୍କର ମତାମତ କ'ଣ ?

ନିଧନ : ବର୍ତ୍ତମାନ କାଶୀପୁର ଅଞ୍ଚଳରେ ଏହି ଆନ୍ଦୋଳନ ବଢ଼ିବାରେ ଲାଗିଛି । କାରଣ ଯଦି ଏହି ଅଞ୍ଚଳରେ ଖଣି ଓ କାରଖାନା ସବୁ ଗଢ଼ି ଉଠିବ ତେବେ ହଜାର ହଜାର ଜନ ସାଧାରଣ ବାସଚ୍ୟୁତ ଏବଂ ଶୋଷଣର ଶିକାର ହେବେ । ସଂପୂର୍ଣ୍ଣ ଅଶିକ୍ଷିତ ହେତୁ ବେକାରୀ ସମସ୍ୟା ବୃଦ୍ଧି ଏବଂ ଖାଦ୍ୟାଭାବ ଦେଖା ଦେବ । ଏହା ପୂର୍ବରୁ ଯେଉଁଠାରେ କମ୍ପାନୀ ସବୁ ଗଢ଼ି ଉଠିଛି, ସେଠିକାର ନିରୀହ ଜନତା ଭିଟାମାଟିଛାଡ଼ି ଖୁବ୍ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ସେଥିପାଇଁ ଏଠିକାର ଲୋକମାନେ ସେହି ଦୁରାବସ୍ଥାରୁ ବଞ୍ଚିବା ପାଇଁ କାରଖାନା ବିରୋଧୀ ଆନ୍ଦୋଳନ ଚଳାଇଛନ୍ତି । ମୋ ମତରେ ଏହା ଠିକ୍ ଅଛି । ଆମ ଅଞ୍ଚଳରେ ହେବାକୁ ଥିବା କମ୍ପାନୀ ପାଇଁ ଆମ ଗ୍ରାମସଭା ଏବଂ ପଞ୍ଚାୟତକୁ ଉପେକ୍ଷା କରି ମନଇଛା ଗାଁଗୁଡ଼ିକୁ ଉଠେଇବାର ନିଷ୍ପତ୍ତି ନିଆ ସରିଲାଣି । ଆମେ ପାଟି ଫିଟେଇଲେ ଆମ କଥା ଶୁଣୁଛି କିଏ ?

**ଆରୋହଣ :** ଆଦିବାସୀ ଅଞ୍ଚଳରେ ପ୍ରଚଳିତ ପଞ୍ଚାୟତିରାଜ ବ୍ୟବସ୍ଥା (ଏମିତି) ବଳବତ୍ତର ରହିବ ନା ଭୂରିଆ କମିଟି ସୁପାରିଶ ଲାଗୁ ହେବା ଦରକାର ?

ନିଧନ : ଯେହେତୁ ଏଇଟା ଆଦିବାସୀ ଅଞ୍ଚଳ, ତେଣୁ ଭୁରିଆ କମିଟି ସୁପାରିଶ ଲାଗୁ ହେବା ଉଚିତ୍ ।

**ଆରୋହଣ :** ନୂତନ କେନ୍ଦ୍ର ଆଇନ ଓ ରାଜ୍ୟ ଆଇନ୍ ସଂପର୍କରେ ଆପଣଙ୍କର ମତ କ'ଣ ?

**ନିଧନ :** ପ୍ରକୃତରେ କେନ୍ଦ୍ରରେ ଯେଉଁ ଆଇନ୍ ପ୍ରସ୍ତୁତ ହୋଇଛି ରାଜ୍ୟ ସରକାର ତାକୁ ଲାଗୁ କରୁନାହାନ୍ତି । ଫଳରେ ଅନେକ ଅସୁବିଧା ଦେଖାଦେଇଛି । କେନ୍ଦ୍ରରେ ଗ୍ରାମସଭାକୁ ସଂପୂର୍ଣ୍ଣ କ୍ଷମତା ଦିଆଯାଇଥିବା ସ୍ଥଳେ ରାଜ୍ୟ ସରକାର ତାହା ନିଜପାଖରେ ଏବଂ ଆଉ କିଛି ଜିଲ୍ଲା ସ୍ତରରେ ସୀମିତ ରଖିଛନ୍ତି । ତେଣୁ କେନ୍ଦ୍ର ଆଇନ୍ ଲାଗୁ ହେବା ଉଚିତ୍ ।

**ଆରୋହଣ :** ବର୍ତ୍ତମାନ ପରିସ୍ଥିତିରେ ଲୋକମାନଙ୍କ ପ୍ରତି ଆପଣଙ୍କର ବାର୍ତ୍ତା କ'ଣ ?

**ନିଧନ :** ଉଜ୍ଜଳ ଭବିଷ୍ୟତ ପାଇଁ ଏ ଅଞ୍ଚଳର ଲୋକମାନେ ଯଥେଷ୍ଟ ସଚେତନ ହୋଇ ନିଜ ଅଧିକାର ସାବ୍ୟସ୍ତ କରିବା ଉଚିତ୍ ।

ଅକ୍ଟୋବର - ୧୯୯୮



# ପୂଜାରିଣୀ - ଯୁଝୁଥିବା ଜୀବନ

ଇନ୍ଦ୍ରାବତୀ ପ୍ରକଳ୍ପର ୧ନଂ ଡାଇକ୍‌ର ପୂର୍ବରୁ ଡଙ୍ଗର ଉପରକୁ ଦେଖାଯାଉଥିବା ଗାଁ ହେଉଛି ମାଙ୍କଡ଼କେନ୍ଦୁ । କଳାହାଣ୍ଡି ଜିଲ୍ଲାର ଥୁଆମୂଲ-ରାମପୁର ବ୍ଲକ ଅନ୍ତର୍ଗତ ମହୁଲପାଟଣା ଗ୍ରାମପଞ୍ଚାୟତରେ ଗାଁଟି ଅବସ୍ଥିତ । ଏ ଗାଁରେ ରହୁଥିବା ଅଧିକାଂଶ ଲୋକ ହେଉଛନ୍ତି ଜାତିରେ ଗୌଡ଼ । ସେଇଠି ରହେ ପୂଜାରିଣୀ (ଗୋରୀ) । ଆଖିକୁ ଠିକ୍‌ରେ ଦେଖାଯାଉନଥିବା, କାନକୁ ଠିକରେ ଶୁଣା ଯାଉ ନଥିବା ୬୫ ବର୍ଷିଆ ବୁଢ଼ୀ । ସ୍ୱାମୀ ତା'ର ଅକର୍ମଣ୍ୟ । କୌଣସି ପିଲାପିଲି ମଧ୍ୟ ନାହାନ୍ତି ତାର । ଜୀବନସାରା କଷ୍ଟ ସହିଲା ପରେ ମଧ୍ୟ ଏବେ ନିଜର ବାର୍ଦ୍ଧକ୍ୟ ସତ୍ତ୍ୱେ ସ୍ୱାମୀ ସେବାରେ ତ୍ରୁଟି ନକରି ଦୁଇଟି ପ୍ରାଣୀଙ୍କର ଖାଦ୍ୟ ପାଇଁ ଅହରହ ସଂଗ୍ରାମ କରିଚାଲିଛି ପୂଜାରିଣୀ । ଏ ହେଉଛି ତାର ଅକୁହା କାହାଣୀ ।

ପୂଜାରିଣୀ ସାତ ମାସ ବୟସ ବେଳେ ତା'ର ବାପା ମରିଗଲେ । ତାର ମା' ତାକୁ ପାଳି ମଣିଷ କରିଛି । ତାକୁ ଯେତେବେଳେ ଦଶ ବର୍ଷ ହୋଇଥିଲା, ତାର ମା' ବେଣାଖମାରର ମଦୁ ପୂଜାରୀ ଘରେ ତାକୁ ତୁଠିଆ ମାରିଦେଲା (ବାହାଦେଲା) । ଶଶୁର ଘରେ ତାର ଦେଢ଼ଶୁର, ଯାଆ । ସେମାନଙ୍କର ଚାରୋଟି ପିଲା ଏବଂ ଶାଶୁ, ଶଶୁର ରହୁଥିଲେ । ଖୁବ୍ ଛୋଟ ବେଳୁ ପୂଜାରିଣୀ ଆତ୍ମନିର୍ଭରଶୀଳ ଥିଲା । ଭୁଲ କଥାରେ ପ୍ରତିବାଦ ମଧ୍ୟ କରୁଥିଲା । ବିବାହ ପରେ ମଧୁ ସହିତ ତାର ସଂପର୍କ ଭଲ ଥିଲା । ମଧୁ ଓ ସେ ଅନେକ ସମୟରେ ଶିକାର ପାଇଁ ଜଙ୍ଗଲ ଯାଉଥିଲେ । ରାଜା ତା' ସ୍ୱାମୀ ମଧୁକୁ ଗୋଟେ ବନ୍ଧୁକ ଦେଇଥିଲେ । ତା'ରି ସାହାଯ୍ୟରେ ସ୍ୱାମୀ ସ୍ତ୍ରୀ ଦୁହେଁ ଜଙ୍ଗଲକୁ ଯାଇ ସମ୍ବର, ଚିତ୍ତଳ ଇତ୍ୟାଦି ମାରୁଥିଲେ । ପରେ ଏହି ବନ୍ଧୁକକୁ ସରକାର ନେଇ ଯାଇଥିଲେ । କାରଣ ଏହାର ଲାଇସେନ୍‌ସ (ଅନୁମତି ପତ୍ର) ନଥିଲା । ସେମାନେ ଶିକାର ପାଉଥିବା ମାଂସକୁ ଥାନାରେ ଦେଉଥିଲେ, ବିକୁଥିଲେ ଏବଂ ନିଜେ ଖାଉଥିଲେ । ତା' ସ୍ୱାମୀର ଯଥେଷ୍ଟ ଚାଷଜମି ମଧ୍ୟ ଥିଲା । ଚାରୋଟି ଆମ୍ବ ତୋଟା ଥିଲା, ଧାନ ମାଣ୍ଡିଆ,

କୋଶଲା, ବିରି, ମକା, ସୋରିଷ ବହୁତ ପରିମାଣରେ ହେଉଥିଲା । ନିଜର ଆବଶ୍ୟକତା ମେଣ୍ଟିଲାପରେ ସେମାନେ ଏ ସବୁ ବିକ୍ରି କରୁଥିଲେ । ଆମ୍ବ ତୋଟାରୁ ଏବଂ ଶିକାକାଇ ବିକ୍ରିରୁ ସେମାନଙ୍କର ଯଥେଷ୍ଟ ଆୟ ହେଉଥିଲା । ଏମିତି ଖୁସିରେ ଖୁସିରେ ବିତୁଥିଲା ତାର ଜୀବନ ।

ବିବାହର ଅନେକ ବର୍ଷ ପରେ ମଧ୍ୟ ତାର କୌଣସି ପିଲା ହୋଇ ନଥିଲା । ଗୋରୀ ହାଟ ବଜାର ଯାଉଥିଲା, ଲୋକଙ୍କ ସହ ମିଶୁଥିଲା, ଯାହାକୁ କି ତାର ଶାଶୁ ଶଶୁର ତଥା ସ୍ୱାମୀ ଧୀରେ ଧୀରେ ପସନ୍ଦ କଲେ ନାହିଁ । ପିଲାଛୁଆ ନ ହେବା ସହିତ ଅନ୍ୟମାନଙ୍କ ସହିତ ଭଲରେ ମିଶି ପାରୁଥିବା ଗୋରୀ ସହ ମଧୁର ମତାନ୍ତର ହେବାକୁ ଲାଗିଲା । ଧୀରେ ଧୀରେ ତାର ଯାଆ ମଧ୍ୟ ତାକୁ ଆକ୍ଷେପ କରିବାକୁ ଲାଗିଲା । ଏହାର ଅନ୍ୟ ଏକ କାରଣ ମଧ୍ୟ ଥିଲା । ମଧୁର ବଡ଼ଭାଇ ଗୋରୁଗାଈ ଚରାଉଥିଲା । ଦୁଇ ଭାଇଙ୍କର ଭଲ ପଡୁଥିଲା । ଯେତେବେଳେ ମଧୁର ପୂଜାରିଣୀ ସହ ଭଲ ପଡ଼ିଲା ନାହିଁ , ସେ ତାର ଭାଉଜ ସହିତ ସଂପର୍କ ରଖିଲା । ଅନେକଥର ଜେଠାଣି (ଯାଆ) ଠାରୁ ଆକ୍ଷେପ ଶୁଣିଲା ପରେ, ଗୋଟେଥର ଛଅମାସ ପାଇଁ ଘରୁ ବାହାରିଯାଇ ଗଛମୂଳେ ସେ ଅଲଗା ରାନ୍ଧି ଖାଇଛି, କୁଡ଼ିଆ ବାନ୍ଧି ଅଲଗା ରହିଛି । ଜେଠାଣି ତାକୁ କହିଥିଲା ଯେ 'ତୋର ବାପା ବାନ୍ଧିବା ଘର କି ଏଇଟା, ତୁଇ ଯାହା ଚାହିଁଲେ କରିବୁ ।' ଏ କଥାରେ ପୂଜାରିଣୀ ରାଗି ଅଲଗା ରହୁଥିଲା । ସ୍ୱାମୀର ବ୍ୟଭିଚାରୀତା ସତ୍ତ୍ୱେ ଜେଠାଣି ସହିତ ସେ କେବେ କଳି କରେନାହିଁ ବରଂ ବୁଝାମଣା ଭିତରେ ରହେ । ତାର ସ୍ୱାମୀ ପକ୍ଷରୁ ଜେଠାଣିର ପୁଅଟେ ମଧ୍ୟ ଅଛି । ମଧୁ ପ୍ରାୟ ଚରିବର୍ଷ ଧରି ତା'ପାଖରେ ନଥିଲା । ସେ ସମୟରେ ସେ ତାର ଭାଇ ଭାଉଜ ପାଖରେ ରହୁଥିଲା । ପୂଜାରିଣୀ ନିଜେ ନିଜର ଗୁଜୁରାଣ ମେଣ୍ଟାଉଥିଲା । ଯେତେବେଳେ ବୁଡ଼ି ଅଞ୍ଚଳ ହେବ ବୋଲି ଘୋଷଣା ହେଲା, ସେତେବେଳେ ସ୍ୱାମୀ ତା'ର ଫେରିଥିଲା ତା'ପାଖକୁ ।

ସେ କହେ ପ୍ରଥମେ ଗାଁରେ ସର୍ଭେ ହେଲା, ପରେ ତାଙ୍କୁ ଉଠିବା କଥା ଜଣାଇ ଦିଆଯାଇଥିଲା । ଜୁନାଗଡ଼ ନିକଟବର୍ତ୍ତୀ ଜାରିଙ୍ଗିଠାରେ ସେମାନଙ୍କର ଥଇଥାନ ବ୍ୟବସ୍ଥା କରାଯାଇଥିଲା । କିନ୍ତୁ ସେମାନେ ସେଠାକୁ ଯିବାପାଇଁ ମନା କରିଥିଲେ । ତାଙ୍କର ଉଠିବା ବିଷୟରେ ଜଣାଇବା ପାଇଁ ସରକାରୀ ଲୋକ ଦୁଇ ଦୁଇଥର ତାଙ୍କ ଗାଁକୁ ଆସିଥିଲେ ।

ପୂଜାରିଣୀଠାରୁ ଯେଉଁ ଚରି ବର୍ଷ ତା'ର ସ୍ୱାମୀ ଦୂରେଇ ରହିଥିଲା, ସେତେବେଳେ ସେ କମ୍ ବୟସର ଥିବାରୁ ଅନ୍ୟ ଲୋକମାନେ ମଧ୍ୟ ତାକୁ ପୁଣି ବିଭାହେବା ପାଇଁ ପ୍ରସ୍ତାବ ଦେଉଥିଲେ । କିନ୍ତୁ ସେ ଆଉ ବିବାହ କରିନଥିଲା । ଦିନେ ତାକୁ ଠାକୁରାଣୀ ସ୍ୱପ୍ନ ହେଲେ ତାଙ୍କର ପୂଜା କରିବା ପାଇଁ । ତେଣୁ ପରେ ପରେ ସେ ଗାଁର ଠାକୁରାଣୀ

ପୂଜାରେ ଲିପ୍ତ ରହିଲା । ଠାକୁରାଣୀ ପୂଜା ଗତ ଦୁଇ ବର୍ଷ ପୂର୍ବରୁ ମଧ୍ୟ କରୁଥିଲା । ଏବେ ଭଲ ଦେଖା ଯାଉ ନଥିବାରୁ ଆଉ ପୂଜାକୁ ଯାଇ ପାରୁନାହିଁ । ତା'ର ଜେଠାଣିର ପୁଅକୁ (ସ୍ୱାମୀ ଔରସରୁ ଜନ୍ମିତ) ସେ ପୂଜାର ଦାୟିତ୍ୱ ଦେଇ ଦେଇଛି । ଏଠି ଠାକୁରାଣୀ ପୂଜା ପରେ ହିଁ ତାର ନାମ ଗୋରୀ ରୁ ପୂଜାରିଣୀକୁ ପରିବର୍ତ୍ତିତ ହୋଇଯାଇଛି । ପୂଜାକଲେ ଲୋକେ ତାକୁ ଧାନ ଦିଅନ୍ତି । କୁକୁଡ଼ା ବଳି ପାଇଁ ଆସେ, ପୁଣି କିଛି ଶସ୍ୟ ମଧ୍ୟ ଭେଟି ହିସାବରେ ଦିଅନ୍ତି । ଚଇତି ପର୍ବ, ନୂଆଖିଆ ତଥା ଦୀପାବଳି ବେଳେ ଏହି ଠାକୁରାଣୀ ପୂଜା ଅଧିକ ଜାକଜମକରେ ହୁଏ । ଏବେ ସେହି ପୁଅ ପୂଜା ଦାୟିତ୍ୱ ନେବା ପରଠାରୁ ତାର ଇଛା ହେଲେ କିଛି ଧାନ ଏମାନଙ୍କୁ ଦେଉଛି, ଇଛା ନହେଲେ ଦେଉନାହିଁ ।

ପୂଜାରିଣୀ କହେ ପୁରୁଣା ଗାଁରେ କାଠ, ଜାଳ, ପାଣି ସବୁର ସୁବିଧା ଥିଲା । ଏଠାରେ ସେ ସବୁର ସୁବିଧା ନାହିଁ । ସ୍ୱାମୀ ତାର ଜମି ପାଇଁ ୪୫,୦୦୦ ଟଙ୍କା ତଥା ଥଇଥାନ ପାଇଁ ତିନିକିସ୍ତିରେ ୪୬,୦୦୦ଟଙ୍କା ପାଇଥିଲା । ଏତେ ଟଙ୍କା ପାଇ ମଧ୍ୟ ସେ ଜମି କିଣି ନାହିଁ କିମ୍ବା ଭଲ ଘର ବାନ୍ଧିନାହିଁ । ଯେହେତୁ ମହିଳାମାନଙ୍କର ଛାଡ଼ ଟଙ୍କା ଉପରେ କୌଣସି ଅଧିକାର ନଥିଲା, ସେଥିପାଇଁ ସେ କେବେ ଟଙ୍କା କଥା ପଚାରିଲେ କିମ୍ବା ଖର୍ଚ୍ଚ କମ୍ କଥା କହିଲେ ସ୍ୱାମୀ କହେ, ତୁଇ ଚୁଲି ଫୁଙ୍କିବା ଲୋକ, ଏତେ କଥା କାହିଁକି ? ତାର କହିବା ମୁତାବକ ସେ ଟଙ୍କା ତାର ସ୍ୱାମୀ ମଦ, ମାଂସ, ସାଙ୍ଗମେଳରେ ଖର୍ଚ୍ଚ କରିଛି । ସେହି ଟଙ୍କାରେ ନିଜପାଇଁ ଜମି ନକିଣି ନିଜର ଭାଉଜ ନାଁରେ ଦୁଇ ଏକର ଜମି କିଣି ଦେଇଛି । ବଡ଼ କ୍ଷୋଭର ସହିତ ପୂଜାରିଣୀ କହୁଥିଲା ଯେ ସ୍ୱାମୀ ଏତେ ଟଙ୍କା ପାଇ ମଧ୍ୟ ତା'ପାଇଁ ଖଣ୍ଡେ ଲୁଗା କିଣି ଦେଇନାହିଁ । ଏ ସବୁ ବ୍ୟତୀତ ଲୋକମାନଙ୍କୁ ଟଙ୍କା ଧାର ଦେଇ ମଧ୍ୟ ଫେରି ପାଇନାହିଁ ସେ । ଏତେ ପରିମାଣ ଅର୍ଥର ଅପବ୍ୟବହାର ଦେଖି ସେ ରାଗରେ ଥରେ କହିଥିଲା ଯାହାତ ଖର୍ଚ୍ଚ କଲୁ କଲୁ, ଆଉ ଯାହା ଅଛି ନାଟ କରି ଏମିତି ଉଡ଼ାଇ ଦେ । ତାର ଏ କଥାରେ ସତକୁ ସତ ସ୍ୱାମୀ ତାର ଦୁଇ ତିନ ଥର ଗାଁକୁ ନାଟପାଟିବାଲାଙ୍କୁ ଡାକି ବାକି ଟଙ୍କା ଖର୍ଚ୍ଚ କରି ଦେଇଥିଲା । ଲୋକଙ୍କୁ ଖାଇବାକୁ ଦେଇ ଟଙ୍କା ସାରିଥିଲା । ଟଙ୍କା ଶେଷ ପରେ ଏବେ ମାଙ୍କଡ଼କେନ୍ଦୁରେ ଏକ ଛୋଟ ଦୁଇ ବଖୁରିଆ ଘରେ ରହୁଛନ୍ତି ବୁଢ଼ା ବୁଢ଼ୀ ଦୁଇଜଣ ।

ପୂର୍ବେ ଗାଁରେ ଜମି ଥିଲା । ଗୋରୁଗାଈ ଅନେକ ଥିଲେ । ଜମିରେ ଭଲ ପାଚି ହେଉଥିଲା, ଶିକାର କରୁଥିଲେ । ଜଙ୍ଗଲ ଜିନିଷ ଭଲ ମିଳୁଥିଲା । ଏ ଗାଁରେ ସେ ସବୁ ସ୍ୱପ୍ନ ହେଲା । ଏବେ ସଂପତ୍ତି କହିଲେ କେବଳ ଦୁଇଟି ବଳଦ ଅଛି । ଚାଷଜମି ନଥାଇ ବଳଦ କାହିଁକି ରଖିଛି ବୋଲି ପଚାରିଲେ ବୁଢ଼ୀ କହେ, ବୁଢ଼ା ତ ଅକର୍ମଣ୍ୟ,

କେତେବେଳେ କ'ଣ ହୋଇଗଲେ ଟଙ୍କା କେଉଁଠୁ ପାଇବି ? ସେଥିପାଇଁ ବଳଦ ଦୁଇଟି ଭରସା । ସ୍ୱାମୀ ତାର ଗୋଟେଥର ଜ୍ୱର ପରେ ୨ ବର୍ଷ ଧରି ଅକର୍ମଣ୍ୟ ହୋଇ ପଡ଼ିଛି । ସ୍ୱାମୀଠାରୁ ଏତେ କଷ୍ଟ ସହି ମଧ ତାକୁ ଖାଇବାକୁ ଦେବା ସହ ସେବାଯତ୍ନ କରିବାରେ କୌଣସି ତ୍ରୁଟି କରୁନାହିଁ ପୂଜାରିଣୀ । ଭାତ ଦୁଇମୁଠା, ଶାଗ ଟିକେ ଯୋଗାଡ଼ କରିବା ତା ପାଇଁ କଷ୍ଟ ହୋଇପଡୁଛି । ରୋଜଗାର ବୋଲି କିଛି ହିଁ ନାହିଁ । କୁଲିକରି ଚଳିବା ଭଳି ଶକ୍ତି ନାହିଁ ତା'ର । ବହୁତ ଦୁଃଖର ସହିତ କହେ ଯେ, ଆମ ଅଞ୍ଚଳରେ କେହି କେବେ ଭିକ ମାଗି ନାହାନ୍ତି । ମୋର କେହି ପିଲା ନଥିବାରୁ ଏବଂ କାମ ଦାମ କରି ନ ପାରିବାରୁ ମୁଁ ଭିକ ମାଗିବାକୁ ଅଣ୍ଡାଳି ଅଣ୍ଡାଳି ଗାଁକୁ ଯାଉଛି । ଲୋକ ମଧ୍ୟ ତାକୁ କେବେ ନିରାଶ କରି ନାହାନ୍ତି । ଚାଉଳ, ମାଣ୍ଡିଆ, ଶାଗଠାରୁ ଆରମ୍ଭ କରି କେହି କେହି ଲୁଗାପଟା ମଧ୍ୟ ଦିଅନ୍ତି ।

ଜୀବନଟାସାରା ଦୁଃଖ ଭିତରେ ସଢ଼ିଥିବା ପୂଜାରିଣୀ କେତେ ଅସହାୟ ସତେ ! ଛୋଟବେଳେ ବାପାକୁ ହରାଇବା, ବିଭାହୋଇ ନିଜର ସ୍ୱାଧୀନ ମତବ୍ୟକ୍ତ ପାଇଁ ସ୍ୱାମୀଠାରୁ ବିଛିନ୍ନ ହେବା, ଥଇଥାନ ଟଙ୍କା ସ୍ୱାମୀ ଦ୍ୱାରା ଅପବ୍ୟୟ ହେବା, ସ୍ୱାମୀର ବ୍ୟଭିଚାରୀତା, ପିଲାଛୁଆ ନ ଥିବାର ଅସହାୟତା, ବର୍ତ୍ତମାନ ବୁଢ଼ାର ଅକର୍ମଣ୍ୟ ଅବସ୍ଥା ଏବଂ ନିଜର ଶାରୀରିକ ଅସହାୟତା ସତ୍ତ୍ୱେ ବଞ୍ଚିଛି ପୂଜାରିଣୀ । ତାକୁ ସରକାରଙ୍କ ତରଫରୁ ବାର୍ଦ୍ଧକ୍ୟ ଭତ୍ତା ମଧ୍ୟ ମିଳିନାହିଁ । ଆଗକୁ କେମିତି ଚଳିବୁ ପଚାରିଲେ ପୂଜାରିଣୀ କହେ ଗାଁକୁ ଭିକ ମାଗି ଗଲେ ମିଶା ଆଖିବାଟେ ଲୁହ ଆସୁଛି । ମିଳିଲେ ଖାଇବି ନହେଲେ ପାଣି ପିଇ ଶୋଇବି । ମିଳିଲେ ମୁଇଁ ଘରେ ରାନ୍ଧୁଛି । ନମିଳିଲେ ସେମିତି ରହୁଛି । ଏବର ଏତେ ସବୁ କଷ୍ଟ କେବଳ ସେଇ ବୁଡ଼ି ଅଞ୍ଚଳ ଯୋଗୁଁ ହେଉଛି ବୋଲି ବଡ଼ ଦୁଃଖର ସହିତ ସେ କୁହେ । ଯଦି ବୁଡ଼ି ଅଞ୍ଚଳ ହୋଇ ନଥାନ୍ତା, ଅନ୍ତତଃ ପୁରୁଣା ଗାଁର ଜମି ତ ଥାନ୍ତା, ଖାଇବାପାଇଁ ତାକୁ ଆଜି ଅନ୍ୟ ଘରେ ମାଗିବାକୁ ପଡ଼ନ୍ତା ନାହିଁ ।

ବାସଚ୍ୟୁତର ପ୍ରତିଫଳନ ମହିଳାମାନଙ୍କ ଉପରେ ବାସ୍ତବିକ ଖୁବ୍ ମର୍ମନ୍ତୁଦ ! ସେ ଦିନର ପୂଜାରିଣୀକୁ ଭିକାରୁଣୀ କରିବା ପଛରେ ନଦୀବନ୍ଧ ତିଆରି କେତେଦୂର ଦାୟୀ, ତାହା ବିଚାରଯୋଗ୍ୟ ନିଶ୍ଚୟ । ଶହ ଶହ ଲୋକ ଦାଣ୍ଡରୁ ଦାଣ୍ଡ ବୁଲୁଛନ୍ତି, କିନ୍ତୁ ଇନ୍ଦ୍ରାବତୀ ବନ୍ଧ ଏ ପର୍ଯ୍ୟନ୍ତ ସରିନାହିଁ ।

ଅକ୍ଟୋବର - ୧୯୯୮



# କମଳା ମାଝୀ - ପରିବର୍ତ୍ତନର ନୂଆ ନାମ

ଦେଖିଲେ ଲାଗେ ଯେମିତି କିଛି ଜାଣିନି ବା କେଉଁ ବିଷୟରେ ବି କିଛି କହିପାରିବ ନାହିଁ। ଯେ କୌଣସି ବ୍ୟକ୍ତି ହଡ଼ବଡ଼େଇ ଯିବ ଏତେ ଛୋଟିଆ ମଣିଷଟିକୁ ଦେଖିଲେ। ଗୋଟିଏ ହାତ ପାପୁଲିରେ ତାର ମୁହଁ ଘୋଡ଼େଇ ହୋଇ ଯିବ। ଏମିତି କ୍ଷୀଣ ଚେହେରାକୁ ନେଇ ଭିତରେ ସେ ଶତ ସିଂହର ବଳ ରଖିଛି। ନିଜ ଅଂଚଳର ଉନ୍ନତିପାଇଁ ସମସ୍ତ ଇଛାଶକ୍ତିକୁ ଏକାଠି କରି କାମ କରିବାକୁ ପ୍ରବଳ ଆଗ୍ରହୀ । ଲୋକମାନଙ୍କର ଉନ୍ନତିପାଇଁ, ବିଶେଷକରି ମହିଳାମାନଙ୍କ ଉତ୍ତରୋତ୍ତର ଉନ୍ନତିପାଇଁ ସର୍ବଦା ଆଗଭର । ତାର ନେତୃତ୍ୱ ସମସ୍ତଙ୍କଠାରୁ ଦୁଇପାଦ ଆଗରେ। ଅଗମ୍ୟ ରାସ୍ତାରେ ଚାଲିବାରେ ଏବଂ ଲୋକମାନଙ୍କ ପାଖରେ ଖୁବ୍ ଶୀଘ୍ର ସୂଚନା ପହଞ୍ଚାଇବାରେ ବେଶ୍ ପାରିବାର। ନା ଭୟଥାଏ ବଣଜଙ୍ଗଲକୁ ନା ଜନ୍ତୁଜାନ୍ତାଙ୍କୁ। ନିଜ କାମକୁ ଠିକ୍‌ଠାକ୍ ତୁଲାଇବାରେ ସେ ପାଇଥାଏ ବେଶ୍ ଆନନ୍ଦ। ସବୁବେଳେ ମେସିନ୍ ଭଳି କର୍ମରତା ଏହି ମହିଳାଜଣକ ହେଉଛନ୍ତି କମଳା ମାଝୀ।

କଳାହାଣ୍ଡି ଜିଲ୍ଲାର ଥୁଆମୂଳ ରାମପୁର ବ୍ଲକ ଅନ୍ତର୍ଗତ ବଡ଼ଛତରଂଗ ଗ୍ରାମ ପଞ୍ଚାୟତର 'ଜାମୁଗୁଡ଼ା' ଗ୍ରାମରେ କମଳା ମାଝୀଙ୍କ ଜନ୍ମ। ପରିବାର କହିଲେ ବାପା କେମେଲ ମାଝୀ, ମାଆ ଆଦିବାରି ଦେଈ, ଦୁଇ ଭାଇ ଓ ଦୁଇ ଭଉଣୀ। ବାପାଙ୍କର ଜମିବାଡ଼ି ଏକ ଏକର ଥିଲା। କମଳା ମାଝୀ ବଡ଼ ଝିଅ ହିସାବରେ ଘରର ସମସ୍ତ କାମ କରି ନେଉଥିଲା। ସେମାନେ ସମସ୍ତେ ମିଶି କୁଲି ଭୂତି କଥା ଡଙ୍ଗର ଚାଷ କରି ଜୀବିକା ନିର୍ବାହ କରୁଥିଲେ। ମହାଜନ ପାଖରେ କାମ କରି ମଧ୍ୟ ଚଳୁଥିଲେ। ବେଳେବେଳେ କୁଲି ମଜୁରି ନମିଳିଲେ ଭୋକ ଉପାସରେ ରହି ମଧ୍ୟ ଜୀବନ ଅତିବାହିତ କରୁଥିଲେ। ପାଠ ପଢ଼ାକଥା ପଚାରିଲେ ସେ କୁହେ ଯେ ପୂର୍ବରୁ ସ୍କୁଲ ନଥିଲା। ତେଣୁ ପାଠ ପଢ଼ି ପାରିଲି ନାହିଁ। ସେତେବେଳେ କିଣା ମାଷ୍ଟ୍ର ଥିଲେ, କେବଳ ମହାଜନ ଲୋକଙ୍କ ପିଲାମାନେ ହିଁ ପାଠ ପଢୁଥିଲେ। ସେମାନେ

ଯେତେବେଳେ ପାଠ ପଢୁଥିଲେ ମୁଁ ତାଙ୍କ ପାଖରେ ବସି ସବୁକିଛି ଦେଖୁଥିଲି । ହେଲେ ଯାହାର ପେଟକୁ ମୁଠାଏ ଖାଦି ମିଳୁ ନଥିଲା,ଅଣ୍ଟାକୁ ଖଣ୍ଡେ ପିନ୍ଧିବାକୁ କନା ମିଳିନଥିଲା, ସିଏ କଣ ଟଙ୍କା ଦେଇ ପାଠ ପଢ଼ି ପାରିଥାନ୍ତା ? ସେ କୁହେ ମୋର ପାଠ ପଢ଼ିବାକୁ ବହୁତ ଆଗ୍ରହ ଥିଲା । ଯଦି ମୁଁ ପାଠ ପଢ଼ିଥାନ୍ତି, ତାହେଲେ ବାହା ହୋଇ ନଥାନ୍ତି । ପାଠପଢ଼ି ଚାକିରି କରି ବାହାର ଦୁନିଆ ବିଷୟରେ ସବୁକିଛି ଜାଣିପାରିଥାନ୍ତି । କିନ୍ତୁ ସେସବୁ ମୋ ଭାଗ୍ୟରେ ନଥିଲା ।

ବାର ବର୍ଷ ବୟସରେ ମନୁଷ୍ଗାଁ ଗ୍ରାମ ପଞ୍ଚାୟତର କୁକୁଡ଼ଗାଡ଼ ଗ୍ରାମର ସାନ ବୁଦୁ ମାଝୀଙ୍କୁ ସେ ବାହା ହୋଇଥିଲେ । ବାହାଘରବେଳେ ଝୋଲା କହିଲେ ତାକୁ ୩୦୦ ଟଙ୍କା ମିଳିଥିଲା । ସେ ଯୌତୁକ ମଧ୍ୟ କିଛି ଆଣି ନଥିଲା । କାରଣ ତାର ବାପାଙ୍କର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନଥିଲା । କମଳାର ଶାଶୁ ଶ୍ୱଶୁର ମଧ୍ୟ ଥିଲେ । ତା ସ୍ୱାମୀଙ୍କର ତିନି ଭାଇ ଥିଲେ । ଜମି ବାଡ଼ି ତିନି ଭାଇଙ୍କ ଭିତରେ ଭାଗ ହେଲାପରେ ଚାରି ଏକର ଲେଖାଏଁ ଭାଗ ପଡ଼ିଲା । ତଥାପି ଚଳିବାକୁ ଅସୁବିଧା ହେଉଥିଲା । କୁଲିଭୂତି ତଥା ଡଙ୍ଗର ଚାଷ କରି ଚଳୁଥିଲେ । ତା ଶାଶୁ ତାକୁ ବହୁତ ହଇରାଣ କରୁଥିଲେ । ତା ବାପ ଘରୁ କାନ, ନାକ ଓ ବେକର ଗହଣା ଆଣିବାକୁ କହୁଥିଲେ । ବାପାଙ୍କର ସେମିତି କିଛି ଅର୍ଥ ନଥିଲା । ଫଳରେ ଶାଶୁ ଯାହା କହିଲେ ମଧ୍ୟ ସବୁ କିଛି ସହିଯାଉଥିଲା । ସେ ନିଜ ଇଚ୍ଛାରେ ଘର ତଥା ବହାରର କାମ ତୁଲାଇ ନେଉଥିଲା । ତଥାପି ଶାଶୁଙ୍କ ପାଖରୁ ଏମିତି ଗାଳିଗୁଲଜ ଶୁଣିବାକୁ ପଡୁଥିଲା । ସେ କୁହେ ଯେ ମୁଁ ଶାଶୁ ହେଲାବେଳେ ମୋ ବୋହୂକୁ କେବେ ଗାଳି କରିବି ନାହିଁ । ତା ନିଜ ଇଛାରେ ସେ ଘରର ଦାୟିତ୍ୱ ନେବ ।

କମଳା ମାଝୀର ଦୁଇ ପୁଅ ଥିଲେ । ସାନ ପୁଅଟି ଜ୍ୱରରେ ସେ ମୃତ୍ୟୁବରଣ କଲା । ବର୍ତ୍ତମାନ ୧୨ବର୍ଷର ଗୋଟିଏ ପୁଅ ଅଛି । ସେ ପାଠ ପଢୁଥିଲା କିନ୍ତୁ ଦେହ ଖରାପ ହେବାରୁ ଦୁଇମାସ ସ୍କୁଲ ଗଲାନାହିଁ । ଫଳରେ ମାଷ୍ଟର ତା'ର ନାମ କାଟିଦେଲେ । ଏବେ ତାକୁ ସେ ଆଶ୍ରମ ସ୍କୁଲରେ ପାଠ ପଢ଼ାଇବି ବୋଲି କହୁଛି । ତା'ର ଆଶା ଅଛି ପୁଅକୁ ପାଠ ପଢ଼ାଇ ବଡ ମଣିଷ କରିବ ବୋଲି ।

ଅଗ୍ରଗାମୀକୁ କେମିତି ଆସିଲ ବୋଲି ପଚାରିବାରୁ କହିଲା ଯେ, 'ମୁଁ ପୂର୍ବରୁ ଅଗ୍ରଗାମୀ ବିଷୟରେ କିଛି ଜାଣି ନଥିଲି । ଅଗ୍ରଗାମୀ ଅଫିସରୁ ଆଜ୍ଞାମାନେ ଆସି ମୋତେ ପ୍ରଥମେ କହିଲେ । ପ୍ରଥମେ ମୁଁ ତାଙ୍କୁ ଦେଖି ଭୟ କଲି ଓ କାମ କରିବାକୁ ମନା କରୁଥିଲି । ତା'ପରେ ଅଗ୍ରଗାମୀ ଚନ୍ଦ୍ରଗିରି ଉପ କେନ୍ଦ୍ରରେ ତିନି ମାସ ତାଲିମ ନେଇ ପାଞ୍ଚଖଣ୍ଡ ଗ୍ରାମର ଦାୟିତ୍ୱ ନେଇ ଓଡ଼ିଶା ଖାଦ୍ୟ ନିରାପତ୍ତା ଯୋଜନା

ଅଧୀନରେ ଜଣେ ସଚେତିକା ହିସାବରେ କାମ କଲି । ତାଲିମରେ ଯାହାସବୁ ଶିଖିଥିଲି ତାହା ଲୋକମାନଙ୍କୁ କହିଲି । ଲୋକମାନେ ମଧ୍ୟ ମୋ କଥାକୁ ଗ୍ରହଣ କରନ୍ତି । ବର୍ତ୍ତମାନ ସେ ଆମ ସଂଗଠନର ପରିଚାଳନା କମିଟିର ଜଣେ ସଭ୍ୟା ହିସାବରେ କାମ କରୁଛି । ସେ ବାହାର ଜାଗାକୁ ଯାଇ ମିଟିଂରେ ଯୋଗ ଦେଇ କଥା କହିବାର ସାହସ ମଧ୍ୟ ପାଇ ପାରିଛି ।

ଅଗ୍ରଗାମୀ ରେ ରହି ଲୋକମାନଙ୍କ ପାଇଁ କ'ଣ ସବୁ କରିପାରିଛି ବୋଲି ପଚାରିଲେ, ସେ କୁହେ 'ଅଗ୍ରଗାମୀରେ ତାଲିମ ନେଇ ବିଭିନ୍ନ ପ୍ରକାର ନୂଆ କଥା ଜାଣି ନିଜେ ସଚେତନ ହେବା ସହ ଅନ୍ୟମାନଙ୍କୁ ମଧ ସଚେତନ କରାଇ ପାରିଛି । ଲୋକମାନଙ୍କୁ ବୁଝାଇ ଗାଁରେ ଶସ୍ୟପାଣ୍ଠି ଓ ଟଙ୍କା ପାଣ୍ଠି ମଧ୍ୟ ରଖିପାରିଛି । ମଦ ବିରୋଧରେ ସମସ୍ତ ମା'ମାନେ ମିଶି ଆନ୍ଦୋଳନ ମଧ୍ୟ କରିପାରିଛି । ମା'ମାନଙ୍କର ସଂଚୟ ପାଣ୍ଠି ଓ ସମୂହ ବିକାଶ  ପାଣ୍ଠି କରିପାରିଛି । କୁଲି ମଜୁରି ଠିକ୍‌ରେ ପାଇବା ପାଇଁ ଆମେ ସବୁ ଏବେ ମଧ୍ୟ ଉଦ୍ୟମରତ । କୁଲି ମଜୁରି କଥା କହିଲା ବେଳେ, କାମ କରି ଏବେସୁଦ୍ଧା ପାଇନଥିବା ମଜୁରି କଥା ମନେ ପକାଇ ଖୁବ୍ ମନ ଦୁଃଖ କରେ । ଥରେ ଦୁଇବର୍ଷ ତଳେ ତାଙ୍କ ଗାଁ କୁକୁଡାଗାଡରେ ବ୍ଲକ ତରଫରୁ କଜୱେ କାମ ଚାଲିଥିଲା । କାମଟି ପାଖ ଗାଁ ଖତିଖମନର ଠିକାଦାର ବିଭୀଷଣ ନାଏକ କରୁଥିଲେ । ଉକ୍ତ କାମରେ କୁକୁଡାଗାଡର ପ୍ରାୟ୪୦ଜଣ ପୁରୁଷ ଓ ଜଣେ ମହିଳା ୮ଦିନ କାମ କରିଥିଲେ । କାମ ସରିବା ପରେ ଠିକାଦାର ମଜୁରି ଦେବାରେ ଡେରି କରିବାରୁ ଗାଁ ଲୋକ ସମସ୍ତେ ମିଶି ତାକୁ ଟଙ୍କା ମାଗିଲେ । ସେ କହିଲା, ମୁଁ କାଶୀପୁର ଯାଇ ଟଙ୍କା ଆଣିଲେ ତୁମକୁ ଦେବି ।

ତା'ପରେ ସେ ଠିକାଦାର ଏମିତି କହି କହି ବହୁତ ଦିନ ଗଡାଇ ଚାଲିଲା । ଲୋକମାନେ କାମ ବନ୍ଦ କରି ବାରମ୍ବାର ଯାଇ ଫେରିବାରୁ ବିରକ୍ତ ହୋଇ ଆଉ ଗଲେ ନାହିଁ । ସେମାନଙ୍କ ଭିତରେ କମଳା ମଧ୍ୟ ଥିଲା ଜଣେ । ସେ ଠିକାଦାର ପାଖକୁ ଯାଇ ମଧ ଫେରିଥିଲା । ଶେଷଥର ଲୋକମାନଙ୍କ ସହିତ ଯାଇ ସେ ଠିକାଦାରକୁ ଧମକାଇବାରୁ ଠିକାଦାର ତାକୁ ଗାଳିଦେଇ କହିଥିଲା, 'ତୁଇ ଅଗ୍ରଗାମୀ ଯାଇ ବେଶି କଥା କହୁଛୁ । ସେମିତି ଧମକାଇଲେ ମୁଁ ମଜୁରି ଦେବିନି ।' ତଥାପି କମଳାର ମନ ବୁଝୁ ନଥିଲା । ପୁଣି କିଛିଦିନ ପରେ ସେ ତା'ର ଅଣ୍ଡିରାକେ କହିଲା 'ତୁଇ ମୋର ସାଙ୍ଗରେ ଚାଲ, ମୁଁ ଠିକାଦାରକେ ପଇସା ମାଗିଯିବି । ଯଦି ପଇସା ନଦେବ୍ ତେବେ ତାର ଗୋଟେ ଗାଈ ବାନ୍ଧି ଆଣିବ୍ ।' ଏ କଥା ଶୁଣି ତାର ଅଣ୍ଡିରା

ତାକୁ ମନାକରି କହିଲା ଗାଁ ସାରା ଲୋକଙ୍କ କଥା ସେ ଶୁଣିଲାନି ଆଉ ତୋର କଥା ସେ ଶୁଣି କରି ପଇସା ଦେବ । ସେ ତୋତେ ହୁଡ଼ିବ । ପୁଣି ଯଦି ତାର ଗାଈ ଆଣିବୁ ସେ ତୋତେ ଛାଡ଼ିବନି । କମଳା କହିଲା, ସେ ମୋର କ'ଣ କରିବ, କିଛି କରିପାରିବ ନି ।' ବୁଦୁ କହିଲା, "ସେ ସିନା ଗାଁରେ କିଛି କରିବନି, ତୁ ଏକୁଟିଆ କାଶୀପୁର ଗଲାବେଳେ ଯଦି ତୋତେ ବାଟରେ ମାରିଦେବ ତୁ' କ'ଣ କରୁବୁ । ଆମର ସେ ଟଙ୍କା କିଛି ଦରକାର ନାହିଁ କି ଗାଈ ଆଣିବା ଦରକାର ନାହିଁ ।" " ତୁ ଏତେ ଡରୁଛୁ, ମୋର ସେ କିଛି କରିପାରିବନି । ତୁ ନଗଲେ ମିଶା ମୁଁ ଏକୁଟିଆ ଯିବି ।" କହି କମଳା ପେଟତଳେ ଏକ ଦଉଡି ଲୁଚାଇ ଠିକଦାର ପାଖକୁ ଗଲା । ସାଙ୍ଗରେ ତା'ର ଅଣ୍ଡିରା ମଧ୍ୟ ଗଲା ।

କମଳା ଯାଇ ଠିକାଦାରକୁ କହିଲା ଆଜି ଯଦି ପଇସା ଦେବୁତ ଦେ ନ ହେଲେ ତୋର ଗାଈ ବାନ୍ଧି ନେବି । ତୁଇ ଆମ ଗରିବ ଲୋକଙ୍କୁ ଠକି ସେଇ ପଇସାରେ ବଡଲୋକ ହେଇଛୁ । ଆଜି ତୋତେ ଛାଡିବିନି । ତୋର ଗାଈ ବାନ୍ଧିନେବି, ତୁ ଏ ହାତରେ ପଇସା ଦେଲେ ସରି ସେ ହାତରେ ତୋର ଗାଈ ଆଣିବୁ । ଠିକାଦାର କମଳା ରାଗିଯାଇଥିବା ଦେଖି ତାକୁ କହିଲା, 'ମୁଁ ତୋର ପଇସା ଦେଇ ଦେବି, ତୁ ଆଉ କାହାକୁ କିଛି କହିବୁନି ।' କମଳା କହିଲା 'ମୋତେ କାହିଁକି ଏକୁଟିଆ ପଇସା ଦେବୁ । ମୁଁ କ'ଣ ଏକୁଟିଆ କାମ କରିଥିଲି କି ? ତା' ଛଡା ମୁଁ ଏକୁଟିଆ ପଇସା ନେଇଗଲେ ଅନ୍ୟମାନେ ମୋତେ ପିଟିବେନି । ତୁ ସିନା ଟାଉଟର ବୋଲି ସେମିତି କରିଦେଇ ପାରିବୁ, ମୁଁ ସେମିତି କାମ କରିପାରିବି ନାହିଁ । ଯଦି ସମସ୍ତଙ୍କ ପଇସା ଦେବୁ ତ ଦେ ।' ଠିକାଦାର ଆଉ କିଛି ନ କହିବାରୁ କମଳା ତା'ର ଗାଈ ବାନ୍ଧି ଆଣିଲା । ମାତ୍ର ତାର ଅଣ୍ଡିରା ତାକୁ ବାରମ୍ବାର ମନା କଲା ସେଠାରୁ ତାର ଗାଈ ନେବା ପାଇଁ । ତା ସହିତ ସେଇ ଗାଁର କେତେକ ଲୋକ ଆସି କମଳାକୁ ଗାଈ ନ ନେବା ପାଇଁ ମଧ୍ୟ ବୁଝାଇଲେ । କହିଲେ ଯା' ପରେ ସେ ପୋଲିସକୁ କହିବ । ତୋତେ ପୁଣି ଥାନାକୁ ଯିବାକୁ ପଡିବ, ତୁ ବେଶି ହଇରାଣ ହୋଇଯିବୁ ଇତ୍ୟାଦି । ସମସ୍ତେ ଏପରି କହିବାରୁ କମଳା ରାଗରେ ସେ ଗାଈକୁ ଛାଡିଦେଇ ସେଠାରୁ ଚାଲିଆସିଲା । ତା ପରଠାରୁ ସେ ଆଉ ଠିକାଦାର ପାଖକୁ ଗଲାନାହିଁ । ଏତେ ସାହାସ ଥାଇ ସହଯୋଗ ଅଭାବରୁ ତାକୁ ନିରାଶ ହେବାକୁ ପଡିଲା । ତାକୁ ଯଦି ତାର ସ୍ୱାମୀ ଏବଂ ଗାଁ ଲୋକଙ୍କଠାରୁ ପୂର୍ଣ୍ଣ ସହଯୋଗ ମିଳୁଥାନ୍ତା ତେବେ ସେ ଅନେକ କିଛି କରିପାରନ୍ତା ।

ତାଙ୍କର ନିଜର କ'ଣ ଉନ୍ନତି ହୋଇଛି ବୋଲି ସେ କୁହେ ଯେ, "ତା'ର ଆତ୍ମବିଶ୍ୱାସ ବଢ଼ିଛି ।" ବର୍ତ୍ତମାନ ଯେ କୌଣସି ସରକାରୀ ଅଫିସରମାନଙ୍କ ସହିତ ମଧ୍ୟ କଥାବାର୍ତ୍ତା କରିବାର ସାହସ ହାସଲ କରିପାରିଛି । ସାହସ ବଢ଼ିବାରୁ ଯେ କୌଣସି ଅନ୍ୟାୟର ପ୍ରତିବାଦ ମଧ୍ୟ କରିପାରୁଛି । ସଂଚୟ ମନୋବୃତ୍ତି ବଢ଼ିଛି । ନିଜ ପାରିଶ୍ରମିକରେ ଜମିବନ୍ଧା ଧରି ମୋର ଆର୍ଥିକ ଅବସ୍ଥା ମଧ୍ୟ ସୁଧାରି ପାରିଛି ।

କମଳା ସମସ୍ତ ମା'ମାନଙ୍କ ସହିତ ମିଶି ବ୍ଲକ୍ ସହିତ ସଂଗଠନ କରି ନିଜ ଅଞ୍ଚଳରେ ମିଳୁଥିବା ଲଘୁବନଜାତ ଦ୍ରବ୍ୟକୁ ନିଜେ କିଣି ଲାଭବାନ ମଧ୍ୟ ହୋଇପାରିଛନ୍ତି । ନିଜ ଅଞ୍ଚଳରେ ମିଳୁଥିବା କୃଷିଜାତ ଦ୍ରବ୍ୟକୁ କିଣି ପ୍ରକ୍ରିୟାକରଣ କରି ନିଜେ ଉପକୃତ ହେବା ସହିତ ଲୋକମାନେ ମଧ୍ୟ ଉପକୃତ ହୋଇପାରୁଛନ୍ତି । ଅଗ୍ରଗାମୀ ର କାର୍ଯ୍ୟକାଳ ସରିଗଲେ ମଧ୍ୟ କାମ କରିବାକୁ ଆଗ୍ରହ ଅଛି ବୋଲି ସେ କହେ । ପର୍ବୂରୁ ସପ୍ତାହକୁ ଥରେ ଗାଁକୁ ଯାଉଥିଲି । ଏବେ ସପ୍ତାହକୁ ଥରେ ଗାଁକୁ ନଗଲେ ମଧ୍ୟ ଏକ ମାସରେ ଥରେ ଗାଁକୁ ଯାଇ ଗାଁର ଭଲମନ୍ଦ ଖବର ବୁଝିବାକୁ ପଡୁଛି । ଦାୟିତ୍ୱ ସବୁଦିନ ପାଇଁ ନେଇପାରିବି ବୋଲି ମୋର ବିଶ୍ୱାସ ଅଛି ।

ଜାନୁୟାରୀ / ମାର୍ଚ୍ଚ- ୧୯୯୯



# କେତକୀ ଗୌଡୁଣୀ

ଇନ୍ଦ୍ରାବତୀ ପ୍ରକଳ୍ପର ୨ନଂ. ଡାଇକ୍‌ଠାରୁ  ଡାହାଣରେ ଟିକିଏ ଭିତରକୁ ଗଲେ ସର୍ଗିଗୁଡ଼ା ଗାଁ । ପ୍ରକଳ୍ପ ଯୋଗୁଁ ବାସଚ୍ୟୁତ ହୋଇ କୁରୁମୁଲି ଗାଁରୁ  ଉଠିଆସି ରହିଛନ୍ତି ୧୫ ଘର ବିଭିନ୍ନ ଜାତିର ଲୋକ । କେତକୀ ଗୌଡୁଣୀ ସେ ମଧ୍ୟରୁ ଜଣେ । ପ୍ରକଳ୍ପ ପାଇଁ  ପ୍ରତିରୋଧ ଉଦ୍ଦେଶ୍ୟରେ ପୁରୁଷଙ୍କ ସହିତ ଯୋଗ ହୋଇଥିବା ବିଧବା ମହିଳାମାନଙ୍କ ମଧ୍ୟରୁ ସେ ହେଉଛି ଜଣେ ।

ତା'ର ଉଭୟ ଶାଶୁଘର ଓ ବାପାଘରର ଗାଁ ହେଉଛି କୁରୁମୁଲି । ସେ ଛୋଟଥିଲାବେଳେ ତାର ବାପା ମା' ମରିଯାଇଥିଲେ । ତାକୁ ୧୧/୧୨ ବର୍ଷ ହୋଇଥିବା ବେଳେ ତାର ଭାଇମାନେ ମଦନ ଗୌଡ଼ ସହିତ ବିଭା କରାଇ ତାକୁ ଘରଜ୍ୱାଇଁ ରଖିଥିଲେ । ତାର ସ୍ୱାମୀ ମଧ୍ୟ ଏକା ଥିଲା । ତାର ଦୁଇଟି ଝିଅ, ଗୋଟିଏ ପୁଅ । ପିଲାମାନେ ଛୋଟ ଥିବା ବେଳେ ସ୍ୱାମୀ ମଧ୍ୟ ତାର କୁରୁମୁଲି ଗାଁରେ ମରିଯାଇଥିଲା । ଝିଅ ଦୁଇଟି ମଧ୍ୟରୁ ଗୋଟିଏକୁ  ବିଭା ଦେଇଥିଲା । ଅନ୍ୟଟି ଛୋଟ ବେଳରୁ ମୂକ ଓ ବଧିର । ଛୋଟବେଳେ ସେ ଭାବୁଥିଲା ଝିଅ ତାର ଟିକେ ଡେରିରେ କଥା କହିବ । କିନ୍ତୁ ସେ ଆଦୌ କଥା କହିପାରିଲା ନାହିଁ । ଶୁଣିପାରୁ ନଥିବାରୁ ହାତରେ ଠାରି କହିବା ଜାଣିଛି । ପୁଅଟି ମଧ୍ୟ ଛୋଟ । ଇନ୍ଦ୍ରାବତୀ ବନ୍ଧ ହେବାବେଳକୁ ସ୍ୱାମୀ ତାର ମରିଯାଇଥିଲା । ସେତେବେଳେ କୁରୁମୁଲି (ବର୍ତ୍ତମାନ ଯାହାକି ରିଜର୍‌ଭର ଅଂଚଳ ମଧ୍ୟରେ) ଏକ ବଡ଼ ଗାଁ ଥିଲା । ଗାଁର ଲୋକସଂଖ୍ୟା ପ୍ରାୟ ୨୦୦୦ରୁ ଅଧିକ ଥିଲା । ସବୁ ଜାତିର ଲୋକେ, ଆଦିବାସୀ, ହରିଜନ, ଗଉଡ଼, ଶୁଣ୍ଢି ଏବଂ ଲହରା ଇତ୍ୟାଦି ଏକାଠି ରହୁଥିଲେ । ଗାଁରେ ସରକାରୀ ସ୍କୁଲ ମଧ୍ୟ ଥିଲା । ୫ମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିବାର ସୁବିଧା ଥିଲା ସେ ସ୍କୁଲରେ ।

ଗାଁକୁ  ଭଲ ରାସ୍ତା ଥିବାରୁ ସ୍ୱାସ୍ଥ୍ୟସେବାର ସୁବିଧା ଲୋକେ ପାଇପାରୁଥିଲେ । ପାଖରେ ଜଙ୍ଗଲ ଥିଲା । ସେଥିରୁ  କନ୍ଦା, ଛତୁଠାରୁ  ଆରମ୍ଭ କରି ଜଙ୍ଗଲଜାତ

ଦ୍ରବ୍ୟସବୁ ଆଣି ଭଲରେ ଚଳୁଥିଲେ । ଏତେସବୁ ସୁବିଧା ଛାଡ଼ି ବାସଚ୍ୟୁତ ହୋଇ ଅନ୍ୟ କେଉଁଠିକି ଯିବାକୁ କେହି ରାଜି ହେଉ ନଥିଲେ । ତେଣୁ ପ୍ରତ୍ୟେକ ଘରୁ ଜଣେ ଜଣେ ପ୍ରତିବାଦ କରିବା ପାଇଁ ଯାଉଥିଲେ । ଯେଉଁ ଘରେ ପୁରୁଷ ନଥିଲେ ବିଧବାମାନେ ଯାଉଥିଲେ । ସେ ଦୃଷ୍ଟିରୁ କେତକୀ ମଧ୍ୟ ଦୁଇଥର ପ୍ରକଳ୍ପ ବିରୋଧୀ ଆନ୍ଦୋଳନରେ ବନ୍ଧ ନିକଟରେ ଗାଁ ଲୋକଙ୍କ ସହିତ ଯୋଗଦାନ କରିଥିଲା (ଝାଲିଆଗୁଡ଼ାଠାରେ) । କେତକୀ କହେ, "ସେମାନେ ପ୍ରତିରୋଧ କରିବାକୁ ଯାଇ ଏକଥା ସବୁ କହିଥିଲେ 'ବନ୍ଧ ବାନ୍ଧନାହିଁ ଗାର୍ଡ଼, ଆମକୁ ଟଙ୍କା ଦେଲେ ଏକା ଖାଇ ପାରିବୁକି ? ମାଟି ଧରି କରି ଖାଇବୁ ସିନା । ତୁମେ ଆମକୁ ହିନସ୍ତା କରୁଛ, ବନ୍ଧ ବାନ୍ଧୁଛ, ଆମେ ରାଣ୍ଡୀଲୋକ କେଣେ ଯିବୁ, କିସ୍ ଖାଇବୁ?" ଆଉ ବିଭାଗୀୟ କର୍ମଚାରୀମାନେ ଉତ୍ତର ଦେଉଥିଲେ, "ସରକାର ଠିକ୍ କରିସାରିଛନ୍ତି, ତୁମକୁ ତାବୁ ଦିଆଯିବ, ତୁମେ ଉଠିବ ।" ସେ କହେ, "ଗାଡ଼ି ତାଙ୍କ ଘରମାନଙ୍କରେ ଲଗାଇ ଦେଲେ । ଗୋଟେ ଲୋକ ଘର ଭାଙ୍ଗିଦେବାରୁ ଅନ୍ୟମାନେ ଉଠିଲେ । ସମସ୍ତଙ୍କୁ ଉଠିବାକୁ ବାଧ୍ୟ କରାଗଲା ।"

ସେତିକିରେ ସରକାରୀ କଳ ଶାନ୍ତି ହେଲାନାହିଁ, ସେମାନଙ୍କୁ ଲାଣ୍ଡିମାସରେ (ବୈଶାଖ) ଉଠିବାକୁ ପଡ଼ିଥିଲା । ଯେତେବେଳ ପ୍ରବଳ ଗ୍ରୀଷ୍ମ ସାଙ୍ଗକୁ ପାଣିର ଅଭାବ । ପ୍ରଥମେ ଆମମାନଙ୍କୁ ଖରାଦିନରେ ଝାଞ୍ଜି ପବନରେ ଯେତେବେଳେ ଲୋକମାନଙ୍କ ମରିବାର ଭୟଥିଲା, ସେତେବେଳେ ଏଠାକୁ ଉଠାଇଦେଲେ ଏବଂ ଆମେ ଗଛ ମୂଳରେ ରହିଲୁ । ଏମିତି ମାସକରୁ ଅଧିକ ଦିନ ରହିଲୁ । ମୁଣ୍ଡ ଗୁଞ୍ଜିବାପାଇଁ ଚାଳିଆଟିଏ ବାନ୍ଧିବାକୁ ଚାହିଁଲି । ସେଇଥିପାଇଁ ପିରି, କାଠ, ବାଉଁଶ ଯୋଗାଡ଼ କରିବା ମୋ ଭଳି ଏକ ବୃଦ୍ଧା ବିଧବା ପକ୍ଷରେ କେତେ ଯେ କଷ୍ଟ ସେ କଥା କିଏ ବୁଝିବ ? ଶେଷରେ ଜ୍ୱାଇଁ ସହାୟତାରେ ଘରଟିଏ ବାନ୍ଧି ରହିଲୁ । ଏବେ ତା'ର ଘର କହିଲେ ଏକ ବଖରା ଚାଳ ଘର, ଯେଉଁଠାରେ ସେ ଓ ତାର ବିକଳାଙ୍ଗ ଝିଅ ରୁହନ୍ତି । ପୁଅଟି ବଡ଼ ଭଉଣୀ ଘରେ ରୁହେ । ମଝିରେ ମଝିରେ ତା ପାଖରେ ମଧ୍ୟ ଆସି ରୁହେ । ଏ ଗାଁରେ ବର୍ତ୍ତମାନ ପାଣିର ଭାରି ଅସୁବିଧା ।

କେତକୀକୁ ବୁଡ଼ିଟଙ୍କା ୪୦,୫୭୫ ଟଙ୍କା ମିଳିଥିଲା । ତାର ଝିଅ ବିକଳାଙ୍ଗ ହେତୁ ସେ ମଧ୍ୟ ଟଙ୍କା ପାଇଥିଲା । ପୁଅ ଛୋଟ ଥିବାରୁ ତାକୁ ମିଳି ନଥିଲା । ଟଙ୍କା ପାଇବା ପରେ ସେ କେବଳ ଗୋଟେ ଏକର ଜମି କିଣିଛି, ଯେଉଁଥିରେ ପଞ୍ଜିକରଣ ସହିତ ୨୫,୦୦୦ ଟଙ୍କା ଖର୍ଚ୍ଚ ହୋଇଛି । ବାକି ଟଙ୍କା ସବୁ ଖାଇବାରେ ଖର୍ଚ୍ଚ କରିଛି ।

ସେ କହେ, "ପୁରୁଣା ଗାଁରେ ଆମେ ଭଲରେ ଥିଲୁ । ସେଠି ଚାଷ ଜମି ନଥିଲେ ମଧ୍ୟ କୁଲି ଭୁତି ମିଳୁଥିଲା । ଧାନ ମାଣ୍ଡିଆ ମଧ୍ୟ ଡଙ୍ଗରରେ କରୁଥିଲୁ । ଜଙ୍ଗଲ ମଧ୍ୟ ଥିଲା । ଜଙ୍ଗଲରୁ କେତେ ଜିନିଷ ମିଳୁଥିଲା । ଘର ମଧ୍ୟ ଭଲ ଥିଲା । ଏବେ ଜମି ଘେନିଛି, ଭାଗ ଦେଇଛି । ସେଥିରୁ ଧାନ ୧୦/୧୨ ପୁଟି ବର୍ଷକୁ ପାଉଛି । ଯାହାକି ମୋର ପରିବାର ଚଳିବା ପାଇଁ ନିଅଣ୍ଟ । ପୁଅଟି ଟିକେ ଟିକେ ହଳ କରିପାରୁଛି । କନ୍ଦି ଝିଅଟି ମଧ୍ୟ କୁଲି କରିବାକୁ ଯାଉଛି । ଏବେ ଡ୍ୟାମ୍ କାମ ବନ୍ଦ ହୋଇଯିବ (ସରିଯିବ) । ତାପରେ ଆଉ କେଉଁଠି ବି କୁଲି ମିଳିବନି । ସେବେ କେମିତି ଚଳ୍‌ବୁ ଭାବିଲେ ଆଖିବାଟେ ମିଶା ଲୁହ ଆସିଯାଉଛି । ବଡ଼ ଝିଅ ଓ ଜ୍ୱାଇଁ ମଝିରେ ମଝିରେ ଆମ କଥା ବୁଝନ୍ତି । କିନ୍ତୁ ସେମାନେ କ'ଣ ସବୁଦିନ ଆମକଥା ବୁଝିବେ କି ?"

ପୁଅଝିଅଙ୍କର ବିକଳାଙ୍ଗ ଅବସ୍ଥା ପାଇଁ ତାର ସବୁବେଳେ ଚିନ୍ତା । "ଝିଅ ଭଲଥିଲେ ବିଭା ହୋଇ ୨/୩ ପିଲାର ମାଆ ହୋଇଥାନ୍ତା । ତାର କଥାତ କେହି ବୁଝିବ ନାହିଁ, କିଏ ତାକୁ ବିଭା ହେବ ? ପୁଅ ମୋର ଭଲ ହୋଇଥିଲେ କାଠ ଆଣି ବିକି ପାରନ୍ତା । ମତେ କାଠ ପାଇଁ ଯିବାକୁ ପଡ଼ନ୍ତା ନାହିଁ । ଘର ଚଳିବା କଥା ଚିନ୍ତା ଲାଗନ୍ତା ନାହିଁ । କେହି ଲୋକବାକ ନାହିଁ, ତେଣୁ ଭଲ ଲାଗୁନାହିଁ । ଗୋଟେ ସାନ୍‌କେ ନାହିଁକି ଗୋଟେ ବଡ଼୍‌କେ ନାହିଁ, କରି ଆଣିଦେବା ଲୋକ ନାହିଁକି ଧରିଆଣି ଦେବା ଲୋକ ନାହିଁ ।" ଏ ସବୁ ହେଉଛି ତାର ଅନ୍ତରର କଥା । ଏକଥା କହିବା ପାଇଁ ଯେମିତି ସେ ଅନେକ ଦିନ ଧରି ଚାହିଁବସିଥିଲା । ମନର ଅସନ୍ତୋଷକୁ ପ୍ରକାଶ କରିପକାଇଲେ ଅନେକ ଶାନ୍ତି ମିଳିଗଲା ଭଳି ସେ ଏସବୁ ଗପିଚାଲିଥିଲା ।

ତାକୁ ବାର୍ଦ୍ଧକ୍ୟ ଭତ୍ତାର ସୁବିଧା ମିଳିଛି କି ନାହିଁ ପଚାରିବାରୁ ସେ କହେ ଆଜି ଯାଏ ତିନିଥର ହେଲା ଲେଖିଲିଣି । ହେଲେ ସରକାର କହୁଛି ମୁଁ ଧାଙ୍ଗିଡ଼ି ଅଛି । ମୋର ମୁଣ୍ଡ ବାଳ ପାଚି ନାହିଁ । ତେଣୁ ଟଙ୍କା ମିଳିବ ନାହିଁ । ମୁଁ ଜାଣି ପାରୁ ନାହିଁ ଆମେ ସିନା ଆମର ବୟସ କଥା ଜାଣିନାହୁଁ, କିନ୍ତୁ ସରକାର କେମିତି ଆମଭଳି ମୂର୍ଖ ହେଲା ? ନିଜର ଭିଟାମାଟି ଛାଡ଼ି ଅନ୍ୟ ଜାଗାରେ ରହିବା କେତେ ଦୁଃଖ ତାହା ହିଁ ଆମେ ଉପଲବ୍ଧି କରୁଛୁ ।

ଏ ହେଉଛି କେତକୀର ସୂକ୍ଷ୍ମ ଜୀବନ କାହାଣୀ । ଯେଉଁଥିରେ ଭରି ରହିଛି କେବଳ ହତାଶ ଭାବ । ପ୍ରଥମରୁ ପତିର ବିୟୋଗ ତା ସହିତ ବିକଳାଙ୍ଗ ପୁତ୍ର, କନ୍ୟା । ପୁଣି ପ୍ରକଳ୍ପ ଯୋଗୁଁ ବାସଚ୍ୟୁତ ହେବାକୁ ପଡ଼ିଛି ତାକୁ । ବାର୍ଦ୍ଧକ୍ୟ ସମୟରେ

ବି ସେ ନିଜେ ନିଜକୁ ଭରସା କରି ଚଳିବା ଛଡ଼ା ତା ପାଇଁ ଅନ୍ୟ କୌଣସି ଚାରା ନାହିଁ । ସବୁ ବାଟ ଯେମିତି ତା'ପାଇଁ ବନ୍ଦ ।

*"ଭାରତବର୍ଷର ଜଣେ ଗ୍ରାମବାସୀ କ୍ଷେତ୍ରରେ, ବାହାରର ଯାବତୀୟ ରୁକ୍ଷତା ପଛରେ ଏକ ବହୁ ପୁରାତନ ସଂସ୍କୃତି ଲୁକ୍‌କାୟିତ ହୋଇ ରହିଥାଏ । ବାହାରର ସେହି ଖୋଳଟାକୁ ଦୂର କରିଦିଅ, ସନାତନ କାଳରୁ ରହି ଆସିଥିବା ତାର ଦାରିଦ୍ର୍ୟକୁ ଅପସାରଣ କର, ତା'ର ନିରକ୍ଷରତାକୁ ଦୂର କରିଦିଅ ଏବଂ ଜଣେ ସଂସ୍କୃତି ସମ୍ପନ୍ନ, ସୁରୁଚିଯୁକ୍ତ ସ୍ୱାଧୀନ ନାଗରିକ ଯେଉଁଭଳି ହେବା ଉଚିତ, ତୁମେ ତାହାର ହିଁ ଏକ ସର୍ବୋତ୍ତମ ନମୁନା ଦେଖିବାକୁ ପାଇବ ।"*

*- ଗାନ୍ଧିମାନସ*

ମାର୍ଚ୍ଚ - ୧୯୯୯



# ମାନସୀ ଅପା

ମାନସୀ ଅପାଙ୍କ ଉପରେ ଏପରି ଏକ ଲେଖା ଲେଖିବି ବୋଲି ମୁଁ ବହୁଦିନ ଆଗରୁ ସ୍ଥିର କରିଥିଲି । ଲେଖାଟି ଲେଖିସାରି ତାଙ୍କୁ ଦେଖେଇ ଖୁସି କରିଦେବି ବୋଲି ଭାବିଥିଲି । ମାତ୍ର ତାହା ହେଲା ନାହିଁ । ଗତ ଅଗଷ୍ଟ ୨୮ତାରିଖ ରାତିରେ ଲଙ୍ଗଳେଶ୍ୱରଠାରେ ତାଙ୍କ ସ୍ୱାମୀଙ୍କ ସହ ବସ୍‌ରେ କାଶୀପୁର ଯାଉଥିବାବେଳେ ଏକ ମର୍ମନ୍ତୁଦ ଦୁର୍ଘଟଣାରେ ସେ ଅତି ଶୋଚନୀୟ ଭାବେ ପ୍ରାଣ ହରାଇଥିଲେ । ମାନସୀ ଅପା ଜଣେ ଅତି ସାଧାରଣ ସ୍ତ୍ରୀ ଲୋକ । ଦେଖିବାକୁ ପତଳା ହୋଇ ସାବନା ରଙ୍ଗର, ବୟସ ବୋଧେ ୩୦ରୁ ୩୫ ଭିତରେ ହେବ ।  କାଶୀପୁରର ନିପଟ ଆଦିବାସୀ ଅଞ୍ଚଳରେ ଗୋଟିଏ ସ୍ୱେଚ୍ଛାସେବୀ ସଂସ୍ଥାରେ ରହି ସେ ଆଉ ତାଙ୍କ ସ୍ୱାମୀ ଚିତ୍ତରଂଜନ ରାୟ ବହୁତ ବର୍ଷ ଧରି କାମ କରି ଆସୁଥିଲେ । ମାନସୀ ଅପା ତ ମରିଗଲେ, ଚିତ୍ତବାବୁ ଆହତ ହୋଇ ପଡିଛନ୍ତି ବୋଲି ଖବର ମିଳିଛି । ପ୍ରାୟ ୬/୭ବର୍ଷ ତଳେ ଯେତେବେଳେ କିଶୋରମାନଙ୍କ ପାଇଁ ଉଦ୍ଦିଷ୍ଟ 'ନବ ପଲ୍ଲବ'ର ପ୍ରଥମ ଶିବିର କାଶୀପୁରରେ ପଡିଥିଲା, ସେହି ଶିବିରରେ ଚିହ୍ନା ପରିଚୟରୁ ସାମନ୍ୟ ଆନ୍ତରିକତା ହୋଇଯାଇଥିଲା ମାନସୀ ଅପାଙ୍କ ସହ । ଶିବିର ସରିବା ପରେ ମୁଁ ପଳେଇ ଆସିଲି ମୋର ସୌଖୀନ ଅଧ୍ୟାପନା ଜୀବନକୁ ।

ମାନସୀ ଅପା ତାଙ୍କର ସାଥିମାନଙ୍କ ସହ କୋରାପୁଟର ସେହି ଦୁର୍ଗମ ଅଭ୍ୟନ୍ତରରେ ରହି ଗରିବ ଆଦିବାସୀ ମାନଙ୍କ ସହ ଏକ ହୋଇଯାଇ ତାଙ୍କର ସେବାରେ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ଗଲାବର୍ଷ ଖୋର୍ଦ୍ଧାର ମଳିପଡାରେ ପୁଣି 'ନବ ପଲ୍ଲବ'ର ଶିବିର ପଡିଥିଲା । ମଳିପଡା ମାନସୀ ଅପାଙ୍କ ଶ୍ୱଶୁରଘର । ତେଣୁ ମଳିପଡାର 'ନବ ପଲ୍ଲବ' ଶିବିରରେ ମାନସୀ ଅପା ପ୍ରାୟ ଅନେକ କଥା ବୁଝୁଥିଲେ । ଆମ ସମସ୍ତଙ୍କର ଖାଇବା ପିଇବାଠାରୁ ଆରମ୍ଭ କରି ଛୋଟ ଛୋଟ ପିଲାମାନଙ୍କୁ ଗପ କହିବା, ତାଙ୍କ ସାଥିରେ ଗୀତ ବୋଲିବା, ସବୁ

କାମ ସେ ଏତେ ଆଗ୍ରହରେ ଏତେ ସୁନ୍ଦର ଭାବରେ କରୁଥିଲେ ଯେ ତାର ଏକ ସଂକ୍ରାମକ ପ୍ରଭାବ ମଧ୍ୟ ଆମ ଉପରେ ପଡୁଥିଲା । ସେହି ଶିବିରରେ ପିଲାମାନଙ୍କୁ ଛାଡିଦେଲେ ଆମେ ଅନେକ ବୟସରେ ବଡଲୋକ ଥିଲୁ । ଚିତ୍ତଭାଇ, ଦାସ୍ ବେହେନୁର ଅରବିନ୍ଦ ବେହେରା, ଯତୀନ ନାୟକ, ଅଭୟ ସିଂ, ବିନୟକୃଷ୍ଣ ପଟ୍ଟନାୟକ, ରମେଶ ଗୁମାନସିଂ, ଏମିତି ଆମେ ଅନେକ ଥିଲୁ । ମାନସୀ ଅପା ତାଙ୍କର ଆନ୍ତରିକ ଉତ୍ସାହରେ ଆମ ସମସ୍ତଙ୍କୁ ମୁଗ୍ଧ କରି ରଖିଥିଲେ । ଏହି ଶିବିରରେ ମୁଁ ମାନସୀ ଅପାଙ୍କୁ ଆଉ ଟିକିଏ ପାଖରୁ ଦେଖିବାକୁ, ଚିହ୍ନିବାକୁ ସୁଯୋଗ ପାଇଲି ।

ସେମିତି ଉପରୁ ଦେଖିବାକୁ ଗଲେ ମୋତେ ପ୍ରଭାବିତ କରିପାରିବା ଭଳି ତାଙ୍କର କିଛି ନଥିଲା । ଗାଉଁଲି ମଫସିଲି ସ୍ତ୍ରୀଲୋକ, ସାଦାସିଧା ବେଶ, ସାଧାରଣ ଘରର ଝିଅ, ସାଧରଣ ଘରର ବୋହୂ, ଶିକ୍ଷା ବି ସେମିତି ବୋଧେ ବିଶେଷ କିଛି ନାହିଁ । କିନ୍ତୁ ଟିକିଏ ଅନ୍ତରଙ୍ଗ କଥାବାର୍ତ୍ତା ପରେ ସେହି ସାଧାରଣ ମାମୁଲି ସ୍ତ୍ରୀ ଲୋକଟିର ଆବରଣ ଭିତରୁ ବାହାରି ଆସେ ଗରିବ ଆଦିବାସୀ ମାନଙ୍କ ସେବାରେ ସଂପୂର୍ଣ୍ଣ ଭାବେ ଉତ୍ସର୍ଗୀକୃତ ଆତ୍ମାର ଐଶ୍ୱର୍ଯ୍ୟ - ତା'ର ଶ୍ରଦ୍ଧା, ତା'ର କ୍ରୋଧ, ତା'ର ସଂଗ୍ରାମ । ନିଜର ଛୋଟ ଛୋଟ ଦୁଇଟି ସନ୍ତାନଙ୍କୁ ଜଣେ ସଂପର୍କୀୟଙ୍କ ଘରେ ଛାଡି ଦେଇ ମାନସୀ ଅପା ତାଙ୍କର ସ୍ୱାମୀ ସହ କେଉଁ ସ୍ୱପ୍ନରେ କାଶୀପୁରର ସେ ପ୍ରାଗ୍ ଐତିହାସିକ ଅନ୍ଧାରରେ ମାସ ମାସ , ବର୍ଷ ବର୍ଷ ଏ ପାହାଡରୁ ସେ ପାହାଡ, ଏ ଡଙ୍ଗରରୁ ସେ ଡଙ୍ଗର, ଏ ଗାଁରୁ ସେ ଗାଁ ଘୂରି ବୁଲିଛନ୍ତି ତାହା ଭାବି ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ଦରମା ହିସାବରେ ସେମାନେ ତ ସେମିତି ବେଶି କିଛି ପାଉ ନ ଥିଲେ । ସେଠି ବି ତ ବିଳାସ ବ୍ୟସନରେ ସମୟ କାଟୁ ନ ଥିବେ । ତେବେ କେଉଁ ସ୍ୱପ୍ନ ତାଙ୍କୁ ଏପରି ନିମଜ୍ଜିତ କରି ରଖିଛି ଯେ ନିଜର କୁନି କୁନି ପିଲାମାନଙ୍କୁ ଦୂରରେ ଛାଡି ସହରୀ ଜୀବନର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଛାଡି ସେମାନେ ଏହି ଦୁର୍ଗମ ବଣ ମୂଲକରେ ରହିବାକୁ ଆଦରି ନେଇଛନ୍ତି । ସେହି ସ୍ୱପ୍ନ ଯୋଗୁଁ ତ ଏତେ ଦାରିଦ୍ର୍ୟ ସତ୍ତ୍ୱେ ଅପା ଏତେ ପ୍ରାଣପୂର୍ଣ୍ଣ । ଟିକିଏ କଥାବାର୍ତ୍ତାରୁ ପରିଚୟ ମିଳିଯିବ ତାଙ୍କ ଚରିତ୍ରର ସ୍ୱଚ୍ଛ, ନିଷ୍କପଟ, ନିରୀହ ଏବଂ ଅତି ଅନ୍ତରଙ୍ଗ ଭାବେ ଶ୍ରଦ୍ଧାପୂର୍ଣ୍ଣ । ସେଦିନ ସନ୍ଧ୍ୟାରେ ମଳିପଡା ସ୍କୁଲ ବାରଣ୍ଡାରେ ବସି ସେ ମୋ ଆଗରେ ତନ୍ମୟ ହୋଇ ଗପି ଚାଲିଥିଲେ ରାୟଗଡାରେ ଆଦିବାସୀମାନଙ୍କ ସହ ମିଶି ତାଙ୍କର ଆନ୍ଦୋଳନର କଥା ସବୁ ।

ମଳିପଡା ଶିବିରରେ ଥିବାବେଳେ ଦିନେ ମାନସୀଅପାଙ୍କ ଶ୍ୱଶୁରଘର ଅର୍ଥାତ୍ ଚିତ୍ତବାବୁଙ୍କ ଘରକୁ ଯାଇଥିଲୁ । ଘର କହିଲେ, ସେମିତି କିଛି ନାହିଁ । ବଣରେ ଦେଢ଼ ବଖରା ଘର । ରୋଷେଇ ଘର ଚାଳ ଉଲୁରି ଯାଇଚି ଯେ ଠାଏ ଠାଏ ପ୍ୟାଚ୍ ପଡିଲା

ପରି ଚିରା ପଲଥିନ୍ ଖଣ୍ଡମାନ ପଡିଛି । ଘରର ସବୁଠି ଦାରିଦ୍ର୍ୟର, ଅଭାବର ଚିହ୍ନ ସୁସ୍ପଷ୍ଟ । ତଥାପି ଆମକୁ ଘର ଦେଖାଉଥିଲା ବେଳେ ମାନସୀ ଅପାଙ୍କ କଣ୍ଠରେ ସାମାନ୍ୟତମ ଦୁଃଖ କି ଗ୍ଲାନି କି ସଂକୋଚ ନଥିଲା । ଆଗ୍ରହର ସହ ସେ ଆମକୁ ତାଙ୍କ ଘରକଥା କହୁଥିଲେ, ତାଙ୍କର ତାଙ୍କ ଯା'ମାନଙ୍କର ସହ ଅନ୍ତରଙ୍ଗ ସଂପର୍କ କଥା କହୁଥିଲେ; ଏମିତିକି କେତେ କ'ଣ କଥା କହି ଚାଲିଥିଲେ । ରୋଷେଇଘର ଛାତ ଉପରେ ଚିରା ପଲିଥିନ୍‌କୁ ଦେଖି ମୁଁ ଭାବୁଥିଲି, ନିଜ ଦାୟିତ୍ୱକଥା ଭାବିବାକୁ ଏମାନଙ୍କ ପାଖରେ ସମୟ କାହିଁ? ଏମାନଙ୍କ ପାଖରେ କିଛି ନ ଥାଇ ମଧ୍ୟ ଏମାନେ ଭାବର ଐଶ୍ୱର୍ଯ୍ୟ ଭିତରେ ବଞ୍ଚିଛନ୍ତି । କିନ୍ତୁ ସେହି ଭାବର କାଣିଚାଏ ମଧ୍ୟ ଆମ ପାଖରେ ନାହିଁ । ତା'ର ଅଭାବରେ, ଏତେ ପ୍ରାଚୁର୍ଯ୍ୟରେ ଥାଇ ମଧ୍ୟ ଆମ ଜୀବନଟା ଭିତରୁ ଶୁଷ୍କ ହୋଇ ଆସିଲାଣି ।

ମୁଁ ଜାଣେ, ମାନସୀ ଅପାଙ୍କ ପରି ଏବେ ବି ଅନେକ ଝିଅ, ଅନେକ ତରୁଣୀ ଅଛନ୍ତି, ଯେଉଁମାନେ ସେମିତି କେଉଁ ସ୍ୱପ୍ନରେ ନିଜକୁ ହଜେଇ ଦେଇ କେଉଁ ଅପନ୍ତରା ଗାଁରେ ଜୀବନ କାଟୁଛନ୍ତି । ସେମାନଙ୍କ ପାଇଁ ସେମାନଙ୍କର ବ୍ୟକ୍ତିଗତ ଜୀବନ ଗୌଣ ହୋଇ ଯାଇଛି । ସମାଜରେ ଥୋକେ ଅଛନ୍ତି ଯେଉଁମାନେ ସବୁବେଳେ, ସବୁ ମୁହୂର୍ତ୍ତରେ କେବଳ ନିଜକଥା, ନିଜ ସଂସାରର କଥା ଭାବୁଥାନ୍ତି; କେବେହେଲେ ଅନ୍ୟକଥା ଭାବନ୍ତି ନାହିଁ କି ଅନ୍ୟମାନଙ୍କ ପାଇଁ ମୁହୂର୍ତ୍ତେ ମଧ୍ୟ ଚିନ୍ତା କରନ୍ତି ନାହିଁ । ଆହୁରି ବି କେତେକ ଅଛନ୍ତି ଯେଉଁମାନେ କେବେ ନିଜ ପାଇଁ ଚିନ୍ତା କରନ୍ତି ନାହିଁ । ସବୁବେଳେ ଅନ୍ୟମାନଙ୍କ ଜୀବନର ସୁଖ, ଦୁଃଖରେ ନିମଗ୍ନ ଥାଆନ୍ତି । ଏହି କେତେକ ମୁଷ୍ଟିମେୟ ଲୋକ ତ ସଂସାରକୁ ଏପରି ଆର୍ଦ୍ର, କରୁଣାମୟ କରି ରଖିଥାନ୍ତି ।

**ଜୟନ୍ତ ବିଶ୍ୱାଳ**

**ଶ୍ରଦ୍ଧାଞ୍ଜଳି**

ଶ୍ରୀମତି ମାନସୀ ଚମ୍ପତିରାୟଙ୍କ ଉଦ୍ଦେଶ୍ୟରେ

ଦୀର୍ଘ ୧୨ବର୍ଷରୁ ଉର୍ଦ୍ଧ୍ୱ ଦିନ ଧରି କାଶୀପୁର ଏବଂ ଟିକିରି ବ୍ଲକରେ ସମାଜସେବା କରି ଶ୍ରୀମତୀ ମାନସୀ ଚମ୍ପତିରାୟ ଗତ ତା ୨୮.୦୮/୧୯୯୯ରିଖ ରାତି ଘ.୧୧.୩୦ମି. ସମୟରେ ଏକ ମର୍ମନ୍ତୁଦ ବସ୍ ଦୁର୍ଘଟଣାରେ ଇହଲୀଳା ସମ୍ବରଣ କରିଛନ୍ତି । ପ୍ରଥମେ କାଶୀପୁର ଅଞ୍ଚଳର ଦୁର୍ଗମ ଅଞ୍ଚଳକୁ ଯାଇ ଲୋକଙ୍କ ପାଇଁ ଯେପରି ଭାବରେ କାମ କରିଥିଲେ, ତାହା ଆମ ପାଇଁ ଉଦାହରଣ ହୋଇ ରହିବ । ସେ ଯେପରି ସାହସୀ ଥିଲେ, ସେହିପରି ଥିଲେ ପରିଶ୍ରମୀ । ବର୍ତ୍ତମାନ

ସୁଦ୍ଧା ତାଙ୍କୁ କାଶୀପୁର ବ୍ଲକର ଜନସାଧାରଣ ଭୁଲି ପାରିନାହାନ୍ତି କିମ୍ବା ଭୁଲି ପାରିବେ ନାହିଁ । ଏତିକିରେ ତାଙ୍କର କର୍ତ୍ତବ୍ୟ ସରି ନ ଥିଲା । ନିଜେ ସ୍ୱାମୀ ଚିତ୍ତ ଚମ୍ପତି ରାୟଙ୍କ ସାଙ୍ଗରେ ରହି ଟିକିରି ବ୍ଲକର ସର୍ଗୀଗୁଡା ଗ୍ରାମରେ 'ଲକ୍ଷ୍ମଣ ନାୟକ ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଗଠନ କରି ଲୋକ ସେବାରେ ନିଜକୁ ନିୟୋଜିତ କରିଥିଲେ । ବିଶେଷ କରି ଏ ଅଞ୍ଚଳର ଆଦିବାସୀ ମହିଳାମାନଙ୍କୁ ସଚେତନ କରାଇବାରେ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ତାଙ୍କ ଚେଷ୍ଟାରେ କାଶୀପୁର ତଥା ଟିକିରି ଅଞ୍ଚଳରେ ଆଦିବାସୀ ନିଜ ଗୋଡରେ ନିଜେ ଠିଆ ହୋଇ ପାରିଛନ୍ତି । ତାଙ୍କର ଲୋକ ସଂପର୍କ ଏତେ ସୁଦୃଢ଼ ଥିଲା ଯେ ସେ ଯେଉଁ ଗାଁରେ ପହଞ୍ଚୁଥିଲେ, ସେଠାରେ ତାଙ୍କୁ ଲୋକେ ପରିବାରର ସଦସ୍ୟ ଭଳି ଗ୍ରହଣ କରି ନେଉଥିଲେ । ତେଣୁ ବର୍ତ୍ତମାନ ଆମ ଗହଣରେ ନ ଥିଲେ ମଧ୍ୟ ସେ ଆମ ଭିତରେ ଚିରଦିନ ବଞ୍ଚିରହିବେ । ଆମେ 'ଅଗ୍ରଗାମୀ' ଏବଂ ଜନସାଧାରଣଙ୍କ ତରଫରୁ ତାଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରୁଛୁ ।

ସମ୍ବାଦ, ୧୨ ।୦୯ ।୯୯



# ସମସ୍ତଙ୍କର ମୁକ୍ତା

ମୁକ୍ତା ଝୋଡିଆ: ଦେଖିଲେ ଯେମିତି ସରଳ, ନିଷ୍କପଟ, ନିରୀହ, ସାହସୀ ଜଣାପଡେ ତା'ର କାମ ମଧ୍ୟ ଠିକ୍ ସେହିପରି । ସବୁବେଳେ ସବୁକଥାରେ ସେ ଆଗୁଆ ହୋଇ ବାହାରେ । ନିଜ ଗାଁ ତଥା ନିଜ ଅଞ୍ଚଳର ଉନ୍ନତି ପାଇଁ ତାକୁ ଭଲ ଭାବେ ନିଦ ହୁଏନି ଯେମିତି । ସେ ଯେତେବେଳେ ଡଙ୍ଗାସିଲ କିମ୍ବା କାଶୀପୁର ଆସେ, ପଚାରିଲେ କେତେବେଳେ କୁହେ ଗାଁ ରାସ୍ତା କାମ ବିଷୟରେ ବୁଝିବାକୁ ଆସିଛି ତ, କେତେବେଳେ କୁହେ ସରପଞ୍ଚ ପାଖକୁ ପଞ୍ଚାୟତ କଥା ବୁଝିବାକୁ ଆସିଛି । ପୁଣି କେତେବେଳେ କୁହେ ଆମ ସଞ୍ଚୟ ଦଳରେ ହଳଦୀ କିଣିବା ପାଇଁ ବ୍ୟାଙ୍କରୁ ଟଙ୍କା ଉଠାଇବାକୁ ଆସିଥିଲି ତ, କେବେ ମହିଳା ମଣ୍ଡଳର ଟଙ୍କା ବ୍ୟାଙ୍କରେ ବାନ୍ଧିବାକୁ ଆସିଥିଲି । ସଦା ଚଳ ଚଞ୍ଚଳ ତଥା ଅନ୍ୟପାଇଁ କାର୍ଯ୍ୟରତ ଏହି ମହିଳା ଜଣଙ୍କର ଘର ରାୟଗଡା ଜିଲ୍ଲାର କାଶୀପୁର ବ୍ଲକ୍ ଅନ୍ତର୍ଗତ କୁଚେଇପଦର ପଞ୍ଚାୟତର ଗୌଡଗୁଡା-ଶିରିଗୁଡା ଗାଁରେ ।

କାଶୀପୁର-ଡଙ୍ଗାସିଲ ମୁଖ୍ୟ ରାସ୍ତାରେ କାଶୀପୁରରୁ ୧୫କି.ମି. ଯାଇ ସେଠାରୁ ବାମ ପଟରେ ଏକ ପାଦ ଚଲା କଚ୍ଚା ରାସ୍ତାରେ ପୁଣି ୬କି.ମି. ଗଲେ ଗାଁଟି ପଡିବ । ଗାଁରେ ମୋଟ୍ ୬୦ଟି ପରିବାର ମଧ୍ୟରୁ ୫୬ଟି ଆଦିବାସୀ ଓ ୪ଟି ସାହୁ ପରିବାର ବାସ କରନ୍ତି । ମୁକ୍ତା ମା' ଘରର ସବୁ ଦାୟିତ୍ୱ ମୁଣ୍ଡେଇ ମଧ୍ୟ ସାମୂହିକ କାର୍ଯ୍ୟ କରିବାରେ ବି ହେଳା କରିନାହିଁ । ଏଥର ରାଜ୍ୟସ୍ତରୀୟ ଆଦିବାସୀ ମହିଳା ସମାବେଶରେ, ପଞ୍ଚାୟତିରାଜ ବ୍ୟବସ୍ଥାରେ ଗ୍ରାମସଭାର କ୍ଷମତା ସଂପର୍କରେ ଆଲୋଚନା ହେଲାବେଳେ, ସେ ନିଜକୁ ସମ୍ଭାଳି ନପାରି ନିଜର ଅନୁଭୂତି ସବୁ ଅନର୍ଗଳଭାବେ କହି ଚାଲିଥିଲା ଏବଂ ଶେଷରେ କାହାକୁ ଦୋଷଦେବ ବୋଲି ସମସ୍ତ ଉପସ୍ଥିତ ବର୍ଗଙ୍କୁ ପଚାରି ଚାଲିଥିଲା । ଯାହାର ବିଷୟବସ୍ତୁ ନିମ୍ନପ୍ରକାରେ ଥିଲା:

ଆମ ଗାଁକୁ ମୋଟେ ଭଲ ରାସ୍ତା ନଥିଲା । ଛୋଟ ପାଦଚଲା ରାସ୍ତାଟିଏ ଥିଲା ।

ଯିବା ଆସିବା କରିବାକୁ ଭାରି ଅସୁବିଧା ହେଉଥିଲା ଆମକୁ । ତେଣୁ ଆମେ ସବୁ ଗାଁ ଲୋକେ ମିଶି ପ୍ରଥମେ ନିଷ୍ପତ୍ତି ନେଲୁ ଯେ ଆମ ଗାଁକୁ ରାସ୍ତା ହେବାପାଇଁ ଆମେ ଗ୍ରାମସଭାରେ କହିବା । ତା' ପରଦିନ ଆମେ ସବୁ ଗାଁ ଲୋକ ଦସ୍ତଖତ କରି ଏ ବାବଦରେ ଏକ ଦରଖାସ୍ତ ଲେଖି ସରପଞ୍ଚଙ୍କୁ ଏବଂ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କୁ ନେଇ ଦେଲୁ । ସରପଞ୍ଚଙ୍କ ପାଖକୁ କେବଳ ଆମେ ୧୦/୧୨ଜଣ ମା' ଯାଇଥିଲୁ । ଆମକୁ ସେ ବେଳର ସରପଞ୍ଚ ଗଣେଶ ସାଉଁନ୍ତା କହିଲା- 'ସବୁ ପଞ୍ଚାୟତରେ କାମ ଆସୁଛି । ହେଲେ ସେ କାମଗୁଡିକ ସବୁ ପଞ୍ଚାୟତରେ ବୁଲି ବୁଲି ଆସିବ । ତେଣୁ ଆମ ପଞ୍ଚାୟତକୁ ଆସିଲା ବେଳକୁ ଟିକେ ଡେରି ହେବ । ଆମ ପଞ୍ଚାୟତକୁ କାମ ଆସିଲେ ମୁଁ ତୁମମାନଙ୍କୁ କହିବି ।' ଆମ ଗାଁରେ ଆସି ସମସ୍ତଙ୍କୁ ଏ କଥା ଜଣାଇ ଦେଲୁ । ଗାଁ ଲୋକେ କହିଲେ ଠିକ୍ ଅଛି, ଆଉ କିଛି ଦିନ ଗଲେ ପୁଣି ଯାଇ କହିବାକୁ ହେବ ।

ସମାନ ସାତଦିନ ପରେ ଆମେ ଯାଇ ସରପଞ୍ଚଙ୍କୁ ପଚାରିଲୁ- 'ଆଜ୍ଞା ପଞ୍ଚାୟତ କାମ ସବୁଆଡେ ବୁଲି ବୁଲି ଆସିଲା କି ନାହିଁ ? ଆଉ କେତେବେଳ ବୁଲିଲେ ଆମ ଗାଁକୁ ଆସିବି ?' ସରପଞ୍ଚ କହିଲା କାମ ଆସିଛି, ପଇସା ବି ଅଛି । ମୁଁ ଆକ୍ସନ୍ ପ୍ଲାନ୍ ଅନୁସାରେ କେବେ କେଉଁ କାମ ହେବ ବୁଝିକରି ଆସିଲେ ତୁମକୁ କହିବି । ତମେ ଯାଅ । ପୁଣି ୧୦ଦିନ ପରେ ଆମେ ଯାଇ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରି କରି ଫେରିଆସିଲୁ । ପୁଣି କିଛିଦିନ ପରେ ଯାଇ ସେମିତି ଫେରି ଆସିଲୁ । କାରଣ ସରପଞ୍ଚ ନଥିଲେ । ଏମିତିରେ ଆମ ଗାଁର ମହିଳା ମଣ୍ଡଳ ମା'ମାନେ ୭ଥର ଯାଇ ଫେରିବା ପରେ ଆମ ଗାଁକୁ ରାସ୍ତା କାମ ଗୋଟେ ଅନୁମୋଦନ ହେଲା । ଗାଁ କମିଟି ନାଁରେ କାମ ଆସିଲା । ଗାଁ କମିଟିରେ ଆମ ମହିଳା ମଣ୍ଡଳରୁ ସାତାଇ, ଭଗବତୀ, ସୁଲ ଓ ମୁଁ ଆମେ ଚାରିଜଣ ଥିଲୁ । ରାସ୍ତାକାମଟି ଆମେ ନିଜେ ଦାୟିତ୍ୱ ନେଇ କଲୁ । ୬୦ଘରୁ ଘରକୁ ୨ଜଣ ଲେଖାଏଁ ଦିନକୁ କାମକଲୁ । ପ୍ରାୟ ୧୦ଦିନ କାମ କରି ସେହି ରାସ୍ତା କାମଟି ସାରିଲୁ । ସମସ୍ତେ ଦୈନିକ ୨୫ଟଙ୍କା ଲେଖାଏଁ ନେଇ ବାକି ବଳକା ୨୦୦୦ଟଙ୍କା ଆମ ଗାଁ ପାଣ୍ଠିରେ ରଖିଲୁ ।

ଏ ରାସ୍ତାଟା ଆମ ଗାଁ ଶେଷମୁଣ୍ଡରୁ କାହ୍ନୁ ଗୁଡାକୁ କରିଥିଲୁ । କାରଣ ତାହା ପଞ୍ଚାୟତ ରାସ୍ତା ଥିଲା । ଏବେ କାଶୀପୁର-ଡଙ୍ଗାସିଲ୍ ମୁଖ୍ୟ ରାସ୍ତାରୁ ଆମ ଗାଁକୁ ମଧ୍ୟ ରାସ୍ତା ନାହିଁ । ତେଣୁ ସେ ରାସ୍ତାଟା କରିବାକୁ ଗାଁ ଲୋକ ମଧ୍ୟ ନିଷ୍ପତ୍ତି ନେଲୁ । ତାହା ପଞ୍ଚାୟତ ରାସ୍ତା ନ ଥିବାରୁ ଆମେ ସେ ରାସ୍ତାପାଇଁ ବ୍ଲକକୁ ଲେଖିଲୁ । ଗୋଟିଏ ଦରଖାସ୍ତ ବି.ଡି.ଓ.ଙ୍କୁ ଦେଲୁ । ଆଉ ଗୋଟେ ମିଶା କଲେକ୍ଟରଙ୍କୁ ଦେଲୁ । କିଛି ଲାଭ

ହେଲା ନାହିଁ । ପୁଣି ଥରେ ଯାଇ ବି.ଡି.ଓ.ଙ୍କୁ କହିଲୁ । ଗାଁ କମିଟିରେ କାମ ଆଣିବା ପାଇଁ କହି ଆମେ ବାରମ୍ବାର ବ୍ଲକ ଅଫିସ୍ ଯାଇ କାମ ଆସିବା ସଂପର୍କରେ ବୁଝିଲୁ । ଶେଷରେ ଆମ ଗାଁ ପାଇଁ ରାସ୍ତାକାମଟି ହେବ ବୋଲି ବ୍ଲକରେ କହିଲେ । ତା'ପରେ ବ୍ଲକ୍ ଚେୟାରମ୍ୟାନ୍ ଏବଂ ଓଭରସିଅର ଆସି କେଉଁଠି ରାସ୍ତା ହେବ ଦେଖି ଗଲା ପରେ କହିଲେ, କାମଟା କରିବାକୁ ଦୁଇଲକ୍ଷ ଟଙ୍କା ଲାଗିବ। ତେଣୁ ଟିକେ ଡେରିହେବ । ଗାଁ ଲୋକ ଭାବିଲେ ଯେ ଓଭରସିଅର ଅଟକଳ କରିଯାଇଛିମାନେ ନିଶ୍ଚୟ ଅମା ଗାଁ ରାସ୍ତା କାମ ହେବ। ମାତ୍ର ବହୁଦିନ ପର୍ଯ୍ୟନ୍ତ କାମ ଦାମ ନ ଆସିବାରୁ ଗାଁ ଲୋକେ ଆଶ୍ଚର୍ଯ୍ୟ ହେଲେ । ଏଣେ ଦୁଇଲକ୍ଷ ଟଙ୍କାର କାମ ହେବାକଥା ଶୁଣି ଦୁଇଜଣ ଗାଁ ମୁଖିଆ ଚେଷ୍ଟା କଲେ ତାଙ୍କ ନିଜ ନାଁରେ କାମ ଆଣିବା ପାଇଁ । ତେଣୁ ସେମାନେ ଡେରି ହେବାର ଜାଣି ଗାଁ ଲୋକଙ୍କୁ କହିଲେ- ଦେଖ, ସବୁଆଡେ ସମସ୍ତେ ଓଭରସିଅରଙ୍କୁ ଲାଞ୍ଚ ଦେଇ କାମ କରାଉଛନ୍ତି । ଲାଞ୍ଚ ନ ଦେଲେ କେଉଁଠି ମିଶା କିଛି କାମ ହୋଇପାରୁନି । ଯେଉଁମାନେ ଲାଞ୍ଚ ଦେଉଛନ୍ତି ସେମାନଙ୍କର କାମ ଶୀଘ୍ର ଅନୁମୋଦନ ହେଉଛି । ତେଣୁ ଆମେ କିଛି ଟଙ୍କା ଦେଇ କାମଟା ନେଇ ଆସିଲେ ଭଲ ହେବ ।

ଗାଁ ଲୋକ ମଧ୍ୟ ଏ କଥାରେ ସହଜରେ ରାଜି ହୋଇଗଲେ । ଘରପିଛା ୫୦ଟଙ୍କା ଲେଖାଏଁ ଚାନ୍ଦା କରି ୩୦୦୦ଟଙ୍କା, ଏବଂ ପାଖ ଗାଁ କାପୁଗୁଡାର ଲୋକ ୨୦୦୦ଟଙ୍କା, ଏମିତି ମୋଟ ୫୦୦୦ଟଙ୍କା ଯୋଗାଡ କଲେ । କାପୁଗୁଡା ଗାଁ ଦେଇ ଏହି ରାସ୍ତାଟି ଯାଇଥିବାରୁ ସେଠିକାର ଗାଁ ଲୋକ ଏଥିରେ ସାମିଲ ହୋଇଥିଲେ । ଆଜକୁ  ବର୍ଷେ ହେଲାଣି ସେହି ମୁଖିଆ ଦୁଇ/ତିନି ଲୋକ ୫୦୦୦ଟଙ୍କା ନେଇ ଚେୟାରମ୍ୟାନ୍‌କୁ ହାତକୁ ଦେଇ ଆସିଥିଲେ । ଚେୟାରମ୍ୟାନ କହିଲେ ଟଙ୍କା ଅନୁମୋଦନ ହୋଇ ଆସିଲେ ତମେ ଆସି ଓ୍ୱାର୍କ ଅର୍ଡର ନେଇଯିବ । ପୁଣି କିଛି ଦିନ ଗଲାପରେ ଗାଁ ଲୋକେ ମୁଖିଆଙ୍କୁ ପଚାରିଲେ ଏତେଦିନ ହେଲାଣି ଟଙ୍କା ଦେଲଣି, କାହିଁ କାମ ଆସିବାର ନାଁ ଗନ୍ଧ ତ ଜଣାପଡୁନି । ଗାଁ ଲୋକଙ୍କୁ ଏମାନେ କହିଲେ ଚେୟାରମ୍ୟାନ କହିଛନ୍ତି ଟଙ୍କା ଆସିଲେ ଓ୍ୱାର୍କ ଅର୍ଡର ଦେବେ । ତଥାପି ଡେରି ହେବାରୁ ଗାଁ ଲୋକେ ଦ୍ୱନ୍ଦ୍ୱରେ ପଡିଛନ୍ତି । ଏହି  ମୁଖିଆମାନେ ନିଜ ନାଁରେ କାମ ଆଣିବା ପାଇଁ ଚେଷ୍ଟା କରୁଛନ୍ତି ବୋଲି ଗାଁ ଲୋକେ ସଂଦେହ କରିବାକୁ ଆରମ୍ଭ କଲେଣି । କାରଣ ଟଙ୍କା ଦେବାର ବର୍ଷେ ପୂରିଗଲାଣି ।

ସ୍ୱାଭାବିକ ଭାବେ ଗାଁ ଲୋକେ ଭାବୁଛନ୍ତି ଯେ ଯେଉଁମାନେ ଟଙ୍କା ନେଇ ଚେୟାରମ୍ୟାନ୍‌ଙ୍କୁ ଦେବାକୁ ଯାଇଥିଲେ, ସେମାନେ ବୋଧହୁଏ ଟଙ୍କା ଦେଇ ନାହାଁନ୍ତି

ବା ଟଙ୍କା ଦେଇ ନିଜ ନାଁରେ କାମ ଆଣିବାକୁ ଚେଷ୍ଟା କରିଛନ୍ତି । ଆଉ ଚେୟାରମ୍ୟାନ୍ ବୋଧେ ଜାଣି ଯାଇଛନ୍ତି ଯେ ପଇସାଟା ଗାଁ ଲୋକଙ୍କର । ତେଣୁ ସେ ନା ବ୍ୟକ୍ତିଗତଭାବେ କାହା ନାଁରେ ୱାର୍କ ଅର୍ଡର ଦେଉଛନ୍ତି ନା ଗାଁ କମିଟି ନାଁରେ ଦେଉଛନ୍ତି । ପଇସାତକ ପକେଇ ଦେଇ ଚୁପ୍‌ଚାପ୍ ବସି ପଡିଛନ୍ତି । ଏଥିରେ ଆମେ କାହାକୁ ଦୋଷ ଦେବା ? ଗାଁ ଲୋକଙ୍କୁ- ଯେଉଁମାନେ ଲାଞ୍ଚ ଦେବା ଅନ୍ୟାୟ ବୋଲି ଜାଣି ମଧ୍ୟ ଯେନତେନ ପ୍ରକାରେଣ କାମଟା ହୋଇଗଲେ ସବୁଲୋକ ସୁବିଧାରେ ଯିବା ଆସିବା କରିପାରିବେ ଭାବି ଲାଞ୍ଚ ଦେଇଛନ୍ତି, ସେମାନଙ୍କୁ ? ନା ଗାଁ ସାରା ଲୋକଙ୍କର ବିଶ୍ୱାସକୁ ମୁଣ୍ଡେଇ, ସବୁକାମ ନିଜ ଦାୟିତ୍ୱରେ କରାଇ ଦେବାର ପ୍ରତିଶ୍ରୁତି ଦେଇ ଭିତରେ ନିଜ ସ୍ୱାର୍ଥପାଇଁ ଚେଷ୍ଟା କରୁଥିବା ମୁଖିଆମାନଙ୍କୁ ? ନା ଦୁଇପକ୍ଷ ମଝିରେ ରହି ଲାଞ୍ଚ ନେଇ ବସିଥିବା ତଥାକଥିତ ଲୋକପ୍ରତିନିଧିଙ୍କୁ ?

ଅକ୍ଟୋବର - ୨୦୦୦



# ସଜନୀ ଦିଗାଲ୍

କନ୍ଧମାଳ ଜିଲ୍ଲାର ଫିରିଙ୍ଗିଆ ବ୍ଲକଠାରୁ ୮ କିଲୋମିଟର ଦୂରରେ କାଶିନୀପଦର ଗ୍ରାମ ଅବସ୍ଥିତ । ଗ୍ରାମରେ ବିଭିନ୍ନ ସଂପ୍ରଦାୟର ଲୋକ ବାସ କରନ୍ତି । ଆଦିବାସୀ-୫୦, ହରିଜନ-୩୦, ସାଧାରଣ - ୨୦ ଘର । ଏମାନଙ୍କ ମୁଖ୍ୟ ଜୀବିକା ହେଲା କୃଷି କାର୍ଯ୍ୟ । ଏହି କାର୍ଯ୍ୟ କରିବା ସହିତ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରି ଜୀବନଧାରଣ କରିଥାନ୍ତି । ଏହି ବଣ ପାହାଡ଼ଘେରା ଦୁର୍ଗମ ଅଞ୍ଚଳରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ଖାଦ୍ୟର ଅଭାବ ଯୋଗୁଁ ଲୋକମାନେ ନାନା ପ୍ରକାର ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ବର୍ଷକରେ ଅଧିକାଂଶ ଦିନ ଖାଦ୍ୟ ନପାଇ ଭୋକ ଉପାସରେ ରହୁଥିବା ସମୟରେ ଜଙ୍ଗଲରୁ ବିଭିନ୍ନ ପ୍ରକାର ଫଳମୂଳ, କନ୍ଦା ସଂଗ୍ରହ କରି ଖାଇ ବଞ୍ଚିଥାନ୍ତି । ଅନେକ ସମୟରେ ମଧ୍ୟ ସାହୁକାରର ଦ୍ୱାରସ୍ଥ ହୋଇ ଶୋଷଣର ଶିକାର ହୋଇଥାନ୍ତି । ଏହି ଅଞ୍ଚଳକୁ ସରକାରଙ୍କର ବିଭିନ୍ନ ପ୍ରକାର ଯୋଜନା ଆସୁଥିଲେ ମଧ୍ୟ ତାହା ଠିକ୍ ଭାବରେ ଲୋକମାନଙ୍କ ପାଖରେ ପହଞ୍ଚି ପାରୁନାହିଁ । ଯେଉଁ ରାଜନୈତିକ ନେତା ଓ ଟାଉଟରମାନେ ଅଛନ୍ତି, ସେମାନେ ଏଥିରୁ ନିଜ ନିଜର ଫାଇଦା ଉଠାଇବାରେ ବ୍ୟସ୍ତ । କାଶିନୀପଦର ଗ୍ରାମରେ ଦୁଇଟି ରାଜନୈତିକ ଦଳର ଲୋକ ଅଛନ୍ତି, କଂଗ୍ରେସ ଏବଂ ଜନତା । ଗାଁରେ ଅଙ୍ଗନୱାଡ଼ି କେନ୍ଦ୍ର, ଉଚ୍ଚ ବିଦ୍ୟାଳୟ, ମଧ୍ୟଇଂରାଜୀ ଓ ପ୍ରାଥମିକ ବିଦ୍ୟାଳୟ ଅଛି । ଗାଁରେ ବିଭିନ୍ନ ପ୍ରକାର ରାଜନୈତିକ ଦଳ ଥିବାରୁ କୌଣସି ସରକାରୀ କାର୍ଯ୍ୟକ୍ରମ ଠିକ୍‌ଭାବରେ କାର୍ଯ୍ୟକାରୀ ହୋଇପାରୁନାହିଁ । ଏହିପରି ଗୋଟିଏ ଘଟଣା ଘଟିଥିଲା କାଶିନୀପଦର ଗାଁରେ ଓ ଏହାକୁ ମୁକାବିଲା କରିଥିଲେ ସଜନୀ ଦିଗାଲ୍ ।

ସଜନୀ ଦିଗାଲ୍‌ଙ୍କର ଗ୍ରାମ କାଶିନୀପଦର । ବୟସ; ୩୫, ସ୍ୱାମୀଙ୍କ ନାମ: ୟୁସେଫ୍ ଦିଗାଲ । ପରିବାର କହିଲେ ନିଜେ ଓ ଗୋଟିଏ ପୁଅ ଓ ଗୋଟିଏ ଝିଅ । ଝିଅଟିକୁ ବିବାହ ଦେଇ ସାରିଛନ୍ତି । ନିଜର ଆଦୌ ଜମିବାଡ଼ି ନଥିବାରୁ ପରିବାରରେ

ସବୁବେଳେ ଆର୍ଥିକ ଅନଟନ ଲାଗି ରହିଛି । ତେଣୁ ସ୍ୱାମୀସ୍ତ୍ରୀ ଦୁଇଜଣଯାକ କୁଲି, ମଜୁରି, ଖଲି ସିଲେଇ, ଝାଡୁ ତିଆରି, ବାଉଁଶ ଡୋଲି ଏବଂ ମାଛ, ଢୁଡ଼ିବିକ୍ରିକରି ନିଜର ପରିବାର ଭରଣ ପୋଷଣ କରିଥାନ୍ତି । ପୁଅ ବର୍ତ୍ତମାନ ସପ୍ତମ ଶ୍ରେଣୀରେ ପାଠ ପଢୁଛି । ନିଜେ ପାଠ ପଢ଼ି ନଥିଲେ ମଧ୍ୟ ନିଜର ପୁଅକୁ ଅଧିକ ପାଠ ପଢ଼ାଇବାର ଆଶା ରଖିଛନ୍ତି । ଯୁସେଫ୍ ଆଗରୁ ବହୁତ ମଦ ପିଉଥିଲେ । ଯେତେବେଳେ ସଜନୀ ଅଗ୍ରଗାମୀର ବିଭିନ୍ନ ମିଟିଂ, ଟ୍ରେନିଂକୁ ଆସି ଯୋଗଦେଲେ ଓ ଅନେକ ବିଷୟରେ ଶିକ୍ଷା ପାଇଲେ, ବିଭିନ୍ନ କଥା ଜାଣିଲେ, ସେ ଘରକୁ ଯାଇ ନିଜ ସ୍ୱାମୀଙ୍କୁ ମଦ ନ ଖାଇବାକୁ ବୁଝାଇଲେ । ବର୍ତ୍ତମାନ ସେ ଆଉ ମଦ ପିଉନାହାନ୍ତି । ତାଙ୍କର ଦୁଇଟି ସନ୍ତାନ ଥିବାରୁ ସରକାରଙ୍କଠାରୁ ସବୁଜ କାର୍ଡ଼ ମିଳିଥିଲା । ଏହି କାର୍ଡ଼ ମାଧ୍ୟମରେ ତାଙ୍କୁ ଗୋଟିଏ ଘର ତିଆରି ପାଇଁ ଜମି ମିଳିସାରିଛି । କିନ୍ତୁ ସରକାର ପ୍ରତିଶ୍ରୁତି ଦେଇଥିଲେ ଯେ କିଛି ଆର୍ଥିକ ସାହାଯ୍ୟ ଦେବେ ବୋଲି, କିନ୍ତୁ ତାହା ଆଜି ପର୍ଯ୍ୟନ୍ତ ପାଇନାହାନ୍ତି । ସଜନୀ ଏଥିପାଇଁ ଜିଲ୍ଲାପାଳଙ୍କ ନିକଟକୁ ଯାଇ ନିଜର ଅସୁବିଧା ସମ୍ପର୍କରେ ବହୁତ ଥର ଜଣାଇବା ପରେ ମଧ୍ୟ ତାଙ୍କ କଥାକୁ ଆଜିପର୍ଯ୍ୟନ୍ତ କୌଣସି ଗୁରୁତ୍ୱ ଦିଆଯାଇନାହିଁ । ଗ୍ରାମର ସମସ୍ତ ମହିଳାମାନଙ୍କୁ ଏକାଠି କରାଇ ମହିଳା ଦଳ ଗଠନ କରାଇବାରେ ସଜନୀ ଦିଗାଲଙ୍କର ମୁଖ୍ୟ ଭୂମିକା ମଧ୍ୟ ରହିଛି ଏବଂ ଏହି ଦଳ ମାଧ୍ୟମରେ ବିଭିନ୍ନ ସମସ୍ୟା ଭିତ୍ତିକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ।

ଦିନକର ଘଟଣା ଗାଁରେ ଯେଉଁମାନେ ମଦ ରାନ୍ଧୁଥିଲେ, ସେମାନଙ୍କ ବିରୁଦ୍ଧରେ ଦଳର ମା'ମାନେ ମିଶି ମଦ ବନ୍ଦ କରାଇବା ପାଇଁ ଥାନାକୁ ଗଲେ । କିନ୍ତୁ ଥାନାର ଅଫିସରମାନେ ମା'ମାନଙ୍କର କୌଣସି କଥା ଶୁଣିଲେ ନାହିଁ । ଏହାପରେ ଗାଁର ସବୁ ମାଆ ମିଶି ବ୍ଲକ ଅଫିସ୍‌ରେ ବିଡ଼ିଓଙ୍କ ସହିତ ବୈଠକ କଲେ ଓ ବିଡ଼ିଓ ଫୁଲବାଣୀ ଥାନାକୁ ଫୋନ୍ କରି ଏସ୍.ପିଙ୍କ ସହିତ ଏହି ବିଷୟରେ କଥାବାର୍ତ୍ତା ହେବାପରେ; ଫୁଲବାଣୀରୁ ଦୁଇଟି ଫୋର୍ସ ଗାଡ଼ି ଆସି ଗାଁରେ ଯେଉଁମାନେ ମଦ ରାନ୍ଧୁଥିଲେ, ସେମାନଙ୍କର ମଦ ହାଣ୍ଡି ଭାଙ୍ଗି ଦେଇଥିଲେ ଏବଂ ସେମାନଙ୍କୁ ଗିରଫ କରିଥିଲେ । କିଛିଦିନ ପରେ ସେମାନେ ଜାମିନ୍‌ରେ ଗାଁକୁ ଆସି କ୍ଷମା ମାଗିଥିଲେ । ଏହାପରେ ଗାଁର କେତେଜଣ ମାଆ ସହ ବାପାମାନେ ମିଶି ଫୁଲବାଣୀ ଯାଇଥିଲେ । ସେମାନଙ୍କ ନାମରେ ହୋଇଥିବା କେଶ୍‌କୁ ସାକ୍ଷୀ ଦେଇ ମୁକୁଳାଇଥିଲେ ।

ସେହିଦିନଠାରୁ ଆଜି ପର୍ଯ୍ୟନ୍ତ କାଶିନୀପଦର ଗ୍ରାମରେ କେହି ମଦ ରାନ୍ଧୁ ନାହାନ୍ତି । ସେହିପରି ଆଉ ଗୋଟିଏ, ଘଟଣା ଘଟିଛି, ଗାଁର ଅଧିକାଂଶ ପରିବାର

ଭୂମିହୀନ । ସରକାରଙ୍କର ସହଯୋଗରେ ବି.ପି.ଏଲ୍ କାର୍ଡ଼ ମାଧ୍ୟମରେ ଗ୍ରାମରେ ଲୋକମାନେ ଦୁଇଟଙ୍କିଆ ଚାଉଳ ପାଉଥିଲେ । କିନ୍ତୁ ତା'ର ପରବର୍ତ୍ତୀ ସମୟରେ ଯେତେବେଳେ କାର୍ଡ଼ ପରିବର୍ତ୍ତନ ହେଲା, ଗରିବ, ଜମିହୀନମାନେ ମଧ୍ୟ ଏ.ପି.ଏଲ୍. କାର୍ଡ଼ରେ ଅନ୍ତର୍ଭୁକ୍ତ ହେଲେ, ଯାହାଫଳରେ କି ସେମାନେ ଦୁଇଟଙ୍କିଆ ଚାଉଳରୁ ବଞ୍ଚିତ ହେଲେ । ଚଳିବା ପାଇଁ ମଧ୍ୟ ସେମାନଙ୍କର ଅସୁବିଧା ହେଲା । ଏହି ଅସୁବିଧା ବିଷୟରେ ଗ୍ରାମବାସୀ ଯାଇ ଜିଲ୍ଲାପାଳଙ୍କ ପାଖରେ ଦାବି କରିଥିଲେ ଏବଂ ଜିଲ୍ଲାପରିଷଦ, ଜିଲ୍ଲାପାଳଙ୍କ ନିକଟକୁ ଯିବା ପାଇଁ କହିଥିଲେ । କିନ୍ତୁ ସରପଞ୍ଚ ମନା କରିବା ଯୋଗୁଁ ଗାଁ ଲୋକମାନେ ଜିଲ୍ଲାପାଳଙ୍କ ନିକଟକୁ ଗଲେ ନାହିଁ । ସରପଞ୍ଚ ବି.ପି.ଏଲ୍. କାର୍ଡ଼ ଦେବେ ବୋଲି ମିଥ୍ୟା ପ୍ରତିଶ୍ରୁତି ଦେଇ ବୁଝାଇଦେଲେ । କିନ୍ତୁ ଜିଲ୍ଲା ପରିଷଦ କହିଥିଲେ ଯେ ସମସ୍ତେ ଚାଉଳ ନେଇ ସାରିବା ପରେ ଚାଉଳ ବଳେ, ତୁମକୁ ସେହି ଚାଉଳ ଦିଆଯିବ । ପୂର୍ବରୁ ଜିଲ୍ଲା ପରିଷଦଙ୍କ କହିବା ଅନୁଯାୟୀ ମାଆମାନେ ସଜନୀ ଦିଗାଲ୍‌ଙ୍କ ସହିତ ୪ ଟଙ୍କିଆ ଚାଉଳ ବଣ୍ଟା ସରିବା ପରେ ଯେଉଁ ଚାଉଳ ବଳିବ, ସେହି ଚାଉଳ ମାଅମାନଙ୍କୁ ଦେବେ । କିନ୍ତୁ ଚାଉଳ ବଣ୍ଟା ସରିବା ପର୍ଯ୍ୟନ୍ତ, ମାଆମାନେ ସେଠାରେ ସକାଳୁ ସଂଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରି ରହିବା ପରେ ମଧ୍ୟ ଚାଉଳ ଦେଲେ ନାହିଁ । ମା'ମାନଙ୍କର ଖୁବ୍ ମନଦୁଃଖ ହେଲା । ସେମାନେ କାନ୍ଦି କାନ୍ଦି ଘରକୁ ଫେରିଲେ । ମା'ମାନଙ୍କର କାନ୍ଦ ସହିନପାରି ସଜନୀ ଦିଗାଲ୍ ଘରକୁ ନଫେରି ବଳକା ଚାଉଳକୁ ଜଗି ରହିଲା । ଡିଲର (ରାଉତ ବାବୁ) ବଳକା ଥିବା ୧ କ୍ୱିଣ୍ଟାଲ ଚାଉଳକୁ ଓଜନ କରି ରଖିଲେ । ଅଧିକ ରାତି ହେବାରୁ ଜଣେ ଦୋକାନୀକୁ ଡାକି ସେ ଚାଉଳ ଦେଇଥିଲେ । ସଜନୀ ସେହି ଚାଉଳକୁ ସକାଳୁ ରାତି ପର୍ଯ୍ୟନ୍ତ ଜଗି ରହିଥିଲା; ଯେତେବେଳେ ଦୋକାନୀ ରାତି ୯ଟା ସମୟରେ ଚାଉଳ ନେଇକି ଯାଉଥିଲା; ସଜନୀ ସେହି ସମୟରେ ତା' ସାଇକେଲ୍‌କୁ ଭିଡ଼ିଧରି ତାକୁ ସେହିଠାରେ ଅଟକ ରଖିଲା ।

ତା'ପରେ ଦୋକାନୀ ବହୁତ କାକୁତିମିନତି ହୋଇ ଛାଡ଼ିଦେବାକୁ ଅନୁରୋଧ କଲା । ସେ ନଛାଡ଼ିବାରୁ ଦୋକାନୀ ସନଜୀକୁ ପ୍ରଥମେ ୨୦୦ ଟଙ୍କା ଲାଞ୍ଚ ଯାଚିଥିଲା; କିନ୍ତୁ ସଜନୀ ମନା କରିବାରୁ ପୁଣି ୫୦୦ ଟଙ୍କା ଦେବା ପାଇଁ କହିଥିଲା । ଏଥିରେ ମଧ୍ୟ ସେ ରାଜି ହୋଇ ନଥିଲା ଏବଂ କହିଥିଲା ଯେ ମୋର ଟଙ୍କା କ'ଣ ହେବ ? ଯେଉଁ ମାଆମାନେ ଏଠାରୁ କାନ୍ଦି କାନ୍ଦି ଅପମାନରେ ଗାଁକୁ ଫେରିଲେ, ତା'ର ମୂଲ୍ୟ ସେମାନଙ୍କୁ କିଏ ଦେବ ?

ତୁମେଯାଇ ସେହି ମାଆମାନଙ୍କ ପାଖରେ କ୍ଷମାମାଗି ସେମାନଙ୍କୁ ଚାଉଳ

ଦେଇଆସ । ଏହାପରେ ଡିଲର୍ (ରାଉତବାବୁ) ସଜନୀକୁ ବସ୍ତାକ ଚାଉଳ ଦେଇ ସେମାନଙ୍କୁ ଧରା ନପକାଇବା ପାଇଁ ଅନୁରୋଧ କରିଥିଲା । ଏହପାରେ ସଜନୀ ସେ ଚାଉଳ ବସ୍ତାକୁ ନେଇ ପଞ୍ଚାୟତ ଘରେ ରଖିଲା । ତା' ପରଦିନ ସରପଞ୍ଚ ମଧ୍ୟ ତାକୁ ଧମକ ଦେଇଥିଲେ ଯେ ତୋର ଏତେ ସାହସ ହୋଇଗଲାଣି, ତୁ ଚାଉଳ ଧରୁଛୁ? କିନ୍ତୁ ସଜନୀ ଡରି ନଯାଇ ସାହସର ସହିତ କହିଥିଲେ ଯେ, ମୁଁ ମୋ ନିଜ ପାଇଁ ଏ କାମ କରୁନାହିଁ । ଏ ଅଞ୍ଚଳ ପାଇଁ ଓ ମାଆମାନଙ୍କ ପାଇଁ କାମ କରୁଛି । ଗାଁ ମଣ୍ଡପରେ ସରପଞ୍ଚ, ୱାର୍ଡ଼ମେମ୍ବର ଓ ଗାଁର ବାପା, ମାଆମାନଙ୍କୁ ଡକାଇ ଏକ ବୈଠକ କରାଗଲା । ଉକ୍ତ ବୈଠକରେ ସେମାନେ ମାଆମାନଙ୍କୁ ନିଜର ଭୁଲ ପାଇଁ କ୍ଷମା ମାଗିଲେ ଏବଂ ୫୦୦ ଟଙ୍କା ଜୋରିମାନା ଦେଇ କେଶ୍ ନକରିବା ପାଇଁ ଅନୁରୋଧ କରିଥିଲେ ।

ଏହି ସମସ୍ୟାର ସମାଧାନ ହେବା ପରେ ଦିନେ ସଜନୀ ଫିରିଙ୍ଗିଆ ହାଟକୁ ଏକୁଟିଆ ଆସିବା ସମୟରେ ଦୋକାନୀ (ଅର୍ଜୁନ ସାହୁ)ର ଜଣେ ସହଯୋଗୀ ବନ୍ଧୁ ମାଝୀପଡ଼ାର ଲୋକ ସଜନୀକୁ ମାରିବାର ଧମକ ଦେବା ସହିତ ବହୁତ ଗାଳିଗୁଲଜ ମଧ୍ୟ କରିଥିଲେ । ଏହାପରେ ସେ ଗାଁର ଜଣେ ଲୋକ ଆସି କଥାଟିକୁ ସମାଧାନ କରିଥିଲେ ଓ ଡିଲର ସଜନୀକୁ କ୍ଷମା ମାଗିଥିଲେ ଏବଂ ମାସକୁ ୧୦ କେ.ଜି. ଚାଉଳ, ୧ କେ.ଜି. ଚିନି ଆସିକି ନେବା ପାଇଁ କହିଥିଲେ । କିନ୍ତୁ ସେ ମନା କରି କହିଥିଲେ ଯେ ମୋ ନିଜ ସ୍ୱାର୍ଥପାଇଁ କାମ କରୁନାହିଁ; ଗାଁର ସୁବିଧା ଓ ମାଆମାନଙ୍କ ପାଇଁ ମୁଁ କାମ କରୁଛି ।

ସଜନୀ ଫିରିଙ୍ଗିଆ ଆଞ୍ଚଳିକ ମହିଳା ମହାସଂଘର ଜଣେ ସଭ୍ୟା ଅଟନ୍ତି । ନିଜ ଗାଁରେ ଦଳ ଗଠନ କରି ଟଙ୍କା, ଧାନ ସଂଚୟ କରିବା ସହିତ ୩ ଏକର ଜଙ୍ଗଲ ସୁରକ୍ଷା କରିପାରିଛନ୍ତି । ଏହି ଜଙ୍ଗଲର ନାମ ଗାଡ଼ାନେଲା । ଭବିଷ୍ୟତରେ ଗାଁର ପ୍ରତ୍ୟେକ ମାଆମାନଙ୍କୁ ନେଇ ଖଳିପତ୍ର ଲିଜ୍ ଆଣିବା ପାଇଁ ଦାବିପତ୍ର ଦେବା ପାଇଁ ସ୍ଥିର କରିଛନ୍ତି । ଜୀବନରେ ପ୍ରତି ମୁହୂର୍ତ୍ତରେ ବଞ୍ଚିବା ପାଇଁ ସଂଗ୍ରାମ କରି ନିଜର ପ୍ରତିଭାକୁ ବିକଶିତ କରିପାରିଛନ୍ତି ସଜନୀ ଦିଗାଲ୍ ।

ମାର୍ଚ୍ଚ - ୨୦୦୨



# ଶ୍ରୀମତୀ ଗୁରୁବାରୀ ବାଘ୍‌ଙ୍କ ସାଂଗରେ...

*କୋରାପୁଟ ଜିଲ୍ଲା ଦଶମନ୍ତପୁର ପଲ୍ଲୀର ନାଏବ ସରପଞ୍ଚ ଶ୍ରୀମତୀ ଗୁରୁବାରୀ ବାଘ୍‌ଙ୍କ ସହିତ 'ଆରୋହଣ'ର ଏକ ଅନ୍ତରଙ୍ଗ ସାକ୍ଷାତକାର:*

ଆରୋହଣ- ଆପଣ କିପରି ନାଏବ ସରପଞ୍ଚ ଭାବରେ ନିର୍ବାଚିତ ହୋଇଥିଲେ ?

ଗୁରୁବାରୀ- ପୂର୍ବରୁ ମୁଁ ଆମ ଗାଁରେ ୱାର୍ଡ଼ମେମ୍ବର ଭାବେ ନିର୍ବାଚିତ ହୋଇଥିଲି । ଗତଥର ଆମ ପଞ୍ଚାୟତରେ ଏହି ପଦପାଇଁ ମହିଳାମାନଙ୍କ ସ୍ଥାନ ସଂରକ୍ଷିତ ଥିବାରୁ ମୋତେ ନାଏବ ସରପଞ୍ଚ ହେବା ଲାଗି ଆମ ଅଞ୍ଚଳରେ ସମସ୍ତେ କହିଲେ ।

ଆ : ଆପଣଙ୍କ ସହ କେତେ ଜଣ ପ୍ରତିଦ୍ୱନ୍ଦିତା କରୁଥିଲେ ଏବଂ ସେମାନେ କାହିଁକି ହାରିଗଲେ ?

ଗୁ : ମୋ ବିରୁଦ୍ଧରେ ଜଣେ ଠିଆ ହୋଇଥିଲା । ସେ ପ୍ରଥମ କରି ନାଏବ ସରପଞ୍ଚ ଭାବେ ଠିଆ ହୋଇଥିବାରୁ ଲୋକଙ୍କ ସହିତ ତାଙ୍କର ଏତେଟା ସମ୍ପର୍କ ନଥିଲା । ପଞ୍ଚାୟତର ଲୋକମାନେ କହିଲେ ଯେ ଆମର ପାଖ ଗାଁ ଲୋକକୁ ଭୋଟ ନଦେଇ ଦୂର ଗାଁ ଲୋକଙ୍କୁ ଭୋଟ ଦେଲେ ସେ ଆମର ଦୁଃଖସୁଖ ବୁଝି ପାରିବ ନାହିଁ । ତେଣୁ ନିଜ ଗାଁର ଲୋକଙ୍କୁ ଭୋଟ ଦେବା ଉଚିତ୍ । ମୋର ବିରୁଦ୍ଧରେ ଲୋକମାନେ କେତେକ ଗାଁରେ ସେମାନଙ୍କୁ ଭୋଟ ଦେବା ପାଇଁ ଟଙ୍କା ଲାଞ୍ଚ ମଧ୍ୟ ଦେଇଥିଲେ । ତଥାପି ମୋର ବିଶ୍ୱାସ ଥିଲା ଯେ ମୁଁ ନିଶ୍ଚୟ ଜିତିବି ।

ଆ : ଆପଣଙ୍କ ପଞ୍ଚାୟତରେ ମହିଳାମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ହୋଇ ନଥିଲେ ଆପଣ କ'ଣ ନାଏବ ସରପଞ୍ଚ ପାଇଁ ପ୍ରତିଦ୍ୱନ୍ଦିତା କରିଥାନ୍ତେ କି ?

ଗୁ : ମୁଁ ଠିକ୍‌ରେ କହିପାରୁନି, ନାଏବ ସରପଞ୍ଚ ପାଇଁ ଲଢ଼ିଥାନ୍ତି କି ନାହିଁ; କିନ୍ତୁ ୱାର୍ଡ଼ ମେମ୍ବର ପାଇଁ ନିଶ୍ଚିତ ଭାବେ ପ୍ରତିଦ୍ୱନ୍ଦିତା କରିଥାନ୍ତି ।

ଆ : ଆପଣଙ୍କ ପଞ୍ଚାୟତରେ ବହୁତ ଗରିବ ଲୋକ ବିପିଏଲ୍ ତାଲିକାରୁ ବାଦ୍ ପଡ଼ି ଯାଇଛନ୍ତି । ଏହାର କାରଣ କ'ଣ ?

ଗୁ : ପୂର୍ବରୁ ଗ୍ରାମସେବକ ଓ ସ୍କୁଲ ଶିକ୍ଷକମାନେ ଯେଉଁ ସର୍ଭେ କରିଛନ୍ତି, ଲୋକଙ୍କୁ ପଚାରିବାରେ ଭୁଲ କରିଛନ୍ତି । ଲୋକମାନେ ମଧ୍ୟ ଠିକ୍ ଭାବରେ କହି ପାରିନାହାନ୍ତି । ସେମାନେ ପଲ୍ଲୀସଭା ଓ ଗ୍ରାମ ସଭା ବିଷୟରେ କିଛି ଜାଣି ନଥିଲେ । ସେଥିପାଇଁ ସବୁ ଅସୁବିଧା ହୋଇଛି ।

ଆ : ପଞ୍ଚାୟତ କାମ କିପରି କାର୍ଯ୍ୟକାରୀ କରାଯାଏ ?

ଗୁ : ଆମର ପ୍ରତ୍ୟେକ ଗାଁରୁ ପଲ୍ଲୀସଭା ହୋଇ ଯୋଜନାଗୁଡ଼ିକ ଗ୍ରାମସଭାକୁ ଆସେ । ପଞ୍ଚାୟତର ବଜେଟ୍ ଅନୁସାରେ କେଉଁ ଗାଁରେ କ'ଣ କାର୍ଯ୍ୟ କରାଯିବ, ତାହା ଗ୍ରାମସଭାରେ ସ୍ଥିର କରାଯାଏ । ପଞ୍ଚାୟତକୁ ଟଙ୍କା ଆସିଲେ ସ୍କୁଲ, ରାସ୍ତାକାମ, ଗୃହନିର୍ମାଣ, ଡ୍ରେନ୍ ଇତ୍ୟାଦି କାମ ପାଇଁ କଣ୍ଟ୍ରାକ୍ଟରମାନେ ଥାଆନ୍ତି ଓ ସେମାନେ ଗାଁରେ କାମ କରାନ୍ତି ।

ଆ: ଆପଣ ନାଏବ ସରପଞ୍ଚ ଭାବେ ଗାଁମାନଙ୍କରେ କି କି କାମ କରାଇ ପାରିଛନ୍ତି ?

ଗୁ : ଗାଁରେ ଯେଉଁମାନଙ୍କର ଖାଉଟି କାର୍ଡ଼ ନଥିଲା, ମୁଁ ବିଡ଼ିଓଙ୍କୁ କହି କରାଇ ଦେଇଥିଲି ଏବଂ ପ୍ରକୃତରେ ଯେଉଁମାନେ ଗରିବ ଲୋକ, ସେମାନଙ୍କୁ ଚିହ୍ନଟ କରି ଇନ୍ଦିରା ଆବାସ ଓ ଭତ୍ତା ଯୋଗାଇବା ପାଇଁ ଲେଖିଥିଲି ।

ଆ : ପଞ୍ଚାୟତରେ ଗ୍ରାମସଭାରେ ଲୋକମାନଙ୍କର ଉପସ୍ଥିତି ଆଶାନୁରୂପ ହେଉନାହିଁ । ଆପଣଙ୍କ ପଞ୍ଚାୟତରେ କେମିତି ହେଉଛି ?

ଗୁ : ଆମ ପଞ୍ଚାୟତରେ ଗ୍ରାମସଭାକୁ ଅଧିକ ପୁରୁଷ ଲୋକମାନେ ଆସୁଛନ୍ତି ଏବଂ ୱାର୍ଡ଼ମେମ୍ବର ଓ ୫/୬ ଜଣ ମହିଳା ବସୁଛନ୍ତି । ଯେଉଁ ଲୋକମାନେ ସରକାରୀ ସୁବିଧା ପାଇ ଯାଉଛନ୍ତି, ସେମାନେ ଆଉ ଗ୍ରାମସଭାକୁ ଆସୁନାହାନ୍ତି ।

ଆ : ପଞ୍ଚାୟତ କାମ କଣ୍ଟ୍ରାକ୍ଟରମାନେ କରୁଛନ୍ତି; ତାହା ଗ୍ରାମ କମିଟି ବା ମହିଳାମଣ୍ଡଳ କଲେ ଠିକ୍ ହେବ କି ?

ଗୁ : ବହୁତ ଭଲ ହୁଅନ୍ତା । କାରଣ କଣ୍ଟ୍ରାକ୍ଟରମାନେ କାମ କଲେ ୨୦ ବସ୍ତା ସିମେଣ୍ଟ ଲାଗିବା ଜାଗାରେ ୧୦ ବସ୍ତା ସିମେଣ୍ଟ ଖର୍ଚ୍ଚ କରି ୨୦ ବସ୍ତା ସିମେଣ୍ଟର ବିଲ୍ ଦେଖାଇ ବହୁତ ଟଙ୍କା ମାରୁଛନ୍ତି । ଯାହାଦ୍ୱାରା କାମ ମଧ୍ୟ ଭଲ ହେଉନାହିଁ । ନିଜ ଗାଁ ଲୋକ କାମ କଲେ ବହୁତ ଭଲ କାମ ହୋଇପାରିବ ।

*କଣ୍ଟ୍ରାକ୍ଟରମାନେ କାମ କଲେ ୨୦ ବସ୍ତା ସିମେଣ୍ଟ ଲାଗିବା ଜାଗାରେ ୧୦ ବସ୍ତା ସିମେଣ୍ଟ ଖର୍ଚ୍ଚ କରି ୨୦ ବସ୍ତା ସିମେଣ୍ଟର ବିଲ୍ ଦେଖାଇ ବହୁତ ଟଙ୍କା ମାରୁଛନ୍ତି । ଯାହାଦ୍ୱାରା କାମ ମଧ୍ୟ ଭଲ ହେଉନାହିଁ । ନଜ ଗାଁ ଲୋକ କାମ କଲେ ବହୁତ ଭଲ କାମ ହୋଇପାରିବ ।*

ଆ : ରାଜନୀତି କରିବା କ୍ଷେତ୍ରରେ ଆପଣଙ୍କର କୌଣସି ପ୍ରତିବନ୍ଧକ ଅଛି କି ?

ଗୁ : ନା, ସେମିତି କିଛି ଆଜିପର୍ଯ୍ୟନ୍ତ ସାମ୍ନା କରିନାହିଁ । ପଞ୍ଚାୟତକୁ କିମ୍ବା ଗାଁକୁ କାମରେ ଗଲେ ଅଧିକାଂଶ ସମୟ ଘରକାମରେ ଅବହେଳା କରିଥାଏ । ଘରର କାମ ସବୁ ସ୍ୱାମୀ ଓ ମାଆ କରିଥାନ୍ତି ବରଂ ଗାଁରେ ବିଭିନ୍ନ କାମ କରାଇବା ପାଇଁ ଉତ୍ସାହ ଦିଅନ୍ତି । ବାହାରେ କେବେ ଗଣ୍ଡଗୋଳ ପରିସ୍ଥିତି ସୃଷ୍ଟି ହୋଇନାହିଁ ।

ଆ : ଆପଣ ଶାଶୁଘରେ ନରହି କାହିଁକି ବାପଘରେ ରହୁଛନ୍ତି ?

ଗୁ : ଆଜକୁ ମୋର ବିବାହ ୧୦ ବର୍ଷ ହେଲାଣି, ମୋର କେହି ବଡ଼ ଭାଇ କିମ୍ବା ବାପା ନଥିବାରୁ ମୁଁ ଘରର ବଡ଼ ଝିଅ ହିସାବରେ ମାଆଙ୍କୁ ପାଖରେ ରଖିଛି ଏବଂ ଶାଶୁଘରର ଲୋକମାନେ ମଧ୍ୟ ମୋତେ ରହିବାକୁ ଅନୁମତି ଦେଇଛନ୍ତି ।

ଆ : ଆପଣ କିପରି ଲୋକସଂପର୍କ ରଖିଥିଲେ ?

ଗୁ : ମୁଁ ପ୍ରତିଦିନ ଗାଁକୁ ଯାଉଥିଲି ଏବଂ ସମସ୍ତଙ୍କ ସହିତ ଭଲ ମନ୍ଦ କଥା ହୋଇ ଫେରୁଥିଲି । ଏହା ବ୍ୟତୀତ ଯଦି କାହାର ଦରକାର ପଡ଼ିଲା, ତେବେ ମୁଁ ତାକୁ ସାଂଗରେ ଧରି ବ୍ଲକକୁ ଯାଉଥିଲି ଓ ତାଙ୍କ କାମ ବିଷୟରେ ପଚାରି ବୁଝୁଥିଲି । ପ୍ରତି ଗାଁରେ ମାସକୁ ଥରେ ମିଟିଂ ମଧ୍ୟ ହେଉଥିଲା ।

ଆ : ଜାଗରଣ ଅଭିଯାନ କେବେଠାରୁ ଆରମ୍ଭ ହେଲା ? ଏହାର କାମ କ'ଣ ଏବଂ ୧ ବର୍ଷ ଭିତରେ କି କି କାମ କରିଥିଲେ ?

ଗୁ : କୋରାପୁଟ ଜିଲ୍ଲା, ଦଶମନ୍ତପୁର ବ୍ଲକରେ ୨୦୦୦ ମସିହାରେ ଜାଗରଣ ଅଭିଯାନ (ଚେତନା ଦଳ) ଆରମ୍ଭ ହେଲା । ପ୍ରତି ଗାଁରେ ଏହି କମିଟି ଗଠନ କରାଯାଇଛି । ଆମ ଗାଁ ଜାଗରଣ ଅଭିଯାନ କମିଟିରେ ମୁଁ ସଭାପତି ଅଛି । ଉକ୍ତ କମିଟିରେ ୨୦ ଜଣ ସଭ୍ୟସଭ୍ୟା ଅଛନ୍ତି । ଏକବର୍ଷ ଭିତରେ ଗାଁ ସଫେଇ, ପିଲାମାନଙ୍କୁ ସ୍କୁଲକୁ ପଠାଇବା ପାଇଁ ଗାଁକୁ ଗାଁ ବୁଲି ସଚେତନ କରାଇବା ଇତ୍ୟାଦି କାମ କରୁଥିଲି ।

*ଆମ ଗାଁ ଜାଗରଣ ଅଭିଯାନ କମିଟିରେ ମୁଁ ସଭାପତି ଅଛି । ଉକ୍ତ କମିଟିରେ ୨୦*

*ଜଣ ସଭ୍ୟସଭ୍ୟା ଅଛନ୍ତି । ଏକବର୍ଷ ଭିତରେ ଗାଁ ସଫେଇ, ପିଲାମାନଙ୍କୁ ସ୍କୁଲକୁ ପଠାଇବା ପାଇଁ ଗାଁକୁ ଗାଁ ବୁଲି ସଚେତନ କରାଇବା ଇତ୍ୟାଦି କାମ କରୁଥିଲି ।*

ଜାଗରଣ ଅଭିଯାନ ତରଫରୁ ଗୋଟିଏ ସ୍କୁଲ ଖୋଲାଯାଇ ୧୫ରୁ ୩୫ ବର୍ଷ ପର୍ଯ୍ୟନ୍ତ ଲୋକମାନେ ପାଠ ପଢୁଛନ୍ତି । ଚାଉଳ, କିରୋସିନି ଲୋକେ ଠିକ୍ ଭାବରେ ପାଉଛନ୍ତି କି ନାହିଁ, ତାହା ମଧ୍ୟ ତଦାରଖ ଚାଲିଛି । କିନ୍ତୁ ଆଜି ପର୍ଯ୍ୟନ୍ତ ମଦମୁକ୍ତି ଅଭିଯାନ ସଫଳ ହୋଇ ପାରିନାହିଁ ।

ଆ : ମଦ ବନ୍ଦ ପାଇଁ କି କି ପଦକ୍ଷେପ ନିଆଯାଇଛି ?

ଗୁ : ଗାଁରେ ଯେଉଁ ଚେତନା ଦଳ ଗଠନ କରାଯାଇଛି, ସେଥିରେ ସଭାପତି ଓ ସଂପାଦିକାଙ୍କୁ ମଦ ବନ୍ଦ ପାଇଁ ଦାୟିତ୍ୱ ଦିଆଯାଇଛି । ଲୋକମାନଙ୍କୁ ବିଭିନ୍ନ ପ୍ରକାରରେ ବୁଝାଉଛି । ମାତ୍ର ଲୋକେ ଏତେ ସହଜରେ ବୁଝି ପାରୁନାହାନ୍ତି । ମଝିରେ ଦୁଇ ମାସ ହେବ, ମଦରନ୍ଧା କମିଥିଲା, ବର୍ତ୍ତମାନ ପୁଣି ଆରମ୍ଭ ହୋଇଛି । ଏବେ ଚେତନା ଦଳ ତରଫରୁ ଦଶମନ୍ତପୁର ବ୍ଲକରେ ମୋତେ ମିଶାଇ ତିନିଜଣଙ୍କୁ ଜିଲ୍ଲାପାଳ ସ୍ୱତନ୍ତ୍ର ପୋଲିସ୍ କ୍ଷମତା ଦେଇଛନ୍ତି ।

ଆ : ମଦ ବନ୍ଦପାଇଁ ପୋଲିସ୍ କ୍ଷମତା ଆପଣଙ୍କୁ କାହିଁକି ଦିଆଯାଇଛି ? ଅନ୍ୟମାନଙ୍କୁ ଦିଆଗଲା ନାହିଁ କାହିଁକି ?

ଗୁ : ମୁଁ ସବୁକଥା କହିପାରୁଛି, ଯେକୌଣସି ଜାଗାରେ ମିଟିଂ ହେଲେ ଯୋଗ ଦେଇପାରୁଛି । ମୁଁ ମଦ ଭାଟି ଭାଙ୍ଗିଲା ବେଳେ ସାହସ ଓ ଧୈର୍ଯ୍ୟର ସହିତ ମୁକାବିଲା କରିପାରୁଛି । ସେଇଥିପାଇଁ ହିଁ ମୋତେ ଏହି କ୍ଷମତା ଦିଆଯାଇଛି ।

*ମୁଁ ସବୁକଥା କହିପାରୁଛି, ଯେକୌଣସି ଜାଗାରେ ମିଟିଂ ହେଲେ ଯୋଗ ଦେଇପାରୁଛି । ମୁଁ ମଦ ଭାଟି ଭାଙ୍ଗିଲା ବେଳେ ସାହସ ଓ ଧୈର୍ଯ୍ୟର ସହିତ ମୁକାବିଲା କରିପାରୁଛି । ସେଇଥିପାଇଁ ହିଁ ମୋତେ ଏହି କ୍ଷମତା ଦିଆଯାଇଛି ।*

ଆ : ଜିଲ୍ଲାପାଳ ମିଟିଂରେ କ'ଣ ଆଲୋଚନା ହେଲା ଓ ମିଟିଂରୁ ଆପଣ କ'ଣ ଶିକ୍ଷା ପାଇଲେ ?

ଗୁ : ଜାଗରଣ ଅଭିଯାନ ଯେଉଁ କାର୍ଯ୍ୟକ୍ରମକୁ ଆଖିଆଗରେ ରଖି କାମ କରୁଛି, ତାହା ଠିକ୍ ଭାବରେ କାର୍ଯ୍ୟ ଚାଲୁଛି କି ନାହିଁ, ପ୍ରତ୍ୟେକ ଅଞ୍ଚଳର ସଭ୍ୟସଭ୍ୟାମାନଙ୍କୁ ପଚାରିଥିଲେ । ମଦ ଭାଟି ଭାଙ୍ଗିବାକୁ ଗଲାବେଳେ ଆମ ସହିତ ଚେତନା ଦଳର କମିଟି ମେମ୍ବର, ବ୍ଲକର କର୍ମଚାରୀ, ଚେତନା ଦଳର ସଂଯୋଜକ, ଅବକାରୀ

ନିରୀକ୍ଷକ ସାହାଯ୍ୟ କରିବେ। ଆମ ଉପରକୁ ବିପଦ ଆସିଲେ ଏସ୍.ପି ଓ ବିଡ଼ିଓ ଏବଂ ଜିଲ୍ଲାପାଳଙ୍କୁ ଜଣାଇପାରିବୁ। ନିଜ ଅଞ୍ଚଳ ପାଇଁ ସ୍ୱେଚ୍ଛାକୃତ ଭାବେ କାମ କରିବୁ; ଏଥିପାଇଁ ଆର୍ଥିକ ଅନୁଦାନ କିଛି ଦିଆଯିବ ନାହିଁ।

**ଆ :** କ୍ଷମତା ପାଇଥିବା ପର୍ଯ୍ୟନ୍ତ ଆପଣ ଲୋକମାନଙ୍କ ପାଇଁ କାମ କରିବେ ନା କ୍ଷମତା ନଥିଲେ ମଧ୍ୟ କାମ କରିବେ ?

**ଗୁ:** ମୁଁ କ୍ଷମତାରେ ନଥିଲେ ବଞ୍ଚିଥିବା ପର୍ଯ୍ୟନ୍ତ ମଧ ଧୈର୍ଯ୍ୟର ସହ କାମ କରିବି। ଲୋକମାନେ ସଚେତନ ହେଲେ ହିଁ ଏହି ଅଞ୍ଚଳର ଉନ୍ନତି ହୋଇପାରିବ।

**ଆ:** ଭବିଷ୍ୟତରେ କ'ଣ କରିବେ ବୋଲି ଭାବୁଛନ୍ତି ?

**ଗୁ :** ଭବିଷ୍ୟତରେ ସରପଞ୍ଚ ହେବାକୁ ଇଛା ଥିଲେ ମଧ୍ୟ ବିଭିନ୍ନ କାରଣରୁ ମନ ଭାଙ୍ଗି ଯାଉଛି। କାରଣ ଆଜିକାଲି ସେଥିଲାଗି ପ୍ରଚୁର ଅର୍ଥ ଦରକାର, ଯାହାକି ମୋ ପାଖରେ ନାହିଁ। ତେଣୁ ମୁଁ ଭାବିଛି ଯେ ପୁଣିଥରେ ୱାର୍ଡ଼ମେମ୍ବର ହୋଇ ଲୋକମାନଙ୍କର ସହ ମିଶି ଗାଁର ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରିବି।

ମାର୍ଚ୍ଚ - ୨୦୦୨



# ସୁମନୀ ଝୋଡିଆଙ୍କୁ ସ୍ତ୍ରୀଶକ୍ତି ପୁରସ୍କାର

ଆପଣମାନେ ସୁମନୀ ମାଆ କଥା ଶୁଣିଥିବେ ଏବଂ ତାର ଅଞ୍ଚଳର ଆଦିବାସୀ ଭାଇ ଭଉଣୀମାନଙ୍କ ଉନ୍ନତି ପାଇଁ ତାର ଉଦ୍ୟମ ବିଷୟରେ ବି ଜାଣିଥିବେ। ଏହିପରି କେତେକ କଥା ଆରୋହଣ ପତ୍ରିକା ପାଇଁ ଏକ ଗର୍ବର ବିଷୟ । କାରଣ ସୁମନୀର ଉଦ୍ୟମକୁ ବର୍ତ୍ତମାନ ଭାରତ ସରକାର ବି ମାନ୍ୟତା ଦେଇଛନ୍ତି।୨୦୦୩ ମସିହା ସମ୍ମାନ ଜନକ ଜାତୀୟ 'ରାଣୀ ଗୌଦିଂଲିୟା ସ୍ତ୍ରୀଶକ୍ତି ପୁରସ୍କାର' ପାଇଛନ୍ତି। ଏଥିପାଇଁ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ତାଙ୍କୁ ଭାରତ ସରକାରଙ୍କ ଦ୍ୱାରା ପ୍ରଦତ୍ତ ଏକ ଲକ୍ଷ ଟଙ୍କାର ପୁରସ୍କାର ରାଶି ଓ ମାନପତ୍ର ସହିତ ଉପଢ୍ୌକନ ପ୍ରଦାନ କରିଥିଲେ। ଆଦିବାସୀ ନେତ୍ରୀ ହିସାବରେ କେବଳ ଓଡ଼ିଶାନୁହେଁ, ସାରା ଭାରତବର୍ଷରେ ସେ ବର୍ତ୍ତମାନ ସୁପରିଚିତା ହୋଇପାରିଛନ୍ତି। କାଶୀପୁର ଅଞ୍ଚଳରେ କୁଲି, ମଜୁରି ବିରୋଧୀ ଆନ୍ଦୋଳନ ଚଳାଇ ସେ ପ୍ରଥମେ ଲୋକଲୋଚନକୁ ଆସିଥିଲେ। ଏହାଛଡା ଗାଁ ଗାଁ ବୁଲି ଆଦିବାସୀମାନଙ୍କ ସମସ୍ୟା ଓ ସମାଧାନ ସଂପର୍କରେ ଜନସଚେତନତା ସୃଷ୍ଟି କରିବାରେ ସୁମନୀଙ୍କ ଅବଦାନ ଅତୁଳନୀୟ। ତାଙ୍କର ଉଲ୍ଲେଖନୀୟ କାର୍ଯ୍ୟ ଓ ସାହସିକତା ପାଇଁ ୧୯୯୩ମସିହାରେ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ ତାଙ୍କୁ 'ମୁଖ୍ୟମନ୍ତ୍ରୀଙ୍କ ଉପଦେଷ୍ଟା' ଭାବେ ନିଯୁକ୍ତ କରିଥିଲେ। ଏହା ବ୍ୟତୀତ ୧୯୯୪ ମସିହାରେ ସରକାର ତାଙ୍କର ସାହସିକତା ପାଇଁ ତାଙ୍କୁ ସ୍ୱତନ୍ତ୍ର ଭାବେ ପୋଲିସ୍ ଅଫିସର କ୍ଷମତା ଦେଇଥିଲେ, ଯାହାଦ୍ୱାରା ସେ 'ମଦ ବିରୋଧି ଅଭିଯାନ'କୁ ଆହୁରି ସକ୍ରିୟ କରିପାରିବେ। କିନ୍ତୁ ଏହାଫଳରେ ସୁମନୀଙ୍କୁ ବହୁତ ଅପମାନ, ଗାଳି ଇତ୍ୟାଦି ସହିବାକୁ ପଡିଥିଲା। କିନ୍ତୁ ସେ ଦବି ଯାଇ ନଥିଲେ । ବର୍ତ୍ତମାନ ମଧ୍ୟ ତାଙ୍କର ମଦ ବିରୋଧି ଅଭିଯାନ ଚାଲୁ ରହିଛି। ୧୯୮୮ ମସିହାରେ ସୁମନୀକୁ ଷ୍ଟିଅରିଂ କମିଟିର

ସଦସ୍ୟା କରାଗଲା । କାଶୀପୁର ଅଞ୍ଚଳରେ କଫିଚାଷ ପାଇଁ ଥିବା ପ୍ରସ୍ତାବ ବିରୁଦ୍ଧରେ ଦୃଢ଼ ସ୍ୱରଉତ୍ତୋଳନ କରି ସୁମନୀ ସେମାନଙ୍କ କ୍ଷୁଦ୍ର ଦୃଷ୍ଟି ଯୋଜନାକୁ ବଦଳାଇବା ପାଇଁ ବାଧ୍ୟ କରିଥିଲେ, ଯାହାଦ୍ୱାରା କଫିଚାଷ ବନ୍ଦ ହୋଇପାରିଥିଲା ।

ଏହି ସ୍ତ୍ରୀଶକ୍ତି ପୁରସ୍କାର ସୁମନୀ ପାଇଁ ପ୍ରଥମ ପୁରସ୍କାର ନୁହେଁ । ସେ ୧୯୯୬ ମସିହାରେ ରାଜସ୍ଥାନ ସ୍ଥିତ 'ଶ୍ରୀରାମ ଓ୍ୱାସେସେରେନ୍ ଦେବୀ ଭାଟିଆ ମେମୋରିଆଲ ଟ୍ରଷ୍ଟ' ପକ୍ଷରୁ ଜାତୀୟ ପରୁସ୍କାର ୫୦ହଜାର ଟଙ୍କା ପାଇଛନ୍ତି । ସୁମନୀ ଏହି ଟଙ୍କାକୁ ଆଦିବାସୀ ସମାଜ କଲ୍ୟାଣ ପାଇଁ ରଖାଯିବାକୁ ନିଷ୍ପତ୍ତି କଲେ । ସୁମନୀ ଗାଁ ଗାଁ ବୁଲି ଦେଖିଲେ ଯେ ଆଦିବାସୀ ଝିଅମାନେ ପାଠ ପଢ଼ିବା ପାଇଁ ଅନେକ କଷ୍ଟ ସହୁଛନ୍ତି । ଏହା ପରେ ସୁମନୀ ଚିନ୍ତା କଲେ ଯେ ଏହି ଟଙ୍କାକୁ ଉକ୍ତ ଅଞ୍ଚଳର ଝିଅମାନଙ୍କ ପାଇଁ ପାଠ ପଢ଼ା ସାହାଯ୍ୟରେ ଲଗାଇଲେ ଭଲ ହେବ । ତେଣୁ ଏହି ଟଙ୍କାକୁ ସେ ସ୍ଥାୟୀ ଜମା ଖାତାରେ ରଖିଲେ । ସୁମନୀ ଠିକ୍ କଲେ ଯେତିକି ସୁଧ ଆସିବ ସେହି ଟଙ୍କାରେ ଯେଉଁ ଆଦିବାସୀ ଝିଅ ଆଗକୁ ଅଧିକ ପାଠ ପଢ଼ିବାକୁ ଚାହୁଁଛନ୍ତି ସେମାନଙ୍କୁ ୫୦୦ଟଙ୍କା ଲେଖାଁ ଦେଇ ପୁରସ୍କୃତ କରାଇବେ ।

ଗତ ୨୦୦୩ ମସିହା ଜାନୁୟାରୀ ୭ତାରିଖ ଦିନ ଆମ ସଂଗଠନ କାର୍ଯ୍ୟାଳୟଠାରେ ଦିବା ଦଶ ଘଟିକା ସମୟରେ ସୁମନୀ ପୁରସ୍କାର ବିତରଣୀ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ରାୟଗଡା ଜିଲ୍ଲାର ମାନ୍ୟବର ଜିଲ୍ଲାପାଳ ଶ୍ରୀଯୁକ୍ତ ପ୍ରମୋଦ କୁମାର ମେହେରଦା, ଆମ ସଂଗଠନର ପୂର୍ବତନ ସଂପାଦିକା ତଥା ବର୍ତ୍ତମାନ ପଞ୍ଚାୟତ ସମିତିର ଚେୟାରମ୍ୟାନ ଶ୍ରୀମତୀ ଉଜ୍ଜ୍ୱଳ ଦେଇ ମାଝୀ ଯୋଗ ଦେଇଥିଲେ । ଆମ ସଂଗଠନର ପୂର୍ବତନ ସଭ୍ୟା ତଥା ବର୍ତ୍ତମାନ କୋଡିପାରି ଗ୍ରାମପଞ୍ଚାୟତର ସରପଞ୍ଚ ଶ୍ରୀମତୀ ଘାସେନ୍ ଝୋଡିଆ ଯୋଗ ଦେଇଥିଲେ ।

ବର୍ତ୍ତମାନ ଆମ ସଂଗଠନର ସଂପାଦିକା ସୁଶ୍ରୀ ସୁଶୀଳା ମାଝୀ ମଧ୍ୟ ଯୋଗ ଦେଇଥିଲେ । ସେହିଦିନ ସମୁନୀ ଝୋଡିଆ ଦଶଟି ପଞ୍ଚାୟତର ପାଠ ପଢୁଥିବା ସରକାରୀ ସ୍କୁଲର ୧୦ଜଣ ଆଦିବାସୀ ଝିଅ ପିଲାଙ୍କୁ ୫୦୦ଟଙ୍କା ଲେଖାଏଁ ୧୦ହଜାର ଟଙ୍କା ପୁରସ୍କାର ପ୍ରଦାନ କରିଥିଲେ । ସେ କହିଥିଲେ ଯେ ଯଦି ଆଦିବାସୀ ଝିଅପିଲାମାନେ ଭଲଭାବରେ ମନଦେଇ ପାଠ ପଢ଼ିବେ ଏହି ମୁଁ ପ୍ରତିବର୍ଷ ପାଠ ପଢୁଥିବା ଆଦିବାସୀ ଝିଅମାନଙ୍କୁ ପୁରସ୍କାର ପ୍ରଦାନ କରିବି । ଏହି ପୁରସ୍କାର ଆଦିବାସୀ ଅଞ୍ଚଳରେ ନାରୀ ଶିକ୍ଷାର ପ୍ରସାର ଦିଗରେ ସେତୁବନ୍ଧ ନିର୍ମାଣରେ ଗୁଣ୍ଡୁଚି ମୂଷାର ଭୂମିକା ନିଭାଇବ । ସୁମନୀ ଝୋଡିଆ ସବୁବେଳେ ଆଦିବାସୀ ଅଞ୍ଚଳର

ସମସ୍ୟାକୁ ସ୍ପଷ୍ଟ ଭାବେ ଉପସ୍ଥାପନା କରି ଆସୁଛନ୍ତି । ଆଦିବାସୀ ସମାଜର ଅନେକ ସଂଘର୍ଷରେ ସେ ନେତୃତ୍ୱ ନେଇଛି । ଏଥିପାଇଁ ମୁଖ୍ୟ ସଂଘର୍ଷ ହେଉଛି ଝୋଡିଆଭାଇ ଓ ଭଉଣୀମାନଙ୍କର ଜାତିଗତ ପ୍ରମାଣପତ୍ରର ଅଧିକାରକୁ ନେଇ ।

ହଜାର ହଜାର ବର୍ଷ ଧରି ଝୋଡିଆମାନେ ଆଜି ଆଦିବାସୀ ଜାତିଗତ ପ୍ରମାଣପତ୍ର ପାଇବାରୁ ବଞ୍ଚିତ ହୋଇଛନ୍ତି । ତେଣୁ ସେମାନେ ଏଥିପାଇଁ ଝୋଡିଆ ସମାଜର ଗୋଟିଏ କମିଟି ଗଠନ କରି, ନିଜ ହାତରୁ ଟଙ୍କା ଖର୍ଚ୍ଚ କରି, ଭୁବନେଶ୍ୱର ନିର୍ବାଚନ କମିଶନରଙ୍କ ପାଖକୁ ଯାଇଥିଲେ । ଆଦିବାସୀ ସାର୍ଟିଫିକେଟ ନ ଥାଇ ଭୋଟରେ ଛିଡା ହେବେ ବୋଲି କମିଶନରଙ୍କଠାରୁ ଅନୁମତି ମିଳିଥିଲା । ବର୍ତ୍ତମାନ ସରକାର ଝୋଡିଆ ସଂପ୍ରଦାୟକୁ ଅଣ-ଆଦିବାସୀ ବିବେଚନା କରୁଥିବାରୁ ତାହା ଅନ୍ୟାୟ ବୋଲି ପ୍ରତିବାଦ କରି ସେ ଅନ୍ଦୋଳନ ଜାରି ରଖିଛନ୍ତି । ସବୁ ସମୟରେ ସୁମନୀ କହି ଆସୁଛି, 'ସରକାର ଆଦିବାସୀ ମହିଳାମାନଙ୍କୁ ଖାଲି ପୁରସ୍କାର ଦେଇ ଦେଉଛି, କିନ୍ତୁ ଯେତେବେଳେ ଆଦିବାସୀମାନଙ୍କର ଅଧିକାର କଥା ଉଠୁଛି ସେତେବେଳେ ସରକାର ନିଷ୍କର୍ମା ହୋଇ ଚୁପ୍ ହୋଇଯାଉଛି ।'

ମାର୍ଚ୍ଚ - ୨୦୦୩



# ସାଧାରଣ ବଣ୍ଟନ ବ୍ୟବସ୍ଥା : ମହିଳାମାନେ ହାତକୁ ନେଲେ

ନବନିର୍ମିତ ଜିଲ୍ଲାମାନଙ୍କ ମଧ୍ୟରୁ କନ୍ଧମାଳ ଜିଲ୍ଲା ଅନ୍ୟତମ । ଏହି ଜିଲ୍ଲାର ଫିରିଙ୍ଗିଆ ବ୍ଲକ ଅନ୍ତର୍ଗତ ଲୁଇସିଂ ଗ୍ରାମପଞ୍ଚାୟତ ବାଲନ୍ଦାପଡ଼ା ଗ୍ରାମରେ ସାଧାରଣ ବଣ୍ଟନ ବ୍ୟବସ୍ଥା କେନ୍ଦ୍ରଠାରୁ ଲୋକମାନେ କଣ୍ଟ୍ରୋଲ ଚିନି, ଚାଉଳ ଇତ୍ୟାଦି ନେଇ ଖାଉଥିଲେ । ମାତ୍ର ସାଧାରଣ ବଣ୍ଟନ ବ୍ୟବସ୍ଥା ନୀତିନିୟମ ଅନୁସାରେ ସମସ୍ତେ ଚାଉଳ ପାଇପାରୁନଥିଲେ । ଏହି କଥା ସମସ୍ତେ ହୃଦୟଙ୍ଗମ କରୁଥିଲେ କି କେହି ଏହାର ପ୍ରତିକାର ବ୍ୟବସ୍ଥା କରିପାରୁନଥିଲେ । ସେହି ପଞ୍ଚାୟତର ୩ଟି ଗାଁ ଯଥା, ଲୁଇସିଂ, ଲାଠିକୁମ୍ପା ଏବଂ କିଲୁକୁମ୍ପାର ମହିଳାମାନେ ଏହି ସାଧାରଣ ବଣ୍ଟନ ବ୍ୟବସ୍ଥାର ଅସୁବିଧାକୁ ବେଶିଦିନ ପର୍ଯ୍ୟନ୍ତ ସହିପାରିଲେ ନାହିଁ । ଏ ବିଷୟରେ ସେ ଗାଁର ପୁରୁଷ ଓ ମହିଳାମାନଙ୍କ ସହ ବାରମ୍ବାର ମିଟିଂ କରି ଆଲୋଚନା କରି ନବୁଝୁଥିବା ଲୋକଙ୍କୁ ବୁଝାଇବାରେ ଲାଗିଲେ । ଅନ୍ୟାନ୍ୟ ଅଞ୍ଚଳରେ ମହିଳାମାନେ ତଥା ଗ୍ରାମବାସୀମାନେ ଏକଜୁଟ ହୋଇ କିଭଳି ସାଧାରଣ ବଣ୍ଟନ ବ୍ୟବସ୍ଥା ହାତକୁ ନେଇଛନ୍ତି ତାହାର ଉଦାହରଣ ଦେଇ ସେମାନେ କିଭଳି ଭାବରେ ଚାଉଳ, ଚିନି, କିରୋସିନି ସୁବିଧାରେ ପାଉଛନ୍ତି ତାହା ମଧ୍ୟ କହିଲେ ।

ସମସ୍ତେ ଯେତେବେଳେ ଜାଣିଲେ ଅନ୍ୟ ଅଞ୍ଚଳର ମହିଳାମାନେ ଓ ଗ୍ରାମବାସୀ ଏଭଳି କାମ କରିପାରୁଛନ୍ତି, ଆମେ କାହିଁକି ପାରିବା ନାହିଁ । ତା'ପରେ ସମସ୍ତେ ନିଷ୍ପତ୍ତି ନେଲେ ପ୍ରତିଘରୁ କିଛି କିଛି ଟଙ୍କା ଚାନ୍ଦା ଆଦାୟକରି ଚାଉଳ ଆଣିବା । ତା'ପରେ ସଂଗଠିତ ହୋଇ କମିଟି ଗଠନ କରି ୩ଖଣ୍ଡ ଗାଁରୁ ଘର ପିଛା ୧୫ ଟଙ୍କା ଲେଖାଏଁ ଆଦାୟ କଲେ । ସମୁଦାୟ ୧,୧୧୦ ଟଙ୍କା (ଏକହଜାର ଏକଶହ ଦଶଟଙ୍କା) ଆଦାୟ କଲେ । ଏତିକି ଟଙ୍କାରେ କିଛି ହୋଇ ପାରିବ ନାହିଁ । ତେଣୁ କିଛି ଟଙ୍କା ସାହାଯ୍ୟ କରିବା ପାଇଁ ସ୍ଥାନୀୟ ସ୍ୱେଚ୍ଛାସେବୀ ଅନୁଷ୍ଠାନ, 'ଅଗ୍ରଗାମୀ'କୁ ଅନୁରୋଧ କଲେ । 'ଅଗ୍ରଗାମୀ' ମହିଳାମାନଙ୍କର ଏହି ଆଗ୍ରହକୁ ଦେଖି, ୧୨,୦୦୦.୦୦ ଟଙ୍କା ସାହାଯ୍ୟ

ଦେଲା । ତା'ପରେ ମହିଳାମାନେ ଲାଇସେନ୍ସ ପାଇଁ ବ୍ଲକ ଅଫିସ୍ ଯିବା ସଙ୍ଗେସଙ୍ଗେ ଦୁଇ ତିନିଥର ଉପଜିଲ୍ଲାପାଳ ଓ ଜିଲ୍ଲାପାଳଙ୍କ ନିକଟକୁ ଯାଇ ଦେଖା ନପାଇ ଫେରି ଆସିଲେ । ପୁଣି ଥରେ ଯିବାବେଳକୁ ଜିଲ୍ଲାପାଳ ଉପସ୍ଥିତ ଥିଲେ । ସେ ମହିଳାମାନଙ୍କୁ ଦେଖି ପଚାରିଲେ, "ତୁମେମାନେ କ'ଣ ପାଇଁ ଆସିଛ?" ମା'ମାନେ କହିଲେ, "ଆମେ ଡିଲର ଚାଉଳ ମହିଳାମାନଙ୍କ ନାମରେ ନେବୁ । ତେଣୁ ଆପଣ ଆମକୁ ଲାଇସେନ୍ସ ଦିଅନ୍ତୁ । ଏକଥା ଶୁଣି ଜିଲ୍ଲାପାଳ କହିଲେ, "ତୁମେତ ଲେଖାପଢ଼ା ଜାଣିନାହଁ, ହିସାବକିତାବ କେମିତି କରିବ? ଡିଲରସିପ୍ ନେଇ କଣ୍ଟ୍ରୋଲ ଚାଉଳ ନେବା ପାଇଁ ବହୁତ ଟଙ୍କା ଦରକାର । ତୁମେ ଏତେ ଟଙ୍କା କେଉଁଠାରୁ ଆଣିବ? ତେଣୁ ତୁମେମାନେ ହଇରାଣ ହରକତ ହୋଇଯିବ ।"

ମାତ୍ର ମହିଳାମାନେ ଭୟ ନକରି ସାହସର ସହ କହିଲେ, "ଟଙ୍କା ବ୍ୟବସ୍ଥା ଏବଂ ହିସାବକିତାବ ଖବର ଆମେ କରିବୁ । ଟଙ୍କା ଆମେ ପ୍ରତିଘରୁ ଚାନ୍ଦା ଉଠାଇ ବ୍ୟାଙ୍କରେ ୧୨,୦୦୦.୦୦ ଟଙ୍କା ରଖିଛୁ ବୋଲି କହିବାରୁ ଜିଲ୍ଲାପାଳ ଖୁସି ହୋଇ ସେମାନଙ୍କୁ ଲାଇସେନ୍ସ ଶୀଘ୍ର ଦେବାର ବ୍ୟବସ୍ଥା କରିବେ ବୋଲି ପ୍ରତିଶ୍ରୁତି ଦେଲେ । ଏହାର କିଛିଦିନ ପରେ ଗତ ଡିସେମ୍ବର ମାସରେ ସେମାନେ ଶ୍ରୀମତୀ ଜଟଣୀ କହଁର ନାମରେ "ସାଧାରଣ ବଣ୍ଟନ ବ୍ୟବସ୍ଥା"ର ଚାଉଳ, ଚିନି, କିରୋସିନି ଆଣିବା ନିମନ୍ତେ "ଅନୁମତି ପତ୍ର" ପାଇଲେ । ପ୍ରଥମ ଥର ସେମାନେ ୨୦ କ୍ୱିଣ୍ଟାଲ ଚାଉଳ, ୧ କ୍ୱିଣ୍ଟାଲ ଚିନି ଓ କିରୋସିନି ଆଣି ଠିକ୍ ଭାବରେ ବିକ୍ରିକରି ସମସ୍ତଙ୍କୁ ସୁବିଧାରେ ଯୋଗାଇ ଦେଲେ । ଏବେ ହିସାବକିତାବ ସହ ଅନ୍ୟ ସମସ୍ତକାମ ମହିଳାମାନେ ହିଁ ବୁଝୁଛନ୍ତି ।

ଆଖପାଖ ଗ୍ରାମର ଲୋକମାନେ ବିଶ୍ୱାସ କରିପାରୁନଥିଲେ ଯେ ଏମିତି ନିରକ୍ଷର ଆଦିବାସୀ ମହିଳାମାନେ ଏତେବଡ଼ କାମ ସୁରୁଖୁରୁରେ କରିପାରିବେ । କିନ୍ତୁ ଏହି ମହିଳାମାନଙ୍କର ଅଦମ୍ୟ ଚେଷ୍ଟା ଅସୀମ ଧୈର୍ଯ୍ୟ ଯୋଗୁଁ, ସେମାନେ ଏତେବଡ଼ କାମ ହାତକୁ ନେଇ ଗ୍ରାମବାସୀମାନେ ଏହି ସାଧାରଣ ବଣ୍ଟନ ବ୍ୟବସ୍ଥାରେ ମିଶିବାକୁ ଆଗ୍ରହ ପ୍ରକାଶ କରୁଛନ୍ତି । ବହୁଦିନରୁ ଚାଲିଆସୁଥିବା ଖାଉଟୀ ସାମଗ୍ରୀ ଯୋଗାଣ ପାଇଁ ଅନୁମତି ପତ୍ର (ଲାଇସେନ୍ସ) ପ୍ରାପ୍ତ ଡିଲରମାନେ ଖାଉଟୀମାନଙ୍କୁ ଚାଉଳ, ଚିନି ଓ କିରୋସିନି ଯୋଗାଇବାରେ ଏକଚାଟିଆ ମନୋଭାବକୁ ଦୂର କରି ନିଜ ଗାଁ ପାଇଁ ନିଜେ "ସାଧାରଣ ବଣ୍ଟନ ବ୍ୟବସ୍ଥା"ର ଜିନିଷକୁ ସୁରୁଖୁରୁରେ ବଣ୍ଟନ କରିବାର ସାହସ ପ୍ରମାଣିତ କରିଦେଲେ । ଦିନ ଆସିବ, ଏହିଭଳି ସବୁଠାରେ ଥିବା ଅସୁବିଧା ଲୋକ ସଚେତନତା ଓ ଲୋକଶକ୍ତି ମାଧ୍ୟମରେ ହେବ ।

ଜାନୁୟାରୀ - ୧୯୯୫

# ବିକାଶ ଧାରାରେ କଣ୍ଠା:
# ମଇ ୨୮ ତାରିଖର ସ୍ମୃତି

ଗଣତନ୍ତ୍ରରେ ମତଦାନ ଅଧିକାର ସମସ୍ତଙ୍କର ରହିଛି । ନିର୍ବାଚନ ପଦ୍ଧତି ଅନୁସାରେ ଭୋଟ ଦେଇ ନିଜ ଅଞ୍ଚଳର ଉନ୍ନତି ଓ ଭଲ ଶାସନର ଆଶାରଖି ଲୋକେ ନେତା ବାଛନ୍ତି ଶାସକଙ୍କଠାରୁ ଉତ୍ତମ ନ୍ୟାୟ, ନାଯ୍ୟ ଅଧିକାର, ପାଇବେ ବୋଲି । ଦାରିଦ୍ର୍ୟ ଦୂର ପାଇଁ ବିଭିନ୍ନ ଯୋଜନା ଏବଂ ଯୋଜନା ଗୁଡ଼ିକ କାର୍ଯ୍ୟକାରୀ କରିବା ପାଇଁ ଖୋଲାଯାଏ ବିଭିନ୍ନ ବିଭାଗ । ନିଯୁକ୍ତି ପାଆନ୍ତି ଉପଯୁକ୍ତ କର୍ମଚାରୀ । କିନ୍ତୁ ବାସ୍ତବ କ୍ଷେତ୍ରରେ ଦେଖାଯାଇଛି ଦେଶ ସ୍ୱାଧୀନ ହେବାର ୪୮ ବର୍ଷ ପରେ ମଧ ଲୋକମାନେ ଉପଯୁକ୍ତ ନ୍ୟାୟ କିମ୍ବା ନ୍ୟାଯ୍ୟ ଅଧିକାର ପାଇ ପାରିନାହାନ୍ତି । ବିଭାଗୀୟ କର୍ମଚାରୀମାନଙ୍କଠାରୁ ଠିକ୍ ବ୍ୟବହାର କି ଦାୟିତ୍ୱବୋଧ ପାଉନାହାନ୍ତି । ଗଣତନ୍ତ୍ରର ମତଦାନ ପ୍ରତିଦାନରେ ଅନୁନ୍ନତ ଗରିବ ଲୋକମାନେ ପାଉଛନ୍ତି କ'ଣ ? ତାର ଏକ ସତ ଘଟଣା ଆମେ ଏଠାରେ ଉପସ୍ଥାପନ କରୁଛୁ ।

ଓଡ଼ିଶାର ରାୟଗଡ଼ା ଜିଲ୍ଲା ଅନ୍ତର୍ଗତ କାଶୀପୁର ବ୍ଲକ ଏକ ଅନୁନ୍ନତ ଅଞ୍ଚଳ । ଏହି ଅଞ୍ଚଳରେ ସାଧାରଣ ଜାତିଙ୍କଠାରୁ ଆଦିବାସୀ ହରିଜନ ବହୁତ ଅଧିକ ସଂଖ୍ୟାରେ ବାସ କରନ୍ତି । ଆଦିବାସୀ ଓ ହରିଜନମାନଙ୍କର ସରଳତାର ସୁଯୋଗ ନେଇ ଅନ୍ୟଜାତିର ଲୋକମାନେ ବାହାରୁ ଆସି ଏଠାରେ ବସା ବାନ୍ଧି ଗାଦି ମାଡ଼ି ବସିଛନ୍ତି । 'ଘରେ ହାତୀ ପଶିଲା' ଭଳି ଆଦିବାସୀ ଓ ହରିଜନମାନଙ୍କୁ ଶୋଷଣ କରିବାରେ ଲାଗିଛନ୍ତି । ସବୁ ବ୍ୟବସାୟ ଭଳି ଏ ଅଞ୍ଚଳରେ ଫୁଲଝାଡୁ କିଣା ବିକାରେ ମଧ୍ୟ ପ୍ରବଳ ଠକେଇ ହୁଏ । ଏ ବିଷୟରେ ଆମେ 'ଆରୋହଣ'ରେ ପୂର୍ବରୁ ପ୍ରକାଶ କରିଥିଲୁ । ଏ ସମସ୍ୟା ବର୍ତ୍ତମାନ ସୁଦ୍ଧା ସମାଧାନ ହୋଇନାହିଁ । ସମସ୍ୟା ଆହୁରି ଜଟିଳ ପରିସ୍ଥିତିରେ ପହଞ୍ଚିଛି ।

ସରକାରଙ୍କ ବିଭାଗମାନଙ୍କ ମଧ୍ୟରୁ ଆଦିବାସୀ ଉନ୍ନୟନ ସମବାୟ ନିଗମ ବିଭାଗ କେବଳ ଆଦିବାସୀ ଅଞ୍ଚଳମାନଙ୍କରେ ଖୋଲାଯାଇଛି । ବିଭାଗର ଦାୟିତ୍ୱ ହେଲା

ଲୋକମାନେ କିପରି ସୁଲଭ ମୂଲ୍ୟରେ ଜିନିଷ କିଣିବେ ଓ ଅମଳ କରୁଥିବା ଜିନିଷପତ୍ରକୁ ଉଚିତ୍ ମୂଲ୍ୟରେ ବିକ୍ରୀ କରିପାରିବେ । ଲଘୁବନଜାତ ଜିନିଷଗୁଡ଼ିକୁ କିଣାବିକା ପାଇଁ ମଧ୍ୟ ଏହି ସଂସ୍ଥା ଲାଇସେନ୍ସ ପାଇଛି । କିନ୍ତୁ ସଂସ୍ଥା ଲୋକମାନଙ୍କଠାରୁ ଠିକ୍ ଦରରେ କିଣିବା ବଦଳରେ ଲୋକଙ୍କୁ ଠକିବା ପାଇଁ ବ୍ୟବସ୍ଥା କରୁଛି । ଏବର୍ଷ ପ୍ରତିବାଦ କରି ମାଣ୍ଡିବିଶି ମହିଳା ମଣ୍ଡଳ ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନା ଅନୁସାରେ ମାଣ୍ଡିବିଶି ଅଞ୍ଚଳରୁ ପ୍ରାୟ ୧୭୩ କ୍ୱିଣ୍ଟାଲ ଫୁଲଝାଡୁ ସଂଗ୍ରହ କରିଥିଲା । ଏହି ଝାଡୁ ସଂଗ୍ରହ କରିବା ପାଇଁ ମହିଳାମଣ୍ଡଳ ଆଗରୁ ପାଣ୍ଠି ସଂଗ୍ରହ କରିଥିଲା । ପ୍ରକାଶ ଥାଉକି ଏହି ମହିଳା ମଣ୍ଡଳର ସଭ୍ୟାମାନେ ସରକାରଙ୍କ ଏକ ଗାଲିଚା (ଉବକ୍କୁରଣ୍ଡ) ତାଲିମ୍ ପାଇଁ ଅର୍ଥ ସଂଗ୍ରହ କରିଥିଲେ । କିନ୍ତୁ ଝାଡୁଗୁଡ଼ିକୁ ପ୍ରକୃତ ମୂଲ୍ୟରେ ବିକିବା ପାଇଁ ବିଭାଗୀୟ ଉଚ୍ଚ ପଦସ୍ଥ କର୍ମଚାରୀ ଏବଂ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଚିଠି ଲେଖିଥିଲେ ।

ଏହାର ଉତ୍ତରରେ ବର୍ତ୍ତମାନର ସରକାରଙ୍କ ପଞ୍ଚାୟତିରାଜ ବିଭାଗର ଚିଠି ସଂଖ୍ୟା ୫/୫୯ ୩୪୭୩/ପି.ଆର ତା ୧୮.୪.୯୫ରେ ଓରମାସ୍ ଜରିଆରେ ପ୍ରତ୍ୟେକ ଜିଲ୍ଲାର ଡି.ଆର.ଡ଼ି.ଏ ଏବଂ ଭୁବନେଶ୍ୱରସ୍ଥିତ ଟି.ଡ଼ି.ସି.ସି ପରିଚାଳନା ନିର୍ଦ୍ଦେଶକଙ୍କୁ ଜଣାଇ ଦେଇଛନ୍ତି ଯେ, ଲଘୁବନଜାତ ଦ୍ରବ୍ୟ ପଞ୍ଜୀକୃତ ମହିଳାମଣ୍ଡଳକୁ କିଣାବିକା ପାଇଁ ଲାଇସେନ୍ସ ଦେବେ । ରାୟଗଡ଼ା ଜିଲ୍ଲାର ଜିଲ୍ଲାପାଳ ମଧ୍ୟ କହିଥିଲେ ଯେ, ଟି.ଡ଼ି.ସି.ସି ଏବର୍ଷ ଝାଡୁ ମହିଳା ମଣ୍ଡଳଠାରୁ ଉଚିତ୍ ମୂଲ୍ୟରେ କିଣିବେ ଏବଂ ମହିଳା ମଣ୍ଡଳକୁ ଆସନ୍ତା ବର୍ଷଠାରୁ ଲାଇସେନ୍ସ ମିଳିବ ବୋଲି ଏକ ଜିଲ୍ଲାସ୍ତରୀୟ ବୈଠକରେ ପ୍ରତିଶ୍ରୁତି ଦେଇଥିଲେ । ଏହି ବୈଠକରେ ଜିଲ୍ଲାର ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ମହିଳା ମଣ୍ଡଳମାନେ ଯୋଗ ଦେଇଥିଲେ ।

ମହିଳା ମଣ୍ଡଳ ଏତେ ସବୁ କଷ୍ଟ କରି ସରକାରଙ୍କ ବଭିନ୍ନ ବିଭାଗକୁ ବାରମ୍ବାର ଚିଠି ଲେଖି ମଧ୍ୟ ପ୍ରକୃତ ନ୍ୟାୟ ପାଇବା ପରିବର୍ତ୍ତେ ଟି.ଡ଼ି.ସି.ସି. ଓ ବନବିଭାଗ ଦ୍ୱାରା ଅତ୍ୟାଚାରିତ ହୋଇଛନ୍ତି । ମହିଳା ମଣ୍ଡଳ କିଛି ଦିନ ଅପେକ୍ଷା କରି ଦେଖିଲେ, - ତାଙ୍କର ଝାଡୁକୁ ଟି.ଡ଼ି.ସି.ସି, ପ୍ରକୃତ ମୂଲ୍ୟ ଦେଇ କିଣିନେବା ପାଇଁ ପ୍ରସ୍ତୁତ ନୁହେଁ । ଏଠାରେ ସୂଚନାଯୋଗ୍ୟ ଗୋଟିଏ କିଲୋ ଝାଡୁରେ ୩ ମୁଠା ଝାଡୁ ହେବ । ଗୋଟିଏ ମୁଠା ଝାଡୁର ଦାମ୍ ୮ ଟଙ୍କା ଓ ୩ ମୁଠା ଝାଡୁ ୨୪ ଟଙ୍କା । ଗୋଟିଏ କିଲୋ ଝାଡୁରେ ୨୪ ଟଙ୍କା ମିଳୁଥିବା ବେଳେ ମହିଳାମଣ୍ଡଳର ମାଆମାନେ କାହିଁକି ୫ ଟଙ୍କାରେ ବିକିବେ ବରଂ ନିଜେ ଝାଡୁବାନ୍ଧି ବିକିବେ ବୋଲି ସ୍ଥିର କଲେ । ତେଣୁ ବର୍ଷାଦିନ ପୂର୍ବରୁ ଝାଡୁ ବନ୍ଧା କାମ ଆରମ୍ଭ କରିବା ପାଇଁ ସ୍ଥିର କଲା ଝାଡୁ ବନ୍ଧା ଆରମ୍ଭ କରି ପ୍ରଥମ ଦଫାରେ ୩୦ ଜଣ ମହିଳା ଓ ଦ୍ୱିତୀୟ ଦଫାରେ ୨୫ ଜଣଙ୍କୁ ତାଲିମ୍ ଦେବା ଆରମ୍ଭ କଲା ।

ତାଲିମ୍‌ଦାତ୍ରୀ ମହିଳାମାନେ ଆଗରୁ ସରକାରଙ୍କ ତାଲିମ୍ କାର୍ଯ୍ୟକ୍ରମ ଜରିଆରେ ତାଲିମ୍ ପାଇଥିଲେ । ଦ୍ୱିତୀୟ ଦଫା ତାଲିମ୍ ଚାଲିଥିବା ସମୟରେ ମଇମାସ ୨୮ ତାରିଖ ଦିବା ୧୧ଘ୩୦ମି ସମୟରେ ଟି.ଡ଼ି.ସି.ସିର ପରିଚାଳନା ନିର୍ଦ୍ଦେଶକ, ଝାଡ଼ୁ ବ୍ୟବସାୟୀ (ହାଇଦ୍ରାବାଦ), ଅତିରିକ୍ତ ଫରେଷ୍ଟ କଞ୍ଜରଭେଟର, ଫରେଷ୍ଟର ଓ ଜଙ୍ଗଲ ବିଭାଗର ଭ୍ରାମ୍ୟମାଣ କର୍ମଚାରୀ, ପୁଲିସ୍, ଟି.ଡ଼ି.ସି.ସି କର୍ମଚାରୀ ଓ ତହସିଲଦାର, କାଶୀପୁର ୩ଟି ଜିପ୍‌ରେ ଏବଂ ସାଙ୍ଗରେ ଗୋଟିଏ ଟ୍ରାକ୍ଟର ଓ ୨ଟି ଟ୍ରକ ଆଣି ଆସି ମାଣ୍ଡିବିଶି ହଳିଆ ସାହି ଗ୍ରାମଠାରେ ପହଞ୍ଚିଥିଲେ । ସେହି ସମୟରେ ତାଲିମ୍ ପାଉଥିବା ମହିଳାମାନେ ଝାଡ଼ୁ ବାନ୍ଧୁ ଥାଆନ୍ତି । ଏହି ସମୟରେ ଟି.ଡ଼ି.ସି.ସି. ବ୍ରାଞ୍ଚ ମ୍ୟାନେଜର ଏବଂ ତାଙ୍କ ସାଙ୍ଗରେ ଆସିଥିବା ଅନ୍ୟ କର୍ମଚାରୀମାନେ କହିଲେ "ତୁମକୁ ୫ଟଙ୍କାରେ ଝାଡ଼ୁ ଦେବା ପାଇଁ ବାରମ୍ବାର କହିବା ପରେ ମଧ୍ୟ ତୁମେ ଦେଲନାହିଁ । ଯଦି ଆଜି ତୁମେ ୫ଟଙ୍କାରେ ଦେବତ ଦିଅ ନଚେତ୍ ଆମେ ଜବରଦସ୍ତ ଝାଡ଼ୁ ନେଇଯିବୁ । ଆମେ ମାଜିଷ୍ଟ୍ରେଟଙ୍କ କ୍ଷମତା ଧରି ଆସିଛୁ ।"

ମହିଳାମଣ୍ଡଳ ମାଆମାନେ କହିଥିଲେ, 'ଆମେ ୫ଟଙ୍କାରେ ଝାଡ଼ୁ ଦେବୁ ନାହିଁ । ଯଦି ମାଜିଷ୍ଟ୍ରେଟ କ୍ଷମତା ଆଣିଛନ୍ତି ତାହାହେଲେ ତାହା ଆମକୁ ଦେଖାଅ ।' ତା'ପରେ ସେମାନେ ବହୁତ ଅଶ୍ଳୀଳ ଭାଷାରେ ଗାଳି ଗୁଲଜ କରି କହିଲେ, "ତୁମେମାନେ ବିନା ଲାଇସେନ୍‌ସରେ ଝାଡ଼ୁ କିଣୁଛ ପୁଣି ଅର୍ଡ଼ର ମାଗୁଛ । "ଏହି କଥା ଉପରେ ଯୁକ୍ତିତର୍କ ହେବାରୁ ସେମାନେ ମାଡ଼ମାରି ଜବରଦସ୍ତ ନେଇଯିବେ ବୋଲି କହିଥିଲେ । କିନ୍ତୁ ମାଅମାନେ ଧୈର୍ଯ୍ୟର ସହିତ ସବୁ ଶୁଣି କିଲୋ ପ୍ରତି ଟ.୫.୫୦ ପ.ରେ ବିକିବା ପାଇଁ ରାଜି ନହୋଇ କିଲୋ ପ୍ରତି ଟ.୭.୦୦ରୁ କମ୍ ହେଲେ ବିକିବେ ନାହିଁ ବୋଲି ଜିଦ୍ ଧରିଥିଲେ ।

ବାବୁମାନେ ମାଆମାନଙ୍କ କଥାରେ ରାଜି ନହୋଇ ଝାଡ଼ୁ ନେଇଯିବା ପାଇଁ ଚାବି ମାଗିଥିଲେ । ମାଆମାନେ ଚାବି ନଦେବାରୁ ସମସ୍ତେ ଜବରଦସ୍ତ ପାବେଲ ଡୋମ୍‌ର ତାଲାକୁ କାଟି ଗ୍ରାମବାସୀ ଓ ମାଆମାନଙ୍କ ଅନୁପସ୍ଥିତିରେ ଓଜନକରି ମିନିଟ୍ରକ୍ ଓ ଟ୍ରାକ୍ଟରରେ ଝାଡ଼ୁ ବୋଝେଇ କରିଥିଲେ । ମହିଳା ମଣ୍ଡଳ ମାଆମାନେ ବୋଝେଇ ଗାଡ଼ି ଛାଡ଼ି ନଦେବା ପାଇଁ ସେହି ସମୟରେ ଅବରୋଧ କରି ବସିଥିଲେ । ଫରେଷ୍ଟ ଗାର୍ଡ଼, ପୋଲିସ୍ କର୍ମଚାରୀ ଓ ବ୍ରାଞ୍ଚ ମ୍ୟାନେଜର (ଟି.ଡ଼ି.ସି.ସି) ମାଆମାନଙ୍କୁ ଅଶ୍ଳୀଳ ବ୍ୟବହାର ଦେଖାଇଥିଲେ । ବୋଝେଇ ଗାଡ଼ିକୁ ମହିଳାମାନଙ୍କ ପାଖକୁ ଆଣି ସେମାନଙ୍କ ଦେହକୁ ଲଗାଇ ରଖିଥିଲେ । ମାଆମାନେ ସାହସର ସହ ଆଖି ବନ୍ଦକରି ବସିଥିବା ଜାଗାରୁ ଉଠି ନଥିଲେ । ଶେଷରେ ବାବୁମାନେ ନିରୁପାୟ ହୋଇ ହଳିଆସାହିର ନାନ୍ଦୁମାଝୀଙ୍କୁ ଟଣା-

ଓଟରା କରିଥିଲେ । ମାଡ଼ ମାରିବା ପାଇଁ ଉଦ୍ୟମ ହୋଇଥିଲେ । ସକାଳ ପହରୁ ଭୋକ ଉପାସରେ ଧୈର୍ଯ୍ୟର ସହିତ ବସିଥିବା ମାଆମାନେ ନାନ୍ଦୁମାଝୀଙ୍କୁ ମାଡ ନଦେବା ପାଇଁ କହିଥିଲେ ଏବଂ ଆସିଥିବା ବାବୁମାନଙ୍କୁ କହିଥିଲେ 'ତୁମେମାନେ ଆମକୁ ନପଚାରି ଆମର ଗୋଦାମ୍ ଘରର ତାଲା ଭାଙ୍ଗି ଆମେ ରଖିଥିବା ଜିନିଷ ଓ ପେଟର ଦାନା ଆଣିଲ । ଏବେ ଆମ ଉପରେ ଗାଡ଼ି ଚଢ଼ାଇ ନେଇକରି ଯାଅ ।'

ଏହି କଥା କହୁଥିଲା ବେଳେ ମହିଳାମଣ୍ଡଳ ସଭାପତି, ସଂପାଦିକା ଓ ମାଆମାନେ କାନ୍ଦି ପକାଇଥିଲେ । ମାଆମାନଙ୍କ ଆଖିରୁ ଧାର ଧାର ଲୁହ ବୋହି ଯାଉଥିଲା । ତଥାପି ବାବୁମାନେ ମାଆମାନଙ୍କୁ ଟଣା ଓଟରା କରି ଖରାପ ବ୍ୟବହାର ଓ ଗାଳି ଗୁଲଜ କରି ରାସ୍ତାରୁ ଉଠାଇ ଦେଇ ଝାଡୁ ବୋଝେଇ ଟ୍ରକ୍, ଟ୍ରାକ୍ଟର ଗୋଟିକ ପରେ ଗୋଟିଏ ନେଇ ଯାଇଥିଲେ । କ୍ଷମତାର ବଳ ଏବଂ ଟଙ୍କାର ଲୋଭ ବାବୁମାନଙ୍କୁ ଅନ୍ଧ କରିଦେଇଥିଲା । ସେତେବେଳେ ସେମାନେ କାହାକୁ ଦେଖିପାରୁ ନଥିଲେ କି ପ୍ରକୃତ ଜିନିଷ ଦେଖିବା ପାଇଁ ଇଛା କରୁନଥିଲେ । ଟ୍ରକ୍, ଟ୍ରାକ୍ଟର ଚାଲିଯିବା ପରେ ମାଆମାନେ ସବୁ ପଳାଇ ଯାଇଥିଲେ । ଆସିଥିବା କର୍ମଚାରୀ ବାବୁମାନେ ରାତି ଘ.୯.୪୫ମି ସମୟ ପର୍ଯ୍ୟନ୍ତ ପାବେଲ ଡ଼ୋମ୍‌ର ସମସ୍ତ ଝାଡୁ ନେଇ ଯାଇଥିଲେ । ଏହା ବ୍ୟତୀତ ରାତି ସ୍କୁଲ ଘରର ତାଲା ମଧ କାଟି ପଳାଇ ଯାଇଥିଲେ ।

ଉପରୋକ୍ତ ବିବରଣୀରୁ ଜଣାଯାଏ ଗରିବ ପ୍ରତି ସମସ୍ତେ ଅନ୍ୟାୟ ଓ ଅବିଚାର କରନ୍ତି । ମାଆମାନେ ରାସ୍ତା ଅବରୋଧ କରିବା ସମୟରେ ସରକାରୀ ଶିକ୍ଷିତ କର୍ମଚାରୀମାନେ ଯେପରି ଅମାନୁଷିକ ବ୍ୟବହାର କଲେ, ତାହା ପୂରାପୁରି ଅସାମ୍ବିଧାନିକ । ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଓ ରାଜନୈତିକ ନେତାମାନେ ହିଁ ଗରିବ ଲୋକମାନଙ୍କୁ ଶୋଷଣ କରୁଛନ୍ତି ।

ଏହି ଘଟଣା ଘଟିବା ପରଦିନ ମହିଳାମଣ୍ଡଳର ମାଆମାନେ ମାନ୍ୟବର ମୁଖ୍ୟମନ୍ତ୍ରୀ, ବିଭାଗୀୟ ସମସ୍ତ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କୁ ଲିଖିତ ଆକାରରେ ଜଣାଇଥିଲେ ଏବଂ ୧୫ ଦିନ ମଧ୍ୟରେ ନେଇଥିବା ଝାଡୁ କିମ୍ବା ଝାଡୁର ଉଚିତ୍ ମୂଲ୍ୟ ଫେରାଇନଦେଲେ ଅନଶନ କରିବେ ବୋଲି ମଧ୍ୟ କହିଥିଲେ । ୧୫ ଦିନ ମଧ୍ୟରେ କୌଣସି ପଦକ୍ଷେପ ନେଇନଥିବାରୁ ମହିଳାମଣ୍ଡଳର ମାଆମାନେ କାଶୀପୁର ତହସିଲ୍‌ଦାରଙ୍କୁ ପୁଣି ଆସି ୧୩.୬.୯୫ ତାରିଖରେ ଭେଟିଥିଲେ ତହସିଲ୍‌ଦାର୍ ୭ ଦିନ ଭିତରେ ବୁଝି କହନ୍ତୁ ବୋଲି କହିଥିଲେ ହେଲେ କିଛି ନବୁଝିବାରୁ ୧୯.୬.୯୫ ତାରିଖ ଦିନ କାଶୀପୁର ତହସିଲଦାରଙ୍କ କାର୍ଯ୍ୟାଳୟ ସମ୍ମୁଖରେ ୭୫ ଜଣ ମହିଳାମଣ୍ଡଳର ସଭ୍ୟା ଗଣଧାରଣାରେ ସାରାଦିନ ବସିଥିଲେ । ଶେଷରେ ତହସିଲ୍‌ଦାର ମହାଶୟ କହିଥିଲେ ମୁଁ ଏ ବାବଦରେ

କ'ଣ କରିପାରିବି ? ମାଆମାନେ କହିଥିଲେ, 'ଆପଣ ମାଜିଷ୍ଟ୍ରେଟ ହୋଇକରି ଯାଇଥିଲେ । ତେଣୁ ଆପଣ ସବୁ ବୁଝିବେ ।' ତାପରେ ତହସିଲ୍‌ଦାର ମହାଶୟ କହିଥିଲେ, 'ଠିକ୍ ଅଛି ମାଆମାନେ ତୁମେ ଯାଅ, ମୁଁ ତୁମକୁ ୧୫ ଦିନ ଭିତରେ ଜଣାଇବି ।'

କିନ୍ତୁ ବର୍ତ୍ତମାନ ସୁଦ୍ଧା ତହସିଲ୍‌ଦାର ମହାଶୟ କିଛି ଜଣାଇ ନାହାନ୍ତି । ମହିଳାମଣ୍ଡଳକୁ ଓରମାସ୍ ତରଫରୁ ଏକ ଚିଠି ଆସିଛି । ଚିଠି ନଂ. ସଂଖ୍ୟା-୮୬୫ ତାରିଖ ୨୧.୬.୯୫ ଯେ, କିଣା ଦର ପରେ ଆଉ ୭ ଟଙ୍କା ଅଧିକା ଦିଆଯିବ । କିନ୍ତୁ ମହିଳାମଣ୍ଡଳ ଝାଡୁଗୁଡ଼ିକ କୋରାପୁଟ ଓରମାସ୍ ଡିପୁରେ ପହଞ୍ଚାଇଦେବ । ଏବେ କିନ୍ତୁ ମହିଳାମଣ୍ଡଳ ପାଖରେ ଝାଡୁ ନାହିଁ । ସରକାର ସେ ପାଖରେ ଝାଡୁକୁ ଜବରଦସ୍ତ ନେଇଯାଇଛନ୍ତି । ଏପାଖରେ ଅଧିକ ଟଙ୍କା ଦେବା ପାଇଁ କହୁଛନ୍ତି ।

ଏହି ଘଟଣାକୁ ନେଇ କେତୋଟି କଥା ବିଚାରକୁ ଆସିପାରେ । ଯଦି ଲୋକମାନେ ଉତ୍ତମ ଶାସନ ପରିଚାଳନା ପାଇଁ ପ୍ରତିନିଧି ନିର୍ବାଚିତ କରୁଛନ୍ତି, ତା'ହେଲେ ଗରିବ ଲୋକଙ୍କୁ କିପ୍ରକାର ନ୍ୟାୟ ଦେଉଛନ୍ତି ? ସରକାର ଲୋକମାନଙ୍କୁ ସେବା କରିବା ପାଇଁ ଏତେଗୁଡ଼ିଏ ବିଭାଗ ଖୋଲିଛନ୍ତି ଏବଂ ଏତେଗୁଡ଼ିଏ କର୍ମଚାରୀ ନିଯୁକ୍ତ କରିଛନ୍ତି । ହେଲେ ଏହାଦ୍ୱାରା ଲୋକମାନେ କି ଉପକାର ପାଉଛନ୍ତି ? କିନ୍ତୁ ଫଳ ହେଉଛି ଓଲଟା ନ୍ୟାୟ ପରିବର୍ତ୍ତେ ଅନ୍ୟାୟ ମିଳୁଛି । ସହାୟତା ନପାଇ ଲୋକମାନେ ଅସହାୟ ହୋଇପଡୁଛନ୍ତି । ଲୋକମାନଙ୍କ ଆଶା ଆଶାରେ ରହିଯାଉଛି । ସେମାନେ ହତାଶ ହେଉଛନ୍ତି । କିନ୍ତୁ ଏ ଦିନ ଆଉ ବେଶି ଦିନ ରହିବ ନାହିଁ । ଧୀରେ ଧୀରେ ଲୋକମାନେ ସଂଗଠିତ ହେଲେଣି । ନଜାଣୁଥିବା କଥା ମଧ୍ୟ ଜାଣିବା ପାଇଁ ଚେଷ୍ଟା କଲେଣି । ଆଉ ଖୁବ୍ କମ୍ ସମୟ ଭିତରେ ଲୋକମାନେ ଏହିଭଳି ଅନ୍ୟାୟ ଅତ୍ୟାଚାରକୁ ଦୂର କରିବା ପାଇଁ ଲଢ଼େଇ କରିବେ ଏବଂ ଦୂରେଇ ଯିବେ । ସବୁଦିନ ଗରିବ ଆଉ ନୀରବ ହୋଇ ରହିବନାହିଁ । ତା'ପାଟି ଫିଟିଲାଣି । ସେ ଜାଗି ଉଠିଲାଣି ।

ଜାନୁୟାରୀ - ୧୯୯୫



## ଘାସେନ୍ ଝୋଡ଼ିଆ

# 'ଜଙ୍ଗଲ ସୁରକ୍ଷା ଓ ମହିଳା ଶିକ୍ଷା'

ପିଲାଦିନୁ ପାଠ ପଢ଼ିବା, ବାହାର ରାଇଜର କଥା ଜାଣିବା ପାଇଁ ଘାସେନ୍ ମନରେ ଥିଲା ପ୍ରବଳ ଇଚ୍ଛା । ସେଇଥିପାଇଁ ଘାସେନ୍ ସବୁବେଳେ ମାଆ ଘେନାଇ ଓ ବାପା ଚାଚିରୀ ଜାନୀଙ୍କ ପାଖରେ ଅଳିକରେ ପାଠ ପଢ଼ିବା ପାଇଁ । ବାପା ଘାସେନ୍ କଥା ରଖି ପୁଅମାନେ ପଢୁଥିବା କିଣା ମାଷ୍ଟ୍ରଙ୍କ ପାଖରେ ଘାସେନ୍‌କୁ ମଧ୍ୟ ପଢ଼ାଇଲେ । ଚାରି ପୁଅରେ ଏକମାତ୍ର ଝିଅ । ତେଣୁ ବାପା ମଧ୍ୟ ଝିଅର ଅଝଟକୁ ମନାକରିପାରିଲେ ନାହିଁ । ହେଲେ ଘାସେନ୍‌ର ଇଚ୍ଛା ପୂରଣ ହୋଇ ପାରିଲା ନାହିଁ । କିଣା ମାଷ୍ଟ୍ରଙ୍କ ପାଠ ସରିଲା ପରେ ଘାସେନ୍ ଆଉ ପାଠ ପଢ଼ିପାରିଲା ନାହିଁ । କାରଣ ପାଖରେ ଆଉ ସ୍କୁଲ ନଥିଲା । ତେଣୁ ସେ ଝିଅ ହିସାବରେ ଆଦିବାସୀ ପରମ୍ପରାକୁ ଭାଙ୍ଗି ବାହାରକୁ ଯାଇ ପାଠ ପଢ଼ିପାରିଲା ନାହିଁ । ପରମ୍ପରା ଅନୁସାରେ ଘାସେନକୁ ନିଜ ଗାଆଁରେ ବିବାହ ପାଇଁ ସ୍ଥିର ହୋଇଗଲା । ଘାସେନ୍‌ଙ୍କ କର୍ମଚଞ୍ଚଳତା ଓ ବୁଦ୍ଧିମତ୍ତା ଦେଖି ଗାଁର କ୍ଷୀରୁ ଝୋଡ଼ିଆ ତାଙ୍କର ଦ୍ୱିତୀୟ ପୁତ୍ର ଗୋପୀନାଥ ପାଇଁ କନିଆଁ ମାଗିଲେ । ଚାଚିରୀ ଜାନୀ ଓ କ୍ଷୀରୁ ଝୋଡ଼ିଆ ଦୁଇଜଣ ସମସାମୟିକ ଏବଂ ବନ୍ଧୁ ହୋଇଥିବାରୁ ଝୋଲା ଟଙ୍କା ନେଇ ଘାସେନ୍‌କୁ ଗୋପୀନାଥଙ୍କ ସହ ବିବାହ ଦେଇଥିଲେ ।

ବୈବାହିକ ଜୀବନ ସୁରୁଖୁରୁରେ ଚାଲି ଆସିଥିଲେ ମଧ୍ୟ ତାଙ୍କର କୋଳକୁ ଆଜିପର୍ଯ୍ୟନ୍ତ ସନ୍ତାନଟିଏ ଆସି ପାରିନାହିଁ । ସେଥିପାଇଁ ସେମାନେ ଏତେ ଚିନ୍ତିତ ନୁହଁନ୍ତି । ଘାସେନ୍ ଗାଁର ସବୁ ପିଲାଙ୍କୁ ନିଜର କରି ନେଇଛନ୍ତି । ଘାସେନ୍‌ଙ୍କ ସ୍ୱାମୀ ଗୋପୀନାଥ ରାତି ସ୍କୁଲ ଚଳାନ୍ତି । ଯେଉଁଦିନ ଗୋପୀନାଥ ନଥାନ୍ତି ଘାସେନ୍ ଲଣ୍ଠନ ଲଗାଇ ପିଲାଙ୍କୁ ବସାଇ ଯେତିକି ଜାଣିଛନ୍ତି ପଢ଼ାନ୍ତି । ବାକି ସମୟରେ ଗୀତ ଗାଇବା ପାଇଁ ପିଲାମାନଙ୍କୁ କହନ୍ତି । ନଚେତ୍ ନିଜେ ମଧ୍ୟ ଗପ କୁହନ୍ତି । ତାଙ୍କର ଇଚ୍ଛା,

ପୁଅମାନେ ପଢ଼ନ୍ତୁ, ଝିଅମାନେ ମଧ୍ୟ ପାଠ ପଢ଼ନ୍ତୁ । ଯାହାଫଳରେ ଆମ ଆଦିବାସୀ ସମାଜରୁ ଦୁଃଖଦୁର୍ଦ୍ଦଶା ଦୂର ହେବ । କାରଣ ମାଆମାନେ ଆଦିବାସୀମାନଙ୍କର ଜୀବନ ବଞ୍ଚିବାରେ ବେଶୀ ସହଭାଗୀ । ଘରର ସମସ୍ତ କାମ ମାଅମାନେ ହିଁ କରିଥାଆନ୍ତି । ତା'ସହିତ ହାଟ ବଜାର କିଣାବିକା ଇତ୍ୟାଦି ମଧ୍ୟ କରିଥାଆନ୍ତି । ତେଣୁ ସବୁଠି ହିସାବ ପତ୍ର ଦରକାର ପଡ଼େ । ହିସାବ ପତ୍ର ଜାଣି ନଥିବାରୁ ମାଆମାନେ ଠକେଇରେ ପଡ଼ନ୍ତି । ସେଥିପାଇଁ ସେ ଝିଅ ପାଠକୁ ଅଧିକ ଗୁରୁତ୍ୱ ଦିଅନ୍ତି ।

ଘାସେନଙ୍କ ବାପା ଗାଁର ଗୌନ୍ତିଆ ଜାନୀ ମଧ୍ୟ । ତାଙ୍କ ପୂର୍ବ ପୁରୁଷ ଗାଁର ଜାନିମାଫି ଜମି ଚାଷ ବାସ କରୁଥିଲେ । ନିୟମ ଅନୁସାରେ ଯିଏ ଗାଁ ଦେବତାଙ୍କ ସେବା କରିବ, ସେ ସେହି ଜମିକୁ କମାଣି କରି ଖାଇବ । ଘାସେନଙ୍କ ବାପା ଜାନୀ ଥିବାରୁ ସେ ସେହି ଜମିକୁ ଚାଷ କରି ଖାଉଥିଲେ । କିନ୍ତୁ ଧୀରେ ଧୀରେ ସେ ଦେବତା ପୂଜା ଆଉ କଲେନି । କୌଣସି ଦାୟିତ୍ୱ ମଧ୍ୟ ନେଲେ ନାହିଁ । ୧୯୮୮ ମସିହାରେ ଗାଁ ଲୋକମାନେ ଏକାଠି ହୋଇ ଚାଚିରୀ ଜାନୀଙ୍କୁ କହିଥିଲେ ଯେ, ତୁମେ ଆଉ ଏ ଜମି ଚାଷ କର ନାହିଁ । କାରଣ ତୁମେତ ଦେବତା ସେବା କରୁନାହଁ । ସେ ଜମି ଫେରାଇ ଦିଅ । ଜମି କୁଟୁମ୍ବ ନାମରେ ରହିବ । ଜମିରୁ ଉପାର୍ଜିତ ଫସଲ ଦେବତା ସେବାରେ ଲାଗିବ । କିନ୍ତୁ ଗୌଣ୍ଟିଆ ଓରଫ ଜାନୀ ଏ କଥାରେ ରାଜି ହେଲେ ନାହିଁ । ଏହି କଥାରେ ଗାଁଲୋକ ଏକଜୁଟ୍ ହୋଇ ଚାଚିରୀଙ୍କ ନାମରେ ମକଦ୍ଦମା କରିଥିଲେ । ଘାସେନ୍ ଅନ୍ୟାୟକୁ ସମର୍ଥନ କରୁନଥିବାରୁ ନିଜ ବାପାଙ୍କର ଏ ଅନ୍ୟାୟକୁ ସେ ସମର୍ଥନ କରିପାରିଲେ ନାହିଁ । ଗାଁ ଲୋକଙ୍କ ପ୍ରତି ତାଙ୍କର ଦୃଢ଼ ସମର୍ଥନ ରହିଥିଲା । ଘାସେନ୍‌ଙ୍କ ସ୍ୱାମୀ ଏହି ମକଦ୍ଦମାରେ ଗାଁ ଲୋକଙ୍କ ତରଫରୁ ନେତୃତ୍ୱ ନେଉଥିଲେ । ଏହି ମକଦ୍ଦମାରେ ଗାଁ ଲୋକ ଜିତିଥିଲେ । ୭ ଏକର ଜାନିମାଫିଜମି ଗାଁ କୁଟୁମ୍ବ ନାମରେ ହୋଇଥିଲା ।

ଗାଁର ଉନ୍ନତି ପାଇଁ ଗାଁ ସ୍ତରରେ ଘାସେନ୍‌ଙ୍କ ନେତୃତ୍ୱ ଧୀରେ ଧୀରେ ଜଣା ପଡ଼ିଲା । ଗାଁ ଦାଣ୍ଡ ସଫାରଖିବା, କମ୍ପୋଷ୍ଟ ଖାତ ଖୋଳିବା, ଗାଁ ଡଂଗରରେ ଜଙ୍ଗଲ ରଖିବା, ଗଛ ଲଗାଇବା, ରାତି ସ୍କୁଲକୁ ପିଲାଙ୍କୁ ଛାଡ଼ିବା ପାଇଁ ମାଆମାନଙ୍କୁ ବୁଝାଇବା ଇତ୍ୟାଦି କାମ ସେ ସୁବିଧା ସୁଯୋଗ ଦେଖି କରନ୍ତି । ଯଦି ଗାଁର କେହି ରୋଗ ବେମାରରେ ପଡ଼ିଥାଆନ୍ତି, ସେ ଡାକ୍ତରଖାନାକୁ ନେବା ପାଇଁ ସାହାଯ୍ୟ କରନ୍ତି । ଗାଁକୁ ସ୍ୱାସ୍ଥ୍ୟକର୍ମୀ ଓ କର୍ମୀ ଭଉଣୀ ଆସିଲେ ସେ ତାଙ୍କୁ ନେଇ ପୀଡ଼ିତ

ଲୋକଙ୍କ ଘରେ ପହଞ୍ଚାନ୍ତି । ସ୍ୱାସ୍ଥ୍ୟ କର୍ମୀମାନଙ୍କୁ ମଧ୍ୟ ସେ କାର୍ଯ୍ୟ ସମ୍ପାଦନା ପାଇଁ ଯଥୋଚିତ ସାହାଯ୍ୟ କରନ୍ତି ।

ନିଜ ଗାଁର ମହିଳାମାନଙ୍କୁ ସଂଗଠିତ କରି ସେ ଗୋଟିଏ ମହିଳାମଣ୍ଡଳ ଗଠନ କରିଛନ୍ତି । ମହିଳାମଣ୍ଡଳ ସଭ୍ୟାମାନଙ୍କୁ ସଚେତନ କରାଇ ମଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଗାଁରେ ମଦ ବନ୍ଦ କରିଛନ୍ତି । ମହିଳାମାନଙ୍କୁ ଏକାଠି କରି ସେ ମାଆମାନଙ୍କର ଗୋଟିଏ ପାଣ୍ଠି ଗଠନ କରିଛନ୍ତି । ପାଣ୍ଠି ବଢ଼ାଇବା ଓ ପରିଚାଳନା ଦାୟିତ୍ୱ ମାଆମାନେ ନିଜେ ତୁଲାଇଛନ୍ତି । ପ୍ରତ୍ୟେକ କାମ ପାଇଁ ଘାସେନ୍ ଆଗଭର ହୋଇ ବାହାରୁଛନ୍ତି । ଏହି ନେତୃତ୍ୱ ଖାଲି ମହିଳାମାନଙ୍କ ମଧ୍ୟରେ ସୀମିତ ହୋଇ ରହିଲାନି । ଧୀରେ ଧୀରେ ଗାଁର ପୁରୁଷ ଲୋକମାନଙ୍କ ଉପରେ ମଧ୍ୟ ପ୍ରଭାବ ପକାଇଲା । ଗତ ପଞ୍ଚାୟତ ନିର୍ବାଚନରେ ଘାସେନ୍‌ଙ୍କୁ ଗାଁ ଲୋକମାନେ ୱାର୍ଡ଼ମେମ୍ବର ହିସାବରେ ବାଛିଲେ ।

କୋଡ଼ିପାରି ଗ୍ରାମ ପଞ୍ଚାୟତରେ ୧୨ଟି ୱାର୍ଡ଼ । ଘାସେନ୍ ନିଜ ଗ୍ରାମ ଗାଇମୁଣ୍ଡ ତୁଣ୍ଡାରୁ ନିର୍ବାଚିତ ହୋଇଛନ୍ତି । ସେ କହନ୍ତି, 'ଗାଁ ସ୍ତରରେ ରାଜନୀତି କ'ଣ ମହିଳାମାନେ ଭଲ ଭାବରେ ଜାଣି ନାହାନ୍ତି । ତଥାପି ମୁଁ ଯେତେବେଳେ ଏ ଭିତରେ ପଶିଲି ମୋର କାମ କ'ଣ ଓ ତାହା କିଭଳି ଭାବେ ତୁଲାଇବି ସେଥିପାଇଁ ଚେଷ୍ଟା କଲି । ତାଙ୍କର ଦୁଃଖ ୧୨ଟି ୱାର୍ଡ଼ରେ ମାତ୍ର ୩ଜଣ ମହିଳା ସଭ୍ୟା । ବାକି ସମସ୍ତେ ପୁରୁଷ । ଯେଉଁ କଥା କହିଲେ ପୁରୁଷ ଲୋକମାନେ ଅଧିକା ଥିବାରୁ, ଆମ କଥା କାଟ ଖାଇଯାଉଛି । ଆମ କଥା ସେମାନେ ଗୁରୁତ୍ୱ ଦେଉ ନାହାନ୍ତି । ସେ ସରପଞ୍ଚଙ୍କ ବିଭିନ୍ନ ଦୁର୍ନୀତିକୁ ମୋଟେ ସହ୍ୟ କରିପାରନ୍ତି ନାହିଁ । ସରପଞ୍ଚଙ୍କୁ ପଞ୍ଚାୟତ ସଭାରେ ମୁହାମୁହିଁ ପ୍ରତିବାଦ କରନ୍ତି । ପୁରୁଷ ୱାର୍ଡ଼ମେମ୍ବରଙ୍କୁ ଭୋଜି ଓ ମଦ ଦେଇ ସରପଞ୍ଚ ତାଙ୍କ ମୁହଁ ବନ୍ଦ କରି ଦେଇଥିବାରୁ ସେମାନେ ସରପଞ୍ଚଙ୍କ କଥାକୁ ଅନ୍ଧ ଭାବରେ ସମର୍ଥନ କରନ୍ତି ।

ତଥାପି ଘାସେନ୍ ତାଙ୍କ ମନବଳ ଊଣା ନକରି ଗାଁର ଉନ୍ନତି ପାଇଁ ବିଭିନ୍ନ କାମ ଯଥା ରାସ୍ତାଘାଟ, ପିଇବା ପାଣିର ସୁବିଧା ପାଇଁ ପଞ୍ଚାୟତ ସଭାରେ ସରପଞ୍ଚଙ୍କ ସହ ଲଢ଼େଇ କରନ୍ତି । ତାଙ୍କର ଦାବି ଯୋଗୁଁ କେତେକ ଗାଁରେ କାମ ଠିକାଦାରଙ୍କୁ ଦିଆନଯାଇ ମହିଳାମଣ୍ଡଳକୁ ଦିଆଯାଇଛି । ପୁରୁଷମାନେ ସରପଞ୍ଚଙ୍କୁ କିଛି କୁହନ୍ତି ନାହିଁ ବୋଲି ପଚାରିବାରୁ ସେ କୁହନ୍ତି, 'ଆମ ଅଞ୍ଚଳର ପୁରୁଷମାନେ ଏତେ ପରିମାଣରେ ନିଶାସକ୍ତ ଯେ – ସେମାନେ ଗୋଟିଏ ବୋତଲ ମଦ ପାଇଗଲେ, ତାଙ୍କୁ ଯେମିତି ସବୁ ମିଳିଯାଏ । ସେମାନେ ନିଜର ଉନ୍ନତି ଓ ସମୂହ ଉନ୍ନତିକୁ ପଛରେ

ପକାଇ ଦିଅନ୍ତି । କିନ୍ତୁ ମହିଳାମାନେ ପାଠ ନପଢ଼ି ଥିଲେ ମଧ୍ୟ ଏତେ ଶୀଘ୍ର ଦୁର୍ନୀତିଗ୍ରସ୍ତ ହୁଅନ୍ତି ନାହିଁ । ମାଆମାନେ ସମୂହ ଉନ୍ନତିକୁ ବେଶୀ ଗୁରୁତ୍ୱ ଦିଅନ୍ତି । ପଞ୍ଚାୟତ ସ୍ତରରୁ ନେଇଥିବା କାମକୁ ପୁରୁଷମାନଙ୍କ ସହାୟତାରେ ବିଭାଗୀୟ କର୍ମୀଙ୍କ ସହ ସଂଘର୍ଷ କରି ଧୈର୍ଯ୍ୟର ସହ ସମ୍ପୂର୍ଣ୍ଣ କରିଥାଆନ୍ତି ।

ଘାସେନ୍‌ଙ୍କ ମତରେ ମହିଳାମାନେ ରାଜନୀତିରେ ଅଧିକରୁ ଅଧିକ ଭାଗ ନେଇପାରିଲେ ନିଜର ଅଧିକାର ବିଷୟରେ ସଚେତନ ହୁଅନ୍ତେ । ନିଜ ପାଇଁ ଓ ସମାଜର ଉନ୍ନତି ମୂଳକ କାମରେ ସହଭାଗୀ ହୋଇପାରନ୍ତେ । ରାଜନୀତି ଏତେ ଦୁର୍ନୀତିଗ୍ରସ୍ତ ହୁଅନ୍ତା ନାହିଁ ।

ବର୍ତ୍ତମାନ ସେ ଗୋଟିଏ ପଞ୍ଚାୟତରେ ନୁହେଁ ଆଖପାଖ ପଞ୍ଚାୟତର ଗାଁମାନଙ୍କରେ ଉନ୍ନତିମୂଳକ କାମ କରିବାକୁ ଆଗ୍ରହୀ ଅଛନ୍ତି ଓ କାମ କରୁଛନ୍ତି ମଧ୍ୟ । ସେ କହନ୍ତି, 'ଆଗରୁ ମୋର ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟକରିବା ପାଇଁ ଇଛାଥିଲେ ମଧ୍ୟ, ମୁଁ ସୁଯୋଗ ପାଉନଥିଲି । ଏବେ ମୋତେ ସୁଯୋଗ ମିଳିଛି । ବର୍ତ୍ତମାନ ମୋର ଆତ୍ମବିଶ୍ୱାସ ବଢ଼ିଛି ଯେ - କିଛି ଲୋକ ଏକାଠି ହେଲେ ଅନେକ କଷ୍ଟ କାମ ମଧ୍ୟ ସହଜରେ କରିହେବ । ମୋର ଦୁଇଟି ମୁଖ୍ୟ ଇଛା ହେଲା ଜଙ୍ଗଲ ସୁରକ୍ଷା ଓ ମହିଳା ଶିକ୍ଷା ।

ଜୁଲାଇ - ୧୯୯୫



# ବିକାଶ ପାଇଁ

ଇନ୍ଦ୍ରାବତୀ ବହୁମୁଖୀ ପ୍ରକଳ୍ପ ନିମନ୍ତେ ଜମିର ଆବଶ୍ୟକତା ପଡିବାରୁ କଳାହାଣ୍ଡି ଓ ନବରଙ୍ଗପୁର ଜିଲ୍ଲାର ଥୁଆମୂଳ-ରାମପୁର ବ୍ଲକ ଓ ତେନ୍ତୁଳିଖୁଣ୍ଟି ବ୍ଲକ୍‌ର ପୂରାପୁରି ୬୫ଟି ଗାଁ ଆଂଶିକ ଭାବେ ୩୧ଟି ଗାଁର ମୋଟ ୫୫୫୦ଟି ପରିବାର ବାସହରା ହୋଇଛନ୍ତି । ଏହି ବାସଚ୍ୟୁତ କରାଇବା କାର୍ଯ୍ୟ ଶେଷ ହୋଇଅଛି । ମାତ୍ର ବାସହରା ହୋଇଥିବା ପରିବାର, କଳାହାଣ୍ଡି ଓ ପୁରୁଣା କୋରାପୁଟ ଜିଲ୍ଲାର ବିଭିନ୍ନ ସ୍ଥାନରେ ଘୋର ଅସୁବିଧା ମଧ୍ୟରେ ଜୀବନ ବିତାଉଛନ୍ତି । ବାସହରା ହୋଇଥିବା ଆଦିବାସୀ ଲୋକମାନଙ୍କୁ ଠିକ୍ ଭାବରେ ଥଇଥାନ କରିବା ମଧ୍ୟ ଏପର୍ଯ୍ୟନ୍ତ ସମ୍ଭବ ହୋଇପାରି ନାହିଁ ।

ବୁଡି ଅଞ୍ଚଳରୁ ଲୋକ ଆସି ରହିଥିବା ଗୋଟିଏ ଗାଁ ହେଲା, ଢଙ୍ଗାଧରଣ । ଏହି ଗାଁରେ ଦୁଇଟି ସାହିରେ ଆଦିବସୀ ଓ ହରିଜନ ମିଶି ପ୍ରାୟ ୩୪ଘର ବାସ କରୁଛନ୍ତି । ସେମାନେ ସମସ୍ତେ ପାତ୍ରଧରା, ଦେଓପାଲି, କୁରୁମୂଳି ଏବଂ ନାଗୀ ଗାଁରୁ ଉଠି ଆସି ଏଠାରେ ବାସ କରୁଛନ୍ତି । ପାତ୍ରଧରା ଗାଁରୁ ଉଠି ଆସିଥିବା ଲୋକେ କହନ୍ତି, 'ବୁଡି ଅଞ୍ଚଳ ହୋଇ ଯିବାରୁ ଆମକୁ ସରକାର ଉଠିଯିବା ପାଇଁ ତିନି ଚାରି ଥର କହି ଆସିଲେ । ତା'ପରେ କହିଲେ, ତୁମ ପସନ୍ଦର ଜାଗା କେଉଁଠି ଜଣାଇଲେ, ଆମେ ତୁମକୁ ସେହିଠାରେ ଛାଡିଦେବୁ । ଆମ ଗାଁରେ ବେଶୀ ଲୋକ ରହୁଥିଲୁ । ସମସ୍ତେ ଏକାଠି ରହିଲା ଭଳିଆ ଜାଗା ଆମ ପସନ୍ଦକୁ ଆସିଲା ନାହିଁ । ତେଣୁ ଯିଏ ଯୁଆଡେ ପାଇଲେ ଦୂର ଜାଗାକୁ ଉଠିଗଲେ । ଆମେ କେତେ ଘର ଏହିଠାରେ ରହିଗଲୁ । ଆମ ଗାଁରେ ଥିବା ଭାଇ ବନ୍ଧୁଙ୍କୁ ମଧ୍ୟ ଦେଖିବାକୁ ପାଉନୁ ।" ଠିକ୍ ଏହି ପରି କଥା ନାଗୀ ଓ କୁରୁମୂଳି ଗାଁରୁ ଉଠି ଆସିଥିବା ଲୋକମାନେ ମଧ୍ୟ କହନ୍ତି । ସେମାନେ ଦୁଃଖ କରି କହନ୍ତି, 'ଏଠାରେ ଆମର ଚିହ୍ନା ଜଣା ଥିବାରୁ ଆମେ ପଳାଇ ଆସିଲୁ । ଆମ ଗାଁର ଅନ୍ୟ ଲୋକମାନେ କିଏ କେଉଁ ଆଡେ ଅଛନ୍ତି, ଆମେ ଜାଣି ପାରୁନାହୁଁ ।" ଢ଼ଙ୍ଗାଧରଣ ଗାଁକୁ ଲୋକମାନେ ବାଛିଥିଲେ, ସେଠାରେ କାଠ ପତ୍ର ସୁବିଧା ଥିଲା । ପ୍ରଥମେ ଯେତେବେଳେ

ସେମାନେ ଉଠି ଆସିଲେ, ଜାଗା ସଫା କରି ଘର କରିବାକୁ ବହୁତ କଷ୍ଟ କରିବାକୁ ପଡିଥିଲା । ସେମାନେ କହନ୍ତି, ' ଜଙ୍ଗଲ ଡଙ୍ଗର ଥିବାରୁ ସିନା ଏଠାକୁ ପଳାଇ ଆସିଲୁ ! ମାତ୍ର ଏବେ ସବୁ ଆଡେ କାଠ କଟା ହୋଇ ପଦା ହୋଇ ଗଲାଣି । ଜାଳିବାକୁ ବି ଆମ ପାଖରେ କାଠ ପତର ନାହିଁ । ଦିନେ ଦିନେ କଷ୍ଟ କରି ଦଶ ବାର ମାଇଲ ଦୂରରୁ କାଠ ଆଣିବାକୁ ପଡୁଛି । ଜମି ମଧ ଆମକୁ ପାଖରେ ମିଳିଲା ନାହିଁ । ଆମେ ବହୁତ ଦୂରରେ ଜମି କିଣିଛୁ । ଏହାଦ୍ୱାରା ଚାଷ କରିବାକୁ ମଧ୍ୟ ବହୁତ ଅସୁବିଧା ହେଉଛି । କେତେଜଣ ବାଧ୍ୟ ହୋଇ ଜମିକୁ ଭାଗଚାଷରେ ଲଗାଇଛନ୍ତି । ଫଳରେ ଖାଇବାକୁ ବଡ ହଇରାଣ ହେବାକୁ ପଡୁଛି । ଗାଁର ଅଭାବ ହେଲେ ସାହୁକାର ପାଖରୁ ଆଣି ଚଳୁଥିଲୁ । ମାତ୍ର ଏଠାରେ ସମସ୍ତେ ଗୋଟିଏ ପ୍ରକାର ଲୋକ ହୋଇଥିବାରୁ କିଏ କାହାକୁ ଋଣ ଦେଇ ପାରୁନାହାନ୍ତି ।'

ଯେଉଁ ମାନଙ୍କର ବେଶୀ ଜମିଥିଲା, ସେମାନେ କହନ୍ତି, 'ଟଙ୍କା ପାଇବାଟା ପାଇଲୁ ଯେ, ମାତ୍ର ଦଶ ଏକର ଜମି ଗଲା ବେଳକୁ ୫ଏକର ଜମି ମଧ୍ୟ କିଣି ପାରିଲୁ ନାହିଁ । କାରଣ ଜମି ଦର ଅଧିକ ହେଲାଣି । ତେଣୁ କିପରି ଅସୁବିଧା ହେଉଥିବ ଅନୁମାନ କରୁଥିବ । ଆମେ କିସ୍ କହିବୁ ?' ସୁଖିବାସୀମାନେ ମଧ୍ୟ କହନ୍ତି ଯେ, 'ଆଗରୁ ଆମେ ଭଲରେ ଥିଲୁ । ଜମି ନ ଥିଲେ ମଧ୍ୟ ବେଶୀ ଜମି ଥିବା ଲୋକର ପାଖେ ସବୁବେଳେ କାମ ପାଇଟି କରି ସୁଖରେ ଚଳି ଯାଉଥିଲୁ । ଏବେ ଜମି କିଣି ମିଶା, ଅଧା ଦିନ ଉପବାସ ରହିବାକୁ ପଡୁଛି । କାରଣ ଫସଲ ଭଲ ହେଉନି, କାଠପତ୍ର ମଧ୍ୟ ସରିଗଲା । ଜଙ୍ଗଲ ସରିଯିବାରୁ ଜନ୍ଦା ଚେରେଙ୍ଗା ମିଳୁନି । ସେଥିଲାଗି ଭୋକେ ରହିବାକୁ ପଡୁଛି । ଟଙ୍କା ତିନି କିସ୍ତିରେ ମିଳିଲା । ମାତ୍ର ଆମେ ତାକୁ ଠିକ୍ ରଖାଥୁଆ କରିପାରିଲୁ ନାହିଁ । କୁଆଡେ ସବୁ ଟଙ୍କା ଗଲା, ଆମେ ଜାଣି ମିଶା ପାରିଲୁ ନାହିଁ ! ଚେତା ପଶିଲା ବେଳକୁ ଆଉ କିଛି ନାହିଁ । ସେମାନେ କହନ୍ତି, କେବଳ ଆମ ଗାଁ ନୁହେଁ, ଆମ ପରି ଉଠିଥିବା ସବୁ ଗାଁର ଅବସ୍ଥା ଆମପରି । ଯେଉଁମାନେ ଟିକେ ଚାଲାକ୍ ଚତୁର ଥିଲେ, ସେମାନେ କେତେଜଣଙ୍କୁ ଛାଡିଦେଲେ, ବାକି ସମସ୍ତେ ବହୁତ ଅସୁବିଧାରେ ଅଛନ୍ତି ।" ପଚାରିବାରୁ ଜଣାପଡିଲା ଯେ, ଏପର୍ଯ୍ୟନ୍ତ କେତେ ଲୋକଙ୍କୁ ଟଙ୍କା ମଧ୍ୟ ମିଳିନାହିଁ । ଟଙ୍କା ପାଇଁ ଦୌଡି ଦୌଡି କେତେ ଲୋକ ବହୁତ ମଧ୍ୟ ଟଙ୍କା ଖର୍ଚ୍ଚ କରିସାରିଲେଣି । ଉଠି ଯାଇଥିବାର ୫ବର୍ଷ ବିତି ଯାଇଥିଲେ ମଧ୍ୟ ସରକାର ସେମାନଙ୍କର ପ୍ରତି ସଦୟ ହୋଇ ନାହାନ୍ତି ।

ଗାଁର ମହିଳାମାନଙ୍କୁ ପଚାରିବାରୁ ସେମାନେ କହନ୍ତି, 'ବେଶୀ ଅସୁବିଧା ହେଉଛି । ଆମମାନଙ୍କର ଘର ଗଲା, ଜମିଗଲା, ଟଙ୍କା ମିଳିଲା ଯେ, ଆମେ ଦେଖିବାକୁ ମିଶା

ପାଇଲୁ ନାହିଁ । ଆଦିବାସୀଙ୍କ ପାଖେ ଏକାବେଳେ ଏତେ ଟଙ୍କା ହେଲେ ସେମାନେ ସବୁ ମଦ ଖାଇକରି ଉଡାଇଲେ । ପଚାରିଲେ ଆମକୁ ଗାଳି ଗୁଲଜ କଲେ । ତେଣୁ ଆମ କର୍ମକୁ ଆଦରି ପଡିଛୁ । ଦିନସାରା କମାଣି କରି ମଧ୍ୟ ପିଲା ଛୁଆଙ୍କ ପେଟ ପୂରାଇ ପାରୁନୁ । ଜାଳିବାପାଇଁ କାଠ ପତର ମଧ୍ୟ ମିଳୁନି । ଜଙ୍ଗଲରୁ ପାଉଥିବା ଜିନିଷ କଥା କିସ୍ କହିବୁ ?

ପହିଲେ ପହିଲେ ବନ୍ଧକାମ ବେଳେ କୁଲି କାମ ମିଳୁଥିଲା । ମଜୁରି ବାବଦରେ ଯେଉଁ ୨୫ଟଙ୍କା ମିଳୁଥିଲା, ଯାହା ଯେମିତି ଚଳି ଯାଉଥିଲୁ । କିଛି ଜଣାପଡୁ ନଥିଲା । ମାତ୍ର ବର୍ତ୍ତମାନ ବେଶୀ ହଇରାଣ ହେଉଛୁ । ନା ପୁରୁଷ ଲୋକଙ୍କ ପାଖରେ ମଦ ଖାଇବାକୁ ପଇସା ଅଛି, ନା ଚାଷ କରିବାକୁ ଜମି ଅଛି, ନା କନ୍ଦା, ଚେର ମୂଳ ଖାଇକି ବଞ୍ଚିଯିବାକୁ ଜଙ୍ଗଲ ଅଛି ? ଏଠାରେ କିଛି ସୁବିଧା ନାହିଁ । ଦେହ ମୁଣ୍ଡ ଖରାପ ହେଲେ ଆମକୁ ଔଷଧ ପତ୍ର ମଧ୍ୟ ମିଳୁନି । ପିଲାମାନେ ଆମର କିଛି ସୁବିଧା ପାଉ ନାହାନ୍ତି । ଅଙ୍ଗନବାଡି ଖାଦ୍ୟ ମିଳୁନି । ସେ ଗାଁରେ ଥିଲାବେଳେ ଯାହା ଟିକେ ସୁବିଧା ମିଳୁଥିଲା, ଏଠାକୁ ଆସିବା ପରେ କିଛି ନାହିଁ । 'ଅଗ୍ରଗାମୀ' ସଂଗଠନ ଆମ ଗାଁକୁ ଆସିବାରୁ ଗାଁ ଲୋକଙ୍କୁ ବୁଝାଇବାରୁ ଗାଁରେ କୁଟୁମ୍ବ ପାଣ୍ଠି କରିପାରିଛୁ । ଫଳରେ ବର୍ଷାଦିନେ ଖାଦି ପାଇଁ ହଇରାଣ ହେବାକୁ ପଡୁନି । ରୋଗ ବେମାର କମ୍ ହେଉଛି । ରାତିରେ ସ୍କୁଲ ଚାଲୁଥିବାରୁ ଆମର ପିଲାମାନେ ମିଶା ଦି'ଅକ୍ଷର ପଢ଼ି ପାରୁଛନ୍ତି । ଆମେ ଗାଁ ଲୋକେ ମଧ୍ୟ କେତେ କଥା ଜାଣି ପାରୁଛୁ ।

ସରକାର ଯଦି ଏଠାରୁ ପୁଣି ଗାଁ ଉଠାଇ ଦିଏ, କଣ କରିବ ବୋଲି ପଚାରିବାରୁ ଗାଁର ମହିଳାମାନେ କହନ୍ତି, 'ଆଉ ଯେତେ କହିଲେ ମିଶା ଆମେ ଆଉ ଉଠିବୁ ନାହିଁ । ସମସ୍ତେ ମିଶି ଦାବି କରିବୁ । ଆଗରୁ ଆମେ କ'ଣ ଜାଣିଥିଲୁ, ସରକାର ଆମର ତଣ୍ଟି ଚିପି ଏମିତି ରକତ ଶୋଷିବ ବୋଲି ! ଏବେ କିନ୍ତୁ ଆମେ ଛାଡିବୁ ନାହିଁ । ଏଠାରୁ ଗଲେ, ଆମେ ରହିବୁ କେଉଁଠି ? କ'ଣ ଖାଇବୁ ? ସହର ବଜାର ଜାଗାରେ କ'ଣ ଆମକୁ ଡଙ୍ଗର ମିଳିବ ? ଆମକୁ ମାଣ୍ଡିଆ, କାନ୍ଦୁଲ, କଟିଂ କେଉଁଠୁ ମିଳିବ ? ଆମର ଟଙ୍କା ଦରକାର ନାହିଁ । ଆମେ ସମସ୍ତେ ଏକାଠି ହେଲେ ସରକାର ଆମର କିଛି ବି ଅସୁବିଧା କରିପାରିବ ନାହିଁ ।

ନଭେମ୍ବର - ୧୯୯୫



# କାହାର ପୁଷମାସ-ମୂଳିଆର ସର୍ବନାଶ

ମୟୂରଭଂଜ ଜିଲ୍ଲାର ଠାକୁରମୁଣ୍ଡା ଏକ ଆଦିବାସୀ ବହୁଳ ବ୍ଲକ । ଏହି ବ୍ଲକର ସାତକୋଶିଆ ଏକ ଗ୍ରାମପଞ୍ଚାୟତ । ଏହି ପଞ୍ଚାୟତରେ ୨୮ଟି ଗାଁ ରହିଛି । ସେଥିରୁ ଏକ ସାନ ଗାଁ ମଝିସାହି । ଏହି ଗାଁରେ ସମୁଦାୟ ୧୨ଟି ପରିବାର ମଧ୍ୟରୁ ୧୧ଟି ଆଦିବାସୀ ହୋ ସଂପ୍ରଦାୟର ଓ ଗୋଟିଏ ଲହରା ପରିବାର । ଗାଁରେ ଥିବା ଜମିରେ ଯାହା ଫସଲ ହୁଏ, ଅତି କଷ୍ଟରେ ଗ୍ରାମବାସୀ ଛଅମାସ ଚଳିଯାନ୍ତି । ବାକି ଛଅମାସ ଜଙ୍ଗଲରୁ ତଥା କାମଧନ୍ଦା କରି ଚଳିଥାନ୍ତି । ଗତ ବର୍ଷ ଚୈତ୍ର ବୈଶାଖ ମାସ ଏହି ଗାଁକୁ ମହୁଲଡିହା ଗାଁର ଜଣେ ଗଉଡ଼ ଲୋକ ଆସେ । ଠିକ୍ ଏହି ସମୟରେ ଗାଁରେ ଚାଲୁଥିବା ରାତିସ୍କୁଲ ଗୁରୁଭାଇ ମଧ୍ୟ ନଥାନ୍ତି । ତେଣୁ ସେ ଗାଁର ସବୁ ପୁରୁଷ ଓ ମହିଳାଙ୍କୁ ଡାକି ଏକ ମିଟିଂ କଲା । ଏବଂ ଗୋଟିଏ ସାଧା କାଗଜରେ ସମସ୍ତଙ୍କ ସନ୍ତକ (ଦସ୍ତଖତ) ନେଲାବେଳେ କହିଲା- ତୁମ ଗାଁ ପୋଖରୀର ପଙ୍କ ବାହାର କରିବା ପାଇଁ ବ୍ଲକକୁ ଟଙ୍କା ଆସିଛି । ମୁଁ ଆଣି କାମ କରାଇବି । ମିଟିଂ ବେଳେ ଲୋକେ କେତେ ଟଙ୍କା ମଜୁରି ମିଳିବ ଓ ପଙ୍କ ଉଦ୍ଧାର କାମ ପାଇଁ କେତେ ଟଙ୍କା ଆସିଛି ପଚାରି ଥିଲେ । ଲୋକଙ୍କୁ ଠିକ୍ ଉତ୍ତର ନଦେଇ ସେ କାମ କର ବୁଝିବା ବୋଲି କହିଚାଲି ଯାଇଥିଲେ ।

ଏହାର କିଛିଦିନ ପରେ ଏହି ଗାଁ ଲୋକଙ୍କୁ ନଜଣାଇ ଆଉ ଗୋଟିଏ ଗାଁରୁ ଲୋକଙ୍କୁ ଆଣି ପୂର୍ବରୁ ଥିବା ପୋଖରୀରୁ ପଙ୍କ ଉଦ୍ଧାର କାମ ଆରମ୍ଭ କରିଦେଲା । ଏବଂ ମଜୁରି ବାବଦକୁ ମହିଳାମାନଙ୍କୁ ୧୨ ଟଙ୍କା ଏବଂ ପୁରୁଷମାନଙ୍କୁ ୧୫ ଟଙ୍କା ହିସାବରେ ଜବାବ ଛିଣ୍ଡାଇଥାଏ । ଏଠାରେ ପ୍ରକାଶ ଥାଉକି ମଝିସାହିର ଲୋକଙ୍କୁ କାମକୁ ନଡାକିବାର କାରଣ ହେଲା ଏମାନେ ଆଗରୁ ଜାଣିଦେଇଥିଲେ ସରକାରୀ ନିୟମ ଅନୁଯାୟୀ ଦୈନିକ କୁଲି ମଜୁରି ୨୫ ଟଙ୍କା ଏବଂ ସେମାନେ ୨୫ ଟଙ୍କା ଦାବି କରିବେ ।

ସେ ଯାହା ହେଉ ପ୍ରଥମ ଦିନ କାମ ହେବା ସମୟରେ ମଝିସାହି ଗାଁର ରାତ୍ରୀ ସ୍କୁଲର ଶିକ୍ଷକ ମଦନ ବିନ୍ଧାଣି କାମହେଉଥିବା ଜାଗାରେ ପହଞ୍ଚିଯାଇଥିଲେ ଏବଂ କାମ କରୁଥିବା

ଲୋକମାନଙ୍କଠାରୁ ସବୁ କଥା ପଚାରି ବୁଝିଲେ । ସମସ୍ତ କଥା ଶୁଣିସାରିଲା ପରେ ସେ କୁଲିମଜୁରି ବିଷୟରେ ସମସ୍ତଙ୍କୁ ବୁଝାଇଥିଲେ । ୨୫ଟଙ୍କା ମଜୁରି ନଦେଲେ କାମ ବନ୍ଦକରିଦେବାକୁ ମଧ୍ୟ କହିଥିଲେ । କାମ କରୁଥିବା ଲୋକମାନେ ଭାବିଲେ ଯେ ଏଇଟା ତାଙ୍କ ଗାଁ କାମ ସେମାନେ କରିବେ ବୋଲି ଆମକୁ ଏମିତି କହୁଛନ୍ତି । ତେଣୁ କିଛି ନଶୁଣି କାମ କରିବାରେ ଲାଗିଲେ । ଗୁରୁ ଭାଇ ଜଣକ ନିରୁପାୟ ହୋଇ ନିଜ ଗାଁକୁ ଯାଇ ସୁକୁରୁମୁନୀ ଲେଆଙ୍ଗି ଓ ଶାନ୍ତିଲତା ଲେଆଙ୍ଗି ଦୁଇଜଣ ମାଆଙ୍କୁ ସଙ୍ଗରେ ଧରି ଆସିଲା । କାରଣ ଏହି ମାଆ ଦୁଇଜଣ ତାଙ୍କ ଗାଁରେ ଆଗୁଆ ହୋଇ ସମସ୍ତ କାମ କରାଇଥାନ୍ତି । ସେହି ମାଆ ଦୁଇ ଜଣ ଆସି ବୁଝାଇବାରୁ କାମକରୁଥିବା ଲୋକମାନେ କାମ ଛାଡ଼ି ଚାଲିଯାଇଥିଲେ । ତାପରେ ଏହି ମାଆ ଦୁଇଜଣ ରାତିରେ ନିଜ ଗାଁରେ ସମସ୍ତଙ୍କୁ ବସାଇଲେ ଏକ ମିଟିଂ କଲେ ଏବଂ କାମ ସେମାନେ ନିଜେ କରିବାର ନିଷ୍ପତ୍ତି ନେଲେ ।

ପର ଦିନ ଠିକାଦାର ଆସି ଦେଖେତ କାମ ବନ୍ଦ ରହିଛି । କାରଣ କ'ଣ ଯାଇ ପଚାରିବାରୁ ଲୋକମାନେ କହିଲେ ଆମକୁ ୨୫ ଟଙ୍କା ମଜୁରି ନଦେଲେ ଆମେ କାମ କରିବୁ ନାହିଁ । ଠିକାଦାର ଭାବିଲା ଏସବୁ ମଝିସାହି ଲୋକଙ୍କ କାମ । ସେଠାକୁ ଆସିଲେ ସେମାନେ ଆକ୍ରମଣ କରିବେ । ସେ କିଛି କଥା କହି ପାରିବ ନାହିଁ ଭାବି ସେହି ଗାଁର ଜଣେ ଟୋକାକୁ ହାତରେ ରଖିବାକୁ ଚେଷ୍ଟାକଲା । ସେ ପିଲାର ନାମ ହେଉଛି ସୁନାରାମ ଖୁଣ୍ଟିଆ । ତାକୁ କହିଲା ତୁ ଯାଆ ଗାଁ ଲୋକମାନଙ୍କୁ ବୁଝାଇ କାମକୁ ଆଣିବୁ ମୁଁ ତୋତେ ୫୦ ଟଙ୍କା ଦେବି । ମାତ୍ର ସୁନାରାମ ତାକୁ କହିଲା, "ତୁ କଣ ମତେ ୫୦ ଟଙ୍କା ଦେଇ କିଣି ନେବୁ ବୋଲି ଭାବୁଛୁ । ମୁଁ ଜଣେ ଲୋକ ୫୦ ଟଙ୍କା ନେଇ ୫୦ ଜଣଲୋକଙ୍କ ଦାନା ମାରିବି କାହିଁକି ?" ଏହା କହି ସେ ଟଙ୍କା ନନେଇ ଫେରି ଆସି ଗାଁରେ ସବୁ କଥା କହିଲା । ପୁଣି ସେହି ଠିକାଦାର ଅନ୍ୟ ଜଣେ ମଦୁଆ ଟୋକାକୁ ଫୁସୁଲା ଫୁସିଲି କରି କାମର ଛାଟିଆ ଭାବରେ କାମକରିବାର ଲୋଭ ଦେଖାଇ କହିଲା, "ତତେ ଦିନକୁ ୩୦ ଟଙ୍କା ଦେବି ଏବଂ ମନ ଜାଣି କଥା ବୁଝିବି (ମଦ ପିଇବାକୁ ଦେବି) ମାତ୍ର ୧୨ ଟଙ୍କା ୧୫ ଟଙ୍କାରେ କାମ କରିବା ଦରକାର । ସେ ମଦୁଆ ଯାଇ ଅନ୍ୟ ଗାଁରୁ ଲୋକ ଆଣି କାମ କରାଇଲା । ଏକଥା ଦେଖି ମଝିସାହିର ଲୋକମାନେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । କାମ ଜାଗାକୁ ଆସି ପଚାରିଲେ କିଏ କାମ କରିବାକୁ ଡାକିଛି ଓ କେତେ ମଜୁରି ଦେବ ବୋଲି କହିଛି । କାମ କରୁଥିବା ଲୋକମାନେ ୧୨ ଓ ୧୫ ଟଙ୍କା ମଜୁରି ପାଇବେ ଏବଂ ମଝିସାହିରୁ କାମ କରୁଥିବା ଛାଟିଆର ନାମ କହିଲେ । ମାଆମାନେ ସରକାରୀ କୁଲି ମଜୁରି ଓ ତାଙ୍କ ଗାଁରେ ନିଆଯାଇଥିବା ଜିନିଷ ବିଷୟରେ କାମ କରୁଥିବା ଲୋକମାନଙ୍କୁ କହିଲେ ଏବଂ କାମ ବନ୍ଦ କରିବାକୁ କହିଲେ । ଯଦି ତୁମେମାନେ କାମ

ବନ୍ଦ ନକର ତାହାହେଲେ କଥା ବହୁତ ଖରାପ ହେବ ବୋଲି ମଧ୍ୟ କହିଲେ । ଘଟଣାଟି କାମ କରୁଥିବା ଲୋକମାନେ ବୁଝିଗଲେ ଏବଂ କାମ ବନ୍ଦ କଲେ ।

ସଂଧ୍ୟାବେଳେ ସମସ୍ତେ ଗାଁରେ ବସି ମିଟିଂ କଲେ ଓ ସେହି ଛାଟିଆକୁ ଡାକିଲେ । ନିଜର ମନୋମୁଖୀ କାମ ପାଇଁ ମିଟିଂରେ ତାକୁ ବହୁତ ଗାଳି କଲେ ଓ ଗାଁରୁ ବାହାର କରିଦେବେ ବୋଲି ଧମକ ଦେଲେ । ମିଟିଂ ସରିଲା ପରେ ଘରକୁ ଆସି ତାର ସ୍ତ୍ରୀ ମଧ୍ୟ ତାକୁ ବହୁତ ବୁଝାଇ କହିଲା, "ଏସବୁ କାମ ଗାଁର ସବୁ ଲୋକଙ୍କର ଭଲ ପାଇଁ କରାଯାଉଛି । ତୁମେ ଏଥିରେ ଅମତ ହେଉଛ କାହିଁକି ? ଏହି ଛାଟିଆ କାମ ଛାଡ଼ି ଗାଁ ଲୋକମାନଙ୍କ ସଂଗେ ମିଶି କାମ କଲେ ସମସ୍ତଙ୍କର ଉନ୍ନତି ହେବ ।" ତାପରେ ନିଜର ଭୁଲ ବୁଝିପାରି ସେ ଗାଁ ଲୋକଙ୍କ ସହିତ ମିଶି ଉକ୍ତ କାମରେ ସାମିଲ୍ ହୋଇ କୁଲି ମଜୁରି ୨୫ ଟଙ୍କା ପାଇବା ପାଇଁ ଦାବି କରି କାମ ବନ୍ଦ କରିଦେଲା ।

ଏହିପରି ୮/୧୦ ଦିନ କାମ ବନ୍ଦ କରିଦେବାରୁ ଠିକାଦାର ପୁଣି ଦିନେ ଆସି ଗାଁ ଲୋକଙ୍କୁ ଏକାଠି କରି ବୁଝାଇଲା, ଏବଂ କହିଲା, "ତୁମେ ଯଦି କାମ ନକରିବ ତେବେ ମୁଁ ଅନ୍ୟ ଗାଁରୁ ଲୋକ ଆଣି କାମ କରାଇବି ।" ଏକଥା ଶୁଣି ମାଆମାନେ କହିଲେ ଆମେ କାମ ନକଲେ ନାହିଁ ମାତ୍ର ୨୫ ଟଙ୍କା ମଜୁରି ନଦେଲେ ଆମେ ଅନ୍ୟ ଗାଁର ଲୋକଙ୍କୁ ମଧ୍ୟ କାମ କରାଇ ଦେବୁ ନାହିଁ । ତୁମେ ଏହି କାମକୁ ଆହୁରି କେତେ ଟଙ୍କା ଲାଭ ଖାଇବ ପୁଣି ଆମ ଗରିବ ଲୋକଙ୍କର ମଜୁରିରୁ ମଧ୍ୟ ଟଙ୍କା ମାରି ଖାଇବ ।

ଏହିପରି ବାଦ ବିବାଦ ଲାଗିବାରୁ ଠିକାଦାର ମାଆମାନଙ୍କ ସଂଗେ ଯୁକ୍ତି କରି ପାରିଲା ନାହିଁ । ଶେଷକୁ ୨୫ ଟଙ୍କା ମଜୁରି ଦେବାକୁ ବାଧ୍ୟ ହୋଇ ରାଜିହେଲା ଏବଂ କାମକୁ ଆସିବାକୁ କହିଲା । ତାପରେ ମାଆମାନେ କହିଲେ ତୁ ଆମକୁ ମିଛ କଥା କହି ଆମ ଗାଁ କାମ ଆଣିଛୁ । ସେଥିପାଇଁ ଆମ କୁଟୁମ୍ବକୁ ମଧ୍ୟ ୫୦୦ ଟଙ୍କା ଜୋରିମାନା ହିସାବରେ ଦେବାକୁ ପଡ଼ିବ । ମାଆମାନଙ୍କର ସବୁ କଥାରେ ଠିକାଦାର ରାଜି ହେବାରୁ ପର ଦିନ ଗାଁର ସବୁ ଲୋକ କାମକୁ ଯାଇଥିଲେ ଏବଂ ଦୈନିକ ମଜୁରି ୨୫ ଟଙ୍କା ପାଇଥିଲେ । ମାତ୍ର କଥା ହୋଇଥିବା ୫୦୦ ଟଙ୍କା ସେ ଗ୍ରାମ ପାଣ୍ଠିକୁ ଏ ପର୍ଯ୍ୟନ୍ତ ଦେଇ ନାହିଁ ।

ଗାଁରେ ଥିବା ୧୨ଟି ପରିବାର ମଧ୍ୟରେ ଏକତା ଭାବ ରହିଛି ଗାଁ ଲୋକେ କହନ୍ତି, "ଆଗରୁ ଆମେ ଏତେ ସବୁ କଥା ଜାଣି ନଥିଲୁ । ଏବେ ସବୁ କଥା ଟିକେ ଟିକେ ଜାଣିଲୁଣି, ସେଥିପାଇଁ ଯେକୌଣସି କାମ କରିବାକୁ ବାହାରୁଛୁ । ଏବେ ଯାହା କାମ ଆମ ଗାଁକୁ ଆସିବ ତାକୁ ଆମେ ଗାଁ ଲୋକ କରିବୁ, ବାହାର ଲୋକଙ୍କୁ ଦେବୁ ନାହିଁ ।" ମାଆମାନେ କହୁଥିଲେ ପୁରୁଷମାନଙ୍କୁ ମଦ ପିଆଇ ହାତ କରି ନେଲେ ମଧ୍ୟ

ଆମେମାନେ କେବେ ବି ଛାଡ଼ି ଦେବୁ ନାହିଁ। ଆମର ଏକତାକୁ କେହି ଭାଙ୍ଗି ପାରିବେ ନାହିଁ ।"

ଗାଁରେ କୁଟୁମ୍ବ ପାଣ୍ଠିରେ ୧୩୨ ପାହି ଧାନ ଅଛି ଏବଂ ୬,୩୦୦ ଟଙ୍କା ଅଛି । ଏଥି ସହିତ ଆମ ମାଆମାନଙ୍କର ମଧ୍ୟ ଅଲଗା ୪୮ କିଲୋ ଚାଉଳ ଏବଂ ୪୫୫ ଟଙ୍କା ମଧ୍ୟ ରଖିଛୁ । ରାତିସ୍କୁଲରେ ପଢୁଥିବା ବୁଦୁନି ଲୋଆଙ୍ଗି ମାଆମାନଙ୍କ ପାଣ୍ଠିର ହିସାବ ପତ୍ର ବୁଝା ବୁଝି କରୁଛି । ହିସାବପତ୍ର କରିବାରେ କିଛି ଅସୁବିଧା ହେଉଛି କି ନାହିଁ ବୋଲି ପଚାରିବାରୁ ବୁଦୁନି କହେ, "ମୁଁ ପାଠ ପଢ଼ି ହିସାବ ପତ୍ର ଜାଣିବାରୁ ସିନା ମାଆମାନେ ମୋତେ ଏ ଦାୟିତ୍ୱ ଦେଲେ । ମତେ ମଧ୍ୟ ଏ କାମ କରିବାକୁ ଖୁସି ଲାଗୁଚି, କିଛି ଅସୁବିଧା ହେଉନାହିଁ ।" ଗାଁର ସମସ୍ତ କାମ କରିବା ପାଇଁ ରାତି ସ୍କୁଲର ଶିକ୍ଷକ ସହ ଆଗୁଆ ହୋଇ ବାହାରିଛନ୍ତି ଦୁଇ ଜଣ ମାଆ (ସୁକୁରୁମୁନୀ ଲେଆଙ୍ଗି ଓ ଶାନ୍ତିଲତା ଲେଆଙ୍ଗି) ଗାଁକୁ ଯିଏ ବି ଆସନ୍ତୁ ଆଗ ଖୋଜା ପଡ଼େ ଏହି ଦୁଇ ଜଣଙ୍କୁ । ତାଙ୍କୁ ଦେଖିଲେ ଏବଂ ତାଙ୍କ ସାଙ୍ଗେ କଥା ହେଲେ ଜଣାପଡ଼େ ତାଙ୍କ ଭିତରେ ଲୁଚି ରହିଛି ଆଗୁଆ ହୋଇ କାମ କରିବାର ଅନେକ ଗୁଣ । ଟିକିଏ ପ୍ରେରଣା/ଉତ୍ସାହ ପାଇଲେ ସେମାନେ ଆଗେଇ ଯିବେ ଏବଂ ବହୁତ ଭଲ ଭଲ କାମ କରିପାରିବେ । ଗାଁର ମହିଳା ପୁରୁଷ ସମସ୍ତେ ଏହି ଦୁଇ ଜଣଙ୍କ କଥା ଶୁଣନ୍ତି ଏବଂ ଗୁରୁତ୍ୱ ମଧ୍ୟ ଦିଅନ୍ତି ।

ଆମେ ଯେତେବେଳେ ସେହି ଗାଁରେ ଯାଇ ପହଞ୍ଚିଲୁ, ସେତେବେଳେ ସେହି ମାଆ ଦୁଇଜଣ ଆଗ ବାହାରି ଆସିଲେ ଏବଂ କେତେ କଥା ତାଙ୍କରି ଭାଷାରେ ପଚାରିଗଲେ । କାରଣ ଓଡ଼ିଆ ଟିକେ ଟିକେ ବୁଝିପାରୁଥିଲେ ବି ଭଲରେ କହିପାରୁ ନଥିଲେ । ଆମର ପରିଚୟ ପାଇବା ପରେ ଆମେ କ'ଣ ପାଇଁ ଆସିଛୁ ଜାଣିବା ପରେ ଡାକି ପକାଇଲେ ଗାଁର ସବୁ ଲୋକଙ୍କୁ । ଯିଏ ଯାହାର କାମ ଛାଡ଼ି ଦେଇ ଆସି ରୁଣ୍ଡ ହୋଇଗଲେ ଆମରି ଚାରି ପଟରେ । ଆଉ କହିଗଲେ ଉପରେ ବର୍ଣ୍ଣିତ ହୋଇଥିବା ଘଟଣା । ଗାଁ ଲୋକମାନେ କହିବା ଅନୁଯାୟୀ ଆମେ ଏହି ଘଟଣାଟି ପ୍ରକାଶ କରିଛୁ । ଆଉ ଆଶା କରୁଛୁ ଗାଁ ଗହଳରେ ବାସ କରୁଥିବା ଲୋକେ ଏଥିରୁ ନିଶ୍ଚିତ ଭାବେ କାମ କରିବାକୁ କିଛି ପ୍ରେରଣା ପାଇବେ ।

ଅକ୍ଟୋବର - ୧୯୯୬



# ଜଙ୍ଗଲ ଆମ ଜୀବନ

"ଜଙ୍ଗଲ ଆମ ବାପା, ଜଙ୍ଗଲ ଆମ ମା, ଜଙ୍ଗଲ ଆମ ଜୀବନ" ଏହାଥିଲା ବାଲିପୋଷି ଗାଁ ଲୋକମାନଙ୍କ ଉକ୍ତି। ସରକାରଙ୍କ ଦୃଷ୍ଟି ଅନ୍ତରାଳରେ ଥିବା ଯୋଗାଯୋଗ ବିଚ୍ଛିନ୍ନ ଏହି ଗାଁଟି ଠାକୁରମୁଣ୍ଡା ବ୍ଲକଠାରୁ ୧୪ କି.ମି. ଓ କେଶୀଡ଼ିଆ ପଞ୍ଚାୟତଠାରୁ ୪ କି.ମି. ଦୂରରେ ଅବସ୍ଥିତ। ସେହି ଗାଁରେ ବାସ କରୁଥିବା ଲୋକମାନଙ୍କ ମୁଖ୍ୟ ଜୀବୀକା ହେଲା ଜଙ୍ଗଲଜାତ ଦ୍ୟବ୍ୟ ଓ ଚାଷ। ଜଙ୍ଗଲକୁ ଲାଗି ଖଣ୍ଡେ ଖଣ୍ଡେ ଚାଷ ଜମି ଅଛି, ଯେଉଁଥିରେ କି ବର୍ଷା ହେଲେ ଫସଲ ହୁଏ ନହେଲେ ନାହିଁ। ଗାଁର ନିକଟରେ ଭୟାବହ ଶିମିଳିପାଳ ଜଙ୍ଗଲ ଅବସ୍ଥିତ। ବର୍ଷାଦିନେ ପାହାଡ଼ରୁ ପାଣି ବୋହି ଆସି ଗାଁ ନାଳରେ ପଡ଼ିଥାଏ।

ଗାଁର ମୁଖିଆ, ମୁଲିଆ ବାନରା କହନ୍ତି, "ବାପ ଅଜା ଅମଳରୁ ଗାଁ ନିକଟରେ ଥିବା ଜଙ୍ଗଲକୁ ସଫା କରି ଚାଷ ଜମି ତିଆରି କରି ନିଜର ଗୁଜୁରାଣ ମେଣ୍ଟାଇ ଆସୁଥିଲୁ। ଗତ ୧୯୯୩ ମସିହାରେ ଜଙ୍ଗଲ ବିଭାଗ ତରଫରୁ ଅଚାନକ ଚଢ଼ାଉ ଆମକୁ ବ୍ୟଥିତ କରିଥିଲା। କାରଣ ଦୀର୍ଘ ଦିନର ଚାଷ ଜମି ଉପରେ ଜଙ୍ଗଲ ବିଭାଗର ନାଲି ପତାକା ପୋତା ଯାଇଥିଲା। ପରେ ପରେ ଗାଁରେ ସବୁ ଲୋକଙ୍କ ମଧ୍ୟରେ ଭାଳେଣି ପଡ଼ିଗଲା। ନିରୀହ ଗରିବ ଆଦିବାସୀ ଅଶିକ୍ଷିତ ଥିବାରୁ ସରକାରୀକଳକୁ ବୁଝିବା ଭଳି ଶକ୍ତି ସେମାନଙ୍କର ନଥିଲା। ଏହି ସରଳତାର ସୁଯୋଗ ନେଇ ଜଙ୍ଗଲ ବିଭାଗ ବେଶ୍ ଫାଇଦା ଉଠାଇବାକୁ ଚେଷ୍ଟା କରିଥିଲା। ଗାଁ ଲୋକଙ୍କର ଦୋଷ ହେଲା "କାହିଁକି ସେମାନେ ଜଙ୍ଗଲ କାଟି ଚାଷ କଲେ?"

ଯାହାହେଉ ପଛେ, ଜମି ହାତଛଡ଼ା ହେଲେ ପିଲାଛୁଆ ପୋଷିବା କିପରି? ତେଣୁ ଫରେଷ୍ଟଗାର୍ଡ଼ମାନଙ୍କୁ ପାଳି କରି କୁକୁଡ଼ା, ଚାଉଳ ଏବଂ ଟଙ୍କା ନିୟମିତ ଦେବାକୁ ଲାଗିଲୁ; କେବଳ ଜମି ପାଇଁ। ଫରେଷ୍ଟର ଏବଂ ଗାର୍ଡ଼ମାନଙ୍କ ଉପସ୍ଥିତିରେ ଆମେ ଗଛ କାଟିଲୁ ସେତେବେଳେ ସେମାନେ ଆମକୁ କିଛି କହିଲେ ନାହିଁ, ବରଂ ଗଛ

କାଟିବାକୁ ଆମକୁ ଆହୁରି ଉତ୍ସାହିତ କରୁଥିଲେ । ଜଙ୍ଗଲ କାଟି ଆମେ ଚାଷ କରୁଥିଲୁ କାରଣ ଆମର ଆଉ କିଛି ଜମି ନଥିଲା । ତାପରେ ହଠାତ୍ ଦିନେ ଜଙ୍ଗଲ ବିଭାଗର ଟ୍ରକ ଗାଁରେ ପହଁଞ୍ଚିଲା । ସେଥିରୁ ଗାର୍ଡ଼ମାନେ ଓହ୍ଲାଇ ଗାଁ ଲୋକମାନଙ୍କୁ କାଠ ସବୁ ଟ୍ରକରେ ଲୋଡ୍ର୍ କରିବାକୁ କହିଲେ । ଆମେ କାଠ ସବୁ ଟ୍ରକରେ ବୋଝେଇ କଲୁ । ସେହି ଜମିରେ ଯେତେବେଳେ ଧାନ ଗଛ ଫୁଟେ ଉଚ୍ଚତାର ହୋଇଥାଏ, ସେତେବେଳେ ଜଙ୍ଗଲ ବିଭାଗର ଲୋକମାନେ ବାହାର ଗାଁରୁ ଲୋକ ଆଣି ଚାଷଜମି ଉପରେ ଗାତ ଖୋଳିବା ଆରମ୍ଭ କଲେ । ଏ କଥା ଦେଖି ଗାଁର ସବୁ ଲୋକ ବସି ଏକ ସଭା କଲେ ଏବଂ ବିଚାର କରି ଠିକ୍ କଲେ ଯେ ନିଜ ଗାଁର କାମ କାହିଁକି ଅନ୍ୟ ଗାଁର ଲୋକ କରିବେ । ସେମାନଙ୍କୁ କାମ କରାଇ ନଦେଇ ନିଜେ କରିବେ । ତେଣୁ ପଚିଶ ଟଙ୍କା ମଜୁରି ପାଇ ସେମାନେ ଗାତ ଖୋଳିଲେ । ଅନ୍ୟ ଗାଁ ଲୋକଙ୍କୁ କାମ କରାଇ ଦେଲେ ନାହିଁ । ଧାନ ଜମିରେ କାହିଁକି ଗାତ ଖୋଳା ହେଉଛି ଲୋକମାନେ କିଛି ବୁଝି ପାରିଲେ ନାହିଁ । ମାତ୍ର ଯେତେବେଳେ ଟ୍ରକରେ ଗଛ ଆସି ପହଞ୍ଚିଲା, ସେତେବେଳେ ଗାଁ ଲୋକଙ୍କ ଚିନ୍ତା ପଶିଲା ।

ଯାହାହେଉ ମଜୁରି ପାଇ ଗଛମଧ୍ୟ ଲଗାଇଲେ । ଧାନ ସବୁ ନଷ୍ଟ ହୋଇ ସେଥିରେ ଆକାଶିଆ, ନୀଳଗିରି ଇତ୍ୟାଦି ଗଛ ବଢ଼ିବାକୁ ଲାଗିଲା । କିଛି ଦିନ ପରେ ଗାଁ ଲୋକ ପୁଣି ବସି ମିଟିଂ କଲେ ଏବଂ ସେଠାରେ ଠିକ୍ କଲେ ଯେ ଗ ଛ ଓପାଡ଼ି ପୁଣି ସେଠାରେ ଚାଷ କରିବେ । ପ୍ରଥମେ ଗାଁର ମହିଳାମାନେ ସାହସ କରି ଆଗରେ ବାହାରିଲେ ଏବଂ ଗଛ ଓପାଡ଼ିବାକୁ ଲାଗିଲେ । ପରେ ପୁରୁଷମାନେ ସେମାନଙ୍କୁ ସହଯୋଗ କଲେ । ତାପରେ ମାଆମାନେ ଝାଡୁ, ଟାଙ୍ଗିଆ ଧରି ଜଗିଲେ । ପୁରୁଷମାନେ ହଳ କରି ଧାନ ବୁଣିଲେ । କେମିତି କେଜାଣି କେଉଁଠୁ ଖବର ପାଇ ଫରେଷ୍ଟର, ରେଞ୍ଜର ଏବଂ ଗାର୍ଡ଼ମାନେ ଘଟଣା ସ୍ଥଳରେ ପହଞ୍ଚିଗଲେ ଏବଂ ଆମକୁ ସେଠାରେ ଚାଷ କରିବାକୁ ବାରଣ କଲେ । ମାତ୍ର ଗାଁର ମହିଳାମାନେ ଏକାଠି ହୋଇ ଏହାର ପ୍ରତିରୋଧ କରିଥିଲେ । ଏଥିପାଇଁ ନେତୃତ୍ୱ ନେଉଥିବା ଜାନ ଦେଈ କହନ୍ତି, "ଯେତେବେଳେ ଗାର୍ଡ଼ ମୋ ପାଖକୁ ଆସିଲା, ସେତେବେଳେ ମୁଁ ତାକୁ ଗାଳି କଲି, ଆଉ ତା' ପେଣ୍ଟକୁ ଟାଣିଧରି ଜମି ପାଖକୁ ଛାଡ଼ିଲି ନାହିଁ । ମୋ ସହ ଅନ୍ୟ ମହିଳାମାନେ (ରିସା, ସୁକୁମାରୀ, ପାନ ଆଦି) ମଧ୍ୟ ମିଶିଗଲେ । ଏତେ ମହିଳାଙ୍କୁ ଦେଖି ଗାର୍ଡ଼ ଭୟଭିତ ହୋଇ ଗାଁ ମଝି ଦେଇ ପାଟି କରି କରି ଠାକୁରମୁଣ୍ଡା ପଳାଇଗଲା । ତା ପଛେପଛେ ଅନ୍ୟମାନେ ମଧ୍ୟ ଡ଼ରରେ ପଳାଇ ଯାଇଥିଲେ ।

ଏଥିରେ ଲାଗିଥାନ କିଛିଦିନ ପରେ ଫରେଷ୍ଟର ଗୋଟିଏ ଜିପ୍‌ରେ ଆସି ଗାଁରେ ପହଞ୍ଚି କହିଲା ଆଜି ଠାକୁରମୁଣ୍ଡାକୁ ଡି.ଏଫ୍.ଓ. ଆସୁଛନ୍ତି ସଭା କରିବାକୁ । ତୁମର ଆପତ୍ତି କରିବାର ଅଛି ଯଦି ଆସ । ତାଙ୍କ ଜିପ୍‌ରେ ଗାଁରୁ ୧୦/୧୨ ଜଣ ଗଲେ ଏବଂ ସାଇକେଲରେ ବାକି ଲୋକମାନେ ଯାଇ ଠାକୁରମୁଣ୍ଡାରେ ପହଞ୍ଚିଲେ । ଗାଁ ଲୋକେ କହନ୍ତି, "ଆମେ ଯାଇ ଠାକରମୁଣ୍ଡାରେ ପହଞ୍ଚିଲା ବେଳେକୁ ସେଠାରେ କେହି ନଥିଲେ । ଆମକୁ ସଙ୍ଗେ ସଙ୍ଗେ ଥାନା ଭିତରେ ଢୁକାଇ ଦେଲେ । ତିନିଦିନ ପର୍ଯ୍ୟନ୍ତ ଆମ ୨୨ ଜଣଙ୍କୁ ଗୋଟିଏ ଓଳି ଖାଇବାକୁ ଦେଇ ରଖିଦେଲେ । କେବଳ ସେତିକି ନୁହେଁ ସେଠାରେ ଆକୁ ବହୁତ ଅସଭ୍ୟ ଭାଷାରେ ଗାଳି କରିବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ଧମକ ମଧ୍ୟ ଦେଇ ଥିଲେ । ତିନି ଦିନ ପର୍ଯ୍ୟନ୍ତ ଆମେ ନଫେରିବାରୁ ଗାଁରେ ତଥା ମହିଳାମାନଙ୍କ ମଧ୍ୟରେ ଭାଳେଣି ପଡ଼ିଗଲା । କେତେଜଣ ମହିଳା ଏକଥା ବୁଝିବା ପାଇଁ ଠାକୁରମୁଣ୍ଡା ମଧ୍ୟ ଚାଲି ଆସିଲେ । ତାପରେ କ'ଣ ଗୋଟିଏ ଦରଖାସ୍ତ ଲେଖି ଆମକୁ ସେଥିରେ ଦସ୍ତଖତ କରାଇ ଛାଡ଼ିଦେଲେ । ତାପରେ କରଞ୍ଜିଆ କୋର୍ଟରେ କେଶ୍ ଚାଲିଲା ।

ଏହାର ପ୍ରତିକାର ଗାଁର ଲୋକମାନେ ମିଟିଂ ପରେ ମିଟିଂ କରି ଚାଲିଲେ ଏବଂ ବିଭିନ୍ନ ସରକାରୀ ମହଲକୁ ଲେଖାମାନ ପଠାଇଲେ । ଗୋଟିଏ ଟ୍ରକ ଭଡ଼ା କରି ଭୁବନେଶ୍ୱର ଯାଇ ସେଠାକାର ସ୍ଥାନୀୟ ବିଧାୟକଙ୍କୁ ଦେଖାକରି ସବୁ କଥା କହିଲେ । ସେ କହିଲେ, "ତୁମେମାନେ ସେ ଜମିରେ ଆଗରୁ ଚାଷ କରି ଆସୁଛ ଏବେ ମଧ୍ୟ ଚାଷ କର, ତୁମର କେହି କିଛି କରିପାରିବେ ନାହିଁ । ସେ କଥା ମୁଁ ବୁଝିବି ।" ଏହି କଥା ଶୁଣି ସମସ୍ତେ ଫେରି ଆସିଥିଲେ ।

ନୋଟିସ୍ ଅନୁସାରେ ଗାଁ ଲୋକ କୋର୍ଟକୁ ଯାଇ ଜଣପ୍ରତି ୩୦୦ ଟଙ୍କା ଲେଖାଏଁ ଦେଇ ମକଦ୍ଦମା ଲଢ଼ିଲେ । ୧୯୯୫ ମସିହାରେ ମକଦ୍ଦମାର ଫଇସଲା ହୋଇ ଜମି ଚାଷ କରିବାକୁ ଅନୁମତି ମିଳିଲା । ଗାଁ ଲୋକମାନେ ଚାଷ କଲେ । ପୁଣି ଦିନେ ଅଚାନକ ପାଞ୍ଚଜଣ ଫରେଷ୍ଟ ଗାର୍ଡ଼ ଆସି ସେଠାରେ ଥିବା ବାକି କାଠକୁ ନେଇଯିବା ପାଇଁ କହିଲେ । ମାତ୍ର ଏହିଠାରେ ମହିଳାମାନଙ୍କର ଏକତା ସେମାନଙ୍କୁ ଦମ୍ଭ ଯୋଗାଇଲା । ସମସ୍ତେ ମିଶି କାଠ ନଦେଇ ସେମାନଙ୍କୁ ଘଉଡ଼ାଇ ଦେଲେ । ସେହିଦିନଠାରୁ ଭୟରେ ସେହି ଗାଁକୁ ଆଉ ଦିନେ ହେଲେ କୌଣସି ଫରେଷ୍ଟବାଲା ଆସି ନାହାନ୍ତି । ଚାଷ କରି ଲୋକମାନେ ଖୁସିରେ ଚଳୁଛନ୍ତି ।

ଏହି ସମସ୍ତ କାମ କରିବାପାଇଁ ମହିଳାମାନଙ୍କ ସାହସ ବହୁତ ପ୍ରଶଂସନୀୟ । ବର୍ତ୍ତମାନ ସେହି ଜମିରେ ସେମାନେ ବର୍ଷକୁ ଦୁଇ ତିନୋଟି ଫସଲ କରିପାରୁଛନ୍ତି

ବୋଲି କହନ୍ତି । ଏହି ଚାଷପାଇଁ ପାଣି କେଉଁଠୁ ଆଣୁଛ ବୋଲି ପଚାରିବାରୁ ସେମାନେ କହନ୍ତି, "ଅଗ୍ରଗାମୀ ସଂସ୍ଥା ଓ ଆମମାନଙ୍କ ମିଳିତ ସହଯୋଗରେ ଚିରୁପଦାଠାରେ ଏକ ଚେକ୍ ଡ୍ୟାମ୍ ତିଆରି କରାଯାଇଥିଲା । ସେହିଠାରୁ ପ୍ରାୟ ପାଞ୍ଚ କି.ମି. ପର୍ଯ୍ୟନ୍ତ କେନାଲ ଖୋଳି ପାଣି ଆଣି ଚାଷ କରୁଛୁ ।" ଏହିପରି ଭାବରେ ଲଢ଼େଇ କରି ବାଲିପୋଷି ଗାଁ ଲୋକମାନେ ସେମାନଙ୍କ ଜମି ଫେରିପାଇଛନ୍ତି ।

ଗାଁରେ ଆଗୁଆହୋଇ ବାହାରିଥିବା ମହିଳାମାନେ ମିଶି ଗୋଟିଏ ହେକ୍ଟର ଜମିରେ ମିଶ୍ରିତ ଫଳଚାଷ କରିଛନ୍ତି । ସଞ୍ଚୟ-ପାଣ୍ଠି ରଖି ସେହି ଟଙ୍କାରେ ମହୁ, ଝୁଣା ଇତ୍ୟାଦି କିଣି ଓରମାସ ସହିତ ସମ୍ପର୍କ ରଖି ବିକି ପାରୁଛନ୍ତି । ଗାଁର ସମସ୍ତ ମହିଳା ଓ ପୁରୁଷମାନେ ବୁଝିଛନ୍ତି ନିଜର ସମ୍ପତ୍ତିକୁ ସୁରକ୍ଷା କରିବା ଏବଂ ତାହାର ସଦ୍‌ବିନିଯୋଗ କରିବା କଥା ଜମିର ଅଧିକାର, ଜଳ-ଜମି-ଜଙ୍ଗଲ ସୁରକ୍ଷା ଏବଂ ଏଥିରୁ ଅଧିକ ଲୋକ କିପରି ଲାଭବାନ ହୋଇ ପାରିବେ, ସେଥିପାଇଁ ସେମାନଙ୍କ ଚିନ୍ତାଧାରା ବଢ଼ିଛି ସେମାନେ କେତେକ ପଦକ୍ଷେପ ମଧ୍ୟ ନେଇଛନ୍ତି । ଜଙ୍ଗଲ ସୁରକ୍ଷା କରି ସେଥିରୁ ମିଳୁଥିବା ଲଘୁ ବନଜାତ ଦ୍ରବ୍ୟକୁ ଓରମାସକୁ ବିକ୍ରୟ କରି ମହିଳା ଦଳ ସେମାନଙ୍କ ପାଣ୍ଠି ବଢ଼ାଇ ଆର୍ଥିକ ପରିସ୍ଥିତି ବଢ଼ାଇବାରେ ସାହାଯ୍ୟ କରିପାରିଛନ୍ତି । ଫଳରେ ଗାଁରେ ଏକତା ମନୋଭାବ ବଢ଼ି ଯାଇଛି ।

ଅକ୍ଟୋବର - ୧୯୯୬



# ଭିନ୍ନ ଏକ ଗ୍ରାମ ଦଲଦଲା

ଅବହେଳିତ କୋରାପୁଟ ଜିଲ୍ଲାର ଦଶମନ୍ତପୁର ଏକ ବ୍ଲକ । ଏହି ବ୍ଲକଠାରୁ ପ୍ରାୟ ୩୦କି.ମି. ଦୂରରେ ଲୁଲା ପଞ୍ଚାୟତରେ ଦଲଦଲା ଗାଁ ଅବସ୍ଥିତ । ପଞ୍ଚାୟତ ହେଡ୍‌କ୍ୱାଟଠାରୁ ଗାଁଟିକୁ ଯିବା ପାଇଁ ନୂଆ ରାସ୍ତାଟିଏ ଲମ୍ବି ଯାଇଛି । ନୂଆରେ ତିଆରି ହୋଇଥିବା ରାସ୍ତାଟିକୁ ଦେଖିଦେଲେ ମନେହୁଏ ଯେପରି ଏଇ କିଛି ଦିନ ତଳେ ରାସ୍ତା କାମଟି ହୋଇଛି ଏବଂ ଦୁଇ କଡରୁ ରାସ୍ତାଟିକୁ କଟାଯାଇ ଚଉଡା ମଧ୍ୟ କରାଯାଇଛି । ଗୋଟିଏ ପଟରେ ପାହାଡ ତଳର ପଥୁରିଆ ଜମିଗୁଡିକ ରାସ୍ତାକୁ ଛୁଇଁଛନ୍ତି । ଅନ୍ୟ ପଟରେ ଅଳ୍ପ କେତେକ ଚାଷ ଜମିକୁ ଲୋକମାନେ ଚାଷ କରୁଛନ୍ତି । ସେହି ରାସ୍ତାର ୨/୩ କି.ମି. ଭିତରେ ଗାଁଟିକୁ ପାହାଡ ଗୁଡିକ ଲୁଚାଇ ରଖିଛନ୍ତି । ଗାଁର ଚାରି ପାଖରେ ପାହାଡ, ଜଙ୍ଗଲ ପୂରି ରହିଛି । ମାଟି, ପାଣି, ପବନରେ ପରିପୂର୍ଣ୍ଣ ଏହି ଗ୍ରାମଟି ପ୍ରମାଣ ଦିଏ ଶାନ୍ତ, ସରଳ ଆଦିବାସୀମାନେ ଯେପରି ଏହି ଜଙ୍ଗଲ ଭିତରେ ବାସ କରିବା ପାଇଁ ବଦ୍ଧ ପରିକର । ତେଣୁ କେହି କେହି ସେମାନଙ୍କୁ ଜଙ୍ଗଲି ମଧ କହନ୍ତି । କିନ୍ତୁ ସେହି ଜଙ୍ଗଲ ତାଙ୍କ ଜୀବନ ଜୀବିକାର ମୁଖ୍ୟ ପନ୍ଥା । ଏହି ଜଙ୍ଗଲ, ପାହାଡ ଘେରା ଆଦିବାସୀ ଲୋକଙ୍କର ଜୀବନ କିପରି ଅତିବାହିତ ହୁଏ ତାହା ଜଣାପଡେ ଏହି ଦଲଦଲା ଗାଁର କେତେକ ଆଦିବାସୀ ଲୋକଙ୍କଠାରୁ । ସେମାନେ କହନ୍ତି, 'ଆଜ୍ଞା' ଆମ ଗାଁରୁ ଯଦି କିଛି ଲୋକ ମରି ନ ଥାନ୍ତେ, ତେବେ ଆମେ ଆପଣମାନଙ୍କୁ ଦେଖି ନଥାନ୍ତୁ । ଆମ ଅବସ୍ଥାର କୌଣସି ପରିବର୍ତ୍ତନ ହେଉନାହିଁ । ଆମେ ଯେମିତି ଥିଲୁ ସେମିତି ଅଛୁ । ଆଗରୁ ସରକାରଙ୍କର ନଜରରେ ବୋଧେ ଆମ ଗାଁ ନଥିଲା । ନଚେତ୍ ଏତେ ଲୋକ ମରି ନ ଥାନ୍ତେ । ଆମ ଗାଁକୁ ତ କିଛି ସୁବିଧା ନଥିଲା । ଆଦିବାସୀ ଲୋକଙ୍କ କଥା କେହି ବୁଝୁ ନାହାନ୍ତି । ଲୋକ ମରିଗଲା ପରେ ଗାଁକୁ ଆସି ଲାଭ କ'ଣ ?"

ଆମ ଗାଁର ଆମେ ଆଦିବାସୀ, ହରିଜନ ଓ ଗଉଡ ଲୋକ ମିଶି ୪୫ଘର

ରହୁଛୁ । କେବଳ ଗୋଟିଏ ଘର ହରିଜନ ଓ ଗୋଟିଏ ଘର ଗଉଡକୁ ଛାଡିଦେଲେ ଅନ୍ୟ ସମସ୍ତେ ଆଦିବାସୀ । ଦଶ/ପନ୍ଦର ପରିବାର ଏକରେ ଏକରେ ବିଲ ଜମିକୁ ଛାଡି ଦେଲେ ଅନ୍ୟ ସମସ୍ତେ ଡଙ୍ଗର ମାରି କୁଲିଭୁତି କରି ଚଳନ୍ତି । ଡଙ୍ଗରରେ ମାଣ୍ଡିଆ, କୋଶଳା, ଅଳସୀ ଆଦି ଚାଷ କରୁଛୁ । ତଥାପି ଆମର ଦୁଃଖ ସରୁନାହିଁ । କାଠ ଓ ତେନ୍ତୁଳିକୁ ଛାଡି ଦେଲେ ସେପରି କୌଣସି ଜଙ୍ଗଲଜାତ ଦ୍ରବ୍ୟ ମଧ୍ୟ ଆମ ଅଞ୍ଚଳରେ ମିଳେ ନାହିଁ । ସରକାରଙ୍କର କୁଲି ମଧ୍ୟ ଚଳେ ନାହିଁ । ତେଣୁ ଚାରିମାସ ଆମର ବହୁତ ଅସୁବିଧା ହୁଏ । ସେହି ସମୟରେ ଆମେ ସାହୁକାର ପାଖରୁ ଋଣ କରିଥାଉ ଏବଂ ବିଭିନ୍ନ ପ୍ରକାର ଅଖାଦ୍ୟ ମଧ୍ୟ ଖାଇଥାଉ । ତେଣୁ ଆମର ଆଦିବାସୀଲୋକ ବେଶୀ ରୋଗ ବେମାରରେ ପଡିଥାଉ । ସହଜେତ ପାଖରେ ଡାକ୍ତରଖାନା ନାହିଁ । ୨୫/୩୦ କି.ମି. ରାସ୍ତା ଚାଲି ଚାଲି ପୋଡାଗଡ କିମ୍ବା ଦଶମନ୍ତପୁରରେ ପହଞ୍ଚିଲା ବେଳକୁ ରୋଗୀ ମରିଯାଇଥିବ । ଗାଁକୁ ତ ରାସ୍ତା ନ ଥିଲା । ପାହାଡିଆ ରାସ୍ତାରେ ଚାଲିଚାଲି ଆମଗାଁକୁ ସରକାରୀ ବାବୁମାନେ ଆସନ୍ତି ନାହିଁ । ଯଦିଓ ଲୁଲାରେ ମେଡିକାଲର ବାବୁମାନେ ରହନ୍ତି, କେହି କେହି ତାଙ୍କ ପାଖକୁ ଔଷଧ ଆଣନ୍ତି ନ ହେଲେ ଦେଶୀଆ ଚିକିତ୍ସା କରନ୍ତି ।

ଥରେ ଆମ ଗାଁରେ ୭/୮ ଦିନ ଧରି ବର୍ଷା ଲାଗି ରହିଲା । କେହି ଘରୁ ବାହାରକୁ ବାହାରି ପାରିଲେ ନାହିଁ । ଘରେ ବି ଖାଇବାକୁ କିଛି ନାହିଁ । ପେଟ ବିକଳରେ ଲୋକମାନେ ଆମ୍ବ ଟାକୁଆକୁ ପେଜ କରି ପିଇଲେ । ସେତେବେଳେ ପିଇବା ପାଣିର ସୁବିଧା ନଥିଲା । ଆମେ ଝରଣା ପାଣି ପିଉଥିଲୁ । ହଠାତ୍ ଦିନେ ୨/୩ଜଣ ଲୋକଙ୍କୁ ଝାଡା ବାନ୍ତି ଆରମ୍ଭ ହେଲା ଏବଂ ଅଳ୍ପ ସମୟ ଭିତରେ ୩ଜଣ ଲୋକ ମରିଗଲେ । ଏହା ପରେ ୪/୫ଜଣ ଲୋକଙ୍କୁ ଝାଡା ବାନ୍ତି ଆରମ୍ଭ ହେଲା । ଆମେ ଯାଇ ଲୁଲାରେ କହିବାରୁ ମେଡିକାଲ ଆଜ୍ଞାମାନେ ଆସି ଗାଁରେ ପହଞ୍ଚିଲେ । ଗାଁର ରହି ଔଷଧ ବାଣ୍ଟିବା ସମୟରେ ଆଉ ୪/୫ଜଣ ଲୋକ ମରିଗଲେ । ସମୁଦାୟ ୮ଜଣ ଲୋକ ମରିଗଲେ । ଏକଥା ଚାରିଆଡେ ଖେଳିଗଲା । କଲେକ୍ଟର, ମନ୍ତ୍ରୀ ସମସ୍ତେ ଆମ ଗାଁକୁ ଆସିଲେ । ଗାଁଲୋକଙ୍କ ଅବସ୍ଥା ନିଜ ଆଖିରେ ଦେଖିଗଲେ । ଏହାପରେ ବର୍ଷା ତିନିମାସ ଗାଁରେ ରହି ଗାଁ ଲୋକମାନେ ଖାଇବାକୁ ଦେଲେ ।

ମନ୍ତ୍ରୀ ଯିବାପରେ ଆମ ଗାଁକୁ ରାସ୍ତା ହେଲା । ପିଇବା ପାଣିର ସୁବିଧା ପାଇଁ ନଳକୂପ ଖୋଳାହେଲା । ମେଡିକାଲର ଆଜ୍ଞାମାନଙ୍କର ପାଦ ମାସକୁ ଥରେ ଆମ ଗାଁରେ ପଡୁଛି । ପିଲାମନେ ପାଠ ପଢ଼ିବା ପାଇଁ ଗାଁରେ ସ୍କୁଲ ହେଲା ।

ବୁଢ଼ାବୁଢ଼ିମାନଙ୍କୁ ବାର୍ଦ୍ଧକ୍ୟ ଭତ୍ତା ଦିଆହେଲା । ପିଲା ଖାଦ୍ୟ ମଧ୍ୟ ମିଳୁଛି । ଆଇ.ଡି.ଏସ୍ ସଂସ୍ଥା ତରଫରୁ ଗାଁରେ ମାଣ୍ଡିଆ ମଧ୍ୟ ଦିଆଯାଇଥିଲା, କିନ୍ତୁ ଏସବୁ ଥିଲା ବର୍ଷେ ଦୁଇ ବର୍ଷର କଥା ।

ଆଜି ଯଦି ଆମକୁ ପଚାରନ୍ତି ଆମ ଅବସ୍ଥାର ପରିବର୍ତ୍ତନ କଥା ତାହା ହେଲେ ଆଜିବି ସେହିପରି ଅଛୁ ଯାହା ଆଗରୁଥିଲୁ । ଆଜିବି ଅଭାବ ହେଉଛି । ଆଜିବି ଝରଣାର ପାଣି ପିଉଛୁ । କହିଲେ ମଧ୍ୟ କେହି କାନକୁ ନେଉ ନାହାନ୍ତି । ସେହି ଡଙ୍ଗର ମାରି କୁଲିଭୁତି କରି ଆମେ ଚଳୁଛୁ । ବରଂ ଆମ ପାଖରେ ଯାହା ଅଛି ତାହା ଧୀରେ ଧୀରେ ସରକାର ଆମ ପାଖରୁ ଛଡାଇ ନେଉଛନ୍ତି । ଯେଉଁ ଡଙ୍ଗରକୁ ନେଇ ଆମେ ବଞ୍ଚିଛୁ ସରକାର ତାହାବି ଆମ ପାଖରୁ ନେଇ ଯାଉଛନ୍ତି । ଆମ ଗାଁରେ ଫରେଷ୍ଟ ବାଲା ଆସି ଡଙ୍ଗର ମାପି ସାରିଲେଣି । ହାରାହାରି ୮/୧୦ଏକର ଡଙ୍ଗରରେ ଗଛ ଲଗାହେବ । ଏବଂ ତିନି ବର୍ଷ ପରେ ଆମ ଡଙ୍ଗର ଆମକୁ ଦେବେ ବୋଲି କହୁଛନ୍ତି । କିଏ ଜାଣେ, ଏହା ଆମର ହେବକି ସରକାରଙ୍କର ହେବ । ତା' ପାଇଁ ନର୍ସରୀ କାମ ଆରମ୍ଭ ହୋଇଗଲାଣି । ୧୦୦୦ଟା ପୋଲିଥିନ୍‌ରେ ମାଟି ଭର୍ତ୍ତିକଲେ ୫୦ଟଙ୍କା ଦେଉଛନ୍ତି । ଦୁଇ ଦିନ ପରିଶ୍ରମ କଲେ ମଧ୍ୟ ୧୦୦୦ଟା ପୋଲିଥିନ୍ ହୋଇପାରୁନାହିଁ । ଆଦିବାସୀମାନଙ୍କ ଉପରେ ସରକାରଙ୍କର ଶୋଷଣ ଆଜି ପର୍ଯ୍ୟନ୍ତ ସରିନାହିଁ । ନିୟମ ହେଲା ଜବାହାର ରୋଜଗାର ଯୋଜନାରେ କାମ ଗାଁ କମିଟି କରିବ । ମାତ୍ର ଠିକାଦାରଙ୍କ ଚାପରେ ସରକାର କାମ ଗାଁ କମିଟିକୁ ନ ଦେଇ ଠିକାଦାରଙ୍କୁ ଦେଉଛନ୍ତି । ଏହାର ସ୍ୱତନ୍ତ୍ର ପ୍ରମାଣ ଆମ ଗାଁର ଡ୍ରେନ୍ କାମ । ଲୁଲା ପଞ୍ଚାୟତର ତ୍ରିନାଥ ବିଶୋଇ ନାମକ ଜଣେ ଠିକାଦାର ଆମ ଗାଁର କାମୁଡି ସାଉନ୍ତା ନାଁରେ କାମ ଆଣିଥିଲା । ଆମେ କିଛି ଜାଣିନାହୁଁ । ଆମ ନାଁରେ କାମ ଅନ୍ୟ ଲୋକ ଆଣିଲା.... କେମିତି ? ଲୋକର ବିନା ଦରଖାସ୍ତରେ ସରକାର କାମ ଦେଲେ କେମିତି ? ଯେତେବେଳେ ସିଏ ଆସି କହିଲା, ତୁମ ଗାଁ'ରେ ଡ୍ରେନ୍ କାମ ହେବ । କାମୁଡି ସାଉନ୍ତା ନାମରେ କାମ ଆସିଛି ଏବଂ କାମ ଆରମ୍ଭ କରିବାକୁ କହିଲା । ଗାଁର ଲୋକ କାମ ଆରମ୍ଭ କଲେ ।

କିଛି ଦିନ କାମ ଆରମ୍ଭ ହେଲା ପରେ ୨୦ଟଙ୍କା ଲେଖାଏଁ ଅଳ୍ପ କେତେ ଦିନ ମଜୁରି ଲୋକମାନେ ପାଇଛନ୍ତି । କାମଟି ଗାଁର ଲୋକଙ୍କ ଦ୍ୱାରା ଶେଷ ହେଲା ସତ, ମାତ୍ର ଆଜି ପର୍ଯ୍ୟନ୍ତ ଲୋକ ସବୁ ମଜୁରି ପାଇ ନାହାଁନ୍ତି । କାମଟି ସମୁଦାୟ ୩୦,୦୦୦ଟଙ୍କାର ବୋଲି ଗାଁଲୋକ ବ୍ଲକ୍ ଅଫିସରୁ ବୁଝିଥିଲେ । ମାତ୍ର ଗାଁ ଲୋକଙ୍କ କହିବା ଅନୁଯାୟୀ କାମଟିରେ ସମୁଦାୟ ୧୬,୦୦୦ଟଙ୍କା ଲାଗିଥିବ ।

ବାକି ଟଙ୍କା ପାଇବା ପାଇଁ ବାରମ୍ୱାର ବି.ଡି.ଓ. ପାଖକୁ ଗଲେ ମଧ୍ୟ ବି.ଡି.ଓ. ଠିକାଦାର କଥା ଓ ଠିକାଦାର ପାଖକୁ ଗଲେ ସେ ବି.ଡି.ଓ. କଥା କହି ରହିଯାଉଛନ୍ତି । ବାରମ୍ୱାର ନିରାଶ ହୋଇ ଫେରିବା ପରେ ଲୋକଙ୍କର ଆଗ୍ରହ କମି ଯାଇଛି । ସରକାରୀ ନୀତିକୁ ନିନ୍ଦା କରି ଗାଁରେ ପଡି ରହିବା ବ୍ୟତୀତ କିଛି ଉପାୟ ତାଙ୍କ ପାଖରେ ନାହିଁ । ଆମର ଆଉ କେତେ ଉନ୍ନତି ହେବ? ଆମକୁ ବାରମ୍ୱାର ସରକାର ପାଖକୁ ଦୌଡିବାକୁ ଇଚ୍ଛା ନାହିଁ । ଏହା ଥିଲା ସେହି ଗାଁର ଆଉ ଜାନୀର ମନ୍ତବ୍ୟ ।

୧୯୯୩ ମସିହାରେ ଯଦି ସେହି ଗାଁରେ ଅନାହାରରେ କିଛି ଲୋକ ମରିବାର ଚାଞ୍ଚଲ୍ୟ ଓଡିଶାରେ ସୃଷ୍ଟି ହୋଇ ନ ଥାନ୍ତା, ତେବେ ଏପରି ଏକ ଦୁର୍ଗମ ଅଞ୍ଚଳର କାହାଣୀ ଲୋକଲୋଚନକୁ ଆସି ପାରିନଥାନ୍ତା । ସରକାରଙ୍କୁ ଆମେ ବାଛିଛୁ । ଆମର ଉନ୍ନତି ହେବ ବୋଲି ଆଶା ରଖି ନିରୀହ ପ୍ରାଣୀଗୁଡିଏ ଅପେକ୍ଷା କରିଥିବା ବେଳେ ଆମର ଏ ସରକାର ଓଡ଼ିଶାର କୋଣ ଅନୁକୋଣରେ ସବୁ ପ୍ରକାର ସୁବିଧା ପହଞ୍ଚାଇ ଦେଉଛନ୍ତି କହି ଆରାମରେ ନିଃଶ୍ୱାସ ମାରୁଛନ୍ତି । କିନ୍ତୁ ଆଜିବି ଏପରି ଗାଁ ଅଛି ଯେଉଁଠିକୁ ରାସ୍ତା ନାହିଁ, ଡାକ୍ତରଖାନାର ସୁବିଧା ନାହିଁ, ଲୋକମାନେ ଏବେବି ଗୋଡି ଖଟୁଛନ୍ତି, ପାଠ ପଢ଼ିବା ପାଇଁ ସ୍କୁଲ ନାହିଁ, ସରକାରୀ ହେଉ ବା ବେସରକାରୀ ହେଉ ସମସ୍ତଙ୍କର ଶୋଷଣ ସେଠି ଚାଲିଛି । ତଥାପି ଭାଷଣ ଦିଆଯାଉଛି ଆମ ଦେଶ ମହାନ୍, ଆମ ରାଜ୍ୟ ମହାନ୍, ଆମ ଗାଁ ମହାନ୍, ତା' ସହିତ ଆମେ ମଧ୍ୟ ମହାନ୍ ।

ଅଗଷ୍ଟ- ୧୯୯୭



# ବାସଚ୍ୟୁତ ଗାଁ ନୂଆଗୁଡା

କୋରାପୁଟ ଜିଲ୍ଲାର ଦଶମନ୍ତପୁର ବ୍ଲକର ନୂଆଗୁଡା ଏକ ଗାଁ । ନୂଆ ହୋଇ ସୃଷ୍ଟି ହୋଇଥିବା ଏହି ଗାଁଟିର ଇତିହାସ କହିଲେ ଜଣାପଡେ ଏହି ଗାଁ ଲୋକଙ୍କର ବାସଚ୍ୟୁତର କାହାଣୀ । ୧୯୭୮ ମସିହାରେ ରାଜ୍ୟ ସରକାରଙ୍କର ନିର୍ଦ୍ଦେଶ କ୍ରମେ କଳାହାଣ୍ଡି ଜିଲ୍ଲାର ଇନ୍ଦ୍ରାବତୀ ନଦୀ ଉପରେ ବନ୍ଧ ବନ୍ଧା ଯିବାର ଯୋଜନା କରାଗଲା । ଏହି ଯୋଜନା ଫଳରେ ଦେଶ ତଥା ରାଜ୍ୟର ଉନ୍ନତି ହେବା ସଂଗେ ସଂଗେ ଗରୀବ ଆଦିବାସୀ ବିକାଶ ପ୍ରକ୍ରିୟାରେ ସାମିଲ ହୋଇ ପାରିବେ । ଏଥିପାଇଁ ସେହି ଅଞ୍ଚଳରେ ବାସ କରୁଥିବା ୬୩ ଗାଁର ଅଧିବାସୀଙ୍କୁ ନିଜର ଭିଟାମାଟି ଛାଡିବାକୁ ପଡିବ ଏବଂ ଏଥିପାଇଁ ସେମାନଙ୍କୁ କ୍ଷତିପୂରଣ ବାବଦକୁ ଟଙ୍କା ଦିଆଯିବ । ସମୟକ୍ରମେ ସେମାନଙ୍କୁ କ୍ଷତିପୂରଣ ଦିଆଯାଇଥିଲା ଏବଂ ଲୋକମାନେ ଘରଛାଡି ଯିଏ ଯୁଆଡେ ପାରିଲେ ପଳାଇ ଗଲେ । ସେହି ୬୩ଟି ଗାଁ ମଧ୍ୟରୁ ଗୋଟିଏ ଗାଁ ଝୁରୁଘାଟ । ଝୁରୁଘାଟ ଗାଁରୁ ବାସଚ୍ୟୁତ ହୋଇ ଆସିଥିବା ୪ଟି ପରିବାରରୁ ସୃଷ୍ଟି ଏକ ବୁଡି ଅଞ୍ଚଳିଆ ସାହି ।

ପ୍ରଥମରେ ଝୁରୁଘାଟ ଗ୍ରାମରୁ ୪ଟି ପାଇକ ପରିବାର ସେମାନଙ୍କ ବନ୍ଧୁବାନ୍ଧବ ଥିବା ଏହି ନୂଆଗୁଡା ଗାଁକୁ ଆସିଥିଲେ । ବାସସ୍ଥାନ ହରାଇ ଆସିଥିବା ଏହି ପରିବାର ଗୁଡିକ କିଛି ଦିନ ବନ୍ଧୁଘରେ ଆଶ୍ରୟ ନେଇଥିଲେ ଏବଂ ପରେ ପରେ ବନ୍ଧୁବାନ୍ଧବଙ୍କ ସହିତ ମିଶି ସେହି ଗାଁ'ରେ ରହିବା ପାଇଁ ସ୍ଥିର କଲେ । ଘରଦ୍ୱାର, ଜମିବାଡି ବାବଦକୁ ସେମାନେ ଟଙ୍କା ପାଇଥିଲେ ମଧ୍ୟ ତାହା ସେମାନଙ୍କ ପାଇଁ କିଛି ନୁହେଁ କହିଲେ ଚଳେ । କାରଣ ଘର ଛାଡିବାର ବହୁତ ଆଗରୁ କ୍ଷତିପୂରଣ ଲୋକ ପାଇ ସାରିଥିଲେ । ଏବଂ ବିଭିନ୍ନ ଖର୍ଚ୍ଚ ବାବଦକୁ ତାହା ଅଧା ସରି ଯାଇଥିଲା । ବାକି ଟଙ୍କା ଘର ଛାଡି ଆସିବା ପରେ ଖର୍ଚ୍ଚ ହୋଇଯାଇଥିଲା । ଏବଂ ଯାହା ଅଳ୍ପ କିଛି ଟଙ୍କା ଥିଲା ସେଥିରେ ସେମାନେ ବନ୍ଧୁବାନ୍ଧବଙ୍କ ସହିତ କଥାବାର୍ତ୍ତା କରି ଦୁଇ ଏକର ଲେଖାଏଁ

ଜମି କିଣି ଚାଷବାସ କରି ରହିଲେ । ସେହି ୪ଟି ପରିବାର ଆଜି ବଢ଼ିବଢ଼ି ୧୨ଟି ପରିବାର ହୋଇଛନ୍ତି ।

ଆଜିକୁ ୬ବର୍ଷ ଧରି ସେମାନଙ୍କ ଦଶମନ୍ତପୁର ବ୍ଲକରେ ବାସ କରି ଆସୁଥିଲେ ମଧ୍ୟ ସେମାନଙ୍କ ନିଜସ୍ୱ ପରିଚୟ କିଛି ନାହିଁ । ଏ ପର୍ଯ୍ୟନ୍ତ ସେମାନେ କେଉଁ ଜିଲ୍ଲାର ଲୋକ ଏବଂ କ'ଣ ସେମାନଙ୍କର ପରିଚୟ ସେମାନେ ଜାଣିନାହାନ୍ତି । ଆର୍ଥିକ ଦୃଷ୍ଟିକୋଣରୁ ଲୋକଙ୍କର ଚଳଣୀ ଭଲ ନ ହେଲେ ମଧ୍ୟ ସାମାଜିକ ଚଳଣୀରେ କୌଣସି ଅସୁବିଧା ନାହିଁ । ବନ୍ଧୁବାନ୍ଧବଙ୍କ ସହିତ ସେମାନଙ୍କ ପ୍ରତ୍ୟେକ କାମରେ ସାହାଯ୍ୟ ସହଯୋଗ ରହିଛି । ଡଙ୍ଗର ମାରି ମାଣ୍ଡିଆ ଓ କାନ୍ଦୁଲ କରିବା ପାଇଁ ପୁରୁଣା ଗାଁର ଲୋକ ଡଙ୍ଗର ମଧ୍ୟ ଛାଡିଛନ୍ତି । ଜଙ୍ଗଲ, ପାହାଡରୁ କାଠ ପତ୍ର ଆଣିବାରେ ମଧ୍ୟ ସମାନ ଅଧିକାର ରହିଛି । ଗୋଟିଏ ଗାଁର ଲୋକ ଭଳି ଆଜି ପର୍ଯ୍ୟନ୍ତ ସେମାନେ ଚଳି ଆସୁଛନ୍ତି । ତଥାପି ସେମାନଙ୍କର ଦୁଃଖ ସରିନାହିଁ । ଅଭାବ ଅନଟନରେ କାଳାତିପାତ କରୁଥିବା ଏହି ପରିବାରବର୍ଗ କୁହନ୍ତି, 'ପୁରୁଣା ଗାଁର ସୁବିଧା କେଉଁଠି ହେଲେ ମିଳିବ ନାହିଁ । ଚାଷବାସ, କୁଲିଭୁତି, ବଣଜଙ୍ଗଲଠାରୁ ଆରମ୍ଭ କରି ସବୁ କିଛିର ସୁବିଧା ଆମ ଗାଁରେ ଥିଲା । ଏଠି କିଛି ନାହିଁ । ଜମି ବାଡି ଘରଦ୍ୱାର ସବୁ ହରାଇ ଆଜି ଆମେ ନିଃସହାୟ ଅବସ୍ଥାରେ ଦିନ କାଟୁଛୁ । ଆମ କଥା କେହି ଶୁଣିବାକୁ ନାହିଁ । ୮/୧୦ ଏକର ପର୍ଯ୍ୟନ୍ତ ଜମି ହରାଇ ଆସି ୨ଏକର ଲେଖାଁଏ ଜମି କିଣିଛୁ । ଏତିକିରେ କ'ଣ ଅଭାବ ମେଣ୍ଟିବ । ଆମ ପିଲାମାନେ ପାଠ ପଢ଼ିବା ପାଇଁ ସ୍କୁଲଟିଏ ନାହିଁ । ୬ବର୍ଷ ଧରି ଝରଣାର ପାଣି ପିଇ ଆସୁଥିଲେ ମଧ୍ୟ ଆମ ଉପରେ ସରକାରଙ୍କର ନଜର ପଡୁନାହିଁ । ନଳକୂଅ ପାଇଁ ବ୍ଲକ୍ ଅଫିସ୍‌କୁ ଯାଇ ବି.ଡି.ଓ.ଙ୍କୁ କହିଲେ କହୁଛନ୍ତି, ତୁମେ ଏ ବ୍ଲକର ଲୋକ ନୁହଁ । ତୁମେ ତୁମ ଜୋନ୍ ଅଫିସରଙ୍କ ପାଖକୁ ଯାଅ । ତାଙ୍କ ପାଖକୁ ଗଲେ ସେ କହୁଛନ୍ତି, ତୁମ ବାର ଘରର ଲୋକଙ୍କ ପାଇଁ କ'ଣ କରାଯିବ? ବର୍ତ୍ତମାନ ଆମର ବ୍ୟବସ୍ଥା ଏହିପରି । ଘର ଛାଡିବା ପୂର୍ବରୁ ମିଛ ପ୍ରତିଶ୍ରୁତିଗୁଡିକୁ ଆଜି ପଦାରେ ପଡି ଯାଇଛି । ଏଭଳି କେବଳ ଆମର ନୁହେଁ । ଏହି ଦଶମନ୍ତପୁର ବ୍ଲକରେ ଆହୁରି ତିନି ଚାରୋଟି ଗାଁ'ରେ ବାସ କରୁଥିବା ବୁଡି ଅଞ୍ଚଳର ଲୋକଙ୍କ ଅବସ୍ଥା ମଧ୍ୟ ସେହିପରି ।

ଅଗଷ୍ଟ- ୧୯୯୭



# ପଟେସ ଗାଁ - ଏକ ସୁସ୍ଥ ଜୀବନ ଅପେକ୍ଷାରେ

ଶୁଖିଲା ପେଟ, ଝାଲୁଆ ଶରୀର, ଦିନ ତମାମର ଖଟଣି ସାଙ୍ଗକୁ ମାଣ୍ଡିଆ ପେଯ ଟିକେ ଖାଇ ବଞ୍ଚୁଥିବା ଏ ଗାଁର ଅଧିବାସୀଙ୍କ ଜୀବନ ଉପରେ ଠିଆହୋଇ ଏଠିକାର ରାଜା ହସୁଥିଲେ । ରାଜାଘରେ ବେଠି ଖଟି ଖଟି ହାଲିଆ ହୋଇ ଫେରୁଥିବା ବୋଝକୁ ହାଲୁକା କରିବା ପାଇଁ ଗଲାବେଳକୁ ଅନେକ ସମୟରେ ଘର ଅମାର ମଧ୍ୟ ଖାଲି ରହୁଥିଲା । ଡଙ୍ଗର ଉପରୁ କିଛି ମାଣ୍ଡିଆ, କୋଶଲା ମାଇଜିମାନେ ଯାହା କରି ଆଣୁଥିଲେ ସେତିକି ମାତ୍ର ସମ୍ବଳରେ ବଞ୍ଚିଯାଉଥିଲୁ କେବଳ । ଯେଉଁ ପିରବାରରେ ଉଭୟ ପ୍ରାଣୀ ଏକାଠି ଖଟି ପାରନ୍ତି ନାହିଁ ସେଠି ଦାନା ଅଣ୍ଟିବ କେମିତି ? ଗୋଟିଏ ପଟରେ ପୁରୁଷମାନଙ୍କର ବେଠି, ଅନ୍ୟ ପଟରେ ମାଇଜିମାନଙ୍କର ପାରିଶ୍ରମିକରୁ ପରିବାରକୁ ବଞ୍ଚାଇବା ପ୍ରଚେଷ୍ଟା ଭିତରେ ଆଖିର ଲୁହ ଆଖିରେ ହିଁ ମରୁଥିଲା ।

ଏବେ ରାଜାଶାସନ ସିନା ସରିଗଲା, ହେଲେ ଆମ ମରଣାନ୍ତକ ଜୀବନର ଶେଷ ହୋଇପାରୁନାହିଁ । ବର୍ତ୍ତମାନ ଗାଁର ପ୍ରାୟ ସମସ୍ତେ ସାହୁକାରର ଋଣ ଯନ୍ତାରେ ପଡି ଘାଣ୍ଟି ହେଉଛୁ । ସାହୁକାରର ସୁଧର ହାରକୁ ମୁଣ୍ଡରେ ବୋଝେଇ ବଞ୍ଚିବାକୁ ପଡୁଛି । ମାତ୍ର ଦୁଇକିଲୋ ଚାଉଳ ଆଣିବା ପାଇଁ ଚାରିକିଲୋ ଝୁଡୁଙ୍ଗ ଦେବାକୁ ପଡୁଛି । ମାତ୍ର ୧୬ଟଙ୍କାର ଚାଉଳ ନେବାପାଇଁ ସାହୁକାର ପାଖରେ ୬୦ଟଙ୍କାରେ ଝୁଡୁଙ୍ଗ ବଦଳାଇବାକୁ ପଡୁଛି । ସଂସାରକୁ ବଞ୍ଚାଇବା ପାଇଁ ସାହୁକାରର ସବୁ ସର୍ତ୍ତରେ ରାଜି ହେବାପାଇଁ ଆମେ ବାଧ୍ୟ ହୋଇ ଆସୁଛୁ । ଏ ପର୍ଯ୍ୟନ୍ତ ମଧ୍ୟ ଆମେ ଏକ ଋଣମୁକ୍ତ ଜୀବନ ବଞ୍ଚିବା ପାଇଁ ଅପେକ୍ଷା କରିରହିଛୁ ।

କାଶୀପୁର ବ୍ଲକଠାରୁ ୧୨କି.ମି. ଉତ୍ତରକୁ ଗଲେ ମାଣ୍ଡିବିଶି ପଞ୍ଚାୟତ । ସେଠାରୁ ବାମକୁ ଠିକ ତିନିକିଲୋମିଟର ରାସ୍ତା ଅତିକ୍ରମ କରିଗଲେ ଆମ ଗାଁ ପଡେ । ଗାଁର

ଦକ୍ଷିଣ ଦିଗରେ ପଶ୍ଚିମରୁ ପୂର୍ବକୁ ବହି ଆସିଥିବା ପାଟିଆଣିଲ ନଦୀ ଆଉ ସେଥିରେ ହୋଇଥିବା ପାଣିମୁଣ୍ଡା ହେଉଛି ଗ୍ରାମବାସୀଙ୍କ ଶସ୍ୟ ଉତ୍ପାଦନର ମୁଖ୍ୟ ସମ୍ବଳ ।ପ୍ରଥମ ପର୍ଯ୍ୟାୟରେ ଅଗ୍ରଗାମୀ ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ଆଇଫାଡ୍ ଉଭୟ ଏହି ପାଣି ମୁଣ୍ଡାଟିକୁ ସଂପୂର୍ଣ୍ଣ କରିଥିଲେ । ସମ୍ବଳର ଉପଯୋଗିତା ହେଉଛି ସବୁଠାରୁ ବଡ କଥା । ଏଇଠି ପାଣି କେଉଁ ଆବହମାନ କାଳରୁ ବହି ଚାଲିଛି । ମାତ୍ର ତାହାର ଉପଯୋଗ ହୋଇପାରୁ ନଥିଲା । ବର୍ତ୍ତମାନ ଗାଁ ଲୋକେ ମୁଣ୍ଡା ସାହାଯ୍ୟରେ ଜମିକୁ ପାଣି ନେଇ ବିଭିନ୍ନ ପ୍ରକାରର ଚାଷ କରି ଆଗକୁ ଯିବାପାଇଁ ଚେଷ୍ଟା କରୁଛନ୍ତି । ଗାଁରେ ସମୁଦାୟ ୪୫ଘର ଆଦିବାସୀ ଓ ୮ଘର ହରିଜନ ଅଛନ୍ତି । ସଭିଏଁ ଏକାଠି ରୁହନ୍ତି । ସବୁ ଆଦିବାସୀ ଓ ହରିଜନ ପରିବାର ଭିତରେ ଭଲ ବୁଝାମଣା ଅଛି । ଏକାଠି ଖାଇବା ରହିବା ଠାରୁ ପର୍ବ ପର୍ବାଣୀରେ ନାଚିବା ପର୍ଯ୍ୟନ୍ତ ଯେଉଁଠାରେ ଦେଖିଲେ ସମସ୍ତେ ଏକାଠି ।

ପରବ ବେଳେ ସମସ୍ତେ ଏକାଠି ବସି ଅନେକ କଥା ହୁଅନ୍ତି । ସମସ୍ତଙ୍କ ଆଖି ଆଗରେ ଖାଦ୍ୟାଭାବ ହିଁ ସମସ୍ତଙ୍କ ପାଇଁ ମୁଖ୍ୟ ସମସ୍ୟା ହୋଇ ରହିଥାଏ । କୁଟୁମ୍ବରେ ଥିବା ପାଣ୍ଠି ମୋଟେ ନଥିଲା । ସମସ୍ତେ ମିଶି ଖାଦ୍ୟଭାବ ଦୂର କରିବା ପାଇଁ ଚେଷ୍ଟା କଲେ । ସାହୁକାରକୁ କଳନ୍ତର ଦେବା ଭାରରୁ ହାଲୁକା ହେବାପାଇଁ ଗାଁରେ ମାଣ୍ଡିଆ ପାଣ୍ଠି ସୃଷ୍ଟି କଲେ । ଏହି ପାଣ୍ଠିର ପରିଚାଳନା ପାଇଁ ୫ଜଣିଆ କମିଟି ଗଢ଼ିଲେ ଏବଂ ତାହାର ସୁରକ୍ଷା ପାଇଁ ସମସ୍ତେ ଦାୟିତ୍ୱ ନେଲେ । ସମସ୍ତଙ୍କ ପେଟକୁ ଦାନା ଦେବା ପାଇଁ ସମସ୍ତେ ପ୍ରାଥମିକ ପର୍ଯ୍ୟାୟରେ ଧ୍ୟାନ ଦେଲେ । ମାତ୍ର ବର୍ଷକୁ ବର୍ଷ ପାଚି କମ୍ ହେବାରେ ଲାଗିଛି । ଏବେ ବେଶି ବେଶି ମରୁଡି ହେଉଛି । କମ୍ ବର୍ଷା ହେବାରୁ ଡଙ୍ଗର ଚାଷ କରିବାକୁ ପାଣି ମଧ୍ୟ ଖେଟୁ ନାହିଁ । ସେଥିର ଲାଗି ପାଣ୍ଠି ମଧ୍ୟ କମି ଆସିଲାଣି । ବେଳେ ବେଳେ ସାହୁକାର ପାଖକୁ ଯିବାପାଇଁ ବାଧ୍ୟ ହୋଇ ପଡୁଛନ୍ତି ସମସ୍ତେ । ତଥାପି ସାହୁକାର ଠକେଇରୁ ବଞ୍ଚିବା ପାଇଁ ହିସାବପତ୍ର ଜାଣିବାଟାକୁ ଏଡେଇ ନପାରି ସ୍କୁଲ ଖୋଲିବାକୁ ବାହାରିଲେ ।

ଗାଁର ସମସ୍ତେ ମିଶି ନିଷ୍ପତ୍ତି ନେଲେ ଏବଂ କିଣା ମାଷ୍ଟ୍ର ରଖି ପାଠ ପଢ଼ିଥିବା ମନ୍ତ୍ରୀ ମାଝୀଙ୍କୁ ମାଷ୍ଟ୍ର କରି ରଖିଲେ । ସେ ପିଲାମାନଙ୍କୁ ରାତିରେ ହିଁ ପଢ଼ାଇଲେ । କାରଣ ଗାଁର ପ୍ରତ୍ୟେକ ପିଲା ଦିନରେ ଡଙ୍ଗରକୁ କାମ କରିବାକୁ ଚାଲିଯାଉଥିଲେ । ଦୁର୍ଭାଗ୍ୟ ବଶତଃ ଦେଢ଼ବର୍ଷ ପରେ ମ୍ୟାଲେରିଆ ଜ୍ୱରରେ ସେ ଗୁରୁଭାଇ ମରିଗଲେ । ତା'ପରେ ହାଦାନ ମାଝୀଙ୍କୁ ଠିକ୍‌କଲେ । ମାତ୍ର ଆଠଦିନ ସ୍କୁଲ କରିବା ପରେ ସେ ମଧ୍ୟ ସେହି ଜ୍ୱରରେ ମରିଗଲେ । ତଥାପି ସ୍କୁଲ ପ୍ରତି ସେମାନେ ବିଶ୍ୱାସ ଛାଡିଲେ

ନାହିଁ । ନିଜ ଅଞ୍ଚଳରେ ଏହିପରି ସ୍ୱାସ୍ଥ୍ୟ ବିଭାଗର ଅବହେଳା କଥା ଭାବୁ ଭାବୁ ୨ବରଷ ଚାଲିଗଲା । ତା'ପରେ ଗାଁର ଶତ୍ରୁଘ୍ନ ନାଏକଙ୍କୁ ଗୁରୁଭାଇ ରୂପେ ବାଛି ପୁଣି ସ୍କୁଲ ଚଳାଇଲେ । ସେହି ସ୍କୁଲଟି ବର୍ତ୍ତମାନ ଅଗ୍ରଗାମୀ ସହାୟତାରେ ବିକଳ୍ପ ଶିକ୍ଷାକେନ୍ଦ୍ର ନାମରେ ଚାଲୁଅଛି । ନିଜ ଗାଁରେ ତ ସରକାରୀ ସ୍କୁଲ ନାହିଁ । ଯାହା ସେଇ ମାଣ୍ଡିବିଶିରେ ସରକାରୀ ସ୍କୁଲ ଅଛି । ଗାଁ ଠାରୁ ସ୍କୁଲ ତିନିକିଲୋମିଟର ଦୂର । ବାପା ମା'ଙ୍କୁ କାମରେ ସାହାଯ୍ୟ କରିବା ନେଇ ଅଧିକାଂଶ ପିଲା ଦନ ସ୍କୁଲକୁ ପଢ଼ିବାପାଇଁ ଯାଇପାରନ୍ତି ନାହିଁ । ଏଇ ବର୍ଷ ପାଞ୍ଚଜଣ ପୁଅ ଏବଂ ଜଣେ ଝିଅ ଆଶ୍ରମ ସ୍କୁଲ ଯାଇ ପଢୁଛନ୍ତି ।

ଏ ଅଞ୍ଚଳର ସ୍ୱାସ୍ଥ୍ୟସେବା କଥା ନ କହିଲେ ଭଲ । ସ୍ୱାସ୍ଥ୍ୟ କେନ୍ଦ୍ରର ଡାକ୍ତରଙ୍କ ଦେଖା ମିଳିବା କଷ୍ଟ । ଯାହା ସେଇ ସ୍ୱାସ୍ଥ୍ୟ ସେବିକାମାନଙ୍କୁ ଦେଖାମିଳେ । ବର୍ଷା ମାସରେ ଖାଦ୍ୟାଭାବରୁ ଆମ୍ବଟାକୁ, ତେନ୍ତୁଳି ମଞ୍ଜି ଭଳି ଅଖାଦ୍ୟ ଖାଇ ଝାଡା ବାନ୍ତିର ଶିକାର ହୋଇଥାନ୍ତି । ଅଧିକାଂଶ ଦିନ ବର୍ଷା ମାସ, ପୁଣି ରାସ୍ତା ଖରାପ ହେତୁ ଗାଁକୁ ସ୍ୱାସ୍ଥ୍ୟ ସେବିକାମନେ ପରିଦର୍ଶନରେ ମଧ୍ୟ ଯାଆନ୍ତି ନାହିଁ । ରୋଗୀ ଅଧିକ ଅଚଳାବସ୍ଥା ହେଲେ ଗାଁ ଲୋକ ତା'କୁ ଦଉଡିଆ ଖଟରେ ବୋହି ବୋହି ସତର କିଲୋମିଟର ଦୂରରେ ଥିବା କାଶୀପୁର ଡାକ୍ତରଖାନାକୁ ଆଣିଥାନ୍ତି । ଯଦି କୌଣସି କାରଣରୁ କାଶୀପୁର ଆଣିନହେଲା ତେବେ ରୋଗୀର ମରିବାକୁ ହିଁ ଅପେକ୍ଷା ଥାଏ ସମସ୍ତଙ୍କର । ଏଠାରେ ସ୍ୱାସ୍ଥ୍ୟସେବାର ଏପରି ଅବହେଳା ବାସ୍ତବିକ କେହି ଆଖିରେ ନ ଦେଖିଲେ ବିଶ୍ୱାସ କରିବେନି ।

୧୯୯୨ ମସିହା ଫେବୃଆରୀ ମାସରେ ପାଞ୍ଚଖଣ୍ଡ ଗାଁ ଏକାଠି ମିଶି ସାଧାରଣ ବଣ୍ଟନ ବ୍ୟବସ୍ଥା ହାତକୁ ନେବାପାଇଁ ସ୍ଥିର କରି ପ୍ରତ୍ୟେକ ଗାଁରୁ ଏକ ହଜାର ଲେଖାଏଁ ଟଙ୍କା ସଂଗ୍ରହ କଲେ ଏବଂ ୧୯୯୭ ମସିହା ପର୍ଯ୍ୟନ୍ତ ଏହାକୁ ସୁରୁଖୁରୁରେ ଚଳାଉ ଥିଲେ । ମାତ୍ର ସରକାରଙ୍କ ତରଫରୁ ୧୯୯୭ମସିହାରେ ଏହି ବ୍ୟବସ୍ଥା ଗ୍ରାମପଞ୍ଚାୟତକୁ ହସ୍ତାନ୍ତର କରି ଦିଆଗଲା । ଅଧିକାଂଶ ଲୋକଙ୍କ ପାଖରେ କଞ୍ଚା ପଇସା ନ ଥିବାରୁ ସେମାନେ ସାହୁକାର ପାଖରୁ ଟଙ୍କା ଧାର ଆଣି ପଞ୍ଚାୟତରୁ ଦୁଇଟଙ୍କିଆ ଚାଉଳ କିଣି ସାହୁକାରକୁ ସେହି ଚାଉଳ ଚାରିଟଙ୍କାରେ ବିକି ଦେଉଛନ୍ତି । ଫଳରେ କେହି କେହି ପୁରା ଚାଉଳ ବିକି ଅଧା ଟଙ୍କା ନେଇ ଘରକୁ ଫେରୁଛନ୍ତି ତ କେହି କେହି ସାହୁକାର ଟଙ୍କାର ଅଧା ଚାଉଳ ଦେଇ ବାକି ଅଧା ଚାଉଳ ନିଜେ ନେଉଛନ୍ତି । ଗାଁରେ ଯଦିଓ ଅଙ୍ଗନୱାଡି କେନ୍ଦ୍ର ଅଛି ତଥାପି ସେଠାରେ ଛୁଆମାନଙ୍କୁ ନିୟମିତ ଖାଦ୍ୟ ଦିଆ ଯାଉନାହିଁ ।

ଗାଁ- ପଟେସ

ମୋଟ ଲୋକସଂଖ୍ୟା-୧୯୮

ପୁରୁଷ-୯୨

ମହିଳା-୧୦୬

ସାକ୍ଷରତା ହାର- ୨୨%

ପୁରୁଷ-୧୪.୫%

ମହିଳା-୭.୫%

ମୁଖ୍ୟ ଶସ୍ୟ- ମକା, ସୋରିଷ, ମାଣ୍ଡିଆ

ମୁଖ୍ୟ ନଦୀ- ପାଟିଆଶିଲ୍

ମୁଖ୍ୟ ପାହାଡ- ଧାନ୍ଘରମାଳି, କାରାଲା ମାଳି, ପାଟ୍ରାମାଳି, ଆମ୍ବିଳିଚୁଆଁ ଡଙ୍ଗର।

ଗାଁ ଲୋକଙ୍କ ବଞ୍ଚିବାର ଢାଞ୍ଚା ଦେଖିଲେ ଏବେ ବି ଆଶ୍ଚର୍ଯ୍ୟ ଲାଗେ, ବିଭିନ୍ନ ଉପାୟରେ ସେମାନେ ଶୋଷଣର ଶିକାର ହେଉଛନ୍ତି। ଗାଁରେ ସମୁଦାୟ ୫୩ଟି ପରିବାରରୁ ୮ପରିବାରର (୬ଘର ଆଦିବସୀ ଏବଂ ୨ଘର ହରିଜନ) କେବଳ ପଟ୍ଟା ଜମି ଅଛି। ଅନ୍ୟମାନେ କେବଳ ଡଙ୍ଗର ଚାଷ କରି ବଞ୍ଚୁଛନ୍ତି। ଡଙ୍ଗର ଜମିକୁ ଚାଷ କରିବାର ପରିମାଣ ଚାଷୀର ଶାରୀରିକ କ୍ଷମତା ଉପରେ ନିର୍ଭର କରେ। ଯିଏ ଯେତେ ଡଙ୍ଗର ମାରି(ସଫାକରି) ପାରିଲା ସିଏ ସେତେ ଅଞ୍ଚଳରେ ଚାଷ କରିବ। ଯେତେ ଜଣଙ୍କର ପଟ୍ଟା ଜମି ଅଛି ସେଥିରୁ ପ୍ରତ୍ୟେକଙ୍କର ଅଧ ଏକର ଲେଖାଏଁ ଜମିରେ ପାଣି ମାଡୁଛି। ସେହି ପାଣି ମାଡୁଥିବା ଜମିରେ ସେମାନେ ବର୍ଷାମାସରେ କେବଳ ମକା ଓ ସୋରିଷ ଚାଷ କରନ୍ତି। ଖରାଟିଆ ଚାଷ କଥା ଶୁଣିଲେ ଆହୁରି ଆଶ୍ଚର୍ଯ୍ୟ ଲାଗେ। ବର୍ଷା ମାସରେ ଡଙ୍ଗର ଚାଷ କରି ଯେଉଁ ମାଣ୍ଡିଆ କୋଶଳା ଆମଦାନୀ କରନ୍ତି ସେତିକି ବର୍ଷସାରା ଖାଦିକୁ ଅଣ୍ଟେନାହିଁ। ତେଣୁ ସମସ୍ତେ ବାଧ୍ୟ ହୋଇ ସାହୁକାର ପାଖରୁ ଋଣ ଆଣିଥାନ୍ତି। ଭୋକ ବିକଳରେ ସେତେବେଳେ ସେମାନେ ସାହୁକାରର ସମସ୍ତ ସର୍ତ୍ତରେ ରାଜି ହେବାକୁ ଏକ ପ୍ରକାର ବାଧ୍ୟ ହୋଇ ପଡନ୍ତି। ମାତ୍ର ଦୁଇକିଲୋ ଚାଉଳ ଆଣିଲେ ଚାରିମାସ ପରେ ସେମାନଙ୍କୁ ସେହି ଚାଉଳର ଚାରିଗୁଣ ଅଧିକ ମୂଲ୍ୟର ଶସ୍ୟ ଫେରାଇବାକୁ ପଡେ। ଦୁଇକିଲୋ ଚାଉଳ ବାବଦକୁ ଚାରିକିଲୋ ଝୁଡୁଙ୍ଗ କିମ୍ବା କାନ୍ଦୁଲ ହିସାବରେ ଯାହାର ଯେତେ ଝୁଡୁଙ୍ଗ, କାନ୍ଦୁଲ ହୁଏ ସେମାନେ ସେତେକ ଦେଇ ଦେଲାପରେ ପୁଣି ସେହି ପୂର୍ବାବସ୍ଥାର ପୁନରାବୃତ୍ତି ହୁଏ।

କେବଳ ଏତିକି ନୁହେଁ, ଯେଉଁମାନଙ୍କର ଜଲସେଚିତ ଜମି ଅଛି ସେମାନଙ୍କୁ ଏହି ଋଣଚୁକ୍ତି ବାବଦରେ ନିଜ ଜମିକୁ ଖରାଟିଆ ଫସଲ ପାଇଁ ବନ୍ଧା ଦେବାକୁ ପଡେ। ସେମାନେ କୌଣସି ଶସ୍ୟ ଫେରାନ୍ତି ନାହିଁ, ମାତ୍ର ସେମାନଙ୍କ ଜମିରେ ଖରାଦିନ ଫସଲଟା ସାହୁକାର ନିଜେ କରେ। ନିଜେ ତ କରେନି, କେବଳ ହଳ ଏବଂ ବିହନ ଯାହା ସାହୁକାରର। ବାକି ଜମି ହଳ କରିବାଠାରୁ ଆରମ୍ଭ କରି ଜମିରେ ପାଣି ମଡାଇବା, ବିହନ ବୁଣିବା, ହୁଡା ଦେବା, କୋଡ଼ା ଖୁସା କରିବା ଏବଂ ଶେଷରେ ଶସ୍ୟ ଅମଳ କରି ସବୁ ଶସ୍ୟ ସାହୁକାର ଘରେ ପହଞ୍ଚାଇବା ପର୍ଯ୍ୟନ୍ତ ସବୁ କାମ କରିବାକୁ ପଡେ ଏଇ ବନ୍ଧା ଦେଇଥିବା ସରଳ ଲୋକମାନଙ୍କୁ। ଏତେ ପରିଶ୍ରମ ବାବଦରେ ସେମାନେ ପାଆନ୍ତି ମାତ୍ର ୧୦୦ଟଙ୍କା, ବେଳେ ବେଳେ ୫୦ଟଙ୍କା ମଧ୍ୟ। ଏତେ କଷ୍ଟରେ ବଞ୍ଚିବା ସତ୍ତ୍ୱେ ସେମାନଙ୍କୁ ଋଣ ଆଣିବା ବିଷୟରେ ପଚାରିଲେ ସେମାନେ ଲାଜରେ ମନା କରିଦିଅନ୍ତି। କେହି କେହି ଦୋଷୀ ଅନୁଭବ କରି ଚୁପ ରହିଯାନ୍ତି। ଆଉ କେହି କେହି କଷ୍ଟରେ କହନ୍ତି ଯେତେ ଯାହା କଲେ ମିଶା ବରଷା ମାସରେ ଆମେ ହଇରାଣ ହେଲାବେଳେ ସେଇ ସାହୁକାର ତ ଆମକେ ଖାଦି ମିଶା ଦେଉଛନ୍। ସେଥିରେ ଲାଗି ସେ ଯାହା କହିଲେ ମିଶା ଆମକେ୍ କରବାକେ ପଡିବ। ଆମର ପାଇଁ ଆର କିଛି ବାଟ ନାଇଁନି।

କବାଟ କୋଣରେ ଚାହିଁ ରହିବା ପରବର୍ତ୍ତେ ଆଜି ଗାଁର ସବୁ ମହିଳା ଏକାଠି ହୋଇ ନିଜେ ନିଜେ ଗାଁର ସମସ୍ତ ସମସ୍ୟା ବିଷୟରେ ଆଲୋଚନା କରୁଛନ୍ତି। ଏଠାରେ ହୋଇଥିବା ପଞ୍ଚାୟତ ତଥା ବ୍ଲକ୍ ସ୍ତରୀୟ ମହିଳା ସଂଗଠନରେ ସେମାନେ ସକ୍ରିୟ ସଭ୍ୟା ଭାବରେ କାମ କରୁଛନ୍ତି। ସେମାନେ ଯାହା କହନ୍ତି ' ଆମ ସଂସାରକୁ ଉଜାଡି ଦେବାରେ ମଦର ଭୂମିକା ବେଶୀ। ବେଳ ଥିଲା, ଘର ଚାରିପଟେ ମହୁଲ ଗଛମାନ ଥିଲା। ସେଥିରୁ ମହୁଲି ଓ ମାଣ୍ଡିଆରୁ ଲନ୍ଦା କରି ସମସ୍ତେ ପିଉଥିଲେ। ମାତ୍ର ଜଙ୍ଗଲ ନଷ୍ଟ ହେବାପରେ ପୁରୁଷମାନେ ଏବେ ବାହାରୁ ମଦ ପିଇ ଘରକୁ ଫେରୁଛନ୍ତି। ଏମିତିକି ଆମ୍ବ, ପଣସ, କଦଳୀ ତଥା ଅନ୍ୟ ପନି ପରିବାରୁ ମଧ୍ୟ ମଦ ତିଆରି କରି ପିଉଛନ୍ତି। ତାଙ୍କ ପେଟରୁ କାଟି କିଛି ବଞ୍ଚାଇଲେ ମଧ୍ୟ ତାହା ପ୍ରକାରାନ୍ତରେ ପୁଣି ମଦ ପିଆରେ ଚାଲିଯାଉଛି। ଜମିର କମାଣି ଓ ମଜୁରି ଟଙ୍କା ଉଭୟ ମଦ ପିଆରେ ଚାଲିଯିବା ପରେ ସେମାନଙ୍କ ପେଟ ସେହି ଫାଙ୍କା ହୋଇ ରହୁଛି। ଗାଁରେ ମଦ ବନ୍ଦ କଲେ ମଧ୍ୟ ଅନ୍ୟ ଗାଁରୁ ଏବଂ ହାଟ ବଜାରରୁ ପୁରୁଷମାନେ ମଦ ପିଇଦେଇ ଆସୁଛନ୍ତି। ଫେରିଲାବେଳେ ହାତରେ ସେ ପରିବା ବ୍ୟାଗ୍ ଆଉ ତେଲ ବୋତଲ ସେମିତି ଫାଙ୍କା ଆସୁଛି। ଏହାକୁ ପ୍ରତିରୋଧ କଲେ

ସେମାନେ ମାଡ ଗାଳି ଖାଆନ୍ତି । ଯେତେ ଯାହା କଲେ ମଧ୍ୟ ଏହି ମଦ ସମସ୍ୟାଟିକୁ ମୋଟେ ବନ୍ଦ କରିପାରୁନାହାନ୍ତି । ଅନେକ କୁହନ୍ତି "ଯେଉଁଦିନ ଆମ ଗାଁରେ ତଥା ଆମ ଅଞ୍ଚଳରେ ମଦ ବନ୍ଦ ହୋଇଯିବ ସେବେ ଆମେ ଏକ ନୂଆ ଜୀବନଟିଏ ନେଇ ବଞ୍ଚିପାରିବୁ ।"

ଚାରିଆଡେ ଅନ୍ୟାୟର ରାଜୁତି, ସାହୁକାରୀ ଶୋଷଣର ତାଡନା ସାଙ୍ଗକୁ ମଦର ନିଶା ସବୁ ମିଶି ତାଙ୍କ ସଂସାରକୁ ଉଜାଡି ଦେଉଛି । ସେମାନଙ୍କ ସରଳତାର ସୁଯୋଗ ଉଣ୍ଡି ପଶି ଆସୁଥିବା ବାହାରି ସାହୁକାରଙ୍କର ଯନ୍ତାରେ ପଡି ସେମାନଙ୍କ ଜୀବନ ଆଜି ଅସ୍ତ ବ୍ୟସ୍ତ ହୋଇପଡୁଛି । ସ୍କୁଲରେ ଶିକ୍ଷକ ନାହିଁ, ଡାକ୍ତରଖାନାରେ ଡାକ୍ତର ନାହାଁନ୍ତି, ପଞ୍ଚାୟତରେ ଗୋଡି ଚାଉଳ, ବଜାରରେ ପୁରୁଣା ପୁରୁଣା ସାହୁକାରଙ୍କ ଭିଡ । ଚାରିଆଡେ ସମସ୍ତେ ପାଟି ମେଲେଇ ବସିଛନ୍ତି । ତାଙ୍କର ସବୁ କମାଣି ଠକେଇରେ ଯାଉଛି । ଯାହାକିଛି ବଳୁଛି ମଦରେ ଯାଉଛି । ସଂଗଠିତ ହୋଇ ଆଗକୁ ବାହାରିଲେ ସେହି ଶୋଷକମାନଙ୍କ ମୁହଁକୁ ଦେଖୁଛନ୍ତି । ତାଙ୍କ ପେଟରେ ଭୋକ ଯେତେ ବଢୁଛି ସାହୁକାର ତା' ପେଟ ସେତେ ପୂରାଉଛି । ଏଥିପାଇଁ ସମସ୍ତେ ଏକାଠି ହୋଇ ଶୋଷଣ ବିରୁଦ୍ଧରେ ଲଢ଼ିବାପାଇଁ ଚେଷ୍ଟା ଚଳାଇଛନ୍ତି । ତଥାପି କୁହନ୍ତି, 'କେବେ ସେ ସଫଳତା ପାଇବୁ କହି ପାରିବୁ ନାହିଁ, କିନ୍ତୁ ମଦ ଓ ଶୋଷଣ ବନ୍ଦ ହେଲେ ଆମେ ନିଶ୍ଚୟ ଭଲରେ ବଞ୍ଚିପାରିବୁ' ।

ଅକ୍ଟୋବର - ୧୯୯୮



# ତଥାପି ମଜୁରି କୋଡିଏ ଟଙ୍କା

ନବରଙ୍ଗପୁର ଜିଲ୍ଲାର ତେନ୍ତୁଳିଖୁଣ୍ଟି ବ୍ଲକ୍ ଏକ ଦୁର୍ଗମ ବଣ ପାହାଡ ଘେରା ଅଞ୍ଚଳ । ଉକ୍ତ ବ୍ଲକର ତଗାପାଲି ଏକ ଆଦିବାସୀ ବହୁଳ ଗ୍ରାମ । ଗାଁଟି ବ୍ଲକଠାରୁ ୧୮ କି.ମି ଦୂରରେ ଅବସ୍ଥିତ । ସେହି ଗାଁର ଲୋକମାନେ ଶିକ୍ଷା ଏବଂ ସଚେତନତା ଅଭାବରୁ କୌଣସି ବିଷୟରେ କିଛି ଜାଣି ପାରନ୍ତି ନାହିଁ । ସରକାର ଏ ଅଞ୍ଚଳକୁ ବିକାଶାଭିମୁଖୀ କରିବା ପାଇଁ ଯେତେ ପ୍ରକାର ଯୋଜନା କଲେ ମଧ୍ୟ ଉକ୍ତ ଗ୍ରାମର ଲୋକମାନେ ସେଥିରୁ ବଞ୍ଚିତ ହୁଅନ୍ତି । ତଥାପି କେହି କୌଣସି ସରକାରୀ କର୍ମଚାରୀ ମାନଙ୍କର ଦୃଷ୍ଟି ଆକର୍ଷଣ କରିପାରନ୍ତି ନାହିଁ । ଫାଇଦା ଉଠାନ୍ତି ସେଇ ଟାଉଟର, ସାହୁକାର, ଠିକାଦାର ଶ୍ରେଣୀର ଲୋକମାନେ । ଆଦିବସୀମାନଙ୍କୁ ଶୋଷଣ କରି ସେମାନେ ଦିନକୁ ଦିନ ନିଜର ପୁଞ୍ଜି ବଢ଼େଇବାରେ ଲାଗିଛନ୍ତି ।

ଠକେଇ ଶୋଷଣର ମାତ୍ରା ଦିନକୁ ଦିନ ବଢ଼ିବାରୁ ଲୋକମାନଙ୍କ ମନରେ ଅନୁଶୋଚନାର ଛାପ ପଡିଲା । ନିଜ ଗାଁରେ ସ୍କୁଲ ନଥିବାରୁ ଗାଁ ଲୋକେ ମନ ଦୁଃଖ କରି ଭାବନ୍ତି ଯେ ସବୁଆଡେ ସ୍କୁଲ ଥିବା ଯୋଗୁଁ ପିଲାମନେ ପାଠ ପଢି ଚାଲାକ ହେଲେଣି, ଆଉ ଆମେ କେତେଦିନ ଏହିପରି ଭକୁଆ ହୋଇ ରହିବୁ । ପିଲାମାନେ ପାଠ ଦୁଇ ଅକ୍ଷର ପଢ଼ି ଚାଲାକ ହେବାପାଇଁ ସ୍କୁଲ ଦରକାର । ନିଜ ଗାଁରେ ଏକ ସ୍କୁଲ ଖୋଲିବାର ଆବଶ୍ୟକତା ଅନୁଭବ କରି ଗାଁ ଲୋକମାନେ ଗାଁରେ ବୈଠକ କରି ବାରମ୍ବାର ପଞ୍ଚାୟତ ଅଫିସ୍ ଏବଂ ବ୍ଲକ ଅଫିସ୍‌ରେ ଯାଇ ଜଣାଇଲେ । ୧୯୯୬ ମସିହା ନଭେମ୍ବର ମାସରେ ଓଭରସିଓର, ରାଜସ୍ୱ ନିରୀକ୍ଷକ ଏବଂ ଠିକାଦାରଙ୍କ ସହିତ ତଗାପାଲି ଗାଁରେ ସ୍କୁଲ ଘର ବାନ୍ଧିବା ପାଇଁ ସ୍ଥାନ ନିରୂପଣ କରିବା ଲାଗି ଆସିଥିଲେ । ଏବଂ କେଉଁ ସ୍ଥାନରେ ଘର ବନ୍ଧାଯିବ ସେଥିପାଇଁ ଗ୍ରାମ ଲୋକଙ୍କ ମତାମତ ନେଇଥିଲେ । ମାତ୍ର ଏହି କାମ ପାଇଁ କେତେ ଟଙ୍କା ଆସିଛି, କିଏ କରିବ ସେ ବିଷୟରେ ଗାଁ ଲୋକଙ୍କୁ କିଛି ଜଣାଇ ନଥିଲେ । ସ୍ଥାନ ନିରୂପଣ କରିବା ପରେ କାମଟିକୁ ତଗାପାଲିଠାରୁ ୫ କି.ମି

ଦୂର ବେଜୁଗୁଡା ଗାଁର ନିରଞ୍ଜନ ନାୟକ ନାମକ ଜଣେ ଠିକାଦାର ଆଣି କରୁଥିଲା । କିନ୍ତୁ ତଗାପାଲି ଗ୍ରାମର ଲୋକଙ୍କୁ ସେହି କାମରେ ନ ମିଶାଇ ବେଜୁଗୁଡା ଗ୍ରାମର ଲୋକଙ୍କୁ ଆଣି ସ୍କୁଲଘର କାମ କରାଉଥିଲା । ତଗାପାଲି ଗାଁର ଲୋକମାନେ ଏଥିପାଇଁ ପ୍ରତିବାଦ କରବାରୁ ଠିକାଦାର ସେମାନଙ୍କୁ ୧୨ଟଙ୍କା ମଜୁରି ପାଇବା କଥା ଶୁଣି ନୀରବ ରହିଥିଲେ । କିଛିଦିନ କାମ କରିବା ପରେ ଠିକାଦାର ଗାଁ ଲୋକମାନଙ୍କୁ ଘର କରିବାଲାଗି ଇଟା ଗଢ଼ିବା ପାଇଁ କହିଥିଲେ । କିନ୍ତୁ ଗାଁ ଲୋକମାନେ ଇଟା ଗଢ଼ିବା ପାଇଁ ମନା କରିଦେଇଥିଲେ ।

୧୯୯୭ ମସିହା ଫେବୃୟାରୀ ମାସ ୧୦ତାରିଖରେ ଉକ୍ତ ସ୍କୁଲ କାମରେ ଗ୍ରାମର ଲୋକମାନଙ୍କୁ କାମ ନମିଳୁଥିବା ବିଷୟରେ ମଙ୍ଗଳଦେଈ ଜାନୀ ନାମକ ଜଣେ ମା' ଅଗ୍ରଗାମୀ ଅଫିସରେ ଆସି ଜଣାଇଥିଲେ । ଏହି ଯୋଜନାରେ ଗାଁର ଲୋକମାନେ କିପରି କାମ ପାଇବେ ଏବଂ ୩୦ଟଙ୍କା କୁଲି ମଜୁରି ପାଇବେ ସେ ବିଷୟରେ ଅଫିସ୍ ତରଫରୁ ବୁଝାଇ ଦିଆଯାଇଥିଲା । ମଙ୍ଗଳଦେଈ ଆସି ନିଜ ଗାଁରେ ଏକ ବୈଠକ କରି ଗାଁ ଲୋକଙ୍କୁ ସବୁକଥା ବୁଝାଇ କହିଥିଲେ । ମଙ୍ଗଳଦେଇର ନିଜ ଗ୍ରାମର ଲୋକଙ୍କୁ କାମ ନମିଳିବା, ବାହାର ଗାଁ ଲୋକଙ୍କୁ କାମ ଦିଆଯିବା, କୁଲି ମଜୁରି ୧୨ଟଙ୍କା ଦିଆଯିବା ବିଷୟରେ ଲେଖି ବି.ଡି.ଓ.ଙ୍କୁ ଜଣାଇବା କଥାରେ ଗାଁର ଅନ୍ୟମାନେ ରାଜି ହୋଇଥିଲେ । ଫେବୃୟାରୀ ୧୨ତାରିଖ ଦିନ ଗାଁର ୧୫ଜଣ ମା' ରାତି ସ୍କୁଲର ଦୁଇ ଜଣ ପିଲାଙ୍କୁ ସାଙ୍ଗରେ ଧରି ବ୍ଲକ ଅଫିସ୍‌କୁ ଯାଇ ବି.ଡି.ଓ.ଙ୍କୁ ଭେଟିଲେ । ବି.ଡି.ଓ. ମା'ମାନଙ୍କର ଆସିବାର କାରଣ ବିଷୟରେ ପଚାରିବାରୁ ମା'ମାନେ ଗାଁର ସ୍କୁଲ କାମ ବିଷୟରେ କହିଥିଲେ ।

'ଆଜ୍ଞା, ଆମେତ୍ ଆଦିବାସୀ ଲୋକ୍, ଆଦିବାସୀର କାଜେ ତ ସରକାର ଦିଆନି କଲାଚେ କୁଲି ମଜୁରୀ ୩୦ଟଙ୍କା । ଆମ୍‌କେ ଠିକାଦାର ୧୨ଟଙ୍କା ଦେଲେ ସରି ଆମେ କେନ୍ତା କରି ବଞ୍ଚିବୁ? କୁନ୍‌ଟାରେ ଆମେ ନୁନ୍ ମରିଚ୍ ଘେନ୍‌ବୁ, କୁନ୍‌ଟାରେ ଆମେ ଚାଉଲ ଘେନ୍‌ବୁ, ୧୨ଟଙ୍କା ଆମ୍‌କେ ଖେଟ୍‌ସି କି? ୧୨ଟଙ୍କା ମଜୁରୀ ପାଇ ଆମେ ଭୁକ୍‌ରେ ଭୁକ୍‌ରେ ଖଟିବୁ କି?'

ମା' ମାନେ କହିଥିଲେ ଆମ ଗାଁରେ ଏକ ସ୍କୁଲ ଘର ଆସିଛି । ସେ କାମକୁ ବେଜୁଗୁଡାର ଠିକାଦାର ନେଇ କରୁଛି । ଆମ ଗାଁର ଲୋକଙ୍କୁ କାମ ନ ଦେଇ ବେଜୁଗୁଡାର ଲୋକଙ୍କୁ ଆଣି କାମ କରାଉଛି । ଆମେ କାମ କରିବା ପାଇଁ କହିଲେ ଆମକୁ ୧୨ଟଙ୍କା ମଜୁରି ଦେବ ବୋଲି କହୁଛି । ୧୨ଟଙ୍କା ମଜୁରି ପାଇ ଆମେ କିପରି ଚଳିବୁ କହ? ମା'ମାନଙ୍କର ଏହି କଥା ଶୁଣି ବି.ଡି.ଓ. ଆଶ୍ଚର୍ଯ୍ୟ ହୋଇଯାଇଥିଲେ ଏବଂ

କହିଥିଲେ ତମେମାନେ ଯାଇ ଠିକାଦାରଙ୍କୁ କୁହ ଯେ ବାହାର ଗାଁର ଲୋକମାନେ କାମ ନ କରି ସେହି ଗାଁର ଲୋକମାନେ ହିଁ କାମ କରିବେ ଓ ୩୦ଟଙ୍କା ମଜୁରି ପାଇବେ । ଯଦି ଠିକାଦାର ତମର କଥା ନଶୁଣେ ତେବେ ତମେମାନେ ମିଶି କାମ ବନ୍ଦ କରିଦିଅ । ଏହାପରେ ଯଦି ଠିକାଦାର କୌଣସି ଗଣ୍ଡଗୋଳ କରେ ତା'ହେଲେ ତମେମାନେ ପୁଣି ଆସି ମୋତେ ଜଣାଇବ ।

ବି.ଡି.ଓ.ଙ୍କ ଠାରୁ ଏହି କଥା ଶୁଣି ମା'ମାନେ ଆସି ଗାଁର ଲୋକଙ୍କୁ ଜଣାଇଲେ । ସେହି ଫେବୃୟାରୀ ୧୭ତାରିଖରେ ଠିକାଦାର ବେଜୁଗୁଡାର ଲୋକଙ୍କୁ ସାଙ୍ଗରେ ଧରିଆସିଲେ କାମ କରିବା ପାଇଁ । କାମ କରିବା ସମୟରେ ତଗାପାଲିର ମା'ମାନେ ଏହାର ପ୍ରତିବାଦ କରି କହିଥିଲେ ଯେ, "ଆମ ଗାଁର କାମ ଆମେମାନେ ହିଁ କରିବୁ । ବାହାର ଗାଁର ଲୋକମାନଙ୍କୁ କାମ କରାଇ ଦେବୁନାହିଁ ।"

ଏହି କାମରେ ଗାଁ ଲୋକମାନଙ୍କୁ ୩୦ଟଙ୍କା ମଜୁରି ଦେବାକୁ ବାଧ୍ୟ । ତଥାପି ସେମାନଙ୍କ କଥା ଠିକାଦାର ନ ଶୁଣି ବେଜୁଗୁଡା ଲୋକଙ୍କୁ ନେଇ କାମ ଆରମ୍ଭ କରିବାରୁ ମା'ମାନେ ସେମାନଙ୍କର ସମସ୍ତ ଜିନିଷ(କୋଦାଳ, ଶାବଳ, ଝୁଡି) ଛଡାଇ ଆଣି ଗାଁରେ ରଖିଥିଲେ । ଏବଂ ଠିକାଦାର ସହିତ ବହୁତ ଗଣ୍ଡଗୋଳ ଲଗାଇଥିଲେ । ତାହା ପରେ ପ୍ରାୟ ଏକମାସ କାମ ବନ୍ଦ ହୋଇଯାଇଥିଲା । ସେଥିମଧ୍ୟରେ ଠିକାଦାର ସବୁକଥା ଜାଣିପାରି ଏବଂ ମା'ମାନଙ୍କର ଏକତା ମନୋଭାବ ଦେଖି ଦିନେ ଆସି ଗାଁର ମା'ମାନଙ୍କ ସହିତ କଥାବାର୍ତ୍ତା ହୋଇ କୋଡିଏ ଟଙ୍କା ମଜୁରି ଦେଇ କାମ ଆରମ୍ଭ କରିଥିଲା । ଏହି କାମରେ ଯଦିଓ ଗ୍ରାମର ପ୍ରତ୍ୟେକ ପରିବାରରୁ ଲୋକମାନେ କାମ ପାଇଥିଲେ ତଥାପି କୋଡିଏ ଟଙ୍କା ମଜୁରିରେ ହିଁ ତିନି ମାସ କାମ କରିଥିଲେ । ଏତେ ସଂଘର୍ଷ କରିବା ସତ୍ତ୍ୱେ ସେମାନେ ଗରିବ ହୋଇଥିବାରୁ କାମକୁ ହାତ ଛଡା ନ କରି କୋଡିଏ ଟଙ୍କା ମଜୁରିରେ କାମ କରିବା ପାଇଁ ଏକ ପ୍ରକାର ବାଧ୍ୟରେ ରାଜି ହୋଇ ଯାଇଥିଲେ ।

ଠିକାଦାରମାନେ ବର୍ତ୍ତମାନ ପ୍ରଶାସନକୁ ଏକ ପ୍ରକାର ହାତ ମୁଠାରେ ବାନ୍ଧି ରଖିଛନ୍ତି କହିଲେ ଭୁଲ ହେବ ନାହିଁ । ତାହା ହୋଇନଥିଲେ ବି.ଡି.ଓ. କହିବା ପରେ ବି ଲୋକଙ୍କୁ ୩୦ଟଙ୍କା ଜାଗାରେ ୨୦ଟଙ୍କା ମଜୁରି ଦିଆଯାଇ ନ ଥାଆନ୍ତା । ଏହି ଅବସ୍ଥା ଅନେକ ଆଦିବାସୀ ଜିଲ୍ଲାମାନଙ୍କରେ ଘଟୁଥିବାର ନଜରକୁ ଆସୁଛି ।

ଏହି ଅବସ୍ଥା ଲାଗିରହିଲେ ଲୋକମାନେ କାହାକୁ ଭରସା କରି ତାଙ୍କର ନ୍ୟାର୍ଯ୍ୟ ଅଧିକାର ସାବ୍ୟସ୍ତ କରିବେ ଏହା ହିଁ ଆଜି ଆଦିବାସୀମାନଙ୍କ ପାଖରେ ବିରାଟ ପ୍ରଶ୍ନ ।

ଅକ୍ଟୋବର - ୧୯୯୮

# ଛଡ଼୍ଣୀ ବନ୍ଧା ଛିଡିଲା

ଦଶବର୍ଷ ତଳକୁ ଯାଇ ଟିକିଲି ପାଦର ଗାଁକୁ ଦେଖିଲେ ଜଣାଯିବ ସେ ଗାଁର ସମସ୍ତେ ଅନ୍ୟ ଗାଁର ମହାଜନ ପାଖରେ ଗୋତି ରହି ପେଟ ପୋଷୁଥିଲେ । କେବଳ ସେତିକି ନୁହେଁ ଦୂର ଗାଁରେ ଯେଉଁମାନେ ଗୋତି ରହୁଥିଲେ ଯିବା ଆସିବାର ଅସୁବିଧା ଯୋଗୁଁ ନିଜ ସ୍ତ୍ରୀକୁ ନେଇ ମଧ୍ୟ ଗୋତି ରଖୁଥିଲେ । ଗାଁଟି ମହୁଲପାଟଣା ପଞ୍ଚାୟତ ମୁଖ୍ୟ କାର୍ଯ୍ୟାଳୟଠାରୁ ୭ କି.ମି. ଭିତରକୁ ରହିଛି ଯାହା କଳାହାଣ୍ଡି ଜିଲ୍ଲାର ଥୁଆମୂଳ ରାମପୁର ବ୍ଲକ ଅନ୍ତର୍ଗତ । ବର୍ତ୍ତମାନ ଗାଁଟିରେ ସମୁଦାୟ ୩୮ଟି ଆଦିବାସୀ ଓ ୧୨ଟି ହରିଜନ ଘର ଅଛନ୍ତି । ଗୋତି ଥିଲା ବେଳେ ବର୍ଷ ଶେଷରେ ମହାଜନଠାରୁ  ଜଣକା ତିନିଟଙ୍କା ଲେଖାଏଁ ମିଳୁଥିଲା । ଏହାଛଡା ବର୍ଷସାରା ଖାଦି ପିଦି ମଧ୍ୟ ମହାଜନ ତରଫରୁ ମିଳୁଥିଲା । ଯେତେବେଳେ ସେ ଅଞ୍ଚଳରେ ଇନ୍ଦ୍ରାବତୀ ପ୍ରକଳ୍ପ କାର୍ଯ୍ୟ ଆରମ୍ଭ ହେଲା, ସରକାରଙ୍କ ତରଫରୁ ଗୋତି ପ୍ରଥା ବନ୍ଦ ପାଇଁ ଚାପ ସୃଷ୍ଟି ହେଲା । ସେତେବେଳେ ଏ ଇନ୍ଦ୍ରାବତୀ ପ୍ରକଳ୍ପ କାର୍ଯ୍ୟ ମାଧ୍ୟମରେ ଲୋକମାନେ କୁଲିଭୁତି କରି ଚଳି ଶିଖିଲେ । ବର୍ଷର ସବୁଦିନେ କୁଲି ମିଳୁ ନ ଥିବାରୁ ତଥା ବର୍ଷାଦିନ ମାନଙ୍କରେ ଖାଦ୍ୟାଭାବ ହେତୁ ଟିକିଲିପଦର ଗାଁ ଲୋକମାନେ ସାହୁକାର ପାଖରୁ ଋଣ ଆଣିବାକୁ ବାଧ୍ୟ ହୋଇଥାନ୍ତି । ଏ ଋଣ ଆଣିବାର ବର୍ଷକ ପରେ ଏକ ମାଣ  ଧାନ ବା ମାଣ୍ଡିଆକୁ ଯେଉଁଠି ଦୁଇ ମାଣ ଶସ୍ୟ ମିଶାଇ ଋଣ ପରିଶୋଧ କରିବାକୁ ପଡିଥାଏ । ଯଦି ପାଚି ଭଲ ନ ହେଲା ତେବେ କୌଣସି ଉପାୟ ନପାଇ ଲୋକମାନେ ନିଜ ନିଜ ଚାଷ ମଧ୍ୟ ଉକ୍ତ ଋଣ ଚୁକ୍ତି ବାବଦକୁ ଛିଡଣୀ ବନ୍ଧା ସୂତ୍ରରେ ବନ୍ଧକ ଦେଇଥାନ୍ତି ।

ଛିଡଣୀ ବନ୍ଧା ନିୟମ ଅନୁଯାୟୀ, ମନେକର ଯଦି ଜଣେ ଗୋଟେ ଏକର ଚାଷ ଜମି ପାଞ୍ଚ ହଜାର ଟଙ୍କା ନେଇ ରଖିଲା ତେବେ ତାହା ପ୍ରତି ବର୍ଷ ଫସଲ ବାବଦକୁ ୫ଶହ ଟଙ୍କା ଲେଖାଏଁ ଛିଡି ଛିଡି ୧୦ବର୍ଷରେ ଜମିଟି ମୁକୁଳି ଯିବା କଥା । ଜମିର

ପରିମାଣ ଅନୁସାରେ ବର୍ଷକୁ କେତେ ଟଙ୍କା ଛିଡିବ ତାହା ସାହୁକାର ନିଷ୍ପତ୍ତି ନେଇଥାଏ । ଟିକିଲି ପଦର ଗ୍ରାମବାସୀମାନେ ଏହି ଭଳି ୧୫ବର୍ଷ ପୂର୍ବରୁ ସେମାନଙ୍କ ଜମି ସବୁ ବନ୍ଧା ଦେଇଥିଲେ ମଧ୍ୟ କେତେଜଣଙ୍କର ତାହା ଆଜି ପର୍ଯ୍ୟନ୍ତ ମୁକୁଳି ପାରିନଥିଲା । କାରଣ ସେମାନଙ୍କ ମଧ୍ୟରୁ କେତେ ଜଣ ନିଜର ଆବଶ୍ୟକତା ଦୃଷ୍ଟିରୁ ମଝିରେ ମଝିରେ ଯାଇ ମହାଜନଠାରୁ ପଇସାପତ୍ର ଆଣିଥାନ୍ତି । କେହି କେହି ବାହାଘର ପାଇଁ, ରୋଗ ବେମାର ପାଇଁ, ଗୁରୁ ଗୁଣିଆ ପାଇଁ ତଥା ପର୍ବ ପର୍ବାଣୀ ପାଇଁ ଜମି ବନ୍ଧାଦେଇ ଋଣ ଆଣିଥାନ୍ତି । ବାକି ଯେତେ ଜଣ ମଝିରେ ମଝିରେ ପଇସା ନ ଆଣନ୍ତି ସେମାନଙ୍କୁ ଜମି ବନ୍ଧା ଧରିଥିବା ସାହୁକାରମାନେ ମଦ ଦେଇ ଜମି ମୁକୁଳାଇବାର ସୁଯୋଗ ଦିଅନ୍ତି ନାହିଁ ।

୧୯୯୪ ମସିହାରେ 'ଅଗ୍ରଗାମୀ' ଦ୍ୱାରା ଏହି ଗାଁରେ ରାତି ସ୍କୁଲ, କୁଟୁମ୍ବ ପାଣ୍ଠି, ସ୍ୱାସ୍ଥ୍ୟସେବା ତଥା ଅର୍ଥନୈତିକ କାର୍ଯ୍ୟକ୍ରମ ଆରମ୍ଭ ହେଲା । ବିଶେଷକରି ଗାଁ ଲୋକଙ୍କର ଖାଦ୍ୟାଭାବ ଦୂରକରିବା ଉପରେ ଗୁରୁତ୍ୱ ଦିଆଗଲା । ଖାଦ୍ୟାଭାବକୁ ଆଖିଆଗରେ ରଖି ନିକଟସ୍ଥ ଯଡାଶିଲ ଝରଣାରେ ଏକ ଚେକ୍ ଡ୍ୟାମ ବାନ୍ଧିବାର ଯୋଜନା କରାଗଲା । ଚେକ୍‌ଡ୍ୟାମ୍ ହେଲେ ଗାଁ ଲୋକେ ଚାଷ ବ୍ୟତୀତ ପନିପରିବା କରିବେ ବୋଲି କହିଥିଲେ । ଏହି ବନ୍ଧ ବାନ୍ଧିଲେ କେତେ ଜଣଙ୍କର ଜମିରେ ପାଣିମାଡିବ ସେବିଷୟରେ ସର୍ବେକ୍ଷଣ କରାଯିବାରୁ ଜଣାପଡିଲା, ଗାଁର ଅଧାଲୋକଙ୍କର ଜମି ପୋଡାପଦର ଗାଁର ହରିଜନମାନଙ୍କ ପାଖରେ ବନ୍ଧାଅଛି । ଜମିର ପରିମାଣ ଅନୁସାରେ କାହାର ୨୦ଟଙ୍କା, ୪୦ଟଙ୍କା କଟୁଛି ତ କାହାର ୬୦ଟଙ୍କା ଓ ଆଉ କାହାର ୨୦୦ଟଙ୍କା କଟୁଛି/ଛିଡୁଛି । ମାତ୍ର ଆଜି ପର୍ଯ୍ୟନ୍ତ କାହାର ଜମି ଛିଡି ପାରୁନଥିଲା । ତେଣୁ ସମସ୍ତେ ମିଶି ଚିନ୍ତା କଲେ ଜମି ମୁକୁଳାଇବା ପାଇଁ ।

ଗାଁ- ଟିକିଲି ପଦର

ମୋଟ ଲୋକସଂଖ୍ୟା-୨୦୨

ପୁରୁଷ-୯୭

ମହିଳା-୧୦୫

ମୁଖ୍ୟ ଶସ୍ୟ-ଧାନ, ମାଣ୍ଡିଆ, କାଙ୍ଗୁ

ମୁଖ୍ୟ ପାହାଡ-ଟିକିଲି ମାଳି

ଚିରସ୍ରୋତା ଝରଣା-ପାଣିଚିଡା ଝରଣା

୧୯୯୬ ମସିହାରେ ଟିକିଲିପଦର ଗାଁର ମହିଳାମାନେ ସଂଗଠିତ ହୋଇ ଏକ

ସଞ୍ଚୟ ଦଳ ଗଠନ କଲେ । ସଞ୍ଚୟଦଳରେ ସର୍ବମୋଟ ୨୦ଜଣ ସଭ୍ୟା ଅଛନ୍ତି । ସେମାନେ ଦଳ ପାଇଁ ମାସିକ ଚାନ୍ଦା ଆଦାୟ କରୁଛନ୍ତି । ସଞ୍ଚୟ ଦଳର ଏକ ମିଳିତ ଜମା ବହି ନିକଟସ୍ଥ ମହୁଲପାଟଣା ଆଞ୍ଚଳିକ ଗ୍ରାମ୍ୟବ୍ୟାଙ୍କରେ ଖୋଲାଯାଇଛି । ତା'ପରେ ସମସ୍ତେ ମିଶି ଚିନ୍ତାକରି ନିଷ୍ପତ୍ତି ନେଲେ ଯେ ସଞ୍ଚୟ ଦଳ ମାଧ୍ୟମରେ ଆମେ ଜମି ମୁକୁଳାଇ ପାରିବା । ସମସ୍ତେ ମିଶି ଅଗ୍ରଗାମୀକୁ ଏକ ଦରଖାସ୍ତ ଦେଲେ । ଏହି ଜମି ମୁକୁଳାଇବା ପାଇଁ ଅଗ୍ରଗାମୀ ତରଫରୁ ୨୧,୮୦୦ଟଙ୍କା ମିଳିତ ଜମାବହି ମାଧ୍ୟମରେ ଅନୁଦାନ ଦିଆଗଲା । ଉକ୍ତ ଟଙ୍କା ସଞ୍ଚୟଦଳ ମହିଳାମାନେ ଜମାବହିରୁ ଉଠାଇ ଜମି ବନ୍ଧା ଦେଇଥିବା ବ୍ୟକ୍ତିମାନଙ୍କୁ ଦେଇ ମହାଜନଠାରୁ ଜମି ମୁକୁଳାଇଲେ । ଏତିକିରେ କଥା ସରିଲାନାହିଁ, ଗୋଟିଏ ପଟରେ ଅଗ୍ରଗାମୀ ଅନୁଦାନ ଟଙ୍କାକୁ ସଞ୍ଚୟ ଦଳକୁ ଫେରାଇବା ଏବଂ ଅନ୍ୟପଟରେ ସଞ୍ଚୟର ନୂଆ ବୋଝକୁ ସମାନ୍ତରାଳ ଭାବେ ତୁଲାଇବାପାଇଁ ସମସ୍ତଙ୍କର ସହଯୋଗ ଏକାନ୍ତ ଜରୁରୀ ହୋଇପଡିଲା । ନିଜ ନିଜର ଜମିକୁ ଫେରାଇ ଆଣିବା ପାଇଁ ଗୋଟିଏ ଛୋଟିଆ ସର୍ତ୍ତରେ ବାନ୍ଧିହୋଇ ପଡିଲେ । ଗାଁର ସମସ୍ତେ ବସି ନିଷ୍ପତ୍ତି ନେଲେ ଯେ ସେ ଜମିରୁ ଯେତିକି ଫସଲ ବାହାରିବ ସେଥିରୁ ଅଧା ସେମାନେ ସଞ୍ଚୟ ଦଳକୁ ଶୁଝିବେ । ବାକି ଅଧା ଘରେ ଖାଇବାକୁ ରଖିବେ ।

ଏହାଦ୍ୱାରା ସଞ୍ଚୟ ଦଳ ଅଧିକ ମଜବୁତ ହେବା ସଂଗେ ସଂଗେ ବ୍ୟବସାୟ କରି ନିଜର ଅତ୍ୟାବଶ୍ୟକୀୟ ଜିନିଷ କିଣାବିକା କରି ଶୋଷଣକୁ ହଟାଇବାର ଯୋଜନା କରି ହେବ । ଅନ୍ୟ ପକ୍ଷରେ ସେ ଜମିରେ ଯେତିକି ଫସଲ ହେଉଥିଲା ବର୍ତ୍ତମାନ ସେ ସବୁ ଫସଲ ଗାଁ ଲୋକଙ୍କର ହେବ । ଏଥିପାଇଁ ସମସ୍ତେ ଏକପ୍ରକାର ଖୁସିହୋଇ ଜମିରେ ଅଧିକରୁ ଅଧିକ ଫସଲ ଅମଳ କରି ଲାଭବାନ ହେବାପାଇଁ ଚେଷ୍ଟା କରୁଛନ୍ତି । ଗୋଟିଏ ପଟରେ ପରିବାର ପ୍ରତିପୋଷଣ, ଅନ୍ୟପଟରେ ଅନୁଦାନ ପଇସାକୁ ଶୁଝିବାର ଆଶା ନେଇ ଗାଁ ଲୋକମାନେ ଧୀରେ ଧୀରେ ଆଗଉଛନ୍ତି । ଏଥିସହିତ ଋଣଭାରରୁ ମୁକୁଳି ମହିଳାମାନେ ସଞ୍ଚୟଦଳ ମାଧ୍ୟମରେ ନିଜ ଗୋଡରେ ଠିଆ ହେବାର ଯୋଜନା କରିଛନ୍ତି । ମୁକ୍ତ ଜୀବନଟିଏ ପାଇବା ପାଇଁ ସେମାନେ ନୂଆ ବାଟ ଖୋଜିଛନ୍ତି । ଅଗ୍ରଗାମୀ ସେମାନଙ୍କୁ ଆଶା ଭରସା ଦେଇଛି ବୋଲି କହୁଛନ୍ତି । ଭବିଷ୍ୟତରେ ଠକେଇ ଶୋଷଣକୁ ଆଉ ପ୍ରଶୟ ଦେବେ ନାହିଁ ବୋଲି ସମସ୍ତେ ଦୃଢ଼ ଭାବରେ ଅଙ୍ଗୀକାରବଦ୍ଧ । ଗୋଡିସାହି ଟିକିଲିପଦର ଆଜି ସ୍ୱାଧୀନତାର ଧ୍ୱଜା ଉଡାଇ ମୁକ୍ତଭାବରେ ବଞ୍ଚିବାପାଇଁ ସମସ୍ତ ଆଦିବାସୀ ପରିବାରକୁ ଆହ୍ୱାନ ଦେଉଛି ।

| କ୍ର. ନଂ | ଜମିବନ୍ଧାଦେଇଥିବା ବ୍ୟକ୍ତିଙ୍କ ନାମ | ଜମିର ପରିମାଣ | ଜମି ମୁକୁଳାଇବା ପାଇଁ ଆବଶ୍ୟକୀୟ ଟଙ୍କା | ବନ୍ଧାଧରିଥିବା ବ୍ୟକ୍ତିଙ୍କ ନାମ | ଗ୍ରାମର ନାମ |
|---|---|---|---|---|---|
| ୧. | ଆହୁ ମାଝୀ | ୫୦ଡି. | ୨୦୦୦/- | ଦଇଖିନା ନାଏକ | ପୋଡାପଦର |
| ୨. | ନାରଙ୍ଗ ମାଝୀ | ୬୦ଡି. | ୧୫୦୦/- | ଧୋବା ନାଏକ | ପୋଡାପଦର |
| ୩. | କେଶରୀ ମାଝୀ | ୪୦ଡି. | ୧୨୦୦/- | ପିତ ନାଏକ | ପୋଡାପଦର |
| ୪. | କବିତ୍ର ମାଝୀ | ୮୦ଡି. | ୫୦୦୦/- | ସହଦେବ ନାଏକ | ପୋଡାପଦର |
| ୫. | ଲାଣ୍ଡୁ ମାଝୀ | ୫୦ଡି. | ୪୬୦୦/- | ବାରମୁଣ୍ଡା ଝୋଡିଆ | ମହୁଲପାଟଣା |
| ୬. | ଡାଲି ମାଝୀ | ୩୦ଡି. | ୫୦୦/- | ଦଇତାରୀ ନାଏକ | ପୋଡାପଦର |
| ୭. | ପାଣ୍ଡୁ ମାଝୀ | ୧୮ଡି. | ୨୦୦୦/- | ଧନନ୍ତ ନାଏକ | ପୋଡାପଦର |
| ୮. | କୁଆଁର ମାଝୀ | ୧ଏକର | ୪୦୦୦/- | ରାଜିବ ନାଏକ | ଖମାର ପଦର |
| ୯. | ନାରଙ୍ଗା ମାଝୀ | ୫୦ଡି. | ୬୧୦/- | ଦଇଖିନା ନାଏକ | ପୋଡାପଦର |

ଡିସେମ୍ବର - ୧୯୯୮



# ସଂରକ୍ଷଣର ପ୍ରହସନ

*"ମହିଳା ସଂରକ୍ଷଣର ପ୍ରହସନତା ଭିତରେ ପଡି ମୋ ଭଳି ଅନେକ ନିର୍ବାଚିତା ସଦସ୍ୟା ଆଜି ସ୍ଥାଣୁ ପାଲଟି ଯାଉଥିବେ । ମୁଁ ଜଣେ ମହିଳା ସରପଞ୍ଚ ହିସାବରେ ଯେତିକି ହଇରାଣ ହେଉଛି ଏ ପଞ୍ଚାୟତରେ ଜଣେ ପୁରୁଷ ସରପଞ୍ଚ ହୋଇଥିଲେ ଆଦୌ ସେତିକି ହରଇରାଣ ହୋଇ ନଥାନ୍ତି । ସେଥିପାଇଁ ବେଳେ ବେଳେ ଇଚ୍ଛାହୁଏ ଏ ପଦରୁ ଇସ୍ତଫା ଦେଇ ଦେବାକୁ ।" ଏକଥା କୁହନ୍ତି କାଣ୍ଡବାଲି ପଞ୍ଚାୟତର ମହିଳା ସରପଞ୍ଚ । ଆସନ୍ତୁ ତାଙ୍କଠାରୁ ଜାଣିବା ତାଙ୍କ ସଂପର୍କରେ:*

**ଆରୋହଣ-** ଆପଣଙ୍କ ନାମ ଓ ଠିକଣା ?

**ଯଶୋଦା-** ମୋ ନାଁ ଯଶୋଦା କହଁର, ଗାଁର ନାମ ଟଣା । ମୁଁ ଏବେ କ୍ରାଣ୍ଡବାଲି ପଞ୍ଚାୟତର ସରପଞ୍ଚ ଅଛି । କନ୍ଧମାଳ ଜିଲ୍ଲାର ଫିରିଙ୍ଗିଆ ବ୍ଲକ ଆମର ।

**ଆରେହାଣ-** ଆପଣ ଲୋକ ପ୍ରତିନିଧି ହେବା ପୂର୍ବରୁ କ'ଣ କରୁଥିଲେ ?

**ଯଶୋଦା-** ଦୁଇ ବରଷ ହେଲା ମୁଁ ବିଭା ହୋଇଛି । ଘରେ ଘର କାମ କରେ । ଚାଷବାସ ବେଳେ ବିଲ କାମ ମଧ୍ୟ କରେ ।

**ଆରୋହଣ-** ଆପଣ ପଞ୍ଚାୟତ ନିର୍ବାଚନ କାହିଁକି ଲଢ଼ିଲେ ?

**ଯଶୋଦା-** ଏହା ପୂର୍ବରୁ ମୋର ସ୍ୱାମୀ ଏଠିକାର ସରପଞ୍ଚ ଥିଲେ । ମାତ୍ର ଏଥର ଏଇଟା ମହିଳା ସିଟ୍ ହୋଇଥିବାରୁ ମୋତେ ମୋର ସ୍ୱାମୀ ପ୍ରଥମେ କହିଲେ ସରପଞ୍ଚ ହେବାକଥା । ପରେ ଅନ୍ୟମାନେ ମଧ୍ୟ କହିଲେ ।

**ଆରୋହଣ-**ମହିଳାମାନଙ୍କ ପାଇଁ ସଂରକ୍ଷଣ ବ୍ୟବସ୍ଥା ରହିବା ସମ୍ବନ୍ଧରେ ଆପଣଙ୍କ ମତାମତ କ'ଣ ?

**ଯଶୋଦା-** ହଁ, ମହିଳାମାନଙ୍କ ପାଇଁ ଏହି ବ୍ୟବସ୍ଥା ରହିବା ଉଚିତ୍ । ମାତ୍ର ତିନି ଭାଗରୁ ଭାଗେ ନରହି ସମାନ ସମାନ ରହିବା ଉଚିତ୍ ଏବଂ ଯେଉଁମାନେ ଲୋକ ପ୍ରତିନିଧି ହେବେ ସେମାନେ ପାଠ ପଢ଼ିବା ଉଚିତ୍ । କାରଣ ମୁଁ ପାଠ ପଢ଼ି ନଥିବାରୁ ବେଶି ହଇରାଣ ହେଉଛି । ପୁଣି ଆମ ପଞ୍ଚାୟତରେ ମାତ୍ର ଚାରିଜଣ ମହିଳା ୱାର୍ଡମେମ୍ବର

ଥିବାବେଳେ ୧୧ଜଣ ପୁରୁଷ ମେମ୍ବର ଅଛନ୍ତି । ଆମ କଥା ସବୁବେଳେ ସେମାନେ କାଟି ଦେଉଛନ୍ତି । ଯଦି ଅଧିକ ମହିଳା ମେମ୍ବର ଥାଆନ୍ତେ ତେବେ ମୋତେ ଅଧିକ ସହଯୋଗ ମିଳନ୍ତା ।

**ଆରୋହଣ-** ରାଜନୀତିରେ ଭାଗନେବା ପାଇଁ ଆପଣଙ୍କର ଆଗ୍ରହ ଥିଲା କି ?

**ଯଶୋଦା-** ନା, ମୋର ସେମିତି କିଛି ଆଗ୍ରହ ନଥିଲା । ମୁଁ ପଞ୍ଚାୟତ ବିଷୟରେ କିଛି ମଧ ଜାଣି ନଥିଲି । ମହିଳା ସିଟ୍ ହୋଇଥିବାରୁ ଏବଂ ଗାଁରେ ଆଉ କେହି ନବାହାରିବାରୁ ମୁଁ ବାଧ୍ୟ ହୋଇ ହଁ କରିଥିଲି । ପୂର୍ବରୁ ମୋର ବାପଘର ଗାଁରେ 'ଅଗ୍ରଗାମୀ' ଦ୍ୱାରା ଅନେକ ଉନ୍ନତିମୂଳକ କାମ ହୋଇଛି । ମୁଁ ଆମ ଗାଁ ରାତି ସ୍କୁଲରେ ପାଠ ପଢ଼ିଛି ଏବଂ ଗାଁର ବିଭିନ୍ନ କାମରେ ଭାଗ ନେଇଛି । ଆଗକୁ ଗାଁ କାମ କୁଟୁମ୍ବରେ କରିବାକୁ ଭଲ ଲାଗୁଥିଲା, ଏବେ ମଧ୍ୟ ଭଲ ଲାଗୁଛି ।

**ଆରୋହଣ-** ଆପଣଙ୍କୁ ଏହି ନିର୍ବାଚନ ଲଢ଼ିବା ପାଇଁ କ'ଣ କରିବାକୁ ପଡିଛି ? ଜିତିବାପାଇଁ କୌଣସି ସମସ୍ୟାର ସମ୍ମୁଖୀନ ହେବାକୁ ପଡିଛି କି ?

**ଯଶୋଦା-** ନା, ମୁଁ ଆମ ପଞ୍ଚାୟତରୁ ସରପଞ୍ଚ ହେବାପାଇଁ କିଛି ଅସୁବିଧା ହୋଇନାହିଁ । କାରଣ ମୋ ବିରୁଦ୍ଧରେ କେହି ଠିଆ ହୋଇ ନ ଥିଲେ । ମୁଁ ଅପ୍ରତିଦ୍ୱନ୍ଦୀ ଭାବେ ନିର୍ବାଚିତା ହୋଇଥିଲି ।

**ଆରୋହଣ-** ଲୋକମାନେ ଆପଣଙ୍କୁ କାହିଁକି ସମର୍ଥନ କଲେ ?

**ଯଶୋଦା-** ବିଶେଷକରି ଆମ ଆଦିବାସୀ ଲୋକମାନେ ରାଜନୀତିରେ ବେଶି ଭାଗ ନିଅନ୍ତି ନାହିଁ । ଯିଏ ଠିଆ ହେଲା ତାକୁ ଭୋଟ୍ ଦିଅନ୍ତି । ପୁଣି ମୋର ସ୍ୱାମୀ ପୂର୍ବରୁ ସରପଞ୍ଚ ଥିବାରୁ ମୋତେ ଲୋକମାନେ ସମର୍ଥନ କରିଗଲେ ।

**ଆରୋହଣ-** ଆପଣଙ୍କ ପଞ୍ଚାୟତରେ ପଲ୍ଲୀସଭା ଏବଂ ଗ୍ରାମସଭା ନିୟମିତ ଭାବେ ହେଉଛି କି ?

**ଯଶୋଦା-** ମୁଁ ସରପଞ୍ଚ ଦାୟିତ୍ୱ ନେବା ପରଠାରୁ ପଲ୍ଲୀସଭା ଏବଂ ଗ୍ରାମସଭା ଠିକ୍‌ରେ ହେଉଛି । ମାତ୍ର ପଲ୍ଲୀସଭା ଏବଂ ଗ୍ରାମସଭାରେ ଯେଉଁ ଅଟକଳ ପ୍ରସ୍ତୁତ ହୋଇ ପଞ୍ଚାୟତ ସମିତିକୁ ଯାଉଛି ତାହା ଠିକ୍‌ରେ କାର୍ଯ୍ୟକାରୀ ହେଉନାହିଁ । ପ୍ରଶ୍ନକଲେ କୁହନ୍ତି ବ୍ଲକରେ ପଇସା ନାହିଁ । ଫଳରେ ସରପଞ୍ଚ ହିସାବରେ ପଞ୍ଚାୟତ ଉନ୍ନୟନ ପାଇଁ ଯାହା ଚାହୁଁଛି ତାହା ହୋଇ ପାରୁ ନାହିଁ ।

**ଆରୋହଣ-** ଜଣେ ମହିଳା ଲୋକ ପ୍ରତିନିଧି ହିସାବରେ ଆପଣଙ୍କୁ କେଉଁ ପ୍ରକାର ସମସ୍ୟାର ସମ୍ମୁଖୀନ ହେବାକୁ ପଡୁଛି ?

**ଯଶୋଦା-** ମହିଳା ସରପଞ୍ଚ ହୋଇଥିବାରୁ ମୁଁ ବହୁତ ହଇରାଣ ହେଉଛି । ସେକ୍ରେଟାରୀ ଆମର ବେଶି ହଇରାଣ କରୁଛନ୍ତି । ସରପଞ୍ଚଙ୍କ ସିଲ୍ ଗୁଡ଼ିକ ନେଇ ସେ ନିଜେ ରଖିବା ସହିତ ପଞ୍ଚାୟତର ଅଧିକାଂଶ ନଥିପତ୍ର ନେଇ ଘରେ ରଖିଛନ୍ତି ଏବଂ ପଞ୍ଚାୟତର ସମସ୍ତ କାଗଜପତ୍ର ନାଏବ ସରପଞ୍ଚଙ୍କୁ ହାତ କରି ତାଙ୍କ ମାଧ୍ୟମରେ କରେଇ ନେଉଛନ୍ତି । ଅଧିକାଂଶ ସମୟ ପଞ୍ଚାୟତ ଅଫିସ୍‌କୁ ଆସନ୍ତି ନାହିଁ । ପଚାରିଲେ କୁହନ୍ତି ଅଫିସରେ କ'ଣ କାମ ଅଛି ଯେ? ଯାହା କାମ ତ ମୁଁ ମୋର ଘରେ କରି ନେଉଛି । ସେକ୍ରେଟାରୀ କୁଆଡେ ଛୁଟିରେ ଗଲେ କିମ୍ବା ପଞ୍ଚାୟତ କାମରେ ପଇସା ବାଣ୍ଟିବାକୁ ଗଲେ ମୋତେ ନଜଣାଇ ଯାଉଛନ୍ତି । କାରଣ ପଚାରିଲେ କହୁଛନ୍ତି, ସବୁବେଳେ ଅଫିସକୁ ଗଲେ ଆମେ ବଞ୍ଚିବା କେମିତି ? ଘରେ ତ ପୁଣି କାମ ଅଛି । ଯେତେବେଳେ କୌଣସି ଅଫିସର ଆସିବ ଆମେ ସେତେବେଳେ ଯିବା । ମୁଁ ବେଶି ପାଠ ପଢ଼ି ନଥିବାରୁ ଏବଂ କାଗଜପତ୍ର କାମ ଜାଣି ନଥିବାରୁ ମୋତେ ବେଳେବେଳେ ଧମକାଇ କୁହନ୍ତି, 'ତମେ ତ କାଗଜପତ୍ର କାମ କରିପାରୁନାହଁ, ତେବେ ଏହି ଦାୟିତ୍ୱ ନାଏବ ସରପଞ୍ଚଙ୍କୁ ଦେଇଦିଅ ।' ଏହି କଥାକୁ ନେଇ ତାଙ୍କ ସହିତ ବହୁତ ଯୁକ୍ତିତର୍କ କରିଛି । ଜଣେ ମହିଳା ସରପଞ୍ଚ ହୋଇଥିବାରୁ ସେକ୍ରେଟାରୀ ଘୃଣା ମନୋଭାବ କରି ଥରେ ଥରେ କୁହନ୍ତି ହଁ ମ ସେ ମାଇକିନିଆଟା କ'ଣ କହିବ ?

**ଆରୋହଣ-** ରାଜନୀତି ସଂପର୍କରେ ଆପଣଙ୍କର ଧାରଣା କ'ଣ ?

**ଯଶୋଦା-** ମୁଁ ତ ଏବେ ନୂଆକରି ରାଜନୀତିକୁ ଆସିଛି । ଆଗରୁ ସରପଞ୍ଚ କହିଲେ ଗୋଟେ ବଡ ନେତା ବୋଲି ବୁଝିଥିଲୁ । ପ୍ରକୃତରେ ସରପଞ୍ଚର ବହୁତ କାମ ଅଛି ଲୋକମାନଙ୍କ ପାଇଁ କରିବାକୁ । କିନ୍ତୁ ମୁଁ ସେ ବିଷୟରେ ବେଶିକିଛି ଜାଣି ନଥିବାରୁ ତଥା ସଂପାଦକଙ୍କର ଅସହଯୋଗ କାରଣରୁ ମୁଁ ଲୋକଙ୍କ ପାଇଁ କିଛି କରିପାରୁନାହିଁ । ଗ୍ରାମ ସଭାରେ ଲୋକମାନେ ଯେଉଁ ଯୋଜନା କରୁଛନ୍ତି ତାହା କିଛି କାର୍ଯ୍ୟକାରୀ ହୋଇପାରୁନାହିଁ । ତେଣୁ କାହାକୁ ରାଜନୀତି କୁହାଯିବ ମୁଁ ଜାଣିପାରୁନି । ଖାଲି ପୁରୁଷମାନଙ୍କ କଥା, ବଡ ବଡ ନେତାଙ୍କ କଥା ଏକା ରାଜନୀତି ।

**ଆରୋହଣ-** ଦେଢ଼ବର୍ଷ କାର୍ଯ୍ୟକାଳ ମଧ୍ୟରେ ଆପଣ ଆପଣଙ୍କ ପଞ୍ଚାୟତ ପାଇଁ କ'ଣ କରିଛନ୍ତି ?

**ଯଶୋଦା-** ଦୁଇଟି ଗାଁରେ ରାସ୍ତାକାମ ହୋଇଛି । ପ୍ରତ୍ୟେକ ସରକାରୀ ସ୍କୁଲ ଠିକ୍‌ରେ ଚାଲିବା ପାଇଁ ପଦକ୍ଷେପ ନିଆଯାଇଛି । କେତୋଟି ଚୁଆ କରା ଯାଇଛି । ବିଧବା/ବାର୍ଦ୍ଧକ୍ୟ ଭତ୍ତା ଠିକ୍‌ରେ ଦିଆଯାଇଛି ।

**ଆରୋହଣ-** ଆଗାମୀ ଦିନମାନଙ୍କରେ ଲୋକମାନଙ୍କର ଉନ୍ନତି ପାଇଁ କି ଯୋଜନା ରଖିଛନ୍ତି ?

**ଯଶୋଦା-** ଯେତିକି ଯୋଜନା କରୁଛୁ କିଛି ତ କାର୍ଯ୍ୟକାରୀ ହୋଇ ପାରୁନାହିଁ । ତଥାପି ଆଶା ରଖିଛୁ କିଛି କରିବା ପାଇଁ ଯଥା;- ଗାଁ ଗୁଡିକରେ ପାନୀୟ ଜଳର ସୁବିଧା, ଗାଁକୁ ରାସ୍ତା, କଳିଙ୍ଗ କୁଟୀର ଯୋଜାନା କାର୍ଯ୍ୟକାରୀ କରିବା, ଜଳଛାୟା କାର୍ଯ୍ୟକ୍ରମ ତଥା ସ୍କୁଲ ଗୁଡିକର ସୁପରିଚାଳନା ପାଇଁ ଯୋଜନା ରଖିଛୁ ।

**ଆରୋହଣ-** କ'ଣ କଲେ ଲୋକମାନଙ୍କ ପାଇଁ ଭଲ କାମ କରିହେବ ବୋଲି ଭାବୁଛନ୍ତି ?

**ଯଶୋଦା-** ଭଲ ସରକାରୀ କର୍ମଚାରୀ ଏବଂ ମହିଳାମାନଙ୍କ ସଂଖ୍ୟା ଅଧିକ ରହିଲେ କାମ କରିବାକୁ ସୁବିଧା ହେବ ।

ଡିସେମ୍ବର - ୧୯୯୮



# ବଣୁଆ ମୁଲକ ଆମେ ତା' ରାଜା

ଚନ୍ଦ୍ରଗିରିରୁ ମାଳିଗାଁ, ଦୁର୍ଖାଲ ଆଦି ରାସ୍ତାରେ ଗଲେ ପ୍ରଥମେ ମୁଷୁରୀ ପଦର ଗାଁ ପଡେ । ଗାଁଟି ବେଶ ଭରପୂର ଲାଗେ । ଗାଁ ପାଖ ଦେଇ ଛୋଟ ନଈଟିଏ ବହି ଯାଇଛି । ଚଳଚଞ୍ଚଳ ତାର ପାଣି ସ୍ରୋତ । ସେଠି ବାସ କରୁଥିବା ଲୋକମାନଙ୍କ ଜୀବନ ଭଳି ବେଶ୍ ତତ୍ପର । ଉଚ୍ଚା ଉଚ୍ଚା ପାହାଡ ଗାଁର ଦକ୍ଷିଣରେ ଜଗି ରହିଛନ୍ତି । ଗ୍ରାମର ଉତ୍ତର ପୂର୍ବ ଓ ପଶ୍ଚିମ ଦିଗଟା ସବୁଜ ଗଛ ପତ୍ରରେ ଖୁବ୍ ପୂରିଲା ପୂରିଲା ଲାଗେ ।

ଏ ଗାଁର ଇତିହାସ ଯେମିତି ବଡ ବିଚିତ୍ର ସେମିତି ହୃଦୟ ବିଦାରକ ମଧ୍ୟ! ବର୍ତ୍ତମାନ ଏ ଗାଁରେ ଯେଉଁମାନେ ବସବାସ କରି ରହୁଛନ୍ତି ପ୍ରକୃତରେ ସେମାନେ ଏଠିକାର ବାସିନ୍ଦା ନୁହନ୍ତି । ଏମାନେ ହେଉଛନ୍ତି ଟିକିରି ପଞ୍ଚାୟତରେ ଥିବା ଅନ୍ୟ ଏକ ମୁଷୁରୀ ପଦର ନାମଧାରୀ ଗାଁର ଲୋକ, ଯେଉଁଠାରେ କି ଆଦୌ ଜମି ନ ଥିଲା । ଜୀବନ ଧରିବା ବହୁତ କଷ୍ଟ ହୋଉ ପଡୁଥିବା ବେଳେ ଉମେଶ ବ୍ରାହ୍ମଣ ନାମକ ତଥାକଥିତ ରାଜମାତାଙ୍କ ମନ୍ତ୍ରୀ ଆସି ଚନ୍ଦ୍ରଗିରି ପଞ୍ଚାୟତର ମୁଷୁରୀ ପଦରଠାରେ ରାଜମାତାଙ୍କର ବହୁତ ଜମି ଅଛି ବୋଲି ଲୋକମାନଙ୍କୁ ଜଣାଇଲା । ମନ୍ତ୍ରୀ କାର୍ଯ୍ୟ କରୁଥିବା ଏହି ବ୍ରାହ୍ମଣ ଲୋକମାନଙ୍କୁ ଜମି ବାବଦରେ କହିବାରୁ ସେମାନେ ଏକ ସୁସ୍ଥ ଜୀବନ ବିତାଇବା ଆଶାରେ ସେହି ଗାଁରୁ ଉଠିଆସିଲେ ଏବଂ ସେ ଜମିରୁ ସିଲିଂ ଉଠାଇ ସେମାନଙ୍କ ମଧ୍ୟରେ ବାଣ୍ଟିଦେବା ପାଇଁ ରାଜମାତାଙ୍କୁ ଅନୁରୋଧ କଲେ ।

ତା'ପରେ ସେମାନେ ଚନ୍ଦ୍ରଗିରିର ମୁଷୁରୀପଦର ଗାଁରେ ବସବାସ କଲେ । କିଛି ବର୍ଷ ସେଠିକାର ଜମିକୁ ଚାଷ ବାସ କରି ବଞ୍ଚିଲା ପରେ ଦିନେ ମନ୍ତ୍ରୀ ଆସି ପହଞ୍ଚିଲେ । କହିଲେ, ସମସ୍ତେ କିଛି କିଛି ପଇସା ବାନ୍ଧିଲେ ସମସ୍ତଙ୍କ ନାମରେ ଜମି ପଟ୍ଟା କରାଯିବ । କେବଳ ଡଙ୍ଗର, ଜମିରେ ଖଟି, ନିଆଁରେ ଟିକେ ସିଝେଇ

ମାଣ୍ଡିଆ ପେଯ ମୁନ୍ଦେ ପିଉଥିବା ଲୋକେ ପଇସା ଅବା କେଉଁଠୁ ପାଇବେ? ସେଥିପାଇଁ ମନ୍ତ୍ରୀଙ୍କ କଥାକୁ ଲୋକମାନେ ସହଜରେ ଗ୍ରହଣ କରିପାରିଲେ ନାହିଁ। ସମସ୍ତେ ମିଶି ବିଧାୟକ ଅନ୍ତରାମ ମାଝିଙ୍କୁ ଲେଖା ଲେଖି କରି ଦେଲେ। ତଥାପି କିଛି ହୋଇପାରିଲା ନାହିଁ। ସେତିକି ଜମି ଲୋକମାନଙ୍କ ନାମରେ ହେବାଟା ଏକ ବିରାଟ ସମସ୍ୟା ହୋଇ ରହିଲା। ସମସ୍ତ ପ୍ରକାରର ଚେଷ୍ଟା ବିଫଳ ହେବା ପରେ ଲୋକମାନେ ହତାଶ ହୋଇଗଲେ। ଏହିଭଳି ଏକ ବ୍ୟବସ୍ଥାର ସୁଯୋଗ ମାରିନେଲା ରାଜା ଘରେ ଗୁମାସ୍ତା କାମ କରୁଥିବା ମାଣିକ ଗଉଡ। କଳେବଳେ କୌଶଳେ ରାଜମାତାଙ୍କୁ ଖୁସୀ କରି ସମସ୍ତ ଜମିକୁ ନିଜ ହାତକୁ ନେଇଗଲା। ବହୁ ସଂଘର୍ଷ ପରେ ଅନେକ ଚେଷ୍ଟା କରି ଗାଁ ଲୋକମାନେ ଗୁମାସ୍ତା ମାଣିକ ଗଉଡକୁ କିଛି ଟଙ୍କା ଦେଇ ୨୧ଏକର ଜମି କିଣି ନେଲେ। କିଛି ଦିନ ପରେ ଜମିତକ ନିଜ ନିଜ ନାମରେ ଭାଗ କରିନେଲେ। ଗୁମାସ୍ତା ମାଣିକ ଗଉଡର ନିଜ ଘର କଳାହାଣ୍ଡି ଜିଲ୍ଲାରେ ହୋଇଥିବାରୁ କିଛି ଦିନ ପରେ ସେ ଏ ଅଞ୍ଚଳ ଛାଡି ତା' ନିଜ ଅଞ୍ଚଳ କଳାହାଣ୍ଡିକୁ ପଳାଇଗଲା। ଯାହା ହେଉ ଜମିତକ ଗାଁ ଲୋକମାନଙ୍କ ନାମରେ ହୋଇଯିବା ପରେ ସେମାନେ ଆଶ୍ୱସ୍ତି ଲାଭ କଲେ। ବହୁଦିନ ଗଲାପରେ ୧୯୯୭ ମସିହାରେ ଗାଁକୁ ରାଜସ୍ୱ ଗାଁ ଭାବେ ଘୋଷଣା କରାଗଲା। ବର୍ତ୍ତମାନ ସେ ଗାଁରେ ୧୫ଟି ପରିବାର ବାସ କରୁଛନ୍ତି। ସମସ୍ତେ ହେଉଛନ୍ତି ଆଦିବସୀ ସମ୍ପ୍ରଦାୟର।

କଦଳୀ ଗଛ ସବୁ ଜୀବନ୍ତ ହୋଇ ଗାଁଟିର ଚତୁପାର୍ଶ୍ୱକୁ ଘେରି ରହିଛନ୍ତି। ଆଖପାଖ ସବୁ ଅଞ୍ଚଳ ପନିପରିବା ଓ ଫଳଗଛରେ ଭରି ରହିଛି। ଉଭୟ ଡଙ୍ଗର ଓ ଭଟ୍ଟା ଜମିରେ ଗାଁର ଲୋକମାନେ ଚାଷବାସ କରୁଛନ୍ତି। ଉଭୟ ଜମିରେ ଧାନ, ମାଣ୍ଡିଆ, କୋଶଲା, ଅଳସୀ ଓ କାନ୍ଦୁଲ ହେଉଛି। ଚାଷ ପାଇଁ ପାଖରେ ଥିବା ନଦୀରେ ଆଇଫାଡ ଡ୍ୟାମ ବାନ୍ଧିଛି। ଯେମିତି ବଡ ବଡ କାମ କରିବା କଥା ସେମିତି କିଛି କାମ କରିନାହିଁ। ଗଛ ଲଗାଇଛି କାଜୁ ଗଛ, ଯେଉଁଥିରେ ଫଳ ନାହିଁ; ଯାହାକୁ ବିକ୍ରି କରି ଚଳିଥାଆନ୍ତୁ। ଏକ କ୍ୱିଣ୍ଟାଲ ଆଳୁ ବିହନ ଏବଂ କିଛି ପନିପରିବା ବିହନ ଦେଇଥିଲା। ଚାଷ ପାଇଁ ମେସିନ୍ ମଧ୍ୟ ଦେଇଛି।

ଗାଁଟିରେ ସବୁ ଲୋକ ଚାଷ କରି ବଞ୍ଚୁଛନ୍ତି। ସେମାନଙ୍କର ମୁଖ୍ୟ ଜୀବିକା ହେଉଛି ଚାଷ। ଦ୍ୱିତୀୟରେ ପଶୁପାଳନ ଯଥା ଛେଳି, ବଳଦ, ମଇଁଷି, ଘୁଷୁରୀ ପାଳିବା ମଧ୍ୟ ସେମାନଙ୍କର ଅନ୍ୟ ଏକ ପନ୍ଥା ଏବଂ ଜୀବନ ଧାରଣ ମାନ ହିସାବରେ ଯୋଖି ହୋଇଯାଇଛି। ସମସ୍ତଙ୍କ ଆବଶ୍ୟକତା ମେଣ୍ଟାଇବା ଭଳି ଚାଷ ଜମି ଗାଁରେ ନାହିଁ। ଯେତିକି ଅଛି ସେଥିରୁ ଯାହା ପାଚି ମିଳୁଛି ତାହା ବରଷକୁ

ଖେଟୁ ନାହିଁ । ଆଗେ ଯେଉଁ ଜମିରେ ପୁଟେ ମାଣ୍ଡିଆ ବୁଣି ପନ୍ଦର ପୁଟି ମାଣ୍ଡିଆ ଅମଳ କରୁଥିଲେ, ଏବେ ସେ ଜମିରୁ ପାଞ୍ଚ ପୁଟି ମଧ୍ୟ ଅମଳ କରିବା କଷ୍ଟ ହୋଇ ପଡୁଛି । କମାଣି ଖେଟି ନଥିବାରୁ କିଛି ଦିନ କୁଲିଭୁତି କରି ଲୋକମାନଙ୍କୁ ଚଳିବାକୁ ପଡୁଛି । ଏତେ ବର୍ଷ ବିତି ଗଲା ପରେ ମଧ୍ୟ ପରିଶ୍ରମର ଠିକ୍ ମୂଲ୍ୟ ସେମାନେ ପାଇପାରୁ ନାହାନ୍ତି । ପ୍ରକୃତରେ ପରିଶ୍ରମର ମୂଲ୍ୟ ଏମାନେ ଜାଣି ପାରନ୍ତି ନାହିଁ । ଯାହା ଫଳରେ ଠିକାଦାରମାନଙ୍କୁ ଠକିବା ପାଇଁ ସୁବିଧା ହୁଏ । ଏବେ ମଜୁରୀ ୨୫ ଟଙ୍କା ପାଉଛନ୍ତି । ବେଳେ ବେଳେ କେତେକ ଠିକାଦାର ୨୫ ଟଙ୍କାରୁ ମଧ୍ୟ କମ୍ ମଜୁରୀ ଦେଇଛନ୍ତି । ଫଳରେ ନିଜର ଗୁଜୁରାଣ ମେଣ୍ଟାଇବା ଖୁବ୍ କଷ୍ଟ ହୋଇ ପଡୁଛି । ତଥାପି ସେମାନେ ନିରୁପାୟ ହୋଇ ରହିବାକୁ ବାଧ୍ୟ ହେଉଛନ୍ତି । କାରଣ ଯଦି ସେମାନେ ଏହା ବିରୁଦ୍ଧରେ ଥରେ ସ୍ୱରୋତ୍ତଳନ କରିବେ ତେବେ ଠିକାଦାର ଏମାନଙ୍କଠାରୁ କାମ ଛଡ଼ାଇ ନେଇ ବାହାର ଲୋକମାନଙ୍କୁ ଆଣି କାମ କରାଇନେବାର ଭୟ ରହିଛି । ସମ୍ପାରୁ ମାଝୀ କୁହେ, ଆଗେ କିଛି ନମିଳିଲେ ବି ଜଙ୍ଗଲରୁ କନ୍ଦାମୂଳ ଖାଇ ବଞ୍ଚିଯାଉଥିଲୁ । କାଠ, ପତ୍ର, ଶିଆଳି ପଟ (ଦଉଡ଼ି) ସହିତ ଆହୁରି ଅନେକ ଜିନିଷ ପାଉଥିଲୁ । ଖରା ଦିନେ କେବଳ ଆମ୍ବ ଖାଇ ଗୋଟିଏ ମାସ ଚଳି ଯାଉଥିଲୁ । ମାତ୍ର ଆଜିକାଲି ସେ ସବୁ କିଛି ନାହିଁ । ଜଙ୍ଗଲ ନଷ୍ଟ ହୋଇଗଲାଣି । ଚାରିଆଡ଼େ ଖାଲି ଡଙ୍ଗର ଓ ପାହାଡ଼ । ବର୍ଷା ଠିକ୍ ଭାବରେ ହେଉ ନଥିବାରୁ ପାଚି କମ୍ ହେଉଛି । କେତେ ଲୋକ ଖାଦ୍ୟାଭାବରୁ ଏବଂ କେତେକ ଲୋକ ଅଖାଦ୍ୟ ଖାଇ ମରିଯାଉଛନ୍ତି । ଜ୍ୱରଦୁଃଖ ହେଲେ ଡାକ୍ତର ଔଷଧ ମଧ୍ୟ କରି ହେଉନାହିଁ । ପାଖରେ ଡାକ୍ତରଖାନା ନଥିବାରୁ ବେଶୀ ବେମାର ହେଲେ ୧୮ କି.ମି. ଚାଲି ଚାଲି କାଶୀପୁର ଯିବାକୁ ପଡୁଛି ।

ସରକାରୀ ସୁବିଧା ସୁଯୋଗ ଥିଲେ ମଧ୍ୟ ଆମ ପାଖରେ ପହଞ୍ଚିବା ପୂର୍ବରୁ ସବୁ ବାଟମାରଣା ହୋଇଯାଉଛି । ସେମାନଙ୍କ ପାଇଁ କି କି ସୁବିଧା ସୁଯୋଗ ଅଛି, ସେ ବିଷୟରେ ସେମାନଙ୍କ ଧାରଣା ନାହିଁ କହିଲେ ଭୁଲ ହେବ ନାହିଁ । ଯଦ୍ଦ୍ୱାରା ସେମାନଙ୍କର ସରଳତାର ସୁଯୋଗ ନେଉଛନ୍ତି କେତେଜଣ ଚାଲାକ ରାଜନିତିଆ ଓ ଟାଉଟର । ଯେଉଁମାନେ ସରକାରଙ୍କର ବିଭିନ୍ନ ଯୋଜନା ବିଷୟରେ ଜାଣୁଛନ୍ତି, ସେମାନେ ଏହାର ଫାଇଦା ନେଉଛନ୍ତି । ସେମାନେ ସରକାରୀ କର୍ମଚାରୀମାନଙ୍କୁ ଲାଞ୍ଚ ଦେଇ ସବୁ କାମ କରେଇ ନେଉଛନ୍ତି । ଏଇ ଯେମିତି ନିଜ ନାମରେ ଇନ୍ଦିରା ଆବାସ ଘର କରିବା, ଗାଁ ରାସ୍ତା ବାନ୍ଧିବା ପାଇଁ ଠିକାଦାରୀ ନେବା, ନିଜ ନାମରେ ବିଭିନ୍ନ ପ୍ରକାରର ଋଣ ଅନୁମୋଦନ କରିବା ଇତ୍ୟାଦି ।

ଆଜିକାଲି ଗାଁ ଲୋକେ ଏ ସବୁ କ୍ଷେତ୍ରରେ ସଚେତନ ହେଲେଣି । ଶିକ୍ଷାର ଅଭାବକୁ ଖୁବ୍ ପାଖରୁ ଅନୁଭବ କରି ନିଜ ନିଜର ପିଲାମାନଙ୍କୁ ପାଖରେ ଥିବା ଚନ୍ଦ୍ରଗିରି ସରକାରୀ ସ୍କୁଲକୁ ପଠାଉଛନ୍ତି । ପୂର୍ବରୁ ପିଲାମାନେ ଅଗ୍ରଗାମୀ ଦ୍ୱାରା ଚାଲୁଥିବା ରାତି ସ୍କୁଲକୁ ଆସିବା ପରଠାରୁ ରାତି ସ୍କୁଲଟିକୁ ବନ୍ଦ କରିଦିଆଯାଇଛି । ବର୍ତ୍ତମାନ ପାଖାପାଖି ଅନ୍ୟ ଗାଁ ଅପେକ୍ଷା ମୁଷୁରୀ ପଦର ଗାଁଟି ଶିକ୍ଷା କ୍ଷେତ୍ରରେ ଟିକେ ଆଗୁଆ ଅଛି ।

ଗାଁଟି ଅର୍ଥନୈତିକ ଅଭିବୃଦ୍ଧି ପାଇଁ ମା'ମାନଙ୍କର ଅବଦାନ ଯଥେଷ୍ଟ ବେଶି । ଗାଁର ସବୁ ମା'ମାନେ ମିଶି ମହିଳା ମଣ୍ଡଳ ଗଢ଼ିଛନ୍ତି । ଗାଁର କିଛି ମା' ପଞ୍ଚାୟତ ସ୍ତରୀୟ ମହିଳା ସଂଗଠନ 'ସମୂହ ବିକାଶ ପାଣ୍ଠି' ରେ ସକ୍ରିୟ ସଭ୍ୟା ରୂପେ କାମ କରୁଛନ୍ତି । ମହିଳା ମଣ୍ଡଳ ମାଧ୍ୟମରେ ମଦହାଣ୍ଡି ଭାଙ୍ଗିଛନ୍ତି, ଗାଁ କୁଟୁମ୍ବ ପାଣ୍ଠିର ରକ୍ଷଣା ବେକ୍ଷଣ କରି ବର୍ଷାମାସିଆ ଅସୁବିଧାକୁ ଅନେକାଂଶରେ ସୁଧାରି ପାରିଛନ୍ତ । ସାହୁକାର ଓ ଠିକାଦାରଙ୍କଠାରୁ ମୁକ୍ତି ମିଳିବା ଅର୍ଥ, ନିଜେ ସ୍ୱାବଲମ୍ବୀ ହେବା ଏହି କଥାକୁ ଆଖି ଆଗରେ ରଖି ଏବଂ ସେମାନଙ୍କ ଶୋଷଣରୁ ମୁକ୍ତି ପାଇବା ପାଇଁ ଲୋକଙ୍କ ଭିତରୁ ଉଦ୍ୟମ ଆରମ୍ଭ ହେଲା । ତେଣୁ ଗାଁର ମା'ମାନେ ଗାଁ ପାଖରେ ଥିବା ଅନାବାଦୀ ଜମିକୁ ଲିଜ୍ ନେଇ ଚାଷବାସ କରିବେ ବୋଲି ଭାବି ତହସିଲଦାରଙ୍କୁ ପଟ୍ଟା ପାଇଁ ଦରଖାସ୍ତ ଦେଲେ । ଜମିଟି ଅନେକ ଦିନରୁ ସେମିତି ପଡ଼ି ରହିଥିବାରୁ ସେଥିରେ ଘାଟୁ ବନ୍ଧା ଓ ମରାମତି କରିବା ନିତାନ୍ତ ଜରୁରୀ ଥିଲା । ପ୍ରକୃତରେ ସେହି ଜମି ମରାମତି କରିବା ପାଇଁ ଲୋକମାନେ ଆଗ୍ରଗାମୀଠୁ କିଛି ସାହାଯ୍ୟ ନେଇ ଜମି ମରାମତି କରିଛନ୍ତି । ସେଥିରେ ଗଛବୃଛ ଲଗାହେବାର ଯୋଜନା କରାଗଲା । ଗାଁ ଲୋକେ ଫଳଗଛ ଯଥା; ଆମ୍ବ, ପଣସ, ଲିଚୁ, ଭାଲିଆ, କାଜୁ, ପିଜୁଳି ଏବଂ କଦଳୀ ଗଛ ଇତ୍ୟାଦି ଲଗାଇଲେ । ଏହା ବ୍ୟତୀତ ଶିରିଷ ଓ ଜାଫ୍ରା ଗଛ ମଧ୍ୟ ଲଗାଇଛନ୍ତି ଯାହା ଖୁବ୍ ଦରକାରୀ କାମରେ ଲାଗିଚି । ଏହି ଜମି ମଝିରେ ମଝିରେ ମହିଳାମାନେ ଅଳସୀ, କାନ୍ଦୁଲ, ମାଣ୍ଡିଆ, ଧାନ ଏବଂ ବିରି ଇତ୍ୟାଦି ଚାଷ କରିଥିବା ଅନାବାଦି ଜମିକୁ ପାଇବା ପାଇଁ ସାମୂହିକ ଭାବେ ଯାଇ ତହସିଲଦାରଙ୍କୁ ଭେଟି ସବୁକଥା ଜଣାଇଲେ । ଅନେକ ଚେଷ୍ଟାପରେ ଏହି ଜମି ମା'ମାନେ ନିଜ ହାତକୁ ଆଣି ସେଥିରୁ କିଛି ପାଇ ନିଜର ତଥା ତାଙ୍କର ସଂଗଠନର କାମରେ ଲଗାଇ ପାରିବେ ବୋଲି ଆଶା ବାନ୍ଧିଛନ୍ତି ।

୧୪ ଜଣ ମା'ଙ୍କୁ ନେଇ ଏକ କମିଟି କରାଯାଇଛି । ସେଥିମଧ୍ୟରୁ ୨ଜଣ ମା'ଙ୍କ ନାମରେ ଯୁଗ୍ମ ଜମାବହି ଖୋଲାଯାଇଛି । ଜମିରେ କିମ୍ବା ଗାଁର ଉନ୍ନତି ବାବଦରେ

କିଛି କାମ ହେବା ପୂର୍ବରୁ ଗାଁର କମିଟି ବସି ତଥା ଲୋକମାନେ ମିଶି ସେ ବିଷୟରେ ନିଷ୍ପତ୍ତି ନେଉଛନ୍ତି । ବୈଠକରେ ପ୍ରସ୍ତାବ ଅନୁମୋଦନ ହେଲାପରେ ଦରକାରୀ ଟଙ୍କା ଜମାବହିରୁ ଉଠାଯାଉଛି । ଜମିରେ ହୋଇଥିବା ଗଛର ନିରାପତ୍ତା ଭାଗିଦାରୀମାନଙ୍କ ଦ୍ୱାରା କରାଯାଉଛି । ଏଥିପାଇଁ ଅଗ୍ରଗାମୀ ସେମାନଙ୍କୁ କିଛି ସହାୟତା ଦେଇଛି । ପ୍ରାକୃତିକ ସଂପଦ ଉନ୍ନତିର ଏହି ତିନି ବର୍ଷିଆ ଯୋଜନାରେ ଭାଗିଦାରୀମାନେ ନିୟମିତ ଭାବରେ କାମ କରିବାର ବ୍ୟବସ୍ଥା କରାଯାଇଛି ।

ମୁଷୁରୀ ପଦର ଗାଁଟିକୁ ଏକ ସୁନ୍ଦର ସବୁଜିମାର ପୁଟ ଦେଇ ସେଥିରେ ସମସ୍ତଙ୍କର ସୁସ୍ଥ ସମ୍ଭାବନାମୟ ଜୀବନ ଆଣିଦେବାପାଇଁ ସମସ୍ତେ ଲାଗିପଡ଼ିଛନ୍ତି । ମା'ମାନଙ୍କ ତତ୍ତ୍ୱାବଧାନରେ ଥିବା ଗାଁର ୨୬ ଏକର ଜମିକୁ ତାଙ୍କ ହାତକୁ ଆଣିପାରିଛନ୍ତି, ଯାହା ସମଗ୍ର ରାୟଗଡ଼ା ଜିଲ୍ଲା ପାଇଁ ଏକ ଉଦାହରଣ କହିଲେ ଭୁଲ ହେବ ନାହିଁ । କେହି କେହି ମା' କୁହନ୍ତି, 'ଆମେ ସିନା ପାଠ୍ ପଢ଼ି ପାରିନୁ, ମାତର ଆମର୍ ପିଲାମାନେ ପାଠ୍ ପଢ଼୍‌ବେ, ଦି ଅକ୍ଷର ଶିଖିବେ, ହିସାବ କିତାବ ଜାଣ୍‌ବେ, ଆମେ ଯେମତି ସବୁଦିନ ଠକେଇ ହେଉଛୁ ଆଉ ହେବୁନାହିଁ ।'

ଡିସେମ୍ବର - ୧୯୯୮



# ଅଧିକାର ଏକ ଅନ୍ଧାରୀ ଘର

ଦୁଇଟି ଗାଁ ମଧ୍ୟରେ ମାତ୍ର ତିନି କିଲୋମିଟର ଦୂରତା । ଗାଈମୁଣ୍ଡତୁଣ୍ଡା ଏବଂ ନାରିଙ୍ଗିଯୋଡ଼ି । ଗାଁ ଦୁଇଟି ହେଉଛି କୋଡ଼ିପାରି ପଞ୍ଚାୟତର । ରାୟଗଡ଼ା ଜିଲ୍ଲାର କାଶୀପୁର ବ୍ଲକ କାର୍ଯ୍ୟାଳୟଠାରୁ ୧୮ କି.ମି. ତଥା କୋଡ଼ିପାରି ପଞ୍ଚାୟତଠାରୁ ୭ କି.ମି. ଗଲେ ପଡ଼େ ଗାଈମୁଣ୍ଡତୁଣ୍ଡା ଗାଁ । ଗାଁଟିରେ ବେଶି ଲୋକ ହେଉଛନ୍ତି ଆଦିବାସୀ । ପ୍ରକୃତି ଉଜାଡ଼ି ଦେଇଥିବା ସେହି ଡଙ୍ଗର ଆଉ ଝରଣାକୁ ନେଇ ସେମାନଙ୍କର ଜୀବନ ବିତିଯାଏ । ବଞ୍ଚିବା ପାଇଁ ଏମାନେ ସଂଗ୍ରାମ କରୁଥାଆନ୍ତି ସକାଳୁ ଅନ୍ଧାର ହେବା ପର୍ଯ୍ୟନ୍ତ, ସେହି ମୁକୁଳା କ୍ଷେତରେ ଫସଲ ଫଳାଇବା ପାଇଁ । ସମସ୍ତ ସମୟ ସେହି ମାଟି ସହିତ ମିଶି ଚାଷ କରି ବିତିଯାଏ । କିଛି ଲୋକଙ୍କୁ ଛାଡ଼ି ଦେଲେ ବାକି ସମସ୍ତେ ହେଉଛନ୍ତି ସୁଖବାସୀ (ଜମିହୀନ) । ସେମାନେ ଡଙ୍ଗରରେ ପୋଡୁ ଚାଷ କରି ମାଣ୍ଡିଆ, କୋଶଲା, ଅଳସୀ ଇତ୍ୟାଦି ଯାହା ଅମଳ କରି ଆଣିଥିଲେ ସେତିକ ସେମାନଙ୍କ ଦୁଇ ଓଳି ପେଟ ପୂରାଇବା ପାଇଁ ଯଥେଷ୍ଟ ହେଉନଥିଲା । ଯେଉଁ କିଛି ଲୋକଙ୍କର କିଛି ଚାଷ ଜମି ଥିଲା ତାହା ୨/୩ ଏକରରୁ କମ୍ ଥିଲା । ସେମାନଙ୍କ ମଧ୍ୟରେ ସେମାନଙ୍କ ଗାଁର ସାଧୁ ଝୋଡ଼ିଆ ଏବଂ ଅନ୍ଧାରୁ ଝୋଡ଼ିଆଙ୍କ କଥା ଏବେ ମଧ୍ୟ ଅସମାହିତ ହୋଇ ରହିଯାଇଛି । ସାଧୁ, ହର, ନାଥ ଆଦିଙ୍କର ଅଳ୍ପ କିଛି ପଟ୍ଟା ଜମି ମଝିରେ ୧.୮୭ ଏକର ଅନାବାଦୀ ଜମି ଥିଲା । କେଉଁ ପୂର୍ବପୁରୁଷରୁ ସେମାନେ ସେ ଜମିକୁ ନିଜ ପଟ୍ଟା ଜମି ସହିତ ମିଶାଇ ଚାଷ କରି ଆସୁଛନ୍ତି । ସେହି ୧.୮୭ ଏକର ଜମି ଦଖଲ କରି ଚାଷ କରୁଥିବାରୁ ଏମାନେ ପ୍ରତିବର୍ଷ ସରକାରଙ୍କୁ ଜୋରିମାନା ମଧ୍ୟ ବାନ୍ଧୁଛନ୍ତି ।

କିଛି ବର୍ଷ ତଳେ ଜମିଟିକୁ ଏମାନେ ଯେତେବେଳେ ନିଜ ନିଜ ନାମରେ ପଟ୍ଟା କରି ନେବାକୁ ଚାହିଁଲେ, ସେତେବେଳେ ଜଣା ପଡ଼ିଲା ଯେ ୧୯୯୧ ମସିହାରୁ ନାରିଙ୍ଗିଯୋଡ଼ି ଗାଁର ସୁରେନ୍ଦ୍ର ନାଏକ ନାମକ ଜଣେ ହରିଜନ ରାଜସ୍ୱ ନିରୀକ୍ଷକଙ୍କୁ

କିଛି ଲାଞ୍ଚ ଦେଇ ସେମାନଙ୍କର ସେହି ନିର୍ଦ୍ଦିଷ୍ଟ ଜମିକୁ ନିଜ ନାମରେ ପଟ୍ଟା କରି ନେଇଛି । ଭୂବନ୍ଦୋବସ୍ତ ବ୍ୟବସ୍ଥା ଅନୁଯାୟୀ ଆଦିବାସୀ ଲୋକ ଦଖଲ କରିଥିବା ଯେକୌଣସି ଜମି ଯଥା;  ଅନାବାଦି, ସରକାରୀ, ପତିତ, ଡଙ୍ଗର କିମ୍ବା ଗୋଚର ଜମି ଇତ୍ୟାଦି ଯାହା ଚାଷୋପଯୋଗୀ, ତାହା ଦଖଲକାରୀଙ୍କ ନାମରେ ପଟ୍ଟା ହେବା କଥା । ମାତ୍ର ତାହା ପୂର୍ବରୁ  ବିନା ଦଖଲରେ ସେ ଜମି ସୁରେନ୍ଦ୍ର ନାଏକଙ୍କ ନାମରେ ପଟ୍ଟା ହୋଇଯାଇଥିବାର କଥା ଜାଣି ଏମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ସାଧୁ, ହର, ନାଥ, ପଟି ଓ ଅନ୍ଧାରୁ- ସମସ୍ତେ ମିଶି ଚିନ୍ତା କଲେ ଏବଂ ସୁରେନ୍ଦ୍ର ନାଏକ ପାଖକୁ ଯାଇ ଏ ବିଷୟରେ  କହିଲେ, "ତମେ ତ ଦିନେ କାଳେ ଏ ଜମିରେ ଚାଷ କରିନାହଁ କି ଜମିର ପାଖ ମାଡ଼ିନ । ଆମେ ଆମ ବାପା ଅଜା ଅମଳରୁ ସେ ଜମିରେ ଚାଷ କରି ଆସୁଛୁ । ଜମିଟି ଆମ ନାମରେ ପଟ୍ଟା ହେବା କଥା, ମାତ୍ର ତାହା ଆମ ନାମରେ ନହୋଇ ତୁମ ନାମରେ କିପରି ପଟ୍ଟା ହୋଇଗଲା ?" ଏକଥା ଶୁଣି ସୁରେନ୍ଦ୍ର କିଛି ନକହି ନିରବରେ ଚାଲିଗଲା । ତେଣୁ ବାଧ୍ୟ ହୋଇ ଏହି ପାଞ୍ଚ ଜଣଯାକ ଏକଥା ଗାଁରେ ଜଣାଇଲେ । ପରେ ସମସ୍ତେ ଲୋକମାନଙ୍କ ସହିତ ମିଶି ସୁରେନ୍ଦ୍ରକୁ ଡାକିଲେ ଏବଂ ତାଙ୍କ ମଧ୍ୟରେ କଥାଟା ବୁଝାମଣା କରିବାକୁ ଚାହିଁଲେ । ସେତେବେଳେ ସୁରେନ୍ଦ୍ର ନାଏକ କହିଲା ଠିକ୍ ଅଛି- "ତୁମେମାନେ ମୋତେ ୩୦୦୦ ଟଙ୍କା ଦିଅ, ମୁଁ ତୁମ ନାମରେ ସେ ଜମିଟିକୁ ପଟ୍ଟା କରିଦେବି ।"

ସାଧୁ ଓ ହର ଆଦିଙ୍କୁ ସେତେକ ଟଙ୍କା ଯୋଗାଡ଼ କରିବାକୁ ଯଥେଷ୍ଟ କଷ୍ଟ କରିବାକୁ ପଡ଼ିବ ବୋଲି ଜାଣିଥିଲେ ସୁଦ୍ଧା ସେମାନେ ଟଙ୍କା ଦେବାକୁ ରାଜି ହୋଇ ଯାଇଥିଲେ ଏବଂ ଟଙ୍କା ଯୋଗାଡ଼ କରିବାକୁ ପୂରା ଦମ୍‌ରେ ଲାଗି ପଡ଼ିଲେ । କାରଣ ସେମାନେ ଭାବୁଥିଲେ ଯେ କୋର୍ଟ କଚେରୀରେ କେସ୍ ଦାୟର କଲେ ଏହାଠାରୁ ଅଧିକ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । ଏହା ଛଡ଼ା କେସ୍ ଲାଗିଲେ ଗାଁ ଗାଁ ମଧ୍ୟରେ ଶତ୍ରୁତା ବଢ଼ିବାର ସମ୍ଭାବନା ମଧ୍ୟ ରହିଛି । ତେଣୁ ଏତେ କଥା ହେବା ଅପେକ୍ଷା ଯଦି ଟଙ୍କା ୩୦୦୦ଟା ନେଇ ସୁରେନ୍ଦ୍ର ଏମାନଙ୍କ ନାଁରେ ଜମିଟି ପଟ୍ଟା କରିଦେବ, ତେବେ ମାମଲାଟି ସୁରୁଖୁରୁରେ ନିଜ ନିଜ ମଧ୍ୟରେ ବୁଝାମଣା ହୋଇଯିବ ଭାବି ସେମାନେ ବିନା ଦ୍ୱିଧାରେ ସୁରେନ୍ଦ୍ରର ପ୍ରସ୍ତାବରେ ରାଜି ହୋଇଗଲେ । ଏଣେ ଜମିଟିକୁ ଏମାନେ ମୋଟେ ହାତ ଛଡ଼ା କରିବାକୁ  ଚାହୁଁନଥିଲେ । ଯେହେତୁ ଜମିଟି ଏମାନଙ୍କର ଜୀବନ ଓ ଜୀବିକା ସହ ସଂପୂର୍ଣ୍ଣ ଯୋଡ଼ି ହୋଇଯାଇଛି । ସେ ଜମିର ଉତ୍ପାଦିତ ଫସଲ ଉପରେ ଏମାନଙ୍କ ବଞ୍ଚିବା ହିଁ ନିର୍ଭର କରୁଛି । ସବୁ କଥାକୁ ଆଖିଆଗରେ ରଖି ସାଧୁ, ନାଥ, ହର, ପଟି ଓ ଅନ୍ଧାରୁ ୩୦୦୦ ଟଙ୍କା ହାତରେ

ରଖି ସୁରେନ୍ଦ୍ର ନାଏକ ପାଖରେ ପହଞ୍ଚିଲେ । ଏହି ଟଙ୍କା ଯୋଗାଡ଼ କରିବାକୁ ସେମାନଙ୍କୁ ଅନେକ ଦିନ ଲାଗିଗଲା । ନାରିଙ୍ଗିଯୋଡ଼ି ଗାଁରେ ପହଞ୍ଚି ସମସ୍ତେ ସୁରେନ୍ଦ୍ରକୁ ତିନି ହଜାର ଟଙ୍କା ଦେଲେ ଏବଂ ତାକୁ ସାଙ୍ଗରେ ନେଇ କାଶୀପୁର ତହସିଲଦାର ଅଫିସକୁ ଜମି ପଟ୍ଟା କରିବା ପାଇଁ ଆସିଲେ । ସମସ୍ତେ ମିଶି କାଶୀପୁରରେ ପହଞ୍ଚିଲା ପରେ ପ୍ରଥମେ ତହସିଲଦାରଙ୍କୁ ଭେଟିଲେ । ବିନା ଦଖଲରେ ସୁରେନ୍ଦ୍ର ନାମରେ ପଟ୍ଟା ହୋଇଯାଇଥିବାରୁ ତହସିଲଦାର ସୁରେନ୍ଦ୍ରକୁ ବିଭିନ୍ନ ପ୍ରକାର ପ୍ରଶ୍ନ ପଚାରିଲେ । ସେ ଭିତରେ ସୁରେନ୍ଦ୍ର ପାଣି ପିଇବାକୁ ଯାଇ କେଉଁଆଡ଼େ ଲୁଚିଗଲା । ଆଉ ଫେରିଲା ନାହିଁ । ଏମାନେ ଅନେକ ସମୟ ସୁରେନ୍ଦ୍ରକୁ ଖୋଜା ଖୋଜି କରି ନ ପାଇବାରୁ ବାଧ୍ୟହୋଇ ଘରକୁ ଫେରି ଆସିଲେ । ପରେ ବହୁତ ଥର ଏମାନଙ୍କର ସୁରେନ୍ଦ୍ର ସହିତ ଭେଟ ହୋଇଛି ଏବଂ ଏମାନେ ବହୁତ ଥର ତାକୁ ସେ ଜମି ବାବଦରେ ପଚାରିଛନ୍ତି; ମାତ୍ର ସେ ସବୁଥର ଏଣୁ ତେଣୁ କଥା କହି ଏମାନଙ୍କୁ ଭୂଲେଇ ଚାଲିଛି । ଏମାନେ ବି ପଇସା ପତ୍ର ନଥିବାରୁ ବେଶି ପଇସା ଖର୍ଚ୍ଚ ହେବା ଭୟରେ ତହସିଲ ଅଫିସ୍ କିମ୍ବା ଥାନା ଫାଣ୍ଡି ଅଥବା କୋର୍ଟ କଚେରିରେ ଅଭିଯୋଗ ବାଢୁ ନାହାଁନ୍ତି । କର୍ମକୁ ଆଦରି ଚୁପ୍‌ଚାପ୍ ରହିଯାଇଛନ୍ତି ।

ଏଣେ ସେ ଅଞ୍ଚଳରେ ଆଲୁମିନା କମ୍ପାନୀ ପ୍ରତିଷ୍ଠା ହେବା ପାଇଁ ଜମି ଅଧିଗ୍ରହଣ ହୋଇଯାଇଛି । ଯେଉଁ ଅଞ୍ଚଳରେ କଂପାନୀ ପ୍ରତିଷ୍ଠା ହେବ, ସାଧୁଝୋଡ଼ିଆ ଆଦିଙ୍କର ୧.୮୭ ଏକର ଜମି ସେହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ରହିଛି । ପୁଣି ପଟ୍ଟା ଜମି ଅଧିଗ୍ରହଣ ପାଇଁ କମ୍ପାନୀ ତରଫରୁ କ୍ଷତି ପୂରଣ ବାବଦରେ ଜମି ମାଲିକଙ୍କୁ ଜମିର ମୂଲ୍ୟ ଟଙ୍କା ଆକାରରେ ଦିଆଯାଉଛି । ଯେହେତୁ ସେହି ୧.୮୭ ଏକର ଜମି ସୁରେନ୍ଦ୍ର ନାମରେ ପଟ୍ଟା ଅଛି ସେ ବାବଦରେ କମ୍ପାନୀ ତରପରୁ କ୍ଷତିପୂରଣ ପାଇବା ଲୋଭରେ ସେ ଆଉ ଏମାନଙ୍କୁ ଧରାଛୁଆଁ ଦେଉନାହିଁ । ବାସ୍ତବିକ୍ ସରଳ ଆଦିବାସୀମାନଙ୍କୁ ବିଭିନ୍ନ ପ୍ରକ୍ରିୟାରେ କରାଯାଉଥିବା ଶୋଷଣ କଥା ଭାବିଲେ ଲାଗେ ଯେମିତି ଶୋଷଣ ପ୍ରକ୍ରିୟା ଅନ୍ତହେବା ପୂର୍ବରୁ ଆହୁରି ଅଧିକ ଶୋଷଣ ପ୍ରକ୍ରିୟାମାନ ସୃଷ୍ଟି ହୋଇଯାଇଛି ।

ଡିସେମ୍ବର - ୧୯୯୮



# ଖୋଲା ବଜାରରେ ଜୀବନ ବିକ୍ରି

## "ମୁଇଁ ହଲିଆ ଅଛେ, ମୋର ଧନ୍ ନାଇଁନି"

ସେଦିନ ଥାଏ ଜୁଲାଇ ମାସ ୧୯ ତାରିଖ। ପ୍ରକଳ୍ପ ଜିପ୍ ସାହାଯ୍ୟରେ ଆମେ ପହଞ୍ଚିଲୁ ମହୁଲପାଟଣା ଗ୍ରାମ ପଞ୍ଚାୟତରେ। ତା'ପରେ ଗାଡ଼ି ଯିବାଭଳି ରାସ୍ତା ନଥିଲା। ତେଣୁ ସେଠାରୁ ଚଲା ରାସ୍ତାରେ ଘାଟି ଚଢ଼ି ଚଢ଼ି ପହଞ୍ଚିଲୁ ସେହି ପଞ୍ଚାୟତର ପୋଡ଼ାପଦର ଗାଁରେ। ପୋଡ଼ାପଦର ଗାଁରେ ପହଞ୍ଚିଲା ବେଳକୁ ଆମେ ମହୁଲ ପାଟଣାଠାରୁ ୫ କି.ମି. ଚାଲି ସାରିଥିଲୁ। ଘାଟି ରାସ୍ତା ଚାଲିଥିବାହେତୁ ଆମକୁ ଥକ୍କା ଲାଗୁଥିଲା। ଆମ ପ୍ରକଳ୍ପର ପୋଡ଼ାପଦରଠାରେ ଥିବା ଉପକେନ୍ଦ୍ରରେ ଅଧଘଣ୍ଟାଏ ବିଶ୍ରାମ ନେଇ ପୁଣି ଚାଲିବା ଆରମ୍ଭ କଲୁ। ପ୍ରାୟ ତିନି କି.ମି. ଚାଲିବା ପରେ ଆମେ ପହଞ୍ଚିଲୁ ଆମ ଅଭିଳଷିତ ଗାଁ ତୋଟାପଡ଼ାଠାରେ। ସେତେବେଳକୁ ମୁହଁ ସଞ୍ଜ ହୋଇ ଆସୁଥାଏ। ଗାଁର ମଝିରେ ମଝିରେ ଘରଗୁଡ଼ିକ ବନ୍ଧାଯାଇଥିବାରୁ ଗାଁଟିର ମୁଖ୍ୟ ରାସ୍ତା କେଉଁଟା ମୋଟେ ଜାଣି ହେଉନଥାଏ। ଅଧିକାଂଶ ଘର ଆଗକୁ ମେଣ୍ଢା, ଛେଳି ଏବଂ ଗାଈ ସବୁ ଡଙ୍ଗରରୁ ଚରି ଫେରି ଆସିଥାନ୍ତି। ପାଖ ଡଙ୍ଗରରେ କାମ କରୁଥିବା ଖୁବ୍ କମ ଲୋକ ଗାଁକୁ ଫେରି ନିଜ ନିଜ ପିଣ୍ଡାରେ ବସିଥାନ୍ତି। ବାକି ଯେଉଁମାନେ ଦୂରରେ କାମ କରିବାକୁ କିମ୍ୱା କୁଲି ଭୂତି କରିବାକୁ ଯାଇଥାନ୍ତି ସେମାନେ କିଛି ସମୟ ବ୍ୟବଧାନରେ ଜଣ ଜଣ କରି ଫେରୁଥାନ୍ତି। ଆମକୁ ଦେଖି କେତେଜଣ ଆମ ପାଖକୁ ଆସିଲେ। ଆମ ସହିତ ଜଣେ ପୁରୁଷ କର୍ମୀ ଥାଆନ୍ତି । ସିଏ ସେ ଗାଁ ଲୋକଙ୍କ ସହିତ ପୂର୍ବରୁ ପରିଚିତ। ତେଣୁ ଆମକୁ ପରିଚିତ ହେବାପାଇଁ ବେଶିକିଛି ଅସୁବିଧା ହୋଇନାହିଁ। ସମସ୍ତେ ମିଶି ଗାଁ ମଝିରେ ଥିବା ପଥର ଖଣ୍ଡମାନଙ୍କରେ ବସିଲୁ। ଆମକୁ ସେମାନେ ଆମର ପରିଚୟ ମାଗିଲେ। ଆମେ ମଧ୍ୟ ସେମାନଙ୍କ ଚଳଣି, ସୁବିଧା, ଅସୁବିଧା ବିଷୟରେ ପଚାରି ବୁଝିଲୁ।

କୋଡ଼ିଏଟି ପରିବାରର ୭୪ ଜଣଙ୍କୁ ନେଇ ଗାଁଟି । ସମସ୍ତେ ଆଦିବାସୀ । ପିଲାମାନେ ପଢ଼ିବା ପାଇଁ ଗାଁରେ ସରକାରୀ ସ୍କୁଲ ନଥିବାରୁ ଅଗ୍ରଗାମୀ ତରଫରୁ ଗୋଟିଏ ରାତି ସ୍କୁଲ ଖୋଲାଯାଇଛି । ସ୍ୱାସ୍ଥ୍ୟ ସେବାର କୌଣସି ସୁବିଧା ନାହିଁ । ଏତେବଡ଼ ଗାଁରେ ମାତ୍ର ଗ୍ରରିଜଣଙ୍କର ପଟ୍ଟା ଜମି ଅଛି । ତାହା ପୁଣି ଦୁଇ ଏକରରୁ କମ୍ । ବାକି ସମସ୍ତେ ଡଙ୍ଗର ଚାଷ କରି ଖାଉଛନ୍ତି । ସେଥିରେ ମାତ୍ର କମ୍ ଦିନ ଖଟୁଛନ୍ତି । ଅଧିକାଂଶ ସମୟ କୁଲି ଭୂତି କରି ଚଳୁଛନ୍ତି । ଏ ଗାଁର ଅଧିକାଂଶ ଲୋକ ପାଖରେ ଥିବା ଖମାର ପଦର ଗାଁକୁ (ହରିଜନ ସାହିକୁ) କୁଲି କରି ଯାଉଛନ୍ତି । ଆଜି ମଧ୍ୟ ସେମାନେ ଦିନେ କାମ କଲେ ଦଶ ଟଙ୍କା ମଜୁରୀ ପାଉଛନ୍ତି । ଟଙ୍କା ନଆଣି ଖାଦି ଆଣିଲେ ଖାଦି ବାବଦକୁ ମାଣେ ଧାନ ମାତ୍ର ମିଳୁଛି ମହାଜନଠାରୁ । ସେଇଥିରେ ସଂସାରକୁ ଚଳାଇବା ପାଇଁ ଏମାନେ ବାଧ୍ୟ । ଦଶ ଟଙ୍କା ମଜୁରୀରେ ସେମାନେ ଚଳିଯାଉଛନ୍ତି ବୋଲି ପଚାରିଲାପରେ ଯାହା ଶୁଣିଲି ଆହୁରି ଆଶ୍ଚର୍ଯ୍ୟ ଲାଗିଲା । ସେମାନେ କହିଲେ, ଯେଉଁଦିନ କୁଲି କରି ଯାଉଛୁ ସେଦିନ ତ ଦଶ ଟଙ୍କା ହେଲେ ମିଳୁଛି, ମାତ୍ର କାମ ଦାମ ନଥିବା ସମୟରେ କୁଲି ନମିଳିଲେ ଆମେ ଉପାସରେ ରହିବାକୁ ବାଧ୍ୟ ହେଉଚୁ । ଖାସ୍‌କରି ଭୂତି ପାଇବା ଆଶାରେ ଗାଁର କେତେଜଣ ପାଖ ଖମାର ପଦର ହରିଜନମାନଙ୍କ ପାଖରେ ମାସରି (ମାସିକିଆ ଚାକର) ଅଛନ୍ତି । କଥା ପ୍ରସଙ୍ଗରେ ସେମାନେ ତାଙ୍କ ଗାଁର ଜୟ ମାଝୀ କଥା ଆରମ୍ଭ କଲେ, ଯିଏ ଆଜକୁ ବାର ବର୍ଷ ହେବ ଖମାର ପଦରର ଶିକ୍ଷକ ତ୍ରିଲୋଚନ ନାଏକ ପାଖରେ ହଳିଆ/ଗୋତି ଅଛି । ସରଳ ମଣିଷଟିଏ । ବାବୁମାନଙ୍କୁ ଦେଖିଲେ ଭୟ କରେ । ସେ କେବଳ ପରିଶ୍ରମ କରେ । କିନ୍ତୁ ପାରିଶ୍ରମିକକୁ ତା' ସହିତ ତଉଲି ପାରେନାହିଁ । ତଉଲାଇବା ପାଇଁ ଅବକାଶ ମଧ୍ୟ ପାଇନାହିଁ । ଦିନ ରାତି ଖଟିବା ବଦଳରେ ସେ ପାଏ ବାର୍ଷିକ ୫୦୦ ଟଙ୍କା ଏବଂ ଖାଦି ବାବଦକୁ ମାସିକ ୧୫ ମାଣ ଧାନ ।

୧୯୯୬ ମସିହାର ଘଟଣା । ଥରେ ଜୟ ମାଝୀ ନିଜେ ଆସି ଅଗ୍ରଗାମୀ ଅଫିସରେ ଜଣାଇଲା ଯେ "ମୁଇଁ ହଳିଆ ଅଛେ, ମୋର କିଛି ଧନ୍ ନାଇଁନି ।" ମୋତେ ମୋର ମହାଜନ ମାର୍‌ଲା । ସେଥିର ଲାଗି ମୁଇଁ ନାଇଁ ରଏ । ଅଗ୍ରଗାମୀଠାରୁ ମୋକେ କେତେକ୍ ଡାବୁ ଦେଲେ ମୁଁ ମହାଜନକେ ତା'ର ଋଣ ଫେରାଇଦେବି, ଆର ତମେ ଦେଲା ପଇସାକେ ତମରଠାନେ କାମ କରି ଶୁଝିବି ଏକା । ଏକଥା ଜାଣିବା ପରେ ଅଗ୍ରଗାମୀ କର୍ମୀମାନେ ସରକାରୀ ଅଫିସରେ ଗୋଷ୍ଠୀ ଉନ୍ନୟନ ଅଧିକାରୀ ଏବଂ ଜିଲ୍ଲାପାଳ ଲିଖିତ ଆକାରରେ ଜଣାଇଥିଲେ । ୧୯୯୭ ମସିହାରେ ଜିଲ୍ଲାପାଳଙ୍କ ସୂଚନା ତଥା ନିର୍ଦ୍ଦେଶ କ୍ରମେ ବିଡ଼ିଓ ଶ୍ରଦ୍ଧାକର ବାବୁ ଏବଂ କଲ୍ୟାଣ ସଂପ୍ରସାରଣ ଅଧିକାରୀ ମଧୁସୂଦନ ନିଆଲ

ଜୟ ମାଝୀର ଗାଁକୁ ତଦାରଖ ପାଇଁ ଚାଲି ଚାଲି ଆସି ପହଞ୍ଚିଲେ । ଜୟ ମାଝୀକୁ ଡାକି ସବୁକଥା ପଚାରିଲେ । ସେ କିନ୍ତୁ ସରକାରୀ ବାବୁମାନଙ୍କୁ ଦେଖି ଡରିଗଲା ଏବଂ ମହାଜନ ପାଖେ ହଳିଆଥିବା କଥା ମନା କରିଦେଲା । ତା'ପରେ ସରକାରୀ ଅଫିସର ଦୁଇଜଣ ଫେରିଗଲେ । ପରେ ତାକୁ ଯେତେବେଳେ ଏ ବିଷୟରେ ପଚରାଗଲା, ସେ କହିଲା ମହାଜନ ମୋକେ ହୁଡ଼ବା ଡର୍‌ରେ ମୁଇଁ ନାଇଁ କର୍‌ଦେଇସି । ଆର ମହାଜନ ମୋକେ କହିଲା କି ଯେ ମିଶା ଆସ୍‌ଲେ କହିବୁସ୍ ମହାଜନ ମୋକେ ଭୂତେକ୍ ପଇସା ଆରି ଖାଦି ମିଶା ଦେଇସିଛ୍ । ଏହାପରେ କାହାର ଅବା କ'ଣ ଉପାୟ ଥିଲା ! ମାତ୍ର ତା'ପରଠାରୁ (ବର୍ଷେ ହେଲା) ଜୟ ବର୍ଷକିଆ ଗୋତି/ହଳିଆ ନରହି ସେହି ମହାଜନଘରେ ମାସରି ଅଛି । ତା ସହିତ ତାଙ୍କ ଗାଁର ଆଉ ଦୁଇଜଣ ବୁଦୁରା ଏବଂ ଚିଙ୍ଗନା ମଧ୍ୟ ଏଇ ଦୁଇବର୍ଷ ହେଲା ମାସରି ଅଛନ୍ତି ।

**ଗାଁ- ତୋଟାପଡ଼ା, ବ୍ଲକ - ଥୁଆମୂଳ ରାମପୁର**

**ମୋଟ ଲୋକସଂଖ୍ୟା - ୭୪, ପୁରୁଷ - ୩୩, ମହିଳା - ୪୧**

**ମୋଟ ସାକ୍ଷରତା ହାର - ୩୦.୩୪%**

**ମୁଖ୍ୟ ଶସ୍ୟ - ଧାନ, କାଙ୍ଗୁ, କୋଶଳା**

**ମୁଖ୍ୟ ନଦୀ - ଇନ୍ଦ୍ରାବତୀ ନଦୀ, ମୁଖ୍ୟ ପାହାଡ଼ - ଟିକିଲି ମାଳି**

ଏମିତି କଥା ହେବା ମଝିରେ ଜୟ ମାଝୀ ମହାଜନର ହଳ ସାରି ଫେରିଲା ତା' ନିଜ ଘରକୁ । କାମରୁ ହାଲିଆ ହୋଇ ଫେରୁଥିବା ହେତୁ ତାକୁ ଆମେ ରାସ୍ତା ମଝିରେ ଅଟକାଇଲୁ ନାହିଁ । କିଛି ମୁହୂର୍ତ୍ତ ତା'ସହ କଥାହେବାର ଆଗ୍ରହକୁ ବେଶି ସମୟ ରୋକି ହେଲାନାହିଁ । ଅତଏବ କିଛି ସମୟ ପରେ ଆମେ ତାଙ୍କ ଘରକୁ ଗଲୁ । ଦ୍ୱାର ମୁହଁରେ ଠିଆହୋଇ ଡାକିଲୁ । କିଛି ଜବାବ ନପାଇଁ ନୂଆଁଣିଆ ଚାଳଟି ମୁଣ୍ଡରେ ବାଜିବା ଭୟରେ ଅଧା ନଇଁ ତା' ଘର ଭିତରେ ପ୍ରବେଶ କଲୁ । ମାତ୍ର ଘରେ ଯାଇ ଦେଖିଲୁ କେହି ନଥିଲେ । ଘର ଭିତରୁ ବାହାରି ଆସି ଦାଣ୍ଡରେ ଜଣେ ମା'ଙ୍କୁ ପଚାରିବାରୁ ସେ କହିଲେ, ଜୟ ତା'ର ବାଡ଼ିପଟେ ବାହାରି କୁଆଡ଼େ ଗଲା । ସବୁ ଆଗ୍ରହ ଆମର ପାଣି ଫାଟିଗଲା ମନେ ମନେ । ପୁଣି ପୂର୍ବ ସ୍ଥାନରେ ଆସି ବସିବାରୁ ଜଣେ ବୁଆ କହିଲେ ଯେ ସେ ପୂର୍ବ ଘଟଣା ଭୟରେ ଆପଣମାନଙ୍କୁ ଦେଖି ଲୁଚି ଯାଇଥିବ । ଆମେ ମଧ୍ୟ ସେହି କଥା ଅନୁଭବ କଲୁ । ଠିକ୍ ସେହି ସମୟରେ ଦେଖାହେଲା ଆଉଜଣେ ମାସରି ସହିତ । ନାଁ ତା'ର ବୁଦାରୁ ମାଝୀ । ବୟସ ମାତ୍ର ୨୮ ବର୍ଷ । ତାର ସ୍ତ୍ରୀ ସମେତ ୪ଟି ଛୁଆ ମଧ୍ୟ ଅଛନ୍ତି । ସମସ୍ତେ ଛୋଟ ଛୋଟ । ସେ ସେହି ମହାଜନ ପାଖରେ ୨ବର୍ଷ ହେବ ମାସରି ଅଛି ।

ପଚାରିଲି ମାସକୁ କେତେ ଟଙ୍କା ମିଳୁଛି ?

- ମହାଜନ ନିଜେ ଆମକୁ କାମ କରିବାକେ ଖୋଜି ଆସିଲେ ମାସକୁ ୨୦୦ ଟଙ୍କା ଦେଉଛି ।

-ଆମେ ନିଜ ତରଫରୁ କାମ ଖୋଜିଗଲେ ମହାଜନ ୧୨୦ ଟଙ୍କା ଦେଉଛି । ମୁଁ ଏବେ ୨୦୦ ଟଙ୍କା ପାଉଛି । କାରଣ ବର୍ଷା ମାସରେ ମହାଜନର ବେଶି କାମ ଲାଗେ ଓ ସିଏ ନିଜେ ଆମକୁ ଖୋଜିଆସେ । କିନ୍ତୁ ଅନ୍ୟ ସମୟରେ ଆମେ ନିଜେ ଯାଉଥିବାରୁ ମହାଜନ ଆମକୁ ୧୨୦ ଟଙ୍କା ଦିଏ । ଏହା ବ୍ୟତୀତ ଖାଦି ପାଇଁ ମାସକୁ ୧୫ ମାଣ ଧାନ ମିଳୁଛି ।

-ଏଠାରେ ଏତେ କମ୍ ପଇସାରେ କାମ କରିବା ଅପେକ୍ଷା ଇନ୍ଦ୍ରାବତୀ ନଦୀବନ୍ଧ ଯୋଜନାରେ ହେଉଥିବା କାମ କଲେ ଦିନକୁ ୩୦ ଟଙ୍କା ମିଳିବା କଥା କହିବାରୁ ସେ କହିଲେ, - "ଆଜ୍ଞା ଯେଉଁଠି କାମ ହେଉଛି ସେ ଜାଗା ଆମ ଗାଁଠାରୁ ଅନେକ ଦୂର (ପାଖାପାଖି ୨୦ କି.ମି.) । ସେଠାକୁ ଗଲେ ଫେରି ହେବନାହିଁ କିମ୍ବା ସେଠାରେ ରହିବାର ସୁବିଧା ନାହିଁ । ପିଲା ଛୁଆଙ୍କୁ ଧରି ସେଠାରେ ରହି ହେବନାହିଁ । ଏଣେ ପିଲାଛୁଆଙ୍କୁ ଛାଡ଼ି ମଧ୍ୟ ରହିବା କଷ୍ଟ । ତେଣୁ ବାଧ୍ୟ ହୋଇ ଏଠି ମାସରି (ମାସିକିଆ ଗୋତି) ଅଛି ।

ସମୟର କିଛି ମାପ କାଠି ନାହିଁ ସେମାନଙ୍କ ପାଇଁ । ସକାଳୁ ସଞ୍ଜ ଯାଏ ଗଧଭଳି ଖଟିବାକୁ ପଡ଼େ । ଗୋଟିଏ ପଟରେ ପରିବାର ବଞ୍ଚାଇବାର ବାଧତା ଏବଂ ଅନ୍ୟ ପଟରେ ସ୍ୱଳ୍ପ ମୂଲ୍ୟରେ କଠିନ ପରିଶ୍ରମ ଉଭୟ ସେମାନଙ୍କ ଜୀବନକୁ ସାହୁକାରର ବିଲରେ ବାନ୍ଧି ରଖିଛି । ଏମିତି ହିସାବ କଲେ ମାସକୁ ୧୨୦ ଟଙ୍କା ହିସାବରେ ଦିନକୁ ୪ ଟଙ୍କା ମଜୁରି ପଡୁଛି । ଧାନ ୧୫ ମାଣ କଥା ନକହିଲେ ଭଲ । ଏ ତ ଗଲା ମାସରିମାନଙ୍କ କଥା । ବାକି ଅନ୍ୟମାନେ କୁଲି ଭୂତି କରିଗଲେ ଦିନସାରା ପରିଶ୍ରମ କରି ୧୦ ଟଙ୍କା ମଜୁରି ପାଉଥିବାବେଳେ ଚାଉଳ କିଲୋ ୧୧ ଟଙ୍କା ହେଲାଣି । ଲୁଣ ତେଲର ହିସାବ ମୁଣ୍ଡରେ ପଶେନି । ତଥାପି ସେଇଥିରେ ୬ ପ୍ରାଣୀ ଗୁଜାରୁଥିବା ସଂସାର କଥା ଭାବିଲେ ବିଶ୍ୱାସ କରିହୁଏନି । ଆଜି ବି ଜୟ ଏବଂ ବୁଦାର ଭଳି ଅନେକ ଲୋକ ବଞ୍ଚିବା ପାଇଁ ବାଧ୍ୟ ହୋଇ ଅନ୍ୟ ପାଖରେ ମୁଣ୍ଡ ଗୁଞ୍ଜିଛନ୍ତି । ଅତି ବେଶି ହେଲେ ବର୍ଷିକିଆ ଗୋତି ନ ରହି ମାସିକିଆ ହଳିଆ ହୋଇ ରହୁଛନ୍ତି । ବାସ୍ତବିକ ଉପାୟ ଶୂନ୍ୟ ମଣିଷ ଯେତିକି ପାଏ ସେତିକିରେ ସନ୍ତୁଷ୍ଟ ହେବାକୁ ବାଧ୍ୟ ହୁଏ । ନଚେତ୍ ତାଡ଼ନା ଓ ଲାଞ୍ଛନାର ଶିକାର ହୋଇଥାଏ ।

ଡିସେମ୍ବର - ୧୯୯୮

# ସାଧାରଣ ବଣ୍ଟନ ବ୍ୟବସ୍ଥା: ଏକ ରୂପରେଖ

ସେଦିନ ଅବସର ମୁହୂର୍ତ୍ତରେ ଚାହିଁଥିଲା ତ୍ରିନାଥ । ଶୁଖିଲା ମୁହଁରେ ବି ଝାଳ ବୋହି ଆସିଲା ଭଳି ଦେଖା ଯାଉଥାଏ । ତିନି କିଲୋମିଟର ରାସ୍ତା ଦେଇ ତା'ର ଗାଁକୁ ପହଞ୍ଚିଥିଲେ ଆମର କେତେଜଣ କର୍ମୀ । ସବୁ ଯେମିତି ଗାଁକୁ ଶ୍ରୀହୀନ କରି କିଏ କ'ଣ ଲୁଟିନେଇଛି । ତଥାପି ସବୁ ଲୋକ ଆସି ଜମା ହେଲେ । ଲୋକମାନଙ୍କ ମଧ୍ୟରେ ଅନେକ ବିଷୟରେ କଥା ପଡିଲା । ସେତେବେଳେ ସବୁଠାରୁ ବେଶି ବଡ କଥା ଥିଲା ଯେ ସରକାର ଲୋକମାନଙ୍କ ଠାରୁ ଛଡେଇ ନେଇଗଲେ ସେମାନଙ୍କ କଠିନ ଉଦ୍ୟମରେ ଚଳାଇଥିବା ସେହି ସରକାରୀ ବ୍ୟବସ୍ଥାକୁ । ତାହାରି ମାଧ୍ୟମରେ ପେଟକୁ ଦାନାନେବା ଯେ ସବୁଠୁ ବଡ ଲକ୍ଷ୍ୟ ଥିଲା ତାହା ନୁହେଁ ବରଂ ପ୍ରତ୍ୟେକ ଦିନ ଅନେକ ଗାଁର ଲୋକ ଏକାଠି ହେଉଥିଲେ, ଜିନିଷ କିଣିବା ବେଳେ ବି ଗାଁର ଅନେକ ଦୁଃଖସୁଖ ବିଷୟ ଆଲୋଚନା ହେଉଥିଲା । ଆଜି ଅନ୍ୟ ଜାଗାକୁ ଯିବାକୁ ପଡୁଛି । ତଥାପି ଦାରିଦ୍ର୍ୟର ସୀମାରେଖା ତଳେ ଥିବା ଲୋକଙ୍କ ତାଲିକାରେ ନାଁ ନଥିଲେ ହତାଶ ହୋଇ ଫେରି ଆସିବାକୁ ପଡୁଛି ।

କଳାହାଣ୍ଡି ଜିଲ୍ଲାର ଥୁଆମୂଳ ରାମପୁର ବ୍ଲକ୍ ଅନ୍ତର୍ଗତ ଗୋଡିଗାଁ ଉପକେନ୍ଦ୍ର ସନ୍ନିକଟସ୍ଥ ତଗପାଲି ଗୋଟିଏ ଆଦିବାସୀ ଗାଁ । କେଉଁ ଆବହମାନ କାଳରୁ ଏଠାରେ ଲୋକମାନେ ବସବାସ କରି ଆସୁଛନ୍ତି । ଚାରିକଡେ ପାହଡ ଘେରି ରହିଛି ଓ ମଝିରେ ଗାଁଟି । ଗାଁରେ ମୋଟ ୪୫ପରିବାର ବସବାସ କରି ରହିଛନ୍ତି । ଏହି ଗାଁର ଲୋକମାନେ ଆଗରୁ ସିସ୍ଟୁ ଅଫିସରମାନଙ୍କୁ କାନ୍ଧରେ କାନ୍ଧେଇ ଗାଁକୁ ବୋହି ଆଣୁଥିବାର ଜଣାଯାଏ । ତଥାପି ଦିନ ଗଡିଯିବା ପରେ ଲୋକମାନେ ଆସ୍ତେ ଆସ୍ତେ ଅଗ୍ରଗାମୀର ସଂପର୍କରେ ଆସିଲେ । ସେମାନଙ୍କର ବର୍ତ୍ତମାନ ଏବଂ ପୂର୍ବ କଥାକୁ ତୁଳନା କଲେ ଆକାଶ ପାତାଳ ଫରକ ଜଣାଯାଏ । କୌଣସି ଜିନିଷପତ୍ର କିଣିବାକୁ ହେଲେ ଲୋକମାନେ ଏହି ଗାଁ ଠାରୁ ୮-୯କି.ମି. ଘାଟି ରାସ୍ତା ଦେଇ ଚାଲି ଚାଲି

ତଳି ଗାଁ ହାଟକୁ ଯାଇ ସଉଦାପତ୍ର କିଣନ୍ତି । ସବୁବେଳେ ଲୋକେ ହାଟକୁ ଯାଇ ନପାରି ଉପାସ ରହିବାର ମଧ୍ୟ ନଜିର ଅଛି । ଅନ୍ୟାନ୍ୟ ଜିନିଷପତ୍ର ତୁଳନାରେ ଖାଦ୍ୟ ତ ମୁଖ୍ୟ । ଗୋଟିଏ କିଲୋ ଚାଉଳ ପାଇଁ ଲୋକମାନଙ୍କୁ ଆଠକିଲୋମିଟର ବାଟ ଯିବାକୁ ପଡିଥାଏ । ଯାହା ହେଲେ ବି ନିଜପାଇଁ କିଛି ନା କିଛି ଜିନିଷ କିଣିବାକୁ ପଡେ । ଦେହ ଖରାପ ଥିଲେ କିମ୍ବା କାହାର ଘରେ ଭେଣ୍ଡିଆ ପିଲା ନ ଥିଲେ ସେମାନେ ହାଟକୁ ଯାଇ ନ ପାରି ବିନା ହଳଦି ଲୁଣରେ କୁଟୁମ୍ବ ଚଳାଇବା ପାଇଁ ବାଧ୍ୟ ହୋଇଥାଆନ୍ତି । ଏମିତି କାହିଁ କେତେ ପୁରୁଷରୁ ସେମାନେ ଚଳି ଆସୁଛନ୍ତି ।

ସମୟ ଆସିଲା ଧୀରେ ଧୀରେ ସେସଠାରେ ଲୋକମାନେ ବାହାର ଦୁନିଆକୁ ଆସିଲେ । ସାହୁକାର କହୁଥିବା କଥା ରାପ୍‌ଲୁ ପୁଟେ, ନାପ୍‌ଲୁ ପୁଟେ, ନେଲୁ ପୁଟେ ବୁଝିଲେ । ସେମାନଙ୍କୁ ଠକି ନେଉଥିବା ଲୋକମାନଙ୍କ ବିଷୟରେ ବୁଝିବା ପାଇଁ ଆରମ୍ଭ କଲେ । ଯେଉଁ ଗାଁକୁ ଗଲେ ଲୋକମାନେ ଲୁଚିଯାଉଥିଲେ, ସେମାନେ ନିଜର ଜୀବନ ଜୀବିକା ବିଷୟରେ ଆଲୋଚନା କରି ସେଥିରୁ ନିଜେ କିଛି କରିବା ପାଇଁ ଆଗ୍ରହ ପ୍ରକାଶ କଲେ । ସେ ମଧ୍ୟରେ ସେମାନେ ତାଙ୍କପାଇଁ ଉଦ୍ଦିଷ୍ଟ ସରକାରୀ ଯୋଜନା ବିଷୟରେ ମଧ୍ୟ ଜାଣିଲେ । ସେ ମଧ୍ୟରୁ ନିଜର ନିତ୍ୟ ବ୍ୟବହାର୍ଯ୍ୟ ଜନିଷ ସରକାରଙ୍କ ତରଫରୁ ସୁଲଭ ମୂଲ୍ୟରେ ମିଳିବା କଥା ସେମାନଙ୍କ ମନରେ ନୂଆ ଆଶା ସଂଚାର କଲା । ହାଟରେ ଯେଉଁମାନେ ସେମାନଙ୍କ ପାଇଁ ତେଲ, ଚିନି, କିରୋସିନି ଏବଂ ଚାଉଳ ଇତ୍ୟାଦି ବିକୁଛନ୍ତି ସେମାନେ ସମସ୍ତେ ବଜାରରୁ ଜିନିଷ କିଣି ବିକନ୍ତି ନାହିଁ ବରଂ ସରକାରଙ୍କଠାରୁ ବା ବ୍ଲକରେ ସେମାନଙ୍କ ପାଇଁ ଆସୁଥିବା ଚାଉଳ, ତେଲକୁ ଡିଲରଠାରୁ କଳାବଜାରୀ କରି ଆଣି ବିକୁଛନ୍ତି ।

ଏହି କଥାକୁ ଖାଲି ଲୋକମାନେ ଜାଣିଲେ ନାହିଁ, ସେମାନେ ମଧ ଅନୁଭବ କଲେ । ଏହାପରେ ଲୋକମାନେ ଆଗକୁ ବାହରିଲେ ଏବଂ ସାମୂହିକ ଭାବେ ନିଜେ ମଧ୍ୟ ଏହି ଜିନିଷକୁ ଆଣି ନିଜ ଗ୍ରାମରେ ବିକିବେ ବୋଲି ବାହାରିଲେ । ତା'ପରେ ଲୋକମାନଙ୍କ ଭିତରେ ଅନେକ ସାହସ ସଂଚାରହେଲା । ଏହିଭଳି କାର୍ଯ୍ୟକ୍ରମକୁ ହାତକୁ ନେବାପାଇଁ ହେଲେ ପ୍ରଥମେ ଲୋକମାନଙ୍କ ପାଖରେ ପୁଞ୍ଜିଥିବା ଦରକାର । ଏକଥା ସମସ୍ତେ ଭଲଭାବେ ଜାଣିଥିଲେ । ତଗାପାଲି ଗାଁର ଲୋକମାନେ ଆଗକୁ ବାହାରିଲେ ମଧ୍ୟ ସେମାନଙ୍କ ପାଖରେ ସେତେ ପରିମାଣର ଅର୍ଥ ନଥିବାରୁ ଜିନିଷ ପତ୍ର କିଣାବିକା କରିବା ପାଇଁ ପଛେଇଗଲେ । ଏହାପରେ ଆଖପାଖ ଗାଁର ଲୋକମାନଙ୍କ ସହିତ ଆଲୋଚନା ହେଲା ।

ଆଜିକି ପ୍ରାୟ ଚାରିବର୍ଷ ତଳେ ଅଗ୍ରଗାମୀ ସହାୟତାରେ ତଗାପାଲିର ଲୋକମାନେ ଅନ୍ୟ ଗାଁର ଲୋକଙ୍କୁ ବୁଝାଇ ଏବଂ ସେମାନଙ୍କୁ ନିଜ ଗାଁ ସାଙ୍ଗରେ ମିଶାଇ ଗୋଟିଏ ସାଧାରଣ ବଣ୍ଟନ କେନ୍ଦ୍ର ତଗାପାଲିଠାରେ ସ୍ଥାପନ କରିବା ପାଇଁ ବାହାରିଲେ । ଏଥିପାଇଁ ସେଠାରେ ଏକ ଘର ମଧ୍ୟ ଠିକ୍ କଲେ । ଲୋକେ ସୁଲଭ ମୂଲ୍ୟରେ ଚାଉଳ, କିରୋସିନି ଓ ଚିନି ଇତ୍ୟାଦି ପାଇବାପାଇଁ ମିଳିତ ଉଦ୍ୟମରେ ଏକ ସାଧାରଣ ବଣ୍ଟନ କେନ୍ଦ୍ର ଖୋଲିବାକୁ ଚାହିଁବାରୁ ସରକାର ସେମାନଙ୍କୁ ସେ ସୁବିଧା ଦେବା ପାଇଁ ରାଜି ହେଲେ । ସେହି ପାଞ୍ଚଖଣ୍ଡ ଗାଁ ଯଥା; ତଳଗୋଡି, ଗୋତିଗାଁ, ତଗାପାଲି, ପଣାଆଉଁଲି ଓ ହିରିଗୁଡା ଗ୍ରାମକୁ ନେଇ ଏକ ମିଳିତ ସାଧାରଣ ବଣ୍ଟନ କେନ୍ଦ୍ର କରାଗଲା । ଏଥିପାଇଁ ପ୍ରତି ଘରୁ ୩୦ଟଙ୍କା ଲେଖାଏଁ ଚାନ୍ଦା ଆଦାୟ ହେଲା । ଚାନ୍ଦା ବାବଦରେ ସମୁଦାୟ ୯୪୫ଟଙ୍କା ଆଦାୟ ହୋଇଥିଲା । ଅଗ୍ରଗାମୀ ମଧ୍ୟ ଏଥିପାଇଁ ୨୦,୦୦୦ଟଙ୍କା ସାହାଯ୍ୟ ଦେଲା । ସେଥିରେ ସେମାନେ ପ୍ରଥମେ ଘର ବାନ୍ଧି ଜିନିଷପତ୍ର ଯଥା-; ଚାଉଳ, କିରୋସିନି, ଚିନି ଇତ୍ୟାଦି ଆଣିବାର ବ୍ୟବସ୍ଥା କଲେ । ଏହି ଗାଁକୁ ଗାଡି ତ ଯାଇପାରେ ନାହିଁ । ତେଣୁ ଲୋକମାନେ ପ୍ରତି ମାସରେ ଅଧା ଅଧା ରାସ୍ତାରୁ ପାଳି କରି ଘାଟି ରାସ୍ତା ଦେଇ ନିଜ କାନ୍ଧରେ ସେ ସବୁକୁ କାନ୍ଧେଇ ବୋହି ନେଇ ଯାଆନ୍ତି । ଯତେକଷ୍ଟ ହେଲେ ସୁଦ୍ଧା ସୁଲଭ ମୂଲ୍ୟରେ ପ୍ରତିଥର ଚାଉଳ, କିରୋସିନି ଓ ଚିନି ପାଇ ପାରୁଥିବାରୁ ସେମାନେ ଏହାକୁ ସୁରୁଖୁରୁରେ ଚଳାଇଲେ । ଏହି ସାଧାରଣ ବଣ୍ଟନ କେନ୍ଦ୍ର ପରିଚାଳନା ପାଇଁ ପ୍ରତି ଗ୍ରାମରୁ ୨ଜଣ କରି ୫ଟି ଗାଁରୁ ମୋଟ ୧୦ଜଣଙ୍କୁ କମିଟି ସଭ୍ୟ ଭାବରେ ରଖାଯାଇଥିଲା । ପ୍ରତି ମାସରେ କମିଟି ସଭ୍ୟମାନଙ୍କର ବୈଠକ ବସୁଥିଲା । ଜିନିଷଗୁଡିକୁ କେଉଁ ଦରରେ ବିକ୍ରି କରାଯିବ ତାହା ବୈଠକରେ ଠିକ୍ କରାଯାଉଥିଲା । ୧୯୯୭ସୁଦ୍ଧା ତଗାପାଲି ସାଧାରଣ ବଣ୍ଟନ କେନ୍ଦ୍ରର କିଛିଟା ଲାଭ ହେବା ସହିତ ଲୋକମାନେ ମଧ୍ୟ ବେଶ୍ ଉପକୃତ ହୋଇ ଆସୁଥିଲେ ।

କିନ୍ତୁ ୧୯୯୭ ମସିହା ଜୁନ୍ ମାସରୁ ଚାଉଳ ଦର ୫ଟଙ୍କା ୧୨ପଇସାରୁ ୯ଟଙ୍କା ୨୦ପଇସାକୁ ବଢ଼ିଯିବାରୁ ଲୋକମାନେ ଏହି ସୁବିଧାରୁ ବଞ୍ଚିତ ହୋଇଛନ୍ତି । ୧୯୯୮ ମସିହାରୁ କିରୋସିନି ଯୋଗାଣ ମଧ୍ୟ ବନ୍ଦ ଅଛି । କିରୋସିନ, ଚାଉଳ ବନ୍ଦ ହେବାରୁ ଚିନି ଆଣିବା ଆପେ ଆପେ ବନ୍ଦ ବି ହୋଇଗଲା । କାରଣ ଏହା ସେମାନଙ୍କର ଏତେ ଦରକାରୀ ନୁହେଁ । ସରକାରଙ୍କର ନିତ୍ୟବ୍ୟବହାର୍ଯ୍ୟ ଜିନିଷ କିଣାବିକା ନୀତି ସେମାନଙ୍କୁ ସୁହାଇଲା ନାହିଁ । ତେଣୁ ସେମାନେ ବାଧ୍ୟ ହୋଇ ଏହି ଜିନିଷ କିଣାବିକା ବନ୍ଦ କରିଛନ୍ତି । ପ୍ରଥମତଃ ଗାଁକୁ ଗାଡି ନ ଯିବାରୁ ପ୍ରତ୍ୟେକ ଥର

ନଅ କିଲୋମିଟର ରାସ୍ତା କାନ୍ଧରେ ଟେକି ଟେକି ସବୁ ଜିନିଷକୁ ଗାଁକୁ ଆଣିବେ; ଦ୍ୱିତୀୟତଃ ଦିନକୁ ଦିନ ଏହାର ଦର ବଢିଥାଏ ଯାହାଦ୍ୱାରା କି ଲୋକମାନେ ଏତେ କଷ୍ଟ କରି ମଧ୍ୟ କିଛି ଉପକୃତ ହୋଇପାରିବେ ନାହିଁ । ଏହାହିଁ ସେମାନଙ୍କ ପାଇଁ ବିରାଟ ପ୍ରତିବନ୍ଧକ ! ଏଣୁକରି ତ୍ରିନାଥ ପାତ୍ର ଯୋଗାଣକାରୀ କହନ୍ତି- ଆମକୁ ଯଦି ସରକାର ସ୍ୱତନ୍ତ୍ର ସୁବିଧା ଦିଅନ୍ତେ ତେବେ ଆମେ ନିଶ୍ଚୟ ସରକାରଙ୍କର ଏହି କାର୍ଯ୍ୟକ୍ରମକୁ ସଫଳ କରିପାରନ୍ତୁ ।

କେବଳ ତଗାପାଲି ଗାଁ ଏହାର ଏକମାତ୍ର ଉଦାହରଣ ନୁହେଁ, ଅନ୍ୟସ୍ଥାନରେ ମଧ୍ୟ ଏମିତି ସାମୂହିକ ଉଦ୍ୟମ କରି ଲୋକମାନେ ସରକାରଙ୍କର ଏହି ଯୋଜନାକୁ ସଫଳ କରିଛନ୍ତି । ଏହି ଯୋଜନାର ସୁଯୋଗ ସବୁ ଲୋକଙ୍କ ପାଖରେ ପହଞ୍ଚାଇବା ପାଇଁ ଅନ୍ୟ ଆଦିବାସୀ ଅଞ୍ଚଳରେ ଲୋକମାନେ ସଂଘର୍ଷ ମଧ୍ୟ କରିଛନ୍ତି । ଦୀର୍ଘଦିନ ଧରି କାଶୀପୁର ବ୍ଲକ୍‌ର ନଅଟି ପଞ୍ଚାୟତରେ ଥିବା ୬୧ଟି ଗାଁର ୪୫୨୪ଟି ପରିବାର ଏବଂ ଫୁଲବାରୀର ୨ଟି ପଞ୍ଚାୟତର ୧୩୬୯ଟି ପରିବାର ଲୋକେ ସେମାନଙ୍କ ସାମୂହିକ ଉଦ୍ୟମରେ ଏହି ବ୍ୟବସ୍ଥା ଦ୍ୱାରା ଉପକୃତ ହୋଇ ଆସୁଥିଲେ । କେତୋଟି ସ୍ଥାନରେ ଆଦିବାସୀ ମା'ମାନେ ମଧ୍ୟ ଯୋଗାଣକାରୀ(ଡିଲର)ଭାବରେ ରହି ବର୍ଷ ବର୍ଷ ଧରି ସାଧାରଣ ବଣ୍ଟନ ବ୍ୟବସ୍ଥାଟିକୁ ଚଳାଇ ଆସିଛନ୍ତି । ସେମାନଙ୍କ ମଧ୍ୟରେ ଫୁଲବାଣୀର ଜଟଣୀ କହଁର, ହୀରାଦେଈ କହଁର, ରାୟଗଡାର ଦ୍ରୌପଦୀ ଝୋଡିଆ ଏବଂ ଲଛମନୀ ଝୋଡିଆ ଅନ୍ୟତମ । ଏଭଳି ବ୍ୟବସ୍ଥାରେ ଗରିବ ଲୋକମାନେ ପୂର୍ବରୁ ରହିଥିବା ଲାଭଖୋର ବ୍ୟବସାୟୀଙ୍କ ଦାଉରୁ ରକ୍ଷା ପାଇପାରୁ ନଥିଲେ । ନିଜସ୍ୱ ଅର୍ଥ ଓ ଶ୍ରମଦାନ କରି ଏହାକୁ ପରିଚାଳନା କରୁଥିବାରୁ ଲୋକମାନଙ୍କୁ ଅନ୍ୟ ଉପରେ ନିର୍ଭର କରିବାକୁ ପଡୁନଥିଲା । ଏହା ବ୍ୟତୀତ କେବଳ ଯେ ଧନୀ ବ୍ୟବସାୟୀଙ୍କ ଦ୍ୱାରା ଅତ୍ୟାବଶ୍ୟକୀୟ ବ୍ୟବସ୍ଥା ସମ୍ଭବ- ଏହି ଧାରଣା ଲୋକମାନଙ୍କ ମନରୁ ଉଭେଇ ଯାଇ ଧୀରେ ଧୀରେ ନିଜ ମନ ମଧ୍ୟରେ ଗଭୀର ଆତ୍ମବିଶ୍ୱାସ ସୃଷ୍ଟି ହୋଇ ଆସିଥିଲା ।

ଭାରତରେ ଖାଦ୍ୟ ସାମଗ୍ରୀର ଦରବୃଦ୍ଧିକୁ ଆଖିଆଗରେ ରଖି ୧୯୬୫ ମସିହାରେ ସାଧାରଣ ବଣ୍ଟନ ବ୍ୟବସ୍ଥା ପ୍ରଚଳିତ ହେଲା । ଲୋକମାନଙ୍କୁ ସଠିକ୍ ଦରରେ ସେମାନଙ୍କ ଦରକାରୀ ଜିନିଷ ପହଞ୍ଚାଇବା ପାଇଁ ଗ୍ରାମ ସ୍ତରରେ ୯୯ହଜାର ସାଧାରଣ ବଣ୍ଟନ ବ୍ୟବସ୍ଥା କେନ୍ଦ୍ର ଖୋଲାଯିବା ସତ୍ତ୍ୱେ ମଧ୍ୟ ଓଡ଼ିଶା, ବିହାର, ଉତ୍ତର ପ୍ରଦେଶ ଓ ପଞ୍ଜାବ ରାଜ୍ୟରେ ମାତ୍ର ଶତକଡା ଦୁଇ ଭାଗ ଲୋକ ଏହାଦ୍ୱାରା ଉପକୃତ

ହୋଇଛନ୍ତି । ସରକାର ରାଜ୍ୟ ବଜେଟକୁ କମାଇ ସାଧାରଣ ବଣ୍ଟନ ବ୍ୟବସ୍ଥା ଦ୍ୱାରା ଖାଦ୍ୟ ନିରାପତ୍ତା ଯୋଗାଇ ଦେବାର ଯୋଜନା କରିଥିଲେ । ଏହା କରିବାର ମୂଳ ଲକ୍ଷ୍ୟ ଥିଲା କମ୍ ଦାମରେ ଲୋକଙ୍କୁ ଅତ୍ୟାବଶ୍ୟକୀୟ ସାମଗ୍ରୀ ଯୋଗାଇ ଦେବା ଏବଂ ବାହାରେ ଖୋଲା ବଜାରରେ ହେଉଥିବା ମନମୁଖୀ ଦରକୁ ସନ୍ତୁଳିତ କରିବା, ଯାହାକି ଏପର୍ଯ୍ୟନ୍ତ ସଫଳ ହୋଇ ପାରିଲା ନାହିଁ ।

ଗରିବ ଲୋକମାନେ ସେମିତି ଅସୁବିଧାରେ ଚଳିଲେ ତଥା ଖୋଲା ବଜାରର ଚାହିଦା ବଢ଼ିଲା ଏବଂ ଦିନକୁ ଦିନ କଳାବଜାରୀ ବଢ଼ିବାରେ ଲାଗିଲା । କଳାବଜାରୀ ବଢ଼ିବାରେ ଠିକାଦାରମାନଙ୍କୁ ସରକାର ମଧ୍ୟ କମ୍ ଉତ୍ସାହ ଯୋଗାଇ ନାହାନ୍ତି । ପୂର୍ବରୁ ଏହି ବ୍ୟବସ୍ଥାରେ ଲୋକମାନେ ପରିବାର ପିଛା ୨୦କି.ଗ୍ରା ଚାଉଳ କିଣିପାରୁଥିବା ସ୍ଥଳେ ବର୍ତ୍ତମାନର ନୂଆ ଯୋଜନାରେ(୧୯୯୭) ପରିବାର ପିଛା ୧୦କି.ଗ୍ରା. ଚାଉଳ କିଣିବାରେ ନିୟମ ହୋଇଛି । ଫଳରେ ଯୌଥ ପରିବାର ଲୋକେ ଏହାଦ୍ୱାରା ଅଧିକ ପରିମାଣରେ କ୍ଷତିଗ୍ରସ୍ତ ହେଉଛନ୍ତି । ଭାରତୀୟ ଖାଦ୍ୟ ନିଗମ ଏଣେ ଗରିବ ଲୋକଙ୍କ ପେଟରୁ ଦାନା କାଟି ତେଣେ ଗୋଦାମରେ ଖାଦ୍ୟ ସାମଗ୍ରୀ ଅଧିକ ରଖି ନଷ୍ଟ କରୁଛି । ଖାଦ୍ୟ ନିଗରେ ଯେତିକି ଖାଦ୍ୟ ସାମଗ୍ରୀ ଜମା ରହିବା କଥା ତା'ଠାରୁ ଅଧିକ ରହୁଛି । ଫଳରେ ତାକୁ ଭାରତୀୟ ଖାଦ୍ୟ ନିଗମ ବାହାର ଠିକାଦାରମାନଙ୍କ ମାଧ୍ୟମରେ ଖୋଲା ବଜାରରେ ବିକ୍ରୀ କରୁଛି । ପୁଣି ସେହି ପରି ଅବସ୍ଥା ସୃଷ୍ଟି ହେଉଛି । ଯାହାପାଖରେ ଧନ ଅଛି ସେମାନେ ଏହି ଖାଦ୍ୟସମାଗ୍ରୀ କିଣି ନେଇ ଖୋଲା ବଜାରରେ ଚଢ଼ା ଦରରେ ବିକ୍ରି କରୁଛନ୍ତି(ଗରିବମାନେ ସେମିତି ଗରିବ ହୋଇ ରହୁଛନ୍ତି) । ସାଧାରଣ ଲୋକମାନଙ୍କ ପାଖରେ ଏ ସବୁର ସୂଚନା ନଥିବାରୁ ତଥା କୌଣସି ସୁବିଧା ସୁଯୋଗ ମିଳୁ ନ ଥିବାରୁ ସେମାନେ ଏସବୁ ବାଧ୍ୟ ହୋଇ ଖୋଲା ବଜାରରୁ କିଣୁଛନ୍ତି ।

ବର୍ତ୍ତମାନ ଏହି ବ୍ୟବସ୍ଥାର ଦାୟିତ୍ୱ ସଂପୂର୍ଣ୍ଣଭାବେ ପଞ୍ଚାୟତ ହାତକୁ ଦିଆଯାଇଛି । ଫଳରେ ଲୋକମାନେ ସଠିକ୍ ସମୟରେ ଜିନିଷ ପାଇପାରୁ ନାହାଁନ୍ତି । ଲୋକମାନେ ସାମୂହିକ ଭାବରେ ପୂର୍ବରୁ ଚଳାଇ ଆସୁଥିବା ସାଧାଣ ବଣ୍ଟନ ବ୍ୟବସ୍ଥା ଏବଂ ଏହା ଭିତରେ ଅନେକ ଫରକ ରହିଯାଉଅଛି । ତେଣୁ ଜିନିଷ ନ ମିଳିଲେ ମଧ୍ୟ ଲୋକମାନେ ଏହି ଦେବା ନ ଦେବାକୁ ସରକାରଙ୍କର ଦୟା ବୋଲି ଅନୁଭବ କରୁଛନ୍ତି । ସବୁଠାରୁ ଦୁଃଖର ବିଷୟ ହେଲା ଦାରିଦ୍ର୍ୟର ସୀମାରେଖା ତଳେ ରହିଥିବା ଲୋକ ଠିକ୍‌ରେ ଚିହ୍ନଟ ନ ହୋଇପାରିବା କାରଣରୁ ପଞ୍ଚାୟତ ଅଫିସ୍‌କୁ ଅତ୍ୟାବଶ୍ୟକୀୟ ସାମଗ୍ରୀ ଆଣିବାକୁ ଯାଇ ଫେରି ଆସୁଛନ୍ତି ବା ଏହି ସୁବିଧା

ସୁଯୋଗରୁ ବାଦ୍ ପଡିଯାଇଛନ୍ତି । ଏଥିପାଇଁ ଅନେକ ସମୟରେ ଖବର କାଗଜମାନଙ୍କରେ ସ୍ୱର ଉଠୁଥିବାର ଜଣାଯାଉଛି । କିନ୍ତୁ ଏହାର କୌଣସି ପ୍ରତିକାର ହେଉନାହିଁ ।

ବର୍ତ୍ତମାନ ଲୋକମାନଙ୍କର ବିଶ୍ୱାସ ସହିତ ଏହି ବ୍ୟବସ୍ଥା ଖାପ ଖାଉନଥିବାର ଜଣାଯାଏ । ଦୀର୍ଘଦିନ ଧରି ଏହାକୁ ବନ୍ଦ କରିଦେବା ଏବଂ ସରକାର ପରିଚାଳନା କରିବା ଫଳରେ ଗ୍ରାମ ପଞ୍ଚାୟତ ଏହାକୁ ଉପଯୁକ୍ତ ଲୋକଙ୍କ ପାଖରେ ପହଞ୍ଚାଇବାରେ ବିଫଳ ହୋଇଛି କହିଲେ ଭୁଲ ହେବ ନାହିଁ । ଅନେକ ସ୍ଥାନରେ ସରପଞ୍ଚ ଏବଂ ପଞ୍ଚାୟତ ସେକ୍ରେଟାରୀ ମିଶି ଉକ୍ତ ସାମଗ୍ରୀକୁ କଳାବଜାରୀ କରୁଥିବାର ଜଣାଯାଇଛି । ଏହାକୁ ଆଖିଆଗରେ ରଖି ସରକାର ଅନ୍ତତଃପକ୍ଷେ ଆଦିବାସୀ ଅଞ୍ଚଳରେ ସମସ୍ତଙ୍କୁ ଅତ୍ୟାବଶ୍ୟକୀୟ ସାମଗ୍ରୀ ଯୋଗାଣ ବ୍ୟବସ୍ଥାକୁ ଲକ୍ଷ୍ୟରଖି ଲୋକମାନଙ୍କଦ୍ୱାରା ପରିଚାଳିତ ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ଆହୁରି ସକ୍ରିୟ ଭାବେ କାର୍ଯ୍ୟକାରୀ କରିବାପାଇଁ ପଦକ୍ଷେପ ନେବା ଉଚିତ୍ ।

ମାର୍ଚ୍ଚ - ୧୯୯୯



# ଆହ୍ୱାନ ମୋ ନିଜର

ବଣପାହାଡ ଦେଶରେ ସରସ୍ୱତୀ ଦିଗାଲ ମହିଳାମାନଙ୍କର ଉନ୍ନତି ପାଇଁ କ୍ଷିପ୍ରତାର ସହିତ ଲାଗିପଡି ଆଜି ମହିଳା ସଚେତିକା ଭାବେ କାମ କରୁଛି । ନିଜ ଅଞ୍ଚଳର ଉନ୍ନତି ସକାଶେ ଜଣେ କର୍ମଠ, ଦକ୍ଷ ଓ ତ୍ୟାଗର ମିଶାମିଶି ରୂପକୁ ନେଇ ସେ ଆଜି ଦଣ୍ଡାୟମାନ । ନିଜର ଦୁଃଖକୁ ଭୁଲି ଅନ୍ୟ ମହିଳାମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ଅହରହ ଚିନ୍ତା କରୁଥିବା ମହିଳାଜଣକ ହେଉଛନ୍ତି- ସରସ୍ୱତୀ ଦିଗାଲ । ତାଙ୍କୁ ଆରୋହଣର ଏକ ସାକ୍ଷାତକାର-

**ଆରୋହଣ-** ଆପଣଙ୍କ ନାମ ଓ ଠିକଣା ?

ନାମ- ସରସ୍ୱତୀ ଦିଗାଲ, ଗ୍ରାମ- ବାଘଡୁଙ୍ଗୁରି, ପଞ୍ଚାୟତ- ବାଲନ୍ଦାପଡା, ବ୍ଲକ୍- ଫିରିଙ୍ଗିଆ, ଜିଲ୍ଲା- କନ୍ଧମାଳ

**ଆରୋହଣ-** ଆପଣ କାହିଁକି ମହିଳାମାନଙ୍କ ପାଇଁ କାମ କରିବାକୁ ଚାହିଁଲେ ?

**ସରସ୍ୱତୀ-** ମୁଁ ବିବାହ ହେବା ପରେ ବହୁତ ଅତ୍ୟାଚାର ସହିଛି । ମୋର ସ୍ୱାମୀ ମୋ ଦେହରେ ପାଞ୍ଚଜାଗା ଛୁରୀ ମାରିଛି । ତିନିଜାଗା ଦେହରେ ଓ ଦୁଇଜାଗା ହାତରେ ମାରିଥିଲା । ଏବେ ବି ସେ ଚିହ୍ନଗୁଡିକ ଦିଶିଯାଉଛି । ମୋର ସ୍ୱାମୀ ମତେ ମାରିଲା ବେଳେ ଗ୍ରାମବାସୀମାନେ ଆସୁ ଆସୁ ସେ ନିଜେ କୂଅରେ ପଡି ମରିଗଲା । ତେଣୁ ଶ୍ୱଶୁର ଘର ଗାଁକୁ ଆଉ ମୃତ ସ୍ୱାମୀଙ୍କୁ ଛାଡି ଏବେ ବାପଘରେ ଅଛି । ଏ ସବୁ ଘଟଣା ମୋ ମନରେ ପରିବର୍ତ୍ତନ ଆଣିଲା । ମୁଁ ଆଉ ଦ୍ୱିତୀୟ ବିବାହ କରି ନାହିଁ । ଅନ୍ୟ ମହିଳାମାନେ ମୋ ଭଳି ହଇରାଣ ହେଉଥିବେ ଭାବି ମୁଁ ସେମାନଙ୍କ ପାଇଁ କାମ କରିବା ପାଇଁ ଚାହିଁଲି ।

**ଆରୋହଣ-** ଆପଣ କିପରି ମହିଳାମାନଙ୍କର ଉନ୍ନତି ପାଇଁ ଚିନ୍ତା କଲେ ?

**ସରସ୍ୱତୀ -** ଅଗ୍ରଗାମୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦ୍ୱାରା ବହୁ ଜନହିତକର କାମ ହେଉଛି । ସେମାନଙ୍କଠାରୁ ମୁଁ ପ୍ରଥମେ ମହିଳାମାନଙ୍କ ସମସ୍ୟା କଥା ଜାଣିଲି । ସେମାନେ

ଆସି ଆମ ଗାଁରେ ଜଳଛାୟା ପ୍ରକଳ୍ପ କାମ ଆରମ୍ଭ କରିଥିଲେ । ମୁଁ ସେଥିରେ ପ୍ରଭାବିତ ହୋଇ ଗାଁର ବିକାଶ ପାଇଁ କାମ କରିବା ପାଇଁ ଚେଷ୍ଟା କଲି । ଅଗ୍ରଗାମୀର କର୍ମଚାରୀମାନେ ମଧ୍ୟ ଗାଁରେ ଆସି ଲୋକମାନଙ୍କୁ ବୁଝାଉଥିଲେ ।

ଆରୋହଣ - ତୁମେ କି କି କାମ ସବୁ କରୁଛ ?

ସରସ୍ୱତୀ - ପ୍ରଥମେ ଗାଁରେ ଅଗ୍ରଗାମୀ ତରଫରୁ ସ୍କୁଲ ଖୋଲିଲୁ । ଫଳରେ ପଢ଼ାପଢ଼ିର ସୁବିଧା ହେବା ଯୋଗୁଁ ଲୋକମାନେ ପାଠ ଦୁଇ ଅକ୍ଷର ପଢ଼ିବା ପାଇଁ ଇଚ୍ଛା କଲେ । ମୁଁ ମଧ୍ୟ ସେ ଶିକ୍ଷା କମିଟିର ମେମ୍ବର ଥିଲି । ଗାଁ ଗାଁରେ ମହିଳା ମଣ୍ଡଳ ଗଢ଼ିଛୁ । ମୁଁ ମଧ୍ୟ ଫିରିଙ୍ଗିଆ ମହିଳା ମହାସଂଘର ସହ-ସଂପାଦିକା ଅଛି । ଅଗ୍ରଗାମୀରୁ ତାଲିମ୍ ପାଇ, ସେମାନେ ସମସ୍ତେ କିପରି ସଚେତନ ହେବେ, ଆଉ ଅନ୍ୟ ଅତ୍ୟାଚାରରୁ ମୁକ୍ତ ରହିବେ, ମୁଁ ମହିଳା ସଚେତିକା ଭାବେ ମାଆମାନଙ୍କୁ ଏକଥା ବୁଝାଉ ଅଛି ।

ଆରୋହଣ - ସ୍କୁଲ କମିଟି ମେମ୍ବର ହୋଇ କି କି ଦାୟିତ୍ୱ ବହନ କରିଥିଲ ?

ସରସ୍ୱତୀ - ପଢ଼ିବା ପାଇଁ ପିଲାମାନଙ୍କୁ ସ୍କୁଲରେ ଏକାଠି କରୁଥିଲି । ପାଠ ପଢ଼ା ସରିଲେ ଘରେ ନେଇ ସମସ୍ତଙ୍କୁ ଛାଡୁଥିଲି । ଝିଅ ପିଲାମାନଙ୍କ ମନରେ ଆଗ୍ରହ ସୃଷ୍ଟି କରି ସେମାନଙ୍କର ଶିକ୍ଷା ନିମନ୍ତେ ବେଶି ଗୁରୁତ୍ୱ ଦେଉଥିଲି । ଏହି ରାତି ସ୍କୁଲରେ ସମୁଦାୟ ୫୦ ଜଣ ପୁଅ ଝିଅ ପାଠ ପଢୁଥିଲେ । ସେସ୍କୁଲରେ ୨୫ ଜଣ ଝିଅ ପିଲା ପଢୁଥିଲେ । ସ୍କୁଲ ଖୋଲିବା ଦ୍ୱାରା ଏତିକି ଲାଭ ହୋଇଛି ଯେ ପଢ଼ାପଢ଼ି ସୁବିଧା ପାଇ ସମସ୍ତେ ସନ୍ତକ କରି ଜାଣିଲେ । ସ୍କୁଲର ପିଲାମାନେ ସ୍କୁଲ ବାହାରକୁ ପାଠ ପଢ଼ିବା ପାଇଁ ଯାଇ ନାହାନ୍ତି । ଯେହେତୁ ଦେଢ଼ ବର୍ଷ ହେଲା ସ୍କୁଲ ଖୋଲା ହୋଇଛି ।

ଆରୋହଣ - ବୟସ୍କ ଲୋକମାନଙ୍କ ପାଇଁ କଣ କରିଛ ?

ସରସ୍ୱତୀ - ବୁଢ଼ାବୁଢ଼ୀମାନଙ୍କୁ ଅକ୍ଷର ଶିଖାଇ ଘରେ ଘରେ ବୁଲି ଦସ୍ତଖତ ଶିଖାଇଛୁ । ସେମାନଙ୍କୁ କି କି ଭତ୍ତା ମିଳୁଛି, ଠିକ୍ ସମୟରେ ମିଳୁଛି କି ନାହିଁ, ସେ ବିଷୟରେ ସଚେତନ କରୁଛୁ ।

ଆରୋହଣ - ଜଳଛାୟା ପ୍ରକଳ୍ପ ଦ୍ୱାରା ତୁମର କ'ଣ ଲାଭ ହେଲା ଏବଂ ତୁମର କାମ କଣ ଥିଲା ?

ସରସ୍ୱତୀ - ଆମକୁ ଜଳଛାୟା ପ୍ରକଳ୍ପ ଦ୍ୱାରା ପାଣି ମିଳୁଛି । ରାସ୍ତାଘାଟ ଭଲ ଭାବେ ତିଆରି ହୋଇଛି । ମୋଟାମୋଟି ହିସାବରେ ସେ ବୁଝାଉଛନ୍ତି ଏବଂ ଦେଖୁଛନ୍ତି ଠିକଠାକ୍ କାମ ହେଉଛି କି ନାହିଁ । ପାହାଡ଼ ବନ୍ଧାଯାଇ ପାଣି ରୋକା ଯାଇ ଚାଷ କରାଯାଉଛି । ଫଳଚାଷ ଏବଂ ବଗିଚା ମଧ୍ୟ ତିଆରି ହୋଇ ପାରୁଛି ।

ଆରୋହଣ - କେଉଁଠି କେଉଁଠି ଜଳଛାୟା ପ୍ରକଳ୍ପ କାମ ଚାଲିଛି ?

**ସରସ୍ୱତୀ** – କେନ୍ଦୁଗୁଡ଼ା, ଭଟାବାଲି, ବାଘଡ଼ଙ୍ଗୁରିକୁ ନେଇ ଜଳଛାୟା କାର୍ଯ୍ୟକ୍ରମ ଚାଲିଛି ।

**ଆରୋହଣ** – ବନ ସଂରକ୍ଷଣ ପାଇଁ ତୁମେ କ'ଣ କ'ଣ ପଦକ୍ଷେପ ନେଇଛ ?

**ସରସ୍ୱତୀ** – ମହିଳା ମଣ୍ଡଳର ସମସ୍ତ ସଭ୍ୟ ଏକ ହୋଇ ଜଙ୍ଗଲ ସୁରକ୍ଷା ପାଇଁ ଜଙ୍ଗଲ ଛାଡ଼ିଛୁ । ଲୋକେ ଆଗରୁ ଜଂଗଲ କାଟୁଥିଲେ; ଏବେ କିନ୍ତୁ ମହିଳାମଣ୍ଡଳର ହସ୍ତକ୍ଷେପ ଫଳରେ ଗଛ କାଟିବାରୁ ଅଧିକାଂଶ ଲୋକ ନିବୃତ ହୋଇଛନ୍ତି । ଯିଏ ଗଛ କାଟୁଛି ତାକୁ ଆମେ ଧରୁଛୁ ଏବଂ ଜୋରିମାନା ମଧ୍ୟ ଆଦାୟ କରୁଛୁ ।

**ଆରୋହଣ** – ଫିରିଙ୍ଗିଆ ମହିଳା ମହାସଂଘର ସହ ସଂପାଦିକା ରୂପେ କି କି ଦାୟିତ୍ୱ ତୁଲାଇଛ ?

**ସରସ୍ୱତୀ** – ସମସ୍ତେ ମାଆମାନେ ମିଶି ଗାଁ ଗାଁରେ ମହିଳା ମଣ୍ଡଳ ଗଢ଼ିଛୁ, ଏହାର ପଞ୍ଜିକରଣ ମଧ୍ୟ କରାଇଛୁ । ମହିଳା ମଣ୍ଡଳ ଦ୍ୱାରା କିଛି କାମ ପାଇଁ ଲିଜ୍ ଆଣିଛୁ । ଫଳରେ ଲଘୁ ବନଜାତ ଦ୍ରବ୍ୟ କିଣାବିକାରେ ଭଲଭାବେ ସକ୍ଷମ ହୋଇ ପାରିଛୁ ।

**ଆରୋହଣ** – ଭବିଷ୍ୟତରେ ରାଜନୀତିରେ ଭାଗ ନେବାକୁ ଇଚ୍ଛା ଅଛି କି ?

**ସରସ୍ୱତୀ** – ହଁ, ଭବିଷ୍ୟତରେ ରାଜନୀତିରେ ଭାଗ ନେବାକୁ ଇଚ୍ଛା ଅଛି । ଗାଁର ସମସ୍ୟା ଜାଣିବା ପାଇଁ ଓ ସୁବିଧା ଅସୁବିଧା ଜାଣିବା ସଂଗେସଂଗେ ଲୋକଙ୍କ ଉନ୍ନତି ପାଇଁ ମୁଁ ରାଜନୀତିରେ ଭାଗ ନେବାକୁ ଚାହେଁ ।

**ଆରୋହଣ** – ଲୋକମାନଙ୍କ ପାଇଁ କାମ କରିବା ଦ୍ୱାରା ତୁମର ଲାଭ କଣ ?

**ସରସ୍ୱତୀ** – ଲୋକମାନଙ୍କ ଉନ୍ନତି ହେଲେ ସାରା ଦେଶର ଉନ୍ନତି ହେବ । ମୁଁ ଏମାନଙ୍କ ସହ ମିଶି କାମ କରିବାକୁ ବହୁତ ଭଲ ଲାଗେ । ମୁଁ ପ୍ରକୃତ ଆନନ୍ଦ ଏଇଥିରୁ ହିଁ ପାଏ । ମୁଁ ଯେତେବେଳେ ଲୋକଙ୍କର ଭଲ ପାଇଁ କାମ କରେ ସେତେବେଳେ ମୁଁ ଡର କ'ଣ ଭୟ କଣ ଜାଣେନା ହିଁ, ଏସବୁ ମୁଁ ଭୁଲିଯାଇଥାଏ ।

**ଆରୋହଣ** – ମହିଳାମାନଙ୍କ ପାଇଁ ତୁମର ବାର୍ତ୍ତା କ'ଣ ?

**ସରସ୍ୱତୀ** – ସେମାନେ ଦୃଢ଼ ହେଲେ ଓ ସବୁ ଅନ୍ୟାୟର ପ୍ରତିରୋଧ କରିପାରିବେ । ଯେଉଁ ସ୍ତ୍ରୀମାନେ ପୁରୁଷମାନଙ୍କ ଦ୍ୱାରା ଛାଡ଼ପତ୍ର ପାଇଛନ୍ତି, ସାହସର ସହିତ ସେମାନେ ଏ ଭଳି ଅସୁବିଧାର ମୁକାବିଲା କରି ପାରିବେ । ସମସ୍ତଙ୍କ ପାଇଁ କାମ କରିବା ସକାଶେ ମୋର ଇଚ୍ଛା ଅଛି । ସମସ୍ତଙ୍କର ସିନା ଉନ୍ନତି ହେଲେ ତାକୁ ବିକାଶ ବୋଲି କୁହାଯିବ ।

ମାର୍ଚ୍ଚ – ୧୯୯୯



# ସାଧାରଣ ବଣ୍ଟନ ବ୍ୟବସ୍ଥା
# ଟଙ୍କା କୁକୁଡ଼ାରେ କାର୍ଡ଼ ବଣ୍ଟା

କାଶୀପୁର ବ୍ଲକର ଶଙ୍କରଡ଼ା ପଞ୍ଚାୟତ ନାଁ ସହିତ ଆପଣମାନେ ପୂର୍ବରୁ ପରିଚିତ । ପୂର୍ବରୁ ଆମ 'ଆରୋହଣ'ର ଚତୁର୍ଥ ବର୍ଷ ତୃତୀୟ ସଂଖ୍ୟାରେ 'ସରକାରୀ ଯୋଜନାରେ ହେରଫେର' ସ୍ତମ୍ଭରେ ଶଙ୍କରଡ଼ା ପଞ୍ଚାୟତ କଥା ସ୍ଥାନ ପାଇଥିଲା । ସେମାନାଥ ମାଝୀ ସେହି ଶଙ୍କରଡ଼ା ପଞ୍ଚାୟତର ଏକ ଉଦ୍‌ଯୋଗୀ ଯୁବକ । ଶିକ୍ଷାର ମହତ୍ତ୍ୱ ବୁଝି ଖୁବ୍ ପାଖରୁ ଶିକ୍ଷାକୁ ଆପଣେଇ ନେବାର ନିଶାରେ ସେ ସର୍ବଦା ଚେଷ୍ଟିତ । ଖାଲି ସେତିକି ନୁହେଁ, ନିଜ ଅଞ୍ଚଳରେ ହେଉଥିବା ଶୋଷଣର ପ୍ରତିବାଦ କରିବାକୁ ସେ ଅଣ୍ଟାଭିଡ଼ି ଆଗକୁ ବାହାରି ପଡ଼ିଛନ୍ତି । ଆସନ୍ତୁ ତାଙ୍କଠାରୁ କିଛି ଜାଣିବା ପୁଣି ସେହି ଶଙ୍କରଡ଼ା ପଞ୍ଚାୟତ ବିଷୟରେ ।

ଆଦିବାସୀ ଅଞ୍ଚଳରେ ରହୁଥିବା ଗରିବ ଆଦିବାସୀମାନଙ୍କୁ ବିଭିନ୍ନ ଉନ୍ନୟନ ଯୋଜନା ମାଧ୍ୟମରେ ବହୁମାତ୍ରାରେ ଅନୁଦାନ ଦିଆଯିବା ଦ୍ୱାରା ସେମାନଙ୍କର ଅନେକ ପରିବର୍ତ୍ତନ ଘଟୁଛି । ସେମାନେ ବିକାଶଶୀଳ ହୋଇ ପାରୁଛନ୍ତି ବୋଲି ଆମର ତଥାକଥିତ ନେତୃବୃନ୍ଦ ଓ ବିଶାରଦମାନେ ଚାରିଆଡ଼େ ଭାଷଣ ମାରୁଛନ୍ତି । କିନ୍ତୁ ସେମାନେ କେବେ ଆଦିବାସୀ ଗାଁକୁ ଆସି ତଳେଇକରି ଦେଖିନାହାନ୍ତି । ଯେତେଗୁଡ଼ିଏ ଯୋଜନା ଆଦିବାସୀ ଅଞ୍ଚଳରେ ରୂପାୟନ କରାଯାଇଅଛି ତା'ଦ୍ୱାରା କେଉଁମାନେ କେତେ ପରିମାଣରେ ଉପକୃତ ହୋଇଛନ୍ତି । ଯଦିବା କେଉଁଠି କେହି ଦେଖିଛି ବା ଜାଣିଛି ସେ କେବେ କହିବାକୁ ସାହସ କରିବନାହିଁ ଯେ, ଆଦିବାସୀମାନଙ୍କ ପାଇଁ କରାଯାଉଥିବା ବିକାଶ କାର୍ଯ୍ୟକ୍ରମ ଦ୍ୱାରା ନିଜେ ଆଦିବାସୀ କିପରି ହନ୍ତସନ୍ତ ହେଉଛି ଆଉ ଆଦିବାସୀ ଦଲାଲମାନେ ସେଥିରୁ କିପିର ଫାଇଦା ଉଠାଉଛନ୍ତି ।

ବର୍ତ୍ତମାନ ସରକାରଙ୍କର ଏହି ଆଦିବାସୀ ଉନ୍ନୟନ ଯୋଜନା ବର୍ଷ ବର୍ଷ ଧରି

ସରଳଭାବେ ରହିଥିବା ଆଦିବାସୀମାନଙ୍କର ବଞ୍ଚିବା ଶୈଳୀକୁ ଖୁବ୍ ଜଟିଳ କରିଦେଇଛି । ଅନ୍ୟମାନେ ଚାରିଆଡୁ ଆମମାନଙ୍କୁ ଦୁର୍ନୀତି, ଠକେଇ, ଶୋଷଣ କରୁଥିବା ଏବଂ ଆମମାନଙ୍କ ଅଧିକାରକୁ ନେଇ ଖେଳୁଥିବା କଥା ଜାଣି ଆମକୁ ବେଳୁକୁ ବେଳ ଅଣନିଃଶ୍ୱାସୀ ଲାଗୁଛି । ତାର ଏକ ନିଛକ ଉଦାହରଣ ଆମ ଶଙ୍କରଡ଼ା ପଞ୍ଚାୟତର ଲୋକମାନଙ୍କ ଅବସ୍ଥା । ଶଙ୍କରଡ଼ା ପଞ୍ଚାୟତଟି ରାୟଗଡ଼ା ଜିଲ୍ଲା ଅନ୍ତର୍ଗତ କାଶୀପୁର ବ୍ଲକରେ ଅବସ୍ଥିତ । ରାୟଗଡ଼ାଠାରୁ କାଶୀପୁରକୁ ଆସିବା ମୁଖ୍ୟ ରାସ୍ତାରେ ୪୦ କି.ମି. ଆସିବା ପରେ ଆମ ପଞ୍ଚାୟତଟି ପଡ଼ିଥାଏ । ଆମ ପଞ୍ଚାୟତର ବି.ପି.ଏଲ ତାଲିକାରେ ଥିବା ଲୋକମାନଙ୍କର ପୁରୁଣା ପଡ଼ିକାର୍ଡ଼ ସରିଯିବାରୁ ଗତ ଏପ୍ରିଲ୍ ମାସରେ ସେମାନଙ୍କୁ ନୂଆ ପଡ଼ିକାର୍ଡ଼ ଇସ୍ୟୁ ହେବାର ଥିଲା ।

ମାତ୍ର ଜୁଲାଇ ମାସ ପର୍ଯ୍ୟନ୍ତ ଉକ୍ତ କାର୍ଡ଼କୁ ଲୋକମାନଙ୍କୁ ନଦେଇ ପଞ୍ଚାୟତ ସମ୍ପାଦକ ନମିହ୍ର ନାଏକ ୪ ମାସ କାଳ ନିଜ ପାଖରେ ରଖିଥିଲା । ପ୍ରକାଶ ଥାଉକି ଗତ ଜୁଲାଇ ୨୬ ତାରିଖରେ ଅଗ୍ରଗାମୀ ଦ୍ୱାରା ଶଙ୍କରଡ଼ା ଉପକେନ୍ଦ୍ର ଅଧୀନରେ ପଞ୍ଚାୟତ ସ୍ତରୀୟ ଏକ ଯୁବ ବୈଠକ ଡକା ଯାଇଥିଲା । ଉକ୍ତ ବୈଠକରେ ପଞ୍ଚାୟତରୁ ଆମେ ପ୍ରାୟ ୭୦-୮୦ ଜଣ ଯୁବ ବନ୍ଧୁ ଅଂଶଗ୍ରହଣ କରି ଗ୍ରାମପଞ୍ଚାୟତର କାର୍ଯ୍ୟକଳାପ ଉପରେ ଜୋର୍‌ସୋର୍ ପର୍ଯ୍ୟାଲୋଚନା କରିଥିଲୁ । ଆମ ପଞ୍ଚାୟତରେ ଚାଲିଥିବା ଦୁର୍ନୀତି ସମ୍ପର୍କରେ ବହୁ ଯୁବବନ୍ଧୁଙ୍କଠାରୁ ଅଭିଯୋଗ ଆସିବା ପରେ ସମସ୍ତେ ମିଶି ନିଷ୍ପତ୍ତି ନେଲୁ ଯେ ଶଙ୍କରଡ଼ା ପଞ୍ଚାୟତ କାର୍ଯ୍ୟାଳୟକୁ ଘେରାଉ କରାଯିବ ଏବଂ ପଞ୍ଚାୟତ କାର୍ଯ୍ୟାବଳୀର ସମସ୍ତ ହିସାବପତ୍ର ତନଖି କରାଯିବ । ଏହି ଖବର ପାଇ ସମ୍ପାଦକ ମହାଶୟ ପଡ଼ିକାର୍ଡ଼ଗୁଡ଼ିକ ହିତାଧିକାରୀମାନଙ୍କୁ ବାଣ୍ଟିଦେଲେ । ସେ ଲୋକମାନଙ୍କୁ ଯଦି ସେମିତିରେ କାର୍ଡ଼ ବାଣ୍ଟି ଦେଇଥାନ୍ତେ ତେବେ ବି ଏତେ କଥା ଜଣା ପଡ଼ିନଥାନ୍ତା । ମାତ୍ର ସେ ପ୍ରତ୍ୟେକ ହିତାଧିକାରୀଙ୍କଠାରୁ ଗୋଟିଏ ଲେଖାଏଁ କୁକୁଡ଼ା ସହ ୧୦୦ଟଙ୍କା ଲାଞ୍ଚ ନେଇ କାର୍ଡ଼ଗୁଡ଼ିକୁ ବାଣ୍ଟିଛନ୍ତି । ସେଥିରେ ପୁଣି ଯାହା ପାଖରେ ଟଙ୍କା ନାହିଁ ତାକୁ ପାଚିହେଲାପରେ ୫ମାଣ (୧୮କେ.ଜି.) ଲେଖାଏଁ ଅଳସୀ ଦେବ ବୋଲି ଲଗାଣ କରାଯାଇଛି ।

ଗତ ତା ୨୧.୮.୯୯ରେ ଓଡ଼ିଶା ଆଦିବାସୀ ମଞ୍ଚ, ଶଙ୍କରଡ଼ା ତରଫରୁ ଏକ ପଞ୍ଚାୟତ ସ୍ତରୀୟ ବୈଠକ ଆୟୋଜନ କରାଯାଇଥିଲା । ମାତ୍ର କୌଣସି କାରଣବଶତଃ ବୈଠକ ହୋଇ ନପାରିବାରୁ ଆମେ ଫେରି ଆସିଲୁ । ଠିକ୍ ସେହିଦିନ

ଶଙ୍କରଡ଼ା ପଞ୍ଚାୟତରେ ଦୁଇଟଙ୍କିଆ ଚାଉଳ ବଣ୍ଟା ଚାଲିଥିଲା । ବାଟରେ ଜଣଙ୍କୁ ପଚାରିଲୁ କ'ଣ ଠିକ୍‌ରେ ସବୁମାସରେ ଚାଉଳ ମିଳୁଛି ତ? ସେ କହିଲେ ଆମେ ତ ଏବେ କାର୍ଡ଼ ପାଇଲୁ । ପୁଣି ୧୦୦ ଟଙ୍କା ଆଉ କୁକୁଡ଼ା ଦେବାରୁ ଏ କାର୍ଡ଼ ମିଳିଲା । ଏ କଥା ଶୁଣି ଆମେ କୌତୂହଳବଶତଃ କାର୍ଡ଼ଟି ତାଙ୍କଠାରୁ ଆଣି ଦେଖିଲୁ । ସେଥିରେ ଏପ୍ରିଲ୍, ମଇ, ଜୁନ୍ ଓ ଜୁଲାଇ ମାସର ଚାଉଳ ଇସ୍ୟୁ ହୋଇଥିଲା । ଆମେ ତାଙ୍କୁ ପଚାରିଲୁ ତମ କାର୍ଡ଼ରେ ତ ଚାରିମାସର ଚାଉଳ ତମେ ନେଇଛ ବୋଲି ଲେଖା ଯାଇଛି । ସେ କହିଲା - କି କଥା ଆଜ୍ଞା ! ମୁଁ କାର୍ଡ଼ ପାଇବା ମାସେ ହୋଇନି ଆଉ ଚାରି ମାସରେ ଚାଉଳ କେମିତି ନେଲି ? ତା'ପରେ ଆମକୁ ବୁଝିବାକୁ ଡେରି ହେଲାନି ଯେ ଆମ ନିରୀହ ଆଦିବାସୀ ମାନଙ୍କୁ କିପରି ଶୋଷଣ କରା ଚାଲିଛି । ତାପରେ ଆମେ ପଞ୍ଚାୟତ କାର୍ଯ୍ୟାଳୟ ଆଡ଼େ ଚାଲିଲୁ । ନିରୀହ ଲୋକମାନଙ୍କଠାରୁ ପ୍ରତି କାର୍ଡ଼ପିଛା ବେଆଇନ୍ ଟଙ୍କା ଆଦାୟ କରିଥିବାରୁ ଶଙ୍କରଡ଼ା ଗ୍ରାମପଞ୍ଚାୟତ ସମ୍ପାଦକଙ୍କୁ, ବିଭୀଷଣ ମାଝୀ ସମେତ ଆମେ କେତେଜଣ ଯୁବକ ଧମକ ଦେବାରୁ ସେ ସାଙ୍ଗେ ସାଙ୍ଗେ ଆମ ସମ୍ମୁଖରେ ବଡ଼ପୁକେଲ ଗାଁର ୬ଜଣ ଓ ଖୁଡ଼ିକାଯୋଡ଼ି ଗାଁର ୨ଜଣ ଏପରି ମୋଟ ୮ ଜଣଙ୍କୁ ୮୦୦ ଟଙ୍କା ଫେରାଇ ଦେଇଥିଲେ ।

ପରେ ଆମେ କେତେକ ଗାଁ ତଦନ୍ତ କରିବାରୁ ଜଣା ପଡ଼ିଲା ଯେ ଶଙ୍କରଡ଼ା ଗ୍ରାମପଞ୍ଚାୟତ ଅଧୀନରେ ଥିବା ବରିଗୁମା ଗାଁରୁ ୧୧ଜଣ, କାରାଝୋଲାରୁ ୭ଜଣ, କଂସାରିଗୁଡ଼ାରୁ ଜଣେ, ଗୋବରଘାଟିରୁ ୬ ଜଣ, ମହାରାଜଗୁଡ଼ାରୁ ୫ ଜଣ, ବାହାରକୁଟୁମିରୁ ୩ଜଣ, ତଯାପୁଟରୁ ୨ଜଣ, ବାହାରସିପେଲରୁ ୭ଜଣ, ତଙ୍କାଶିଳରୁ ୯ଜଣ, ଖିଡ଼ିକାଯୋଡ଼ିରୁ ୨ଜଣ, ବଡ଼ପୁକେଲରୁ ୧୭ଜଣ ଏବଂ ରାଉଳିରୁ ୧୨ଜଣ ଏମିତି ମୋଟ ୮୧ଜଣଙ୍କର ୮୧ଟି ପଡ଼ିକାର୍ଡ଼ ମାଧ୍ୟମରେ ୪ମାସର ୩୨ କ୍ୱିଣ୍ଟାଲ ୪୦ କେ.ଜି. ଚାଉଳ ସମ୍ପାଦକ ମହାଶୟ ଆତ୍ମସାତ୍ କରିଛନ୍ତି । ଏତଦ୍ ବ୍ୟତୀତ ଆଉ କେତେକ ଗାଁ ଯଥା; ନିଶିଖାଲ, ପୋଡ଼କଣା, ତଳଧଡ଼ସି, ଉପରଧଡ଼ସି, କପାଡ଼ାଙ୍ଗ, କାଡ଼ାନିପାଇ, ଡୁମୁରିଯୋଡ଼ି ଅଟାକଣା, ସୁରୁବାଲି ଓ ନାଯା ଗାଁରେ ମଧ୍ୟ ଉକ୍ତ ପଡ଼ିକାର୍ଡ଼ ଲୋକଙ୍କୁ ଦିଆଯାଇଛି । ମାତ୍ର ସେଥିରୁ କେତେଜଣଙ୍କ କାର୍ଡ଼ରେ ଏପରି ଜାଲ୍ କାରବାର କରାଯାଇଛି ତାହା ଏ ପର୍ଯ୍ୟନ୍ତ ଜଣା ପଡ଼ିନାହିଁ । ଏ ସମ୍ପର୍କରେ ଗୋଷ୍ଠୀ ଉନ୍ନୟନ ଅଧିକାରୀ ଓ ଯୋଗାଣ ଅଧିକାରୀଙ୍କୁ ମୌଖିକ ଏବଂ ଲିଖିତ ଆକାରରେ ଜଣାଇଥିଲେ ମଧ୍ୟ ସେମାନଙ୍କ ତରଫରୁ କୌଣସି ପଦକ୍ଷେପ ନିଆଯାଉ ନାହିଁ । ତେଣୁ ଏଥିରେ ବ୍ଲକ ସ୍ତରୀୟ ସରକାରୀ

କର୍ମଚାରୀମାନେ ମଧ୍ୟ ସଂପୃକ୍ତ ଅଛନ୍ତି ବୋଲି ସାଧାରଣରେ ସନ୍ଦେହ କରାଯାଉଛି ।

ଖାସ୍ ଏଥିପାଇଁ ସରକାରୀ ଉଦାସୀନତାର ଜ୍ୱଳନ୍ତ ଉଦାହରଣ ଠିକ୍ ଆମରି ପଞ୍ଚାୟତରେ ଘଟିଥିବା ଆଉ ଏକ ଘଟଣାରୁ ସ୍ପଷ୍ଟ ପ୍ରତୀୟମାନ । ଗତ ତା ୧.୯.୯୯ରିଖରେ ଗୋଷ୍ଠୀ ଉନ୍ନୟନ ଅଧିକାରୀ ପଞ୍ଚାୟତ ପରିଦର୍ଶନରେ ଆସିଥିଲା ବେଳେ ଶଙ୍କରଡ଼ା ଗ୍ରାମର କୁଲି ମାଝୀ ଉକ୍ତ ଦୁର୍ନୀତି ସମ୍ପର୍କରେ ବି.ଡ଼ି.ଓ.ଙ୍କୁ ଜଣାଇବାରୁ ସମ୍ପାଦକ ନମିନ୍ଦ୍ର ନାଏକ ଓ ଶଙ୍କରଡ଼ା ଗ୍ରାମର ଗଙ୍ଗା ମହାନ୍ତି ଲୁକି ମାଝୀଙ୍କୁ ମାଡ଼ ମରିଥିଲେ । ଏ ବିଷୟରେ ଲୁକି ମାଝୀ ତା ୨.୯.୯୯ରିଖରେ ଟିକିରି ଥାନାରେ ଲିଖିତ ଆକାରରେ ଜଣାଇଥିଲେ ମଧ୍ୟ ଉକ୍ତ ମାଡ଼ମରା ସମ୍ପର୍କରେ ଏ ପର୍ଯ୍ୟନ୍ତ ପୋଲିସ ପକ୍ଷରୁ ତଦନ୍ତ କରାଯାଇନାହିଁ । ତଦନ୍ତ କଲେ ମଧ୍ୟ କିଛି ଫଳ ହେବନାହିଁ । ତଦନ୍ତ ଶେଷ ହେଲା ବେଳକୁ ଗଙ୍ଗା ମହାନ୍ତି ଓ ନମିନ୍ଦ୍ର ନାଏକଙ୍କ ଭଳି ଟାଉଟରମାନେ ନିର୍ଦ୍ଦୋଷ ସାବ୍ୟସ୍ତ ହୋଇ ପୁଣି ତାଙ୍କ ଦୁର୍ନୀତି, ଶୋଷଣର ବଜାର ଖୋଲି ବସି ରହିବେ । ଆଉ ନିରୀହ କୁଲି ମାଝୀଭଳି ଅନେକ ବିଚରା ସବୁ ଦୋଷର ବୋଝ ମୁଣ୍ଡେଇ ଜୀବନସାରା ହନ୍ତସନ୍ତ ହେଉଥିବେ ।

ଅକ୍ଟୋବର -୧୯୯୯



# ପଞ୍ଚାୟତର ସରହଦିରେ ଗୋଲାପ ବେଙ୍ଗରା

*ମୟୂରଭଂଜ ଜିଲ୍ଲାର ଶୁକୃଳି ବ୍ଲକ ଅଧୀନରେ ଥିବା ଗାଲୁସାହି ଗ୍ରାମ ପଞ୍ଚାୟତର ସରପଞ୍ଚ  ଗୋଲାପ ବେଙ୍ଗରାଙ୍କ ସହ'ଆରୋହଣ'ର ଏକ ଅନ୍ତରଙ୍ଗ ସାକ୍ଷାତକାର...*

ଆରୋହଣ - ଆପଣ କିପରି ସରପଞ୍ଚ ହେଲେ ?

ଗୋଲାପ - ପୂର୍ବରୁ ମୁଁ ଆମ ପଞ୍ଚାୟତରୁ ସମିତି ସଭ୍ୟ ରୂପେ ନିର୍ବାଚିତ ହୋଇଥିଲି । ଏଥର ଆମ ପଞ୍ଚାୟତରେ ସଂରକ୍ଷିତ ମହିଳାସିଟ୍ ହେବାରୁ ମୋତେ ସରପଞ୍ଚ ହେବାପାଇଁ ଆମ ଅଞ୍ଚଳର ସମସ୍ତେ କହିଲେ । ମୁଁ ମଧ୍ୟ ବିନା ଦ୍ୱିଧାରେ ପ୍ରତିଦ୍ୱନ୍ଦିତା କଲି ।

ଆରୋହଣ - ଆପଣଙ୍କ ସହ କେତେଜଣ ପ୍ରତିଦ୍ୱନ୍ଦିତା କରିଥିଲେ ଏବଂ ସେମାନେ କାହିଁକି ହାରିଗଲେ ?

ଗୋଲାପ - ମୋ ସହିତ ମାତ୍ର ଜଣେ ପ୍ରତିଦ୍ୱନ୍ଦିତା କରିଥିଲେ । ଆଉ ସେ ପ୍ରଥମ କରି ଲୋକ ପ୍ରତିନିଧି ଭାବେ ଠିଆ ହେଉଥିବାରୁ ତାଙ୍କର ଲୋକଙ୍କ ସହ ଏତେ ସମ୍ପର୍କ  ନଥିଲା । ତା ମାନେ ତାଙ୍କର ଲୋକ ସମ୍ପର୍କ ଭଲ ନଥିଲା ବୋଲି ମୁଁ କହୁନି । ତାଙ୍କୁ କେବଳ ତାଙ୍କ ଗାଁ ଲୋକଙ୍କ ବ୍ୟତୀତ ଅନ୍ୟ ଗାଁରୁ ଅଳ୍ପ କିଛି ଲୋକ ଜାଣିଥିଲେ । ଯଦିଓ ପଞ୍ଚାୟତର ସମୁଦାୟ ଲୋକସଂଖ୍ୟାରୁ ଏକତୃତୀୟାଂଶ ଲୋକ ତାଙ୍କରି ଗାଁର ତଥାପି ମୁଁ ଆଶା କରୁଥିଲି ଜିତିବି ବୋଲି । କାରଣ ପୂର୍ବରୁ ମୁଁ ସମିତି ସଭ୍ୟା ଥିଲା ବେଳେ ଆମ ପଞ୍ଚାୟତ ପାଇଁ କିଛି କାମ କରିଥିଲି ଏବଂ ଲୋକମାନଙ୍କ ସହିତ ମୋର ଭଲ ସମ୍ପର୍କ ମଧ୍ୟ ଥିଲା ।

ଆରୋହଣ - ଆପଣଙ୍କ ପଞ୍ଚାୟତରେ ମହିଳାଙ୍କ ପାଇଁ ସ୍ଥାନ ସଂରକ୍ଷଣ ନହୋଇଥିଲେ ଆପଣ କ'ଣ ସରପଞ୍ଚ ପାଇଁ ପ୍ରତିଦ୍ୱନ୍ଦିତା କରିଥାନ୍ତେ ?

ଗୋଲାପ - ଠିକ୍‌ରେ କହିପାରୁନି ସରପଞ୍ଚ ପାଇଁ ଲଢ଼ିଥାନ୍ତି କି ନାହିଁ, କିନ୍ତୁ ସମିତି ସଭ୍ୟାପାଇଁ ନିଶ୍ଚୟ ପ୍ରତିଦ୍ୱନ୍ଦିତା କରିଥାନ୍ତି ।

**ଆରୋହଣ** - ଆପଣଙ୍କର ପଞ୍ଚାୟତରେ ବହୁତ ଗରିବ ଲୋକ ବି.ପି.ଏଲ୍ ତାଲିକାରୁ ବାଦ୍ ପଡ଼ିଯାଇଥିବା ସ୍ଥଳେ କିଛି ଧନୀ ଲୋକ ଉକ୍ତ ତାଲିକାର ଅନ୍ତର୍ଭୁକ୍ତ ଅଛନ୍ତି । କ'ଣ ପାଇଁ ଏମିତି ହୋଇଛି ?

**ଗୋଲାପ** - ପ୍ରକୃତରେ ବର୍ତ୍ତମାନ ଯେଉଁ ପଡ଼ିକାର୍ଡ଼ ଲୋକମାନଙ୍କୁ ମିଳିଛି ସେଥିରେ ଅନେକ ଭୁଲ ରହିଛି । ଗତ ୧୯୯୭ରେ ଯେଉଁ ସର୍ଭେ କରାଯାଇଥିଲା, ତାହା ଏପର୍ଯ୍ୟନ୍ତ ଆମ ମୟୂରଭଂଜ ଜିଲ୍ଲାରେ ଠିକ୍‌ଭାବେ କାର୍ଯ୍ୟକାରୀ ହୋଇ ପାରୁ ନାହିଁ । ୧୯୯୭ ମସିହା ସର୍ଭେ ଅନୁଯାୟୀ, ଆମ ଜିଲ୍ଲାର ବି.ପି.ଏଲ୍ ଲୋକଙ୍କ ସଂଖ୍ୟା ୭୦%ରୁ ଅଧିକ ହେବାରୁ ଉଚ୍ଚ କର୍ତ୍ତୁପକ୍ଷ ସେହି ତାଲିକାକୁ ଫେରାଇ ଦେଲେ । ଏହା ଏତେ ହେବାକଥା ନୁହେଁ କହି ସେ ଏହାର ପୁନଃ ତଦାରଖ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏଣେ ଏହି ତାଲିକାରେ ବହୁତ ଭୁଲ ଭଟ୍‌କା ଥିବାରୁ, ଲୋକମାନେ ମଧ୍ୟ ଖୁବ୍ ଅସନ୍ତୁଷ୍ଟ ହୋଇ ଅଭିଯୋଗ କରିବାରୁ ଗତ ଜାନୁଆରୀ ମାସରେ ଆଉଥରେ ସର୍ଭେ କରାଯାଇଛି । କିନ୍ତୁ ତାହା କେବେ କାର୍ଯ୍ୟକାରୀ ହେବ ଜଣାନାହିଁ ।

**ଆରୋହଣ** - ସରପଞ୍ଚ ହିସାବରେ ଆପଣ ଏଥିପାଇଁ କି ପଦକ୍ଷେପ ନେଇଛନ୍ତି ?

**ଗୋଲାପ** - ଗୋଷ୍ଠୀ ଉନ୍ନୟନ ଅଧିକାରୀ ଏବଂ ଯୋଗାଣ ଅଧିକାରୀଙ୍କୁ ଡାକି ଏ ସମ୍ପର୍କରେ ପଞ୍ଚାୟତରେ ମିଟିଂ କରାଯାଇଥିଲା । ଯେଉଁ କେତେଜଣ ଧନୀଲୋକ ବି.ପି.ଏଲ୍. ତାଲିକାରେ ଥିଲେ, ଗାଁ ଲୋକଙ୍କ ଅଭିଯୋଗ କ୍ରମେ ସେମାନଙ୍କୁ ଉକ୍ତ ତାଲିକାରୁ ବାଦ୍ ଦିଆଯାଇଛି । ମାସରେ ଦୁଇଦିନ ପରିବର୍ତ୍ତେ ୪ ଦିନ ପର୍ଯ୍ୟନ୍ତ ଚାଉଳ ଯୋଗାଇ ଦିଆଯାଉଛି । ପଇସାପତ୍ର ନଥିବା ଯୋଗୁଁ ଯେଉଁମାନେ ସେହି ୪ଦିନ ଭିତରେ ଚାଉଳ ନେଇପାରୁନାହାନ୍ତି, ସେମାନଙ୍କ ପାଇଁ ୧୫ ଦିନ ପର୍ଯ୍ୟନ୍ତ ଅପେକ୍ଷା କରାଯାଉଛି । ଯଦି କେହି କେହି ଦାବିକରନ୍ତି ବେଳେବେଳେ ପର ମାସ କୋଟାରୁ ମଧ୍ୟ ସେମାନଙ୍କୁ ୨୦ କେ.ଜି. ଏକାବେଳେ ଦିଆଯାଏ । କିନ୍ତୁ ନୂଆ ସର୍ଭେ ଅନୁସାରେ ଏପର୍ଯ୍ୟନ୍ତ କାର୍ଡ଼ ନମିଳିବା ହେତୁ ଅନେକ ଗରିବ ଲୋକ ହଇରାଣ ହରକତ ହୋଇଛନ୍ତି । ସେଥିପାଇଁ ମୁଁ କିଛି କରିପାରିନାହିଁ । ପଞ୍ଚାୟତ ସମିତି ମିଟିଂରେ ସେ ବିଷୟରେ ପ୍ରଶ୍ନ କରିଥିଲି । ମାତ୍ର ଆଗକୁ ଲୋକସଭା ନିର୍ବାଚନ ଥିବାରୁ ସେ ପ୍ରସଙ୍ଗକୁ ଏଡ଼େଇ ଦିଆଯାଇଥିଲା ।

**ଆରୋହଣ** - ପଞ୍ଚାୟତ କାମ କିପରି କାର୍ଯ୍ୟକାରୀ କରାଯାଉଛି ?

**ଗୋଲାପ** - ଆମର ପ୍ରତ୍ୟେକ ଗାଁରୁ ପଲ୍ଲୀସଭା ହୋଇ ଯୋଜନାଗୁଡ଼ିକ ଗ୍ରାମ ସଭାକୁ ଆସେ ।ପଞ୍ଚାୟତର ବଜେଟ୍ ଅନୁସାରେ କେଉଁ ଗାଁରେ କ'ଣ ହେବ ତାହା

ପୂରା ଗ୍ରାମସଭାରେ ସ୍ଥିର କରାଯାଏ । ଚଳିତ ବର୍ଷ ୨ଲକ୍ଷ ଟଙ୍କାର ବଜେଟ୍ ଅନୁମୋଦନ ହୋଇଛି ଏବଂ ସେଥିରେ ୬ଟି ଗାଁରେ କାମ ହେବା ପାଇଁ ସ୍ଥିର କରାଯାଇଛି ।

ଆରୋହଣ – ଅଧିକାଂଶ ପଞ୍ଚାୟତର ଗ୍ରାମସଭାରେ ଲୋକମାନଙ୍କର ଉପସ୍ଥିତି ଆଶାନୁରୂପକ ହେଉନାହିଁ । ଆପଣଙ୍କ ପଞ୍ଚାୟତର ଗ୍ରାମସଭାରେ ଲୋକମାନଙ୍କର ଅଂଶଗ୍ରହଣ କିପରି ଅଛି ?

ଗୋଲାପ – ସବୁଠାରୁ ଦୁଃଖର ବିଷୟ ଯେ ଆମ ଗ୍ରାମ ସଭାକୁ କେବଳ ପୁରୁଷ ଲୋକମାନେ ଯାହା ଆସୁଛନ୍ତି । ଯେତେ କହିଲେ, ଡାକିଲେ ମଧ୍ୟ କେବଳ ୪ଜଣ ୱାର୍ଡ଼ ମେମ୍ବରଙ୍କ ବ୍ୟତୀତ ଅନ୍ୟ କୌଣସି ସ୍ତ୍ରୀ ଲୋକ ଗ୍ରାମ ସଭାରେ ଯୋଗ ଦେଉ ନାହାନ୍ତି ।

ଆରୋହଣ – ଗ୍ରାମ କମିଟି ଜରିଆରେ ପଞ୍ଚାୟତକାମ କାମ କରିବାର ନିୟମ ଥିଲେ ମଧ୍ୟ ଆପଣଙ୍କ ପଞ୍ଚାୟତ ଏବଂ ବ୍ଲକରେ ହେଉଥିବା ଅଧିକାଂଶ କାମ କଣ୍ଟ୍ରାକ୍ଟରମାନେ କରୁଛନ୍ତି ବୋଲି ଶୁଣାଯାଉଛି । ତାହା କ'ଣ ଠିକ୍ ?

ଗୋଲାପ – ଆଜି ପର୍ଯ୍ୟନ୍ତ ଆମ ପଞ୍ଚାୟତ ତରଫରୁ ଯେତେ କାମ ହୋଇଛି, ସବୁ ଗ୍ରାମ କମିଟିକୁ ଦିଆଯାଇଛି । କିନ୍ତୁ ଗ୍ରାମ କମିଟି କିଛି କିଛି ପଇସା ରଖି ସେ କାମକୁ କଣ୍ଟ୍ରାକ୍ଟରଙ୍କୁ ବିକି ଦେଉଛନ୍ତି । ବ୍ଲକ ତରଫରୁ ଯେଉଁ କାମ ହେଉଛି ସେ ସବୁପାଇଁ ସମିତି ସଭ୍ୟମାନେ କିଛି କମିଶନ ନେଇ କଣ୍ଟ୍ରାକ୍ଟରଙ୍କୁ ଦେଇ ଦେଉଛନ୍ତି । ସେଇଟା ତ ଜଣାଶୁଣା କଥା । କେତେକ ଗାଁରେ କଣ୍ଟ୍ରାକ୍ଟରଠାରୁ ପାଇଥିବା ଟଙ୍କା କେବଳ କମିଟି ମେମ୍ବରମାନେ ବାଣ୍ଟି ନିଅନ୍ତି ବୋଲି ବାହାରୁ ଶୁଣିଛି । ଆମ ପାଖକୁ ଏ ସମ୍ପର୍କରେ କୌଣସି ଅଭିଯୋଗ ମଧ୍ୟ ଆସିନାହିଁ । ବାହାରୁ ଶୁଣି କିଛି କରି ମଧ୍ୟ ହେବନି ।

ଆରୋହଣ – ପ୍ରାୟ ସବୁଆଡ଼େ ସମନ୍ୱିତ ଶିଶୁ ବିକାଶ ଯୋଜନା ମାଧ୍ୟମରେ ଆସୁଥିବା ଖାଦ୍ୟର କଳାବଜାର ହେଉଛି । ସେ ବିଷୟରେ ଆପଣଙ୍କର ମତ କ'ଣ ?

ଗୋଲାପ – ସେ ସବୁ ଆମେ ଶୁଣୁଛୁ, କିନ୍ତୁ ତା'ର ପ୍ରତ୍ୟକ୍ଷ ପ୍ରମାଣ ନପାଇଲେ ଆମେ କାହାକୁ, କେମିତି କ'ଣ ବା କହିବୁ ? ମୁଁ ଜାଣିବାରେ ଖାଦ୍ୟ ସବୁ ବିକା ଚାଲିଛି, ଅଙ୍ଗନୱାଡ଼ି ମାଧ୍ୟମରେ ମିଳୁଥିବା ଔଷଧ ମଧ୍ୟ ଠିକ୍‌ରେ ବିତରଣ କରାଯାଉନାହିଁ । କିନ୍ତୁ ମୁଁ କିଛି କରିପାରୁନି । ଏଥିପାଇଁ ଯେଉଁ ଫୁଡ଼୍ କମିଟି ଅଛି ସେମାନେ ଏହାର ତଦାରଖ କରିବା କଥା । ଅଙ୍ଗନୱାଡ଼ି କର୍ମୀମାନେ ତାଙ୍କ ନିଜ ଚିହ୍ନା ପରିଚୟ ଲୋକଙ୍କୁ କମିଟିରେ ରଖି ଏ ସବୁର ଫାଇଦା ଉଠାଉଛନ୍ତି ।

ପ୍ରକୃତରେ ଲୋକମାନେ କେହି ଅଭିଯୋଗ ନକରିବାରୁ ଏତେକଥା ହେଉଛି । ଲୋକମାନେ ସଚେତନ ହୋଇ ନିଜେ ଏହାର ସାମ୍ନା କଲେ ଏତେ କଳାବଜାର ହୋଇପାରନ୍ତା ନାହିଁ ।

**ଆରୋହଣ** - ଆପଣ କିପରି ଲୋକ ସମ୍ପର୍କ ରଖିପାରୁଛନ୍ତି ?

**ଗୋଲାପ** - ମୁଁ ପ୍ରତିମାସରେ ପ୍ରତ୍ୟେକ ଗାଁକୁ ଯାଏ ଏବଂ ସମସ୍ତଙ୍କ ସହ ଭଲମନ୍ଦ କଥାହୋଇ ଫେରେ । ତାହା ବ୍ୟତୀତ ଅଲଗା ସମୟରେ ଯଦି କାହାର ଦରକାର ପଡ଼େ ସେମାନଙ୍କ ସହ ବ୍ଲକକୁ ଯାଇ ତାଙ୍କ କଥା ବୁଝାବୁଝି କରେ । ଏବେ ବର୍ଷା ମାସ ଚାଲିଛି । ସମସ୍ତେ  କାମରେ ବ୍ୟସ୍ତ । ତେଣୁ  ମୁଁ ଏବେ ନିୟମିତ ଭାବେ କୌଣସି ଗାଁକୁ ଯାଇପାରିନାହିଁ । କାରଣ ମୁଁ ସକାଳେ ଗଲେ ଫେରୁ ଫେରୁ ସନ୍ଧ୍ୟା ହୋଇଯାଏ । ଏତେ ଗାଁ ଚାଲି ଚାଲି ବୁଲିବା ସବୁବେଳେ ସମ୍ଭବ ହୁଏନି । ତେଣୁ ମୁଁ ଗାଁ ଗଲେ ମୋତେ ଜଣେ ଲୋକ ସାଇକେଲରେ ନେଇଯାଏ । ଏବେ କାମ ଛାଡ଼ି କେହି ମୋତେ ନେବାକୁ ରାଜି ହେଉନାହାନ୍ତି । ଯଦିଓ ମୁଁ ଏଥିପାଇଁ ମଜୁରି ଦିଏ ।

**ଆରୋହଣ** - ରାଜନୀତି କରିବା କ୍ଷେତ୍ରରେ ଆପଣଙ୍କର କୌଣସି ପ୍ରତିବନ୍ଧକ ଅଛି କି ?

**ଗୋଲାପ** - ନା, ସେମିତି କିଛି ମୁଁ ସାମ୍ନା କରିନି । ପଞ୍ଚାୟତ କାମରେ ଗଲେ ଅଧିକାଂଶ ସମୟ ଘରକାମରେ ଅବହେଳା କରେ । ସେ ସବୁ ମୋ ଭାଉଜ ଓ ଝିଅ ଚଳେଇ ନିଅନ୍ତି । ବାକି ବାହାରେ କେତେବେଳେ କେମିତି ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟିହେଲେ ମୁଁ ଚୁପ୍ ପଡ଼ିଯାଏ ।

**ଆରୋହଣ** - ଆପଣ ଶାଶୁଘରେ ନ ରହି ବାପାଙ୍କଘରେ କାହିଁକି ରହୁଛନ୍ତି ?

**ଗୋଲାପ** - ମୁଁ ୨୩ ବର୍ଷ ପୂର୍ବେ ବିଭା ହୋଇଥିଲି ଆମରି ଗାଲୁସାହିଁ ଗାଁରେ । ବିଭାହେବା ପରେ ମାତ୍ର ୫-୬ ମାସ ଶାଶୁଘରେ ରହି ବାପଘରକୁ ଆସିଥିଲି । ମୁଁ ଆମ ଘରେ ଥିବା ସମୟରେ ମୋ ଗର୍ଭରେ ଛୁଆଟେ ଥିଲା ମୋ ସ୍ୱାମୀ ଆମ ଘରକୁ ଯିବା ଆସିବା କରୁଥିଲେ । କିନ୍ତୁ ଛୁଆଟା ଜନ୍ମହେବା ପୂର୍ବରୁ  ମୋ ସ୍ୱାମୀ ଆଉଗୋଟେ ଝିଅକୁ ବିଭାହୋଇ ତାଙ୍କ ଘରକୁ ଆଣିଲେ । ମୁଁ ସେତେବେଳେ ମନା କରିଥିଲି । ହେଲେ ସେ ମୋ କଥା ଶୁଣିଲେ ନାହିଁ । ତେଣୁ ମୁଁ ଆମ ଘରେ ରହିଲି । ଆଉ ଶାଶୁଘରକୁ ଗଲିନାହିଁ ।

**ଆରୋହଣ** - ଆପଣ ଏଥିପାଇଁ ଆଇନ୍‌ର ଆଶ୍ରୟ ନେଇଥିଲେ କି ?

**ଗୋଲାପ** - ହଁ ନେଇଥିଲି । ୧୯୭୮ ମସିହାରେ ମାନେ ମୋ ଛୁଆ ଜନ୍ମହେବାର ୭-୮ମାସ ପରେ ମୁଁ କେସ୍ କରିଥିଲି । କିନ୍ତୁ ସେତେବେଳେ ଏତେ ସୁବିଧା ସୁଯୋଗ ନଥିଲା । କେସ୍ ଲଢ଼ିବାପାଇଁ ବି ଏତେ ପଇସାପତ୍ର ଖର୍ଚ୍ଚ କରିବାର ସାମର୍ଥ୍ୟ ନଥିଲା । ତେଣୁ ମୁଁ ଆଉ କୋର୍ଟକୁ ଗଲିନାହିଁ କି ସେଥିରେ ମୁଣ୍ଡ ଖେଳେଇଲିନି । ଘରେ କେବଳ କାମ କରୁଥିଲି ଆଉ ରହୁଥିଲି । ବାପା ମଧ୍ୟ ମତେ ମନାକଲେ କେସ୍ ବଢ଼େଇବାକୁ । ସେତେବେଳେ ମୋ ଶଶୁର ମୋତେ ବାଧ୍ୟ କରିଥିଲେ ତାଙ୍କ ଘରେ ରହିବା ପାଇଁ । କିନ୍ତୁ ମୁଁ ଯାଇନଥିଲି ।

**ଆରୋହଣ** - ଘରେ କିଛି ଅସୁବିଧା ହେଉନଥିଲା ଚଳିବାରେ ?

**ଗୋଲାପ** - ନା, କିଛି ଅସୁବିଧା ହେଉନି । ଆମର ତ ଆଦିବାସୀ ଲୋକ । କାମ କଲେ ଖାଇବୁ । ଅସୁବିଧା ଆଉ କ'ଣ ହେବ । ଏବେ ମୋ ଭାଇ, ଭାଉଜ ଅଛନ୍ତି । ମୋ ଝିଅଟି ବି ବି.ଏ ପାଶ କରିଛି । ଏବର୍ଷ ତାକୁ ବିଭା ଦେବି ବୋଲି ଭାବିଛି ।

**ଆରୋହଣ** - ଆଗକୁ କ'ଣ କରିବେ ବୋଲି ଭାବୁଛନ୍ତି ?

**ଗୋଲାପ** - ସବୁବେଳେ ଏମିତି ରାଜନୀତି କରିବି ବୋଲି ତ କହି ହେବନି, ତେବେ ଆରଥରକୁ ନିର୍ବାଚନ ଲଢ଼ିବି ବୋଲି ଭାବୁଛି ।

ଅକ୍ଟୋବର -୧୯୯୯



# ବାଲ୍‌କାପାଇ ଗାଁ

କିଛିବର୍ଷ ତଳେ ରାୟଗଡ଼ା ଜିଲ୍ଲାର କାଶୀପୁର ବ୍ଲକକୁ ଆସିବାକୁ ହେଲେ ନଅ କିଲୋମିଟର ବାଟ ପାଦରେ ଚାଲି ଚାଲି ଆସିବାକୁ ପଡୁଥିଲା । ଯେଉଁଠି ବ୍ଲକକୁ ଆସିବାକୁ ହେଲେ ୯ କି.ମି. ଚାଲିବାକୁ ପଡୁଥିଲା ବର୍ତ୍ତମାନ ସେହି ବ୍ଲକ ଅଧୀନରେ ଥିବା ଗାଁଗୁଡ଼ିକୁ ଯିବା କେତେ କଷ୍ଟ ସାଧ୍ୟ ସେ କଥା ସହଜରେ ଅନୁମାନ କରାଯାଇପାରେ । ପୂର୍ବରୁ କାଶୀପୁର ବ୍ଲକରେ ଅନାହାର ମୃତ୍ୟୁ ରାଜ୍ୟବାସୀଙ୍କୁ ଚକିତ କରି ଦେଇଥିଲା । ବର୍ତ୍ତମାନ ସେପରି ଭୟାବହତା ନଥିଲେ ବି ସେ ଅବସ୍ଥାରେ ସେପରି କିଛି ପରିବର୍ତ୍ତନ ହୋଇ ପାରିନାହିଁ । ଏବେ ମଧ୍ୟ କେତେକ ଗାଁରେ ଲୋକମାନେ ଝାଡ଼ା, ବାନ୍ତି, ତଥା ଜ୍ୱରରେ ମରୁଛନ୍ତି । ଏହାକୁ ସରକାରୀ ସ୍ତରରେ ସେତେ ଗୁରୁତ୍ୱ ଦିଆଯାଉନାହିଁ କିମ୍ବା ଲୋକମାନେ ମଧ୍ୟ କୌଣସି ପ୍ରକାର ଚେଷ୍ଟା କରୁ ନାହାନ୍ତି । ଲୋକମାନେ ଏହାର ଗୁରୁତ୍ୱ ଉପଲବ୍ଧି କଲେ ମଧ୍ୟ ତାହାର ପ୍ରତିକାର ବ୍ୟବସ୍ଥା କରିବା ପାଇଁ ସେମାନେ ଅସମର୍ଥ । ଏହି ବ୍ଲକରେ ଥିବା ସିରିପାଇ ପଞ୍ଚାୟତର ଗୋଟିଏ ଗାଁ ବାଲ୍‌କାପାଇ, ଯାହା ଉପରେ ଆରୋହଣର ଏକ ତର୍ଜମା ।

**ଯୋଗାଯୋଗ** – ରାୟଗଡ଼ାଠାରୁ କାଶୀପୁର ଆସିବା ବାଟରେ କାଶୀପୁର ପଡିବାର ୧୬ କି.ମି. ପୂର୍ବରୁ ପଡେ ଗୋରଖପୁର ଛକ (ପଞ୍ଚାୟତ) । ଏହି ଛକରୁ ଟିକିଏ ଆଗକୁ ଆସି ଡାହାଣ ପଟ ରାସ୍ତାରେ ୧୨ କି.ମି. ବାଟ ଚାଲିବା ପରେ ବାଲ୍‌କାପାଇ ଗାଁ ପଡ଼େ । ଅନ୍ୟପଟରେ ମାଣ୍ଡିବିଶି ଦେଇ ସିରିପାଇ ପଞ୍ଚାୟତରେ ପହଞ୍ଚିବାକୁ ହେଲେ ପୂରା ୪୨ କି.ମି. ଘାଟି ରାସ୍ତା ଦେଇ ଯିବାକୁ ହୁଏ । ପୁଣି ପଞ୍ଚାୟତଠାରୁ ୧୦ କି.ମି. ପଥୁରିଆ ରାସ୍ତା ଦେଇ ଚାଲିକରି ଗଲେ ଯାଇ ବାଲ୍‌କାପାଇ ଗାଁ ପଡ଼ିବ । ସେଠାକୁ ଦୁଇଚକିଆ ଯାନ ଯିବା ମଧ୍ୟ କଷ୍ଟ । ସ୍ୱେଚ୍ଛାସେବୀମାନେ ବାଟରେ ଥକ୍‌କା ହୋଇପଡ଼ନ୍ତି । ଯେପର୍ଯ୍ୟନ୍ତ ଗାଁରୁ ୩/୪ ଜଣ ଲୋକ ଝାଡ଼ା, ବାନ୍ତି ଆଉ ଅନ୍ୟ ରୋଗରେ ନମରିଛନ୍ତି, ସେ ପର୍ଯ୍ୟନ୍ତ ସରକାରୀ କର୍ମଚାରୀମାନଙ୍କର ପାଦ ସେ ଗାଁରେ

ପ୍ରାୟ ପଡ଼େନାହିଁ କହିଲେ ଚଳେ। ଏଭଳିକ ଯୋଗାଯୋଗ ବିଛିନ୍ନ ଗାଁରେ ଅନେକ ସମସ୍ୟା ରହିବା ସ୍ୱାଭାବିକ ଏବଂ ରହିଛି ମଧ୍ୟ। ସ୍ୱାସ୍ଥ୍ୟାବସ୍ଥା ସବୁଠାରୁ ଶୋଚନୀୟ।

**ବିପର୍ଯ୍ୟସ୍ତ ସ୍ୱାସ୍ଥ୍ୟ ସେବା** - ବାଲ୍‌କାପାଇରୁ ୧୨ କି.ମି. ଚାଲିକରି ଆସିଲେ ଗୋରଖପୁର ହେଉଛି ସେମାନଙ୍କପାଇଁ ସବୁଠାରୁ ପାଖ ଡାକ୍ତରଖାନା। ସେହି ଗାଁ ପାଇଁ ଥିବା ଏ.ଏନ୍.ଏମ୍. ସିରସପାଇରେ ରହନ୍ତି ଯାହାକି ଗାଁଠାରୁ ୧୦ କି.ମି. ଦୂର। ପଥୁରିଆ ଘାଟି ରାସ୍ତା ଦେଇ ଏପଟେ ୧୦ କି.ମି. ଏବଂ ସେପଟେ ୧୨ କି.ମି. ଚାଲି ଏ.ଏନ୍.ଏମ୍. ଓ ଡାକ୍ତର ସେ ଗାଁରେ ପହଞ୍ଚିବା କେତେଦୂର ସମ୍ଭବ ତାହା ଅନୁମାନ କରାଯାଇପାରେ। ବର୍ଷା ମାସରେ କିମ୍ବା ଅନ୍ୟ ସମୟରେ ଗାଁରେ ଯେତେବେଳେ ଝାଡ଼ାବାନ୍ତି ରୋଗ ଧରେ, ସେତେବେଳେ ହଠାତ୍ ଲୋକମାନେ ୧୨ କି.ମି. ରୋଗୀକୁ ଧରି ଡାକ୍ତରଖାନାକୁ ଆସିବା ପାଇଁ ସାହସ କରନ୍ତି ନାହିଁ। ରୋଗୀର ଅବସ୍ଥା ଅତିଶୟ ହୋଇଗଲେ ବାଧ୍ୟହୋଇ ଆଣନ୍ତି । ଏହି ଅବସ୍ଥାରେ କମ୍ ରୋଗୀ ବଞ୍ଚିଥାନ୍ତି। ସ୍ୱାସ୍ଥ୍ୟ ବିଭାଗର କର୍ମଚାରୀମାନେ ଏତେ ଅସୁବିଧା ଦେଇ ଗାଁକୁ ଯିବାକୁ କୁଣ୍ଠାବୋଧ କରନ୍ତି। ତେଣୁ ଅଧିକାଂଶ ସମୟରେ ରୋଗୀ ମରଣ ମୁହଁରୁ ମୁକୁଳିବା କଷ୍ଟକର ହୋଇପଡ଼େ। ଯେଉଁଥିପାଇଁ ଚଳିତବର୍ଷ ଏହି ବର୍ଷା ମାସରେ ୪ଜଣ ଲୋକ ମରିଛନ୍ତି। ସେଥିରୁ ଦୁଇଜଣ ଜ୍ୱରରେ ଓ ଅନ୍ୟ ଦୁଇଜଣ ଝାଡ଼ାବାନ୍ତିରେ ମରିଛନ୍ତି। ଗତ ୧୯୯୭ ମସିହାରେ ମଧ୍ୟ ଏହି ସ୍ୱାସ୍ଥ୍ୟସେବା ଅବହେଳାରୁ ଗାଁରେ ୮ଜଣ ଝାଡ଼ାବାନ୍ତି ରୋଗରେ ପଡ଼ି ମରିଥିଲେ। ଏଥିପାଇଁ ଖାଦ୍ୟ ସମସ୍ୟା ମଧ୍ୟ ଏକ ମୁଖ୍ୟ ପ୍ରସଙ୍ଗ ହୋଇପାରେ।

**ଖାଦ୍ୟ ସମସ୍ୟା** - ଏହା ମଧ୍ୟ ଏଡ଼େଇ ଦିଆଯାଇ ନପାରେ ଯେ ଏ ଅଞ୍ଚଳର ଲୋକେ ଏବେ ବି ଖାଦ୍ୟ ଅଭାବରୁ ଭୋକରେ ରହି ମରୁଛନ୍ତି। ଏହି ଗାଁରେ ଲୋକମାନଙ୍କର ମୁଖ୍ୟ ଖାଦ୍ୟ ହେଲା ମାଣ୍ଡିଆ। ଯଦି କୌଣସି ବର୍ଷ ମରୁଡ଼ି ହେଲା ତେବେ ଲୋକମାନେ ମରିବାର ଅଧିକ ସମ୍ଭାବନା ଥାଏ। ଆଉ ଡଙ୍ଗରରେ ଯେତିକି ମାଣ୍ଡିଆ ହୁଏ ତାହା ବର୍ଷକ ପାଇଁ ଅଣ୍ଟେ ନାହିଁ। ଯାହାଫଳରେ ଲୋକମାନେ ଆମ୍ବଟାକୁଆ ଓ ତେନ୍ତୁଳି ମଞ୍ଜିର ପେଜ ପିଇବାକୁ ବାଧ୍ୟ ହୋଇଥାନ୍ତି। ଏମିତିରେ ବି ସମୁଦାୟ ୨୨ଟି ପରିବାରରୁ ମାତ୍ର ୪ଜଣଙ୍କର ପଟ୍ଟାଜମି ଅଛି। ଅନ୍ୟମାନେ କେବଳ ଡଙ୍ଗର ଟିକରା ଚାଷ କରି ହିଁ ଚଳୁଛନ୍ତି। ଯାହା ଡଙ୍ଗରରେ ମାଣ୍ଡିଆ, କୋଶଳା, ଧାନ, ଖୋଡ୍‌ଜନା ଓ କାନ୍ଦୁଲ ପ୍ରଭୃତି ହେଉଛି। ବର୍ଷାଦିନେ ବାଡିରେ ଲାଉ, କଖାରୁ, ମରିଚ, ବାଇଗଣ ଇତ୍ୟାଦି କରୁଛନ୍ତି। ଅନ୍ୟ ସମୟରେ ଚାଷ କରିବାର କୌଣସି ସୁଯୋଗ ନାହିଁ। ପାଖରେ ଗାଁର ଟିକେ ତଳକୁ ଗୋଟେ ଝରଣା ଅଛି ମାତ୍ର ସେଥିରୁ ପାଣି ନେଇ ଚାଷ କରିବାର ସୁବିଧା ମଧ୍ୟ ନାହିଁ। କାରଣ ଝରଣାଟି ଗାଁର ୩୦ଫୁଟ ତଳେ ବହିଯାଉଛି। ସେହି ବର୍ଷା

ମାସ ଚାଷରୁ ଯେତିକି ଅମଳ ହେଉଛି ତାହା ପୁଣି ବର୍ଷା ମାସ ଆସିବା ପୂର୍ବରୁ ସରିଯାଉଛି । ଏହି ସମୟ ସେମାନଙ୍କ ପାଇଁ ଖାଦି ଯଥେଷ୍ଟ ହେଉ ନ ଥିବାରୁ ସେମାନେ କାଶୀପୁର ସାହୁକାରମାନଙ୍କଠାରୁ ଋଣ ଆଣନ୍ତି । ଏଥିରେ ସର୍ତ୍ତ ଥାଏ ଯେ ସେ ବର୍ଷର ସମସ୍ତ ଫସଲ ସେମାନେ ସେହି ସାହୁକାରମାନଙ୍କୁ ବିକିବେ ।

ସାହୁକାରମାନଙ୍କୁ ସେମାନେ ସାଧାରଣତଃ କାନ୍ଦୁଲ, ଅଳସୀ, ଝୁଡଙ୍ଗ ପ୍ରଭୃତି ବିକିଥାନ୍ତି । ଟଙ୍କା ଆକାରରେ ଋଣ ଆଣିଲେ ଫସଲ ବାବଦକୁ ଅମଳ ସମୟରେ ଦର ଅନୁଯାୟୀ ଟଙ୍କା ପରିମାଣର ଫସଲ ଦେବେ । ଏଥିପାଇଁ ସୁଧ ୬ମାସକୁ ୧୦୦% ଦେବାକୁ ହୋଇଥାଏ । ଯଦି ସେମାନେ ସେହି ବର୍ଷ ଏହି ଋଣ ପରିଶୋଧ କରି ନ ପାରନ୍ତି ଆସନ୍ତା ବର୍ଷ ସୁଧ ତଦନୁଯାୟୀ ଦେବାକୁ ପଡେ । ତଥାପି ଗତ ୪ବର୍ଷ ମରଣାନ୍ତକ ସମସ୍ୟାର ବିକଳ୍ପ ବୋଲି ମାନି ନେଇଛନ୍ତି । ପ୍ରଥମ ବର୍ଷ ପାଚି ଅମଳ ସମୟରେ ସମସ୍ତେ କିଛି କିଛି ମାଣ୍ଡିଆ ଚାନ୍ଦା କରି କୁଟୁମ୍ବ ପାଣ୍ଠି ରଖିଲେ । ଅଗ୍ରଗାମୀ ମଧ୍ୟ ସେମାନଙ୍କୁ କିଛି ସାହାଯ୍ୟ କଲା । ଏମିତିରେ ମୋଟ ଚାରି କ୍ୟୁଣ୍ଟାଲ୍ ୮କେ.ଜି ମାଣ୍ଡିଆକୁ ସାଇତି ରଖି ବର୍ଷା ମାସରେ ନେଇ ଖାଇଥିଲେ । ତା'ପର ବର୍ଷ ମାନେ ୧୯୯୭ମସିହାରେ ମରୁଡି ହେବାରୁ ଗାଁର ସମସ୍ତେ କଳନ୍ତର ନ ଦେଇ ଅଳ୍ପ କିଛି ପାଣ୍ଠି ରଖିଥିଲେ । ଯାହା ବି କିଛି ରଖିଥିଲେ ବର୍ଷାମାସ ପୂର୍ବରୁ ସବୁ ସରିଗଲା । ତେଣୁ ବାଧ୍ୟ ହୋଇ ସେ ବର୍ଷ ସେମାନେ ତେନ୍ତୁଳି ପେଜ ଖାଇଥିଲେ ଯେଉଁଥିପାଇଁ ୮ଜଣଙ୍କୁ ଝାଡା ବାନ୍ତି ରୋଗରେ ମରିବାକୁ ପଡିଥିଲା । ମାତ୍ର ଗତ ବର୍ଷ ଭଲ ପାଚି ହୋଇଥିବାରୁ ସେମାନେ କିଛି ଅଧିକ କୁଟୁମ୍ବ ପାଣ୍ଠି ରଖି ପାରିଛନ୍ତି । ବର୍ତ୍ତମାନ ତ ପାଣ୍ଠିରେ ମାତ୍ର ୬କ୍ୟୁଣ୍ଟାଲ ମାଣ୍ଡିଆ ରହିଛି । ପୁଣି ମରୁଡି ହେଲେ ସେତିକ ତ ଅଣ୍ଟିବନି ତେବେ କ'ଣ କରିବ ବୋଲି ପଚାରିଲେ, ଗାଁ ଲୋକେ କୁହନ୍ତି- ଆଗକୁ ଆମେ ଆହୁରି ଅଧିକ ପାଣ୍ଠି କରିବୁ । ମାତ୍ର ସେହି ତୁଳନାରେ ଆମେ ପାଚିପାଇ ପାରୁନୁ ଯାହାକି କଳନ୍ତର ସହ ଆମେ ଅଧିକ ଜମେଇ ପାରିବୁ ।ତଥାପି ଆଗକୁ ଏହି ପାଣ୍ଠି ହିଁ ଆମର ଆଶା ଭରସା ।

**ପାନୀୟ ଜଳ ସମସ୍ୟା-** ଗାଁର ସମସ୍ତେ ଝରଣା ପାଣି ପିଉଛନ୍ତି ଜାଣି ଆମେ ଆଶ୍ଚର୍ଯ୍ୟ ହୋଇଗଲେ ମଧ୍ୟ ସେମାନଙ୍କ ପାଇଁ ଏହା ଖୁବ୍ ସାଧାରଣ ବୋଲି ସେମାନେ ଭାବୁଛନ୍ତି । ଝରଣା ପାଣିକୁ ସିଧା ସଳଖ ନ ପିଇ, ସେ ପାଣିକୁ ନିଆଁରେ ଫୁଟାଇ, ଛାଣି ପିଇବାକୁ କହିଲେ ମା'ମାନେ କୁହନ୍ତି ଦିନ ସାରା ଡଙ୍ଗରରେ ଖଟି ଖଟି ଘରକୁ ଫେରିବା ପରେ ପୁଣି ଘରକାମ କରି, ରୋଷେଇ କରି ଖାଇବା ପରେ ପାଣି ଫୁଟାଇବା କଥା କିଏ ମନେ ରଖୁଛି ।

ସରକାର ଗୋଟେ ନଳକୂପ କରି ଦେଇଥିଲେ ଯେ ତାହା ବର୍ଷେ ହେଲାଣି ଖରାପ ହୋଇଯାଇଛି । ଭଲ ଥିଲାବେଳେ ମଧ୍ୟ ସେ ପାଣି ପିଇ ହେଉ ନ ଥିଲା । ପୂରା ହଳଦିଆ ରଙ୍ଗର ପାଣି ବାହାରୁଥିଲା ଏବଂ ଗନ୍ଧ ବି ହେଉଥିଲା । ତେବେ ସିଧା ସେହି ଝରଣା ପାଣି ପିଇ ରୋଗ ହେଉଥିବାର ଅନୁମାନ କରାଯାଏ । ନାଳ ପାଣି ପିଇବା ବଦଳରେ ନଳକୂଅ ପାଣି ପିଇବା କଥା ଭାବିବାକୁ ହେଲେ ୨୬କି.ମି. ଚାଲି ଚାଲି ଆସି କାଶୀପୁର ବ୍ଲକରେ କହିବାକୁ ପଡିବ । ଏଥିପାଇଁ ପଞ୍ଚାୟତରେ କହି ମଧ୍ୟ କିଛି ଲାଭ ହୋଇନି । ତେଣୁ ସେହି ଝରଣା ପାଣି ହିଁ ସେମାନଙ୍କ ପାଇଁ ବିକଳ୍ପ ।

**ଅନ୍ଧବିଶ୍ୱାସ-** ତଥାପି ଗାଁରେ ଅତି ବୟସ୍କ ଲୋକେ ହଇଜାକୁ ଦେବତା ବୋଲି ଭାବୁଛନ୍ତି ଏବଂ କେହି ହଇଜାରେ ମରିଗଲେ ତାକୁ ଦେବତା ଖାଇଦେଲା ବୋଲି କହୁଛନ୍ତି । ବେଳେବେଳେ ଏଥିରେ ଆକ୍ରାନ୍ତ ହେଉଥିବା ରୋଗୀମାନଙ୍କୁ ଡାକ୍ତରଖାନାକୁ ନେବା ବଦଳରେ ଦିଶାରୀ ଡାକି ଝଡାଫୁଙ୍କା କରୁଛନ୍ତି । ଯଦିଓ କେଇଜଣ ଯୁବକ ଏହାକୁ କେତେକାଂଶରେ ଅନ୍ଧବିଶ୍ୱାସ ବୋଲି ସ୍ୱୀକାର କରୁଛନ୍ତି, ତଥାପି ଔଷଧପତ୍ର ବାବଦକୁ ଅଧିକ ଖର୍ଚ୍ଚ କଥା ଭାବି ଦେଶୀ ଚିକିତ୍ସାକୁ ଆଦରି ନେବାକୁ ବାଧ୍ୟ ହେଉଛନ୍ତି ।

**ପଞ୍ଚାୟତିରାଜ ବ୍ୟବସ୍ଥା-** ବାଲ୍‌କାପାଇ ଗାଁ ଓ ଦୁଲ୍‌କି ଗାଁ ମିଶି ଗୋଟିଏ ୱାର୍ଡ । ୱାର୍ଡ଼ ମେମ୍ବର ଜଣକ ଦୁଲ୍‌କି ଗାଁର । ତେଣୁ ୱାର୍ଡ ମେମ୍ବର ନିଜେ ସେ ଗାଁର ହୋଇ ନ ଥିବାରୁ  ଗାଁର ସମସ୍ୟା ପ୍ରତି ଏତେ ଦୃଷ୍ଟି ଦେଉ ନାହାନ୍ତି । ପଲ୍ଲୀସଭା ହେଉ ବା ଗ୍ରାମସଭା ହେଉ କୌଣସି ସଭାରେ ଏହି ଗାଁରେ ଥିବା ମହିଳାମାନଙ୍କର ସହଭାଗିତା ଆଦୌ ନାହିଁ କହିଲେ ଚଳେ । ଗ୍ରାମସଭାରେ ଗାଁର ଯେଉଁ କେତେଜଣ ପୁରୁଷ ଯୋଗ ଦେଉଛନ୍ତି ସେମାନେ ପଞ୍ଚାୟତିରାଜ ଆଇନ୍ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ଗାଁର ସମସ୍ୟା ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ଗାଁର ସମସ୍ୟା ସଂପର୍କରେ ବ୍ୟକ୍ତିଗତ ଭାବେ ସରପଞ୍ଚଙ୍କୁ ବାରମ୍ବାର କହିଲେ ମଧ୍ୟ କୌଣସି ଲାଭ ହେଉନାହିଁ । ୱାର୍ଡମେମ୍ବରଙ୍କୁ କହିଲେ ସେ କୁହନ୍ତି, ମୁଁ ତ ସବୁବେଳେ ମିଟିଂରେ କହୁଛି । ହେଲେ ଏଥିପାଇଁ ଟଙ୍କା ଥିଲେ ତ ?

**ସରକାରୀ ଯୋଜନା-** ଆଦିବାସୀମାନଙ୍କ ପାଇଁ କରାଯାଉଥିବା ଯୋଜନାରେ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଥିବା ଦର୍ଶା ଯାଉଥିବା ବେଳେ ଏହି ଗାଁଟି ଯେ ସଂପୂର୍ଣ୍ଣରୂପେ ଅବହେଳିତ ହୋଇ ପଡିରହିଛି ତାହା ସରକାରୀ କର୍ମଚାରୀମାନେ ମଧ୍ୟ ଅସ୍ୱୀକାର କରିପାରିବେ ନାହିଁ । ପ୍ରଥମରେ ଗାଁକୁ ରାସ୍ତା ନାହିଁ । ଅବହେଳିତ ସ୍ୱାସ୍ଥ୍ୟସେବା ସାଙ୍ଗକୁ ଖାଦ୍ୟ ଓ ପାନୀୟ ଜଳର ସମସ୍ୟା ବଳିଯାଉଛି । ମାତ୍ର କେତେଜଣଙ୍କୁ ଛାଡିଦେଲେ ସରକାରଙ୍କ ଦରଫରୁ ଯୋଗାଇ ଦିଆ ଯାଉଥିବା ଦୁଇ ଟଙ୍କିଆ ଚାଉଳ ପାଇବାରୁ ମଧ୍ୟ

ଏହି ଗରିବ ଆଦିବାସୀମାନେ ବଞ୍ଚିତ । ସରପଞ୍ଚଙ୍କୁ ଏକଥା କହିଲେ ସେ କୁହନ୍ତି ବି.ପି.ଏଲ. ତାଲିକାରେ ଭୁଲ୍‌ଭାଲ୍ ହୋଇଛି । ଏଥିରେ ଯେଉଁ ସର୍ଭେ ହୋଇ ଯାଇଛି ସେଥିରେ ତମମାନଙ୍କ ନାଁ ଅଛି । ସରକାରଙ୍କଠାରୁ ଅନୁମତି ଆସିଲେ ତୁମକୁ ଦିଆଯିବ ।

ଅଙ୍ଗନବାଡି ଖାଦି କଥା ନକହିବା ଭଲ । ସବୁଦିନ ଅଙ୍ଗନବାଡି ଖାଦି ମିଳୁଛି କି ନାହିଁ ବୋଲି ପଚାରିଲେ ଗାଁ ଲୋକେ କୁହନ୍ତି ଆମ ଗାଁଠାରୁ ୨କି.ମି. ଦୂର ଦୁଲକିଗାଁରେ ଗୋଟିଏ ଅଙ୍ଗନବାଡି ଅଛି । ସେଠି ଜଣେ ରାନ୍ଧିକରି ଦେଉଛି । ଯଦିଓ ଆମ ଗାଁ ପାଇଁ ସେଠିକୁ ଖାଦ୍ୟ ଆସେ, ଆମ ଗାଁର ପିଲାମାନେ ସେ ଗାଁକୁ ଯାଇପାରନ୍ତି ନାହିଁ । ସେ ଗାଁକୁ ଯିବାକୁ ହେଲେ ମଝିରେ ଗୋଟିଏ ଝରଣା ଓ ଗୋଟିଏ ନାଳ ଦେଇ ଯିବାକୁ ହେବ । ସେଥିପାଇଁ ଛୋଟ ପିଲାମାନେ ଯାଇ ପାରନ୍ତିନି । ତେଣୁ ସେ ସହକାରୀ ଜଣକ ମାସକୁ ଥରେ ଲେଖାଏଁ ଆମ ଗାଁକୁ ଆସି ୪/୫କେ.ଜି ମକାଗୁଣ୍ଡ ଏବଂ କିଛି ତେଲ ଦେଇଯାଉଛନ୍ତି । ଆମେ ସମସ୍ତେ ତାକୁ ବାଣ୍ଟି ନେଉଛୁ । ଘର ପିଛା ଗ୍ଲାସେ ଲେଖାଏଁ ମକାଗୁଣ୍ଡ ଆଉ ଠିପିଏ ଲେଖାଏଁ ତେଲ ଭାଗରେ ପଡୁଛି । ତେବେ ଏଥିରେ ଅନୁମେୟ ଯେ ଆମ ସରକାରୀ ଯୋଜନା କିପରି ସଫଳ ରୂପାୟନ କରାଯାଇଛି ।

କାଶୀପୁର ଗାଁରେ ଏହିପରି ଅନେକ ଯୋଗାଯୋଗ ବିଚ୍ଛିନ୍ନ ଗାଁ ଅଛି ଯେଉଁଠାରେ କି ପ୍ରତିବର୍ଷ ରୋଗରେ ପଡି ଅନେକ ପିଲା ତଥା ଲୋକ ମରୁଛନ୍ତି । ଏ ସବୁ କେବଳ ଖାଦ୍ୟ, ପାନୀୟ ଓ ସ୍ୱାସ୍ଥ୍ୟସେବା ଅଭାବରୁ ହିଁ ହେଉଛି । ବେଳେ ବେଳେ ହଇଜାକୁ ଛାଡି ଅନ୍ୟ ରୋଗରେ ଲୋକେ ମଲେ ମଧ୍ୟ ତାକୁ ବିଭିନ୍ନ ରୂପ ଦେଇ ଖବର କାଗଜମାନେ ହଇଚଇ ସୃଷ୍ଟି କରୁଛନ୍ତି । ପ୍ରକୃତରେ ଏହି ସମସ୍ୟାର ସମାଧାନ ପାଇଁ ଆମେ ସମସ୍ତେ ସହଯୋଗ କରିବା ଦରକାର । ଲୋକଙ୍କ ପାଖରେ ଖାଦ୍ୟ ନ ଥିବାରୁ ସେମାନେ ଅଖାଦ୍ୟ ଖାଉଛନ୍ତି । ନଳକୂପ ନ ଥିବାରୁ ନାଳ ପାଣି ପିଉଛନ୍ତି । ଡାକ୍ତରୀ ଚିକିତ୍ସା ଅଭାବରୁ ଦିଶାରୀକୁ ଡାକି ଦେଶୀ ଚିକିତ୍ସା କରୁଛନ୍ତି । ଏଥିରେ କେବଳ ସେମାନଙ୍କୁ ଆମେ ଦୋଷ ଦେଇ ପାରିବା ନାହିଁ । ଆମମାନଙ୍କର ମଧ୍ୟ ଏହାପାଇଁ ଅନେକ କରିବାର ଅଛି । ବିଶେଷକରି ବର୍ଷା ମାସଗୁଡିକ ପାଇଁ ସରକାରୀ, ସ୍ୱେଚ୍ଛାସେବୀ ଏବଂ ସ୍ୱାସ୍ଥ୍ୟକର୍ମୀମାନେ ଏହି ଅଞ୍ଚଳ ପ୍ରତି ଅଧିକ ଧ୍ୟାନ ଦେବା ଜରୁରୀ । ମାନବ ସମ୍ବଳର ସୁରକ୍ଷା ପାଇଁ ହିଁ ଦେଶବାସୀ ଅଞ୍ଚଳପାଇଁ ଏହିପରି ଲାଗି ରହିଥିବ ।

ଅକ୍ଟୋବର -୧୯୯୯



# ସଂରକ୍ଷଣ ବାହାନାରେ

ଦୂରଦର୍ଶନଠାରୁ ଆରମ୍ଭ କରି ଦୈନନ୍ଦିନ ପତ୍ରିକା ସବୁଥିରେ ମହିଳା ସଂରକ୍ଷଣପାଇଁ ଜୋର୍‌ରେ ତର୍କବିତର୍କ ଚାଲିଛି । ଲୋକ ସଭାରେ ଏଥିପାଇଁ ହୋ ହାଲ୍ଲା ହେବା ପରେ ବି ମହିଳା ସଂରକ୍ଷଣ ବିଲ୍ ଆଗତ ହୋଇପାରିନାହିଁ । କିଛି ଲୋକଙ୍କ ମନରେ ପ୍ରଶ୍ନ ଉଠୁଛି ଯେ ମହିଳାମାନେ ରାଜନୀତିରେ ସିଧାସଳଖ ସଂଶ୍ଳିଷ୍ଟ ହୋଇ ଠିକ୍‌ରେ ସବୁ କାମ କରିପାରିବେ ତ ? ସଂରକ୍ଷଣ ନାମରେ ଫାଇଦା ଉଠାଇବାର ଏହା ଏକ ବାହାନା ନୁହେଁ ତ ? ଆଉ କିଛି ଲୋକଙ୍କ ମତରେ ମହିଳାମାନେ ଯଦି ଏତେ କାମ କରିପାରୁଛନ୍ତି ତେବେ ରାଜନୀତିରେ ଭାଗ ନେବାରେ ଅସୁବିଧା କେଉଁଠି ରହିଛି ? ପ୍ରକୃତ କଥା ହେଲା ମହିଳାମାନେ ରାଜନୀତିରେ ଭାଗନେଲେ କାଳେ ସେମାନେ ସମାଜରେ ପ୍ରଭାବଶାଳୀ ହୋଇଉଠିବେ । ସେଥିପାଇଁ ବିଭିନ୍ନ ଆଳରେ ଚାପ ସୃଷ୍ଟି କରି, ସେମାନଙ୍କୁ ଠିକ୍‌ରେ ତାଙ୍କ କାମ କରାଇ ନ ଦେବା ଆଉ ଏକ ବାହାନା ନୁହେଁ ତ ?

ଆସନ୍ତୁ ଜାଣିବା ଆଦିବାସୀ ଅଧ୍ୟୁଷିତ ରାୟଗଡା ଜିଲ୍ଲା, କାଶୀପୁର ପଞ୍ଚାୟତର ସାଧାରଣ ମହିଳା ସରପଞ୍ଚଙ୍କଠାରୁ । ଏ ସଂପର୍କରେ ତାଙ୍କ ସହିତ 'ଆରୋହଣ' ତରଫରୁ ମଧୁଛନ୍ଦା ମହାପାତ୍ରଙ୍କ ଏକ ସାକ୍ଷାତକାର.............

**ଆରୋହଣ-** ଆପଣଙ୍କ ନାଁ କ'ଣ ଓ ଘର କେଉଁଠି ?

**ପୁଷ୍ପଲତା-** ମୋର ନାଁ ପୁଷ୍ପଲତା ପାତ୍ର ଓ ମୋର ବାପଘର କଟକ ନୂଆ ବଜାରରେ । ଶ୍ୱଶୁର ଘର ନୟାଗଡ ଜିଲ୍ଲାର ଶରଣକୂଳରେ ।

**ଆରୋହଣ-** ଆପଣ କେମିତି ଓ କେବେଠାରୁ କାଶୀପୁରରେ ରହିଲେଣି ?

**ପୁଷ୍ପଲତା-** ମୁଁ ଦଶମ ପଢ଼ିଲାବେଳେ ମୋର ବିଭାଘର ହୋଇଗଲା । ମୋର ଦୁଇଟି ଝିଅ ଓ ଗୋଟେପୁଅ । ଏବେ ସମସ୍ତେ ବିଭାହୋଇ ସାରିଲେଣି । ମୋର ବଡ ଝିଅ ତିନି ମାସର ହେଲା ବେଳେ ମୁଁ ଏଠାକୁ ଆସିଥିଲି । ପ୍ରାୟ ୩୬ବର୍ଷ ହେଲାଣି ମୁଁ ଏ କାଶୀପୁରରେ ରହିଲିଣି । ମୁଁ ଯେତେବେଳେ ଏଠିକି ଆସିଲି ସେତେବେଳେ ମୋର

ସ୍ୱାମୀ କାଶୀପୁର ମ.ଇ. ସ୍କୁଲରେ ଶିକ୍ଷକତା କରୁଥିଲେ । କାଶୀପୁର ସେତେବେଳେ ପୂରା ଜଙ୍ଗଲ ଥିଲା । ଘର ଦୁଆର ମୁହଁରେ ଆମେ ବାଘ, ଭାଲୁ ଦେଖୁଥିଲୁ । କିଛି ସୁବିଧା ନ ଥିଲା ଏଠି । ସେତେବେଳେ ମୋ ସ୍ୱାମୀଙ୍କ ଦରମା ମାତ୍ର ଦେଢ଼ଶହ ଟଙ୍କା । ତେଣୁ ଶିକ୍ଷକତା କରିବା ସହିତ ବ୍ୟବସାୟ କରୁଥିଲେ । ପରେ ଅବଶ୍ୟ ଗୋଟେ ହାଇସ୍କୁଲ ହେବାରୁ ସେ ସେଥିରେ ଶିକ୍ଷକତା କଲେ । ଏହାପରେ ପ୍ରଧାନ ଶିକ୍ଷକ ଭାବରେ ତାଙ୍କର ବଦଳି ହେଲା । ମାତ୍ର ବ୍ୟବସାୟରେ ମନ ଲାଗିଯିବାରୁ ସେ ସ୍କୁଲରୁ ରିଜାଇନ କରି ଦେଲେ । ବ୍ୟବସାୟ କରିବା ସଂଗେ ସଂଗେ ମୋର ସ୍ୱାମୀ କଂଗ୍ରେସର ଜଣେ ସକ୍ରିୟ କର୍ମୀଭାବେ କାମ କରନ୍ତି ।

**ଆରୋହଣ-** ଆପଣ କିପରି ସରପଞ୍ଚ ହେଲେ ?

**ପୁଷ୍ପଲତା-** ଏ ବୟସରେ(୫୩ବର୍ଷ) ରାଜନୀତିରେ ଭାଗ ନେବାକୁ ମୋଟେ ଇଚ୍ଛା ନ ଥିଲା । କାଶୀପୁରର କେତେକ ପିଲା ଆସି ମୋତେ ବାଧ୍ୟ କଲେ ପ୍ରାର୍ଥୀ ହେବା ପାଇଁ । ଏମିତିକି ମୋ ପୁଅ ହାତରେ ମୁଁ ପ୍ରାର୍ଥୀପତ୍ର ବାତିଲପାଇଁ ଫର୍ମ ପଠାଇ ଦେଇଥିଲି । କିନ୍ତୁ ଏହି ଆସନଟି ପ୍ରଥମ କରି ସାଧାରଣ ମହିଳାଙ୍କ ପାଇଁ ସଂରକ୍ଷିତ ହେବାରୁ କଂଗ୍ରେସ ଦଳ ତରଫରୁ ମୋତେ ସଂପୂର୍ଣ୍ଣ ସମର୍ଥନ ମିଳିଲା ଏବଂ ମୁଁ କଂଗ୍ରେସ ଦଳ ତରଫରୁ ହିଁ ପ୍ରାର୍ଥୀ ହୋଇ ଜିତିଲି ।

**ଆରୋହଣ-** ଆପଣଙ୍କ ସହ କେତେଜଣ ପ୍ରତିଦ୍ୱନ୍ଦିତା କରିଥିଲେ ଏବଂ ସେମାନେ କାହିଁକି ହାରିଗଲେ ?

**ପୁଷ୍ପଲତା-** ମୋ ସହ ଜନତାଦଳ ତରଫରୁ ଜଣେ ବି.ଜେ.ପି. ତରଫରୁ ଏବଂ ଜଣେ ସ୍ୱାଧୀନ ପ୍ରାର୍ଥୀଭାବେ ପ୍ରତିଦ୍ୱନ୍ଦିତା କରୁଥିଲେ । ପ୍ରଥମତଃ ଏ ଅଞ୍ଚଳରେ କଂଗ୍ରେସର ଭଲ ସମର୍ଥନ ଥିଲା, ଦ୍ୱିତୀୟରେ ଗତ ୮୪/୮୫ ମସିହାରୁ ଆମର ଗୋଟେ ହୋଟେଲ ଅଛି ଏଠି । ଆମ ହୋଟେଲକୁ ଲୋକମାନେ ଖାଇବାକୁ ଆସିଲେ ମୁଁ ସେମାନଙ୍କ ସହ ଦୁଃଖସୁଖ କଥା ହୁଏ । ସେ ଦୃଷ୍ଟିରୁ ମୋର ଲୋକ ସଂପର୍କ ଭଲ ଅଛି । ତା'ଛଡା ମୁଁ ଶିକ୍ଷିତ ବୋଲି ବୋଧହୁଏ ଲୋକମାନେ ମୋତେ ଭୋଟ ଦେଇ ଜିତେଇଲେ ।

**ଆରୋହଣ-** ଆପଣଙ୍କ ପଞ୍ଚାୟତରେ ମହିଳାଙ୍କ ପାଇଁ ସ୍ଥାନ ସଂରକ୍ଷଣ ନ ହୋଇଥିଲେ ଆପଣ କ'ଣ ସରପଞ୍ଚପାଇଁ ପ୍ରତିଦ୍ୱନ୍ଦିତା କରିଥାନ୍ତେ ?

**ପୁଷ୍ପଲତା-** ନା, ସଂରକ୍ଷଣ ନ ଥିଲେ ଏ କାଶୀପୁର ଭଳି ଜଙ୍ଗାଲିଆ ଅଞ୍ଚଳରେ ସରପଞ୍ଚ ହେବାକୁ ମୁଁ ମୋଟେ ପ୍ରାର୍ଥୀ ହୋଇ ନ ଥାନ୍ତି ।

ଆରୋହଣ- ଆପଣଙ୍କ ବ୍ଲକରେ କେତେଜଣ ମହିଳା ସରପଞ୍ଚ ଅଛନ୍ତି ଏବଂ ପଞ୍ଚାୟତ ସମିତି ମିଟିଂ ତଥା ପଞ୍ଚାୟତ କାର୍ଯ୍ୟକ୍ରମରେ ସେମାନଙ୍କର ସହଭାଗିତା କିପରି ରହୁଛି ? ଅନ୍ୟମାନଙ୍କଠାରୁ ଆପଣଙ୍କୁ କିପରି ସମର୍ଥନ ମିଳୁଛି ?

ପୁଷ୍ପଲତା- ଆମ ବ୍ଲକର ୧୭ଟି ପଞ୍ଚାୟତରେ ମାତ୍ର ୫ଟି ମହିଳା ଆସନରୁ ୫ଜଣ ନିର୍ବାଚିତ ହୋଇ ଆସିଛନ୍ତି । ମୋତେ ଛାଡି ସମସ୍ତେ ଆଦିବାସୀ । ସେମାନେ କେହି କେବେ ସେମାନଙ୍କ ପଞ୍ଚାୟତର ସୁବିଧା ଅସୁବିଧା କଥା ଉପସ୍ଥାପନ କରନ୍ତି ନାହିଁ । ସେମାନେ କିଛି କହିଲେ ତ ସେମାନଙ୍କୁ କେହି ସମର୍ଥନ ବା ପ୍ରତିରୋଧ କରିବା କଥା ଉଠିବ । ମୁଁ ବହୁଥର ସେମାନଙ୍କୁ ଏ ବିଷୟରେ କହିଛି । ସେମାନେ କହନ୍ତି- ତୁଇ ତ କହୁଛୁ, ଆମେ ଆଉ କିସ କହିବୁ, ମା' ? ତଥାପି ସେମାନେ ମୋଟେ ପାଟି ଫିଟାନ୍ତି ନାହିଁ । ମୋ ପଞ୍ଚାୟତ ପାଇଁ ମୁଁ ଯେବେ ଯାହା କହିଛି ମୋତେ ପ୍ରାୟ ସମର୍ଥନ ମିଳିଛି ।

ଆରୋହଣ- ଆପଣଙ୍କ ପଞ୍ଚାୟତରେ ବହୁତ ଗରିବ ଲୋକ ବି.ପି.ଏଲ୍ ତାଲିକାରୁ ବାଦ୍ ପଡିଯାଇଥିବା ସ୍ଥଳେ, କିଛି ଧନୀ ଲୋକ ଉକ୍ତ ତାଲିକାର ଅନ୍ତର୍ଭୁକ୍ତ ହୋଇଥିଲେ; ଯାହା ପୁଣିଥରେ ସର୍ବେକ୍ଷଣ କରାଯାଇ ଅନୁମୋଦନ ପାଇଁ ପଠାଯାଇଥିଲା । ତାହା କାର୍ଯ୍ୟକାରୀ ହେଲାଣି କି ?

ପୁଷ୍ପଲତା- ନା, ତାହା ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇନାହିଁ । ଆମର ସଂଶୋଧିତ ତାଲିକା ଅନୁସାରେ ଆମ ଜିଲ୍ଲାର ବି.ପି.ଏଲ୍ ତାଲିକା ମୋଟ ଲୋକସଂଖ୍ୟାର ୮୦% ହେବାରୁ ତାହାକୁ ସରକାର ଫେରେଇ ଦେଇଥିଲେ । ଆମେ ପୁଣି ତାକୁ ପଠେଇଥିଲୁ । ଏବେ ଶୁଣୁଛି ଯେ ପୂର୍ବ ତାଲିକା ସହିତ ସେମାନେ ତାଙ୍କ ମନଇଚ୍ଛା ଆଉ ୨୦% ବଢ଼େଇକରି ପଠାଇ ଦେଇଛନ୍ତି । ସେଥିରେ କେଉଁମାନେ ସ୍ଥାନ ପାଇଛନ୍ତି, ତାହା ଏପର୍ଯ୍ୟନ୍ତ ଜଣାପଡିନାହିଁ । କାରଣ କେବଳ ବାର୍ଦ୍ଧକ୍ୟ ଭତ୍ତା, ବିଧବାଭତ୍ତା, ଏବଂ ଅକର୍ମଣ୍ୟଭତ୍ତା ପାଉଥିବା ଲୋକଙ୍କୁ ହିଁ ବି.ପି.ଏଲ କାର୍ଡ ମିଳିଛି । ଅନ୍ୟମାନେ ମାଗିବାରୁ ବ୍ଲକରେ କହୁଛନ୍ତି ଯେ କାର୍ଡ ସରିଯାଇଛି ।

ଆରୋହଣ- ସରପଞ୍ଚ ହିସାବରେ ଆପଣ ଏଥିପାଇଁ କି ପଦକ୍ଷେପ ନେଇଛନ୍ତି ?

ପୁଷ୍ପଲତା- ଲାଗିଲାଗି ଏମ୍.ପି ଓ ଏମ୍.ଏଲ୍.ଏ. ନିର୍ବାଚନ ଯୋଗୁଁ ଏଥିପାଇଁ ମୁଁ କୌଣସି ପଦକ୍ଷେପ ନେଇନାହିଁ । ତା' ଛଡା ମୋ ପାଖରେ ବି.ପି.ଏଲ୍ ତାଲିକା ଏ ପର୍ଯ୍ୟନ୍ତ ପହଞ୍ଚି ନାହିଁ ।

ଆରୋହଣ- ପଞ୍ଚାୟତ କାମ କିପରି କାର୍ଯ୍ୟକାରୀ କରାଯାଉଛି ?

ପୁଷ୍ପଲତା- ସାଧାରଣତଃ ମୁଁ ପଞ୍ଚାୟତ କାମ ଗ୍ରାମ କମିଟି ଜରିଆରେ ହିଁ କରୁଛି ।

**ଆରୋହଣ-** କିନ୍ତୁ ଆମେ ଶୁଣିବାକୁ ପାଉଛୁ କି ଆପଣଙ୍କ ପଞ୍ଚାୟତରେ ହେଉଥିବା ଅଧିକାଂଶ କାମ କଣ୍ଟ୍ରାକ୍ଟରମାନଙ୍କ ଦ୍ୱାରା ହେଉଛି । ଏ ସଂପର୍କରେ ଆପଣଙ୍କ ମତାମତ କ'ଣ ଏବଂ ଏଥିପାଇଁ କ'ଣ ପଦକ୍ଷେପ ନେଇଛନ୍ତି ?

**ପୁଷ୍ପଲତା-** ମୁଁ ମୋ ପଞ୍ଚାୟତର ସମସ୍ତ ୱାର୍କ ଅର୍ଡର ଗାଁ କମିଟିକୁ ଦେଉଛି । କିନ୍ତୁ ସେମାନେ କିଛି ଲାଞ୍ଚ ନେଇ ତାହା କଣ୍ଟ୍ରାକ୍ଟରକୁ ବିକି ଦେଉଛନ୍ତି । ଯଦି ଗାଁ ଲୋକ ନିଜେ ସେମାନଙ୍କ କାମକୁ ଖରାପ କରିବାକୁ ଚାହିଁବେ ତେବେ ମୁଁ କ'ଣ କରିପାରିବି ?

**ଆରୋହଣ-** ପ୍ରାୟ ସବୁଆଡେ ସମନ୍ୱିତ ଶିଶୁ ବିକାଶ ଯୋଜନା ଓ ମଧ୍ୟାହ୍ନ ଭୋଜନ ମାଧ୍ୟମରେ ଆସୁଥିବା ଖାଦ୍ୟ କଳାବଜାର ହେଉଛି । ସେ ବିଷୟରେ ଆପଣଙ୍କ ମତ କ'ଣ ?

**ପୁଷ୍ପଲତା-** ହଁ, ହେଉଛି । ଏ ସଂପର୍କରେ ଅନେକ ଦରଖାସ୍ତ ମଧ୍ୟ ମୋ ପାଖକୁ ଆସିଛି । ମୁଁ ସେମାନଙ୍କୁ ଡାକି ପଚାରିଛି । କିନ୍ତୁ ସେମାନଙ୍କ ବିରୁଦ୍ଧରେ ପଦକ୍ଷେପ ନେଲାବେଳେ ଦ୍ୱନ୍ଦ୍ୱ ଉପୁଜୁଛି । କାରଣ ପୁଣି ଲୋକମାନେ ଆଉ ଏକ ଦରଖାସ୍ତ ଲେଖି ଦେଉଛନ୍ତି ଯେ କର୍ମୀଜଣକ ଆମ ଗାଁରେ ଠିକ୍‌ରେ ତାଙ୍କ କାମ କରୁଛନ୍ତି । ୱାର୍ଡମେମ୍ବରମାନଙ୍କୁ ଏ ବିଷୟରେ ପଚାରିଲେ ସେମାନେ କିଛି ନ କହି କେବଳ ହସି ଦେଉଛନ୍ତି ।

**ଆରୋହଣ-** ଆପଣ କିପରି ଲୋକସଂପର୍କ ରଖିଛନ୍ତି ?

**ପୁଷ୍ପଲତା-** ଯେତେବେଳେ ଯିଏ ମୋ ଘରକୁ ଆସନ୍ତି, ମୁଁ ସେମାନଙ୍କ ସହ ଭଲମନ୍ଦ କଥା ହୁଏ । ଏହାଛଡା ମୁଁ ପଲ୍ଲୀସଭା, ଗ୍ରାମସଭା ଓ ମୋ ପଞ୍ଚାୟତର ଅନ୍ୟ ସଭାସମିତିକୁ ଯାଏ ।

**ଆରୋହଣ-** ଆପଣ ପଲ୍ଲୀସଭା ଓ ଗ୍ରାମସଭା କିପରି କରୁଛନ୍ତି ଏବଂ ସେଥିରେ ଲୋକମାନଙ୍କର କିପରି ସହଭାଗିତା ରହୁଛି ?

**ପୁଷ୍ପଲତା-** ମୋ ପଞ୍ଚାୟତରେ ୧୭ଟି ୱାର୍ଡ ଅଛି । କେତୋଟି ୱାର୍ଡରେ ଅଲଗା ଅଲଗା କରି ପଲ୍ଲୀସଭା କଲାବେଳେ ଆଉ କେତୋଟି ୱାର୍ଡରେ ପାଖାପାଖି ୨/୩ଟିକୁ ମିଶାଇ ଏକାବେଳେ ପଲ୍ଲୀସଭା କରିଦେଉଛି । କେବଳ କାଶୀପୁରକୁ ଛାଡିଦେଲେ ଅନ୍ୟ ପଲ୍ଲୀସଭାରେ ଲୋକମାନଙ୍କର ସହଭାଗିତା କମ୍ । ଗ୍ରାମସଭାକୁ ଲୋକମାନେ ଆସନ୍ତି ସତ କିନ୍ତୁ ଗ୍ରାମସଭା କହିଲେ କେବଳ ଦରଖାସ୍ତ ଦେବାଟା ହିଁ ଲୋକାମାନେ ବୁଝନ୍ତି । ଲୋକମାନେ ମଦ ପିଇଥିବାରୁ ଗ୍ରାମସଭା ବିଷୟରେ ବୁଝାଇଲେ ବି କିଛି ନ ବୁଝି ନାନା ଗାଳି ଗୁଲଜ କରନ୍ତି ।

**ଆରୋହଣ-** ଆପଣ ଆପଣଙ୍କ କାର୍ଯ୍ୟକାଳ ମଧ୍ୟରେ କି କି କାମ କରିଛନ୍ତି ?

ପୁଷ୍ପଲତା- ଅଧିକାଂଶ ଗାଁରେ ମେସିନାରୀ ଡ୍ରେନ୍ କରାଯାଇଛି । କେତୋଟି ଗାଁରେ କଜୱେ କାମ ହୋଇଛି, ଇନ୍ଦିରା ଆବାସ ଯୋଜନାରେ ଅନେକ ଲୋକଙ୍କୁ ଘର ଦିଆଯାଇଛି । ପ୍ରାୟ ୧୦୦ରୁ ଊର୍ଦ୍ଧ୍ୱ ଲୋକଙ୍କୁ ଛାତପାଇଁ ଟିଣ ଯୋଗାଇ ଦିଆଯାଇଛି । କଳାକାନି ଓ ଗୋଡିଗୁଡାରେ ଡି.ପି.ଇ.ପି.ସ୍କୁଲ ହୋଇଛି । ଏହାଛଡା କାଶୀପୁର ପଞ୍ଚାୟତର ଲାକ୍ରିସ୍ ଓ ଅମରସିଂଗୁଡା ଗାଁରେ ଦୁଇଟି ବାଳଶ୍ରମ ସ୍କୁଲ ପାଇଁ ଟଙ୍କା ଅନୁମୋଦନ ହୋଇସାରିଛି । କାଶୀପୁରର ବୈଦ୍ୟନାଥ ସାଗର ପାଇଁ ଏମ୍.ପି.ପାଣ୍ଠିରୁ ୧,୨୦,୦୦୦(ଏକ ଲକ୍ଷ କୋଡିଏ ହଜାର) ଟଙ୍କା ଅନୁମୋଦନ ହୋଇଛି ।

ଆରୋହଣ- ଆମେ ଶୁଣୁଛୁ ଯେ ଆପଣଙ୍କ ପଞ୍ଚାୟତରେ ଜଣେ ବି.ପି.ଏଲ୍ ତାଲିକା ଥିବା ଲୋକ ନାଁରେ ଇନ୍ଦିରା ଆବାସ ଘର ଅନୁମୋଦନ ହେଉଛି, ମାତ୍ର ଉକ୍ତ ଘରଟି ବି.ପି.ଏଲ୍.ତାଲିକାରେ ନଥିବା ଲୋକଙ୍କୁ ଦିଆଯାଇଛି । ଏହା କ'ଣ ସତ ?

ପୁଷ୍ପଲତା- ନାଁ, ମୋ ପଞ୍ଚାୟତରେ ସେମିତି ହୋଇନାହିଁ । ସତ କଥା ହେଲା ଗୋରଖପୁର ପଞ୍ଚାୟତର ଜଣକ ନାଁରେ ଅନୁମୋଦନ ହୋଇଥିବା ଇନ୍ଦିରା ଆବାସ ଘରଟିଏ ଆମ କାଶୀପୁର ପଞ୍ଚାୟତର ଲୋକଟିଏ ଆଣି କରିଛି । କେମିତି କରିଛି ମୁଁ ଜାଣିନି । ଏବେ ତ ଆହୁରି ଦ୍ୱନ୍ଦ୍ୱ ଉପୁଯିବ ସେଇ ଇନ୍ଦିରା ଆବାସ ଘର ନେଇ । ବି.ଡି.ଓ. କହୁଛନ୍ତି କି ଆପଣମାନେ ଗ୍ରାମସଭାରେ କେବଳ କେଉଁ ଗାଁରେ ଇନ୍ଦିରା ଆବାସ ଘର ହେବ ସେହି ନିଷ୍ପତ୍ତିଟି ନେଇ ତା'ର ତାଲିକା ଦେବେ । ସେଥିରେ କେଉଁ ହିତାଧିକାରୀ ଉପକୃତ ହେବେ ତାହା ଆମର ସଂପ୍ରସାରଣ ଅଧିକାରୀ ଠିକ୍ କରିପାରିବେ ନାହିଁ । ଆମ୍ଭେମାନେ ଏଥିରେ ସମ୍ମତ ନ ହେବାରୁ ସେ କହିଲେ ଏହା କଲେକ୍ଟରଙ୍କ ଅର୍ଡର ।

ଆରୋହଣ- ରାଜନୀତିରେ ଭାଗ ନେବା ଦ୍ୱାରା ଘରେ କିଛି ଅସୁବିଧା ହେଉନାହିଁ ?

ପୁଷ୍ପଲତା- ନା, ହେଉନି । ଘରେ ମୁଁ ବର୍ତ୍ତମାନ ଝଞ୍ଜାଳମୁକ୍ତ କହିଲେ ଚଳେ । ଝିଅ ଦୁଇଟି ବାହାହୋଇ ତାଙ୍କ ଶାଶୁଘରେ ଅଛନ୍ତି । ପୁଅର ମଧ୍ୟ ବିଭାଘର ସରିଲାଣି । ଘରକଥା ବୋହୂ ବୁଝୁଛି । ତେଣୁ ଘର ତରଫରୁ କୌଣସି ପ୍ରତିବନ୍ଧକ ନାହିଁ ।

ଆରୋହଣ- ରାଜନୀତି କ୍ଷେତ୍ରରେ ଆପଣଙ୍କର କୌଣସି ପ୍ରତିବନ୍ଧକ ଅଛି କି ?

ପୁଷ୍ପଲତା- ନା ସେମିତି କିଛି ମୁଁ ସାମ୍ନା କରିନି । ମୁଁ ସରପଞ୍ଚ ହେବାବେଳେ ମୋର ତିନୋଟି ମୁଖ୍ୟ ଲକ୍ଷ୍ୟ ଥିଲା ଯଥା; ଚେରଟା ପ୍ରକଳ୍ପ(ମାଳି ଗାଁ ଚେକ୍ ଡ୍ୟାମ), ଧାନଘେର ପ୍ରକଳ୍ପ(ଖୁରୀଗାଁ ଚେକ୍ ଡ୍ୟାମ), ବୈଦ୍ୟନାଥ ସାଗର ଓ ଲାକ୍ରିସ୍ ଉଠା ଜଳସେଚନ । ଯଦିଓ ଏ ଗୁଡିକ ପୂରଣ କରିବା ପାଇଁ ମୁଁ ଅନେକ ଥର ଚେଷ୍ଟା କରିଛି ତାହା କରିବାର କେତୋଟି ପ୍ରତିବନ୍ଧକ ସୃଷ୍ଟି ହୋଇଛି, ଯେଉଁଥିପାଇଁ ଏ ପର୍ଯ୍ୟନ୍ତ କାମଗୁଡିକ ହୋଇପାରିନି । ଉଦାହରଣ ସ୍ୱରୂପ ମୁଁ ଭଗାମୁଣ୍ଡା ପାଇଁ ଗୋଟେ ଚେକ୍ ଡ୍ୟାମ୍ ଦାବି

କରିଥିଲି ଏବଂ ସେଥିପାଇଁ ସୁନିଶ୍ଚିତ ରୋଜଗାର ଯୋଜନା ମାଧ୍ୟମରେ ଟଙ୍କା ଅନୁମୋଦନ ହୋଇଥିଲା । ପଞ୍ଚାୟତ ତରଫରୁ ମଧ୍ୟ ଏହି କାମଟି ପ୍ଲାନ୍‌ରେ ରଖାଗଲା । ଆମ ଦରଖାସ୍ତକୁ ଚେୟାରମ୍ୟାନ ଅନୁମୋଦନ ବନ୍ଦ କରିଥିଲେ । ସେତେବେଳେ ବି.ଡି.ଓ. କହିଲେ କି ବର୍ଷା ମାସ ସରିଯାଉ, କାମ ଆରମ୍ଭ ହେବ । ମାତ୍ର କିଛିଦିନ ପରେ ଦେଖିଲା ବେଳକୁ ଉକ୍ତ କାମଟିର ଓ୍ୱାର୍କ ଅର୍ଡର ଜଣେ ଲୋକପ୍ରତିନିଧିଙ୍କର ସଂପର୍କୀୟଙ୍କ ନାମରେ ଦିଆସରିଛି । ତେଣୁ ଗାଁ ଲୋକ ପାଟିତୁଣ୍ଡ କରି ସେହି କାମଟିକୁ କରାଇ ଦେଲେ ନାହିଁ । ଯେହେତୁ କାମଟି ଅନୁମୋଦନ ସରିଥିଲା, ତେଣୁ ସେ ଉକ୍ତ କାମଟି ନିର୍ଦ୍ଦିଷ୍ଟ ସ୍ଥାନରେ ନ କରି ତା'ଠାରୁ ଗୋଟେ କିଲୋମିଟର ଦୂରରେ କରିଦେଲେ ଯାହା ଏବେ ପ୍ରାୟ ନଷ୍ଟ ହୋଇଗଲାଣି କହିଲେ ଚଳେ । ଫଳରେ ନା କାମ ଠିକ୍‌ରେ ହୋଇପାରିଲା ନା ଲୋକମାନେ ଠିକ୍‌ରେ ଉପକୃତ ହୋଇପାରିଲେ ।

**ଆରୋହଣ-** ଆଗକୁ କ'ଣ କରିବେ ବୋଲି ଭାବୁଛନ୍ତି ?

**ପୁଷ୍ପଲତା-** ମୁଁ ଯେଉଁ ତିନୋଟି ଲକ୍ଷ୍ୟ ନେଇ ସରପଞ୍ଚ ପ୍ରାର୍ଥୀ ହୋଇଥିଲି, ସେଗୁଡିକ ପୂରଣ କରିବା ସଂଗେ ସଂଗେ ପଞ୍ଚାୟତରେ କିପରି ବି.ପି.ଏଲ୍ କାର୍ଡ ଠିକ୍‌ରେ ବଣ୍ଟାଯାଇ ପାରିବ ସେଥିପାଇଁ ଚେଷ୍ଟା କରିବି ।

**ଆରୋହଣ-** ଆସନ୍ତା ନିର୍ବାଚନରେ ଆପଣ ପ୍ରତିଦ୍ୱନ୍ଦିତା କିରବେ କି ନାହିଁ?

**ପୁଷ୍ପଲତା-** ଆଉ ! ମୋଟେ ନୁହେଁ । ଯେତିକି ହେଲା ବହୁତ ।

**ଆରୋହଣ-** ଯଦି ପ୍ରଥମ ଥର ପରି ଲୋକ ବାଧ୍ୟ କରିବେ, ତେବେ ?

**ପୁଷ୍ପଲତା-** ହଁ, ଯଦି ବାଧ୍ୟ କରିବେ ଆଉ ପଇସାପତ୍ର ଖର୍ଚ୍ଚ ବିନା ଯଦି ହେବ ତେବେ ପ୍ରତିଦ୍ୱନ୍ଦିତା କରିପାରେ ।

ଅକ୍ଟୋବର -୨୦୦୦



# ପଡ଼ିକାର୍ଡ଼ ପାଇଁ ସଂଘର୍ଷ ଜାରି

କଳାହାଣ୍ଡି ଜିଲ୍ଲା ଥୁଆମୂଳ ରାମପୁର ବ୍ଲକର ଘୁଟୁଖାଲ୍ ପଞ୍ଚାୟତର ବାଗ୍‌ବେଡ଼ା ଓ ବାହାଡ଼ାଘାଟ ଦୁଇଟି ଆଦିବାସୀ ଅଧ୍ୟୁଷିତ ଗାଁ । ଉକ୍ତ ଗାଁରେ ୫୦ଟି ପରିବାର ବସବାସ କରୁଛନ୍ତି । ଗାଁଠାରୁ ବ୍ଲକର ଦୂରତା ୧୦୦ କି.ମି. ହୋଇଥିବାରୁ ଏହି ଦୁଇଟି ଗାଁରେ କୌଣସି ସରକାରୀ କର୍ମଚାରୀମାନଙ୍କର ଦୃଷ୍ଟି ପଡ଼େନାହିଁ । କେବଳ ଭୋଟ ସମୟରେ ରାଜନୀତିଆ ଲୋକମାନଙ୍କର ଗହଳି ହୋଇଥାଏ । ଲୋକମାନେ ଘୁଟୁଖାଲ୍ ପଞ୍ଚାୟତକୁ ଯିବାପାଇଁ ଅସୁବିଧା ହେବାରୁ, ପଞ୍ଚାୟତର ଶାଖା କାର୍ଯ୍ୟାଳୟ ବର୍ତ୍ତମାନ ନାଗୀଠାରେ ଖୋଲାଯାଇଛି ।

ସେତେବେଳେ ୨୦୦୦ ମସିହାରେ ନୂଆ ପଡ଼ିକାର୍ଡ଼ ନାଗୀ ପଞ୍ଚାୟତ ଅଧୀନସ୍ଥ ଗ୍ରାମମାନଙ୍କରେ ବଣ୍ଟନ କରାଗଲା । କିନ୍ତୁ ଗାବ୍‌ବେଡ଼ା ଓ ବାହାଡ଼ାଘାଟର ଲୋକମାନଙ୍କୁ ଏଥିରେ ବଞ୍ଚିତ କରାଯାଇଥିଲା । ବାଗ୍‌ବେଡ଼ାର ପଡ଼ୋଶୀ ଗାଁ ନାଗୀ ଏବଂ ମୁର୍କାର ଗ୍ରାମବାସୀମାନେ ପଞ୍ଚାୟତରୁ ୨ ଟଙ୍କିଆ ଚାଉଳ ପାଇପାରିଥିଲେ । ମାତ୍ର ଏ ଦୁଇଟି ଗାଁକୁ ପଡ଼ିକାର୍ଡ଼ ମିଳିନଥିବାରୁ ଚାଉଳ ନେଇପାରିଲେ ନାହିଁ । ଏମିତି କେତେ ମାସ ଗଡ଼ି ଚାଲିଲା । କିନ୍ତୁ ଏହି ଦୁଇଟି ଗାଁର ନାମ କେହି ଧରୁ ନଥାନ୍ତି । ବହୁତ ଦିନ ଅପେକ୍ଷା ପରେ ଦୁଇଜଣ ମାଆ ନିମାଇ ସାଉଁନ୍ତା ଓ ବାରିଦେଈ ଅଣ୍ଟା ଭିଡ଼ି ଆଗେଇ ଆସିଲେ । ଗାଁରେ ପ୍ରତ୍ୟେକ ମାଆଙ୍କୁ ଡାକି ବୈଠକ କରି ପଞ୍ଚାୟତରୁ ପଡ଼ିକାର୍ଡ଼ ଆଣିବା ଲାଗି ଏକଜୁଟ୍ ହୋଇ ଆଲୋଚନା କଲେ ଯେ ଆଗରୁ ତ ଆମ ଗାଁ ପାଇଁ ୨ ଟଙ୍କିଆ ଚାଉଳ ଆସୁଥିଲା; କିନ୍ତୁ ବର୍ତ୍ତମାନ କାହିଁକି ଆସୁନାହିଁ ? ପ୍ରଥମେ ଏହି ବିଷୟରେ ସେମାନେ ୱାର୍ଡ଼ମେମ୍ବର, ସରପଞ୍ଚ ଓ ପଞ୍ଚାୟତ କାର୍ଯ୍ୟାଳୟକୁ ଯାଇ ପଚାରିବାକୁ ନିଷ୍ପତ୍ତି ନେଲେ ।

ଏହାପରେ ନିମାଇ ସାଉଁନ୍ତା ଓ ବାରିଦେଈ ସବୁ ମା'ମାନଙ୍କୁ ସାଙ୍ଗରେ ଧରି ୱାର୍ଡ଼ମେମ୍ବରଙ୍କୁ ଭେଟି ତାଙ୍କ ଗାଁ ପାଇଁ ପଡ଼ି କାର୍ଡ଼ ଆସିଛି କି ନାହିଁ ବୋଲି ପ୍ରଶ୍ନ

କଲେ । ତା'ପରେ ୱାର୍ଡ଼ମେମ୍ବର କହିଲେ ଯେ ବାଗ୍‌ବେଢ଼ା, ବାହାଡ଼ାଘାଟି, ନାଗୀ, ମୁର୍କା ପାଇଁ ପଡ଼ିକାର୍ଡ଼ ଆସିଛି । ଆସନ୍ତା କାଲି ସକାଳ ୯ଟାରେ ପଞ୍ଚାୟତ କାର୍ଯ୍ୟାଳୟରେ ବଣ୍ଟାଯିବ । ତୁମ ଗାଁରେ ସମସ୍ତ ଲୋକମାନଙ୍କୁ ଖବର ଦେଇଦେବ ବୋଲି କହିଥିଲେ । ଠିକ୍ ତା'ପରଦିନ ଉକ୍ତ ଗାଁର ମାଆମାନେ ପଡ଼ିକାର୍ଡ଼ ପାଇଁ ଗାଁ କାର୍ଯ୍ୟାଳୟଠାରେ ପହଞ୍ଚିଲେ । ବାଗ୍‌ବେଢ଼ା ସହ ବାହାଡ଼ାଘାଟର ଅଧିକ ସଂଖ୍ୟାର ମାଆମାନଙ୍କୁ ଦେଖି ସରପଞ୍ଚ ନିମା ଓ ବାରିକୁ ପଚାରିଲା, "ତୁମ ଗାଁର ଏତେ ମା'ମାନେ କୁଆଡ଼େ ଆସିଛନ୍ତି ? ଏହାପରେ ମା' ଦୁଇଜଣ କହିଲେ ଯେ ଆଜିକୁ ୬ ମାସ ହେବ ପଡ଼ିକାର୍ଡ଼ ବନ୍ଦ ହୋଇଯାଇଥିବାରୁ ସେତିକି ମାସର ଚାଉଳ ନେବା ପାଇଁ ଆସିଛୁ । ଅନ୍ୟ ସବୁ ଗାଁର ମା'ମାନେ ପଡ଼ିକାର୍ଡ଼ ପାଇଁ ଚାଉଳ ପାଉଥିବା ବେଳେ ଆମେ ଏପର୍ଯ୍ୟନ୍ତ ଦୁଇଖଣ୍ଡ ଗାଁର ଲୋକମାନଙ୍କୁ କାର୍ଡ଼ ମିଳିନାହିଁ କାହିଁକି ? ତେଣୁ ଆଜି ପଡ଼ିକାର୍ଡ଼ ନେବାପାଇଁ ଆସିଛୁ । ଏହାପରେ ସରପଞ୍ଚ କହିଲେ ତୁମ ଗାଁ ପାଇଁ ପଡ଼ିକାର୍ଡ଼ ଆସିନାହିଁ; ଏଣୁ ଚାଉଳ ଦିଆଯାଇ ପାରିବ ନାହିଁ । ବାଗ୍‌ବେଢ଼ା ଓ ବାହାଡ଼ାଘାଟର ମାଆମାନେ ପ୍ରତିବାଦ କରି କହିଲେ ଆମେ ଆଜି ଏକଜୁଟ୍ ହୋଇ ଆସିଛୁ; ପଡ଼ିକାର୍ଡ଼ ନେଇ ଘରକୁ ଯିବୁ । ସରପଞ୍ଚ, ସେକ୍ରେଟାରୀ ମା'ମାନଙ୍କର ଏଭଳି ମନୋଭାବ ଦେଖି ସେମାନଙ୍କୁ ବୁଝାଇବାକୁ ଯାଇ କହିଲେ ଯେ ଆଜି କାର୍ଡ଼ମିଳିଥିବା ଲୋକମାନଙ୍କୁ ଚାଉଳ ଦିଆଯାଇଛି । ତୁମ ଗାଁରେ କେଉଁମାନେ ପଡ଼ିକାର୍ଡ଼ ପାଇବାକୁ ଯୋଗ୍ୟ ଅଛନ୍ତି, ସେମାନଙ୍କର ନାମ ତାଲିକା ଦିଅ । ମୁଁ ତାରିଖ ସ୍ଥିରକରି ଜଣାଇଲେ ତୁମେମାନେ ପଞ୍ଚାୟତ କାର୍ଯ୍ୟାଳୟକୁ ଆସି କାର୍ଡ଼ ନେଇଯିବ ।

ସରପଞ୍ଚ ତାରିଖ ଜଣାଇବାରୁ ମା'ମାନେ ଘରକୁ ଫେରିଆସି ପୁଣି ନିର୍ଦ୍ଧାରିତ ତାରିଖରେ ପଞ୍ଚାୟତ କାର୍ଯ୍ୟାଳୟଠାରେ ପହଞ୍ଚିଥିଲେ, କିନ୍ତୁ ସରପଞ୍ଚ ଓ ସେକ୍ରେଟାରୀ କହିଲେ କାର୍ଡ଼ ଆସିନାହିଁ । ଆମେ ବ୍ଲକକୁ ଚିଠି ଦେଇଛୁ ନୂଆକାର୍ଡ଼ ଆସିଲେ ତୁମ ଗାଁକୁ ଖବର ଦିଆଯିବ । ସରପଞ୍ଚ ଓ ସେକ୍ରେଟାରୀଙ୍କର ଏଭଳି ଠକାମି ମନୋବୃତ୍ତି ଦେଖି ମା'ମାନେ ଏକଜୁଟ ହୋଇ ପୂର୍ବନିଷ୍ପତ୍ତି ଅନୁସାରେ ପଞ୍ଚାୟତ କାର୍ଯ୍ୟାଳୟକୁ ଘେରାଉ କରି ପଞ୍ଚାୟତ ଘରେ ସରପଞ୍ଚ ଓ ସେକ୍ରେଟାରୀଙ୍କୁ ତାଲା ପକାଇ ଦେଇ ଘଣ୍ଟାଏ ପର୍ଯ୍ୟନ୍ତ ଜଗି ରହିଲେ ଓ ସେମାନଙ୍କୁ କହିଲେ ଆମେ ଯେମିତି ଚାଉଳ ନପାଇଁ ଭୋକ ଉପାସରେ ମରୁଛୁ, ତୁମେ ସେମିତି ଆଜି ଖାଇବାକୁ ନପାଇ ଏ ଘର ଭିତରେ ମର । ଆଜି ତୁମକୁ କେହି ରକ୍ଷା କରିପାରିବେ ନାହିଁ । ଏହାପରେ ସରପଞ୍ଚ ମା'ମାନଙ୍କୁ ଅନୁରୋଧ କରି କହିଲା ଯେ ମୋର ଭୁଲ ହୋଇ ଯାଇଛି, ମୋତେ

କ୍ଷମା ଦିଅ । ଚାବି ଖୋଲି ଦିଅ ମୁଁ ତୁମ ଗାଁକୁ ନିଜେ ଯାଇ କାର୍ଡ଼ ଦେଇକି ଆସିବି । ତା'ପରେ ମା'ମାନେ କହିଲେ ତୁ ସେହି ଘର ଭିତରେ ମରିଗଲେ ମଧ୍ୟ ଆମେ ତାଲା ଖୋଲିବୁ ନାହିଁ । ଯଦି କେହି ସରକାରୀ ଲୋକ ପଚାରନ୍ତି, ଆମେ କହିବୁ ଆମ ଗାଁକୁ ୬ ମାସ ହେବ, ଚାଉଳ ଦିଆଯାଇ ନାହିଁ କି କାର୍ଡ଼ ମଧ୍ୟ ଆଜିପର୍ଯ୍ୟନ୍ତ ମିଳିନାହିଁ । ତାଲା ପକାଇବାରୁ ଆମ ଭଳି ସେମାନେ ମଧ୍ୟ ଭୋକରେ ମରିଗଲେ । ଏହାପରେ ସରପଞ୍ଚ ମା'ମାନଙ୍କୁ ବହୁତ ଅନୁରୋଧ କରିବାରୁ ଗୋଟିଏ ଦିନ ପରେ ତାଲା ଖୋଲିଥିଲେ କିନ୍ତୁ ଆଜିପର୍ଯ୍ୟନ୍ତ ସରପଞ୍ଚ ଗାଁରେ ଦେଖାନାହିଁ କି ପଡ଼ିକାର୍ଡ଼ ମଧ୍ୟ ଦୁଇଖଣ୍ଡ ଗାଁ ଲୋକମାନେ ପାଇପାରି ନାହାନ୍ତି । ଏଥିପାଇଁ ଜିଲ୍ଲାପାଳ ଓ ବିଡ଼ିଓଙ୍କୁ ଲେଖିକି ଜଣାଇଛନ୍ତି, କିନ୍ତୁ ଏ ପର୍ଯ୍ୟନ୍ତ କିଛି ଫଳ ମିଳିନାହିଁ । ସେଥିପାଇଁ ଏବେ ବି ସଂଘର୍ଷ ଜାରି ରଖିଛନ୍ତି ।

ମାର୍ଚ୍ଚ - ୨୦୦୨



# ପଞ୍ଚାୟତର ରିଜୋଲ୍ୟୁସନ୍ କପି ପାଇଁ ଗାଁ ଲୋକଙ୍କ ଦାବି

ରାୟଗଡ଼ା ଜିଲ୍ଲା ମାଣ୍ଡିବିଶି ପଞ୍ଚାୟତରେ ବାହାରପଦା ଗ୍ରାମ ଅବସ୍ଥିତ । ଉକ୍ତ ଗ୍ରାମଠାରୁ ପଞ୍ଚାୟତର ଦୂରତା ୨ କି.ମି. ଓ ବ୍ଲକର ଦୂରତା ୧୬ କି.ମି. । ଏହି ଗ୍ରାମରେ ହରିଜନ ଓ ଆଦିବାସୀ ସଂପ୍ରଦାୟର ମୋଟ ୧୦୫ଟି ପରିବାର ବସବାସ କରୁଛନ୍ତି । ଗାଁରେ ଆଶ୍ରମ ସ୍କୁଲ ଏବଂ ପ୍ରାଇମେରୀ ସ୍କୁଲ ଅଛି । ପ୍ରତ୍ୟେକ ପିଲା ପାଠ ପଢୁଛନ୍ତି । ଗାଁର ଲୋକମାନେ ସାଧାରଣତଃ ଡଙ୍ଗର  ଚାଷ ଉପରେ ନିର୍ଭର କରନ୍ତି । ପ୍ରଥମେ ଅଗ୍ରଗାମୀ ୧୯୯୩ ମସିହାରେ କୁଟୁମ୍ବପାଣ୍ଠି କାର୍ଯ୍ୟକ୍ରମ ଆରମ୍ଭ କରିଥିଲା । ଗାଁରେ ରାଜନୈତିକ ପ୍ରଭାବ ଯୋଗୁଁ କୁଟୁମ୍ବପାଣ୍ଠି ଏବଂ ଅନ୍ୟାନ୍ୟ କାର୍ଯ୍ୟକ୍ରମ ଭଲ ଚାଲୁ ନଥିଲା । ଅଗ୍ରଗାମୀ ମାଣ୍ଡିବିଶି ପଞ୍ଚାୟତରେ ୨୦୦୧ ମସିହା ଡିସେମ୍ବର ମାସଠାରୁ ପୁନରାୟ ଏହି ଗ୍ରାମରେ ଲୋକମାନଙ୍କୁ ବୁଝାଇ ତାଲିମ୍ ଏବଂ ବୈଠକରେ ଯୋଗଦେଇ ବିଭିନ୍ନ ସରକାରୀ କାର୍ଯ୍ୟକ୍ରମ ବିଷୟରେ ସଚେତନ କରାଇ ପାରିଛନ୍ତି ।

୭୩ ତମ ସମ୍ବିଧାନ ସଂଶୋଧନ ପଞ୍ଚାୟତିରାଜ ବ୍ୟାବସ୍ଥାକୁ ଗାଁରେ ବେଶ୍ ସୁଦୃଢ଼ କରିବାକୁ ସହାୟକ ହେଲା । ବର୍ତ୍ତମାନ ଗ୍ରାମ ପଞ୍ଚାୟତ ହାତରେ ହିଁ ଗ୍ରାମର ବିକାଶ ତଥା ଉନ୍ନତି ପାଇଁ କ୍ଷମତା ଦିଆଯାଇଛି । କିନ୍ତୁ ଏହାଦ୍ୱାରା ପ୍ରକୃତରେ ଲୋକଙ୍କ ପାଖରେ କ୍ଷମତା ପହଞ୍ଚି ପାରିଛି କି ? କ୍ଷମତାର ବିକେନ୍ଦ୍ରୀକରଣ ଯୋଗୁଁ ପଲ୍ଲୀସଭା ଓ ଗ୍ରାମସଭା ଶକ୍ତିଶାଳୀ ହୋଇଉଠିଛି କି ? ବର୍ତ୍ତମାନ କ୍ଷମତା ତଳସ୍ତରରେ ଆସି ପହଞ୍ଚିଛି । ଗାଁ ପାଇଁ କିଛି ଉନ୍ନତିମୂଳକ  ପଦକ୍ଷେପ ନିଆଗଲେ ପ୍ରଥମେ ଗ୍ରାମବାସୀଙ୍କ ମତାମତକୁ ଅଗ୍ରାଧିକାର ଦିଆଯିବ । ପଲ୍ଲୀସଭା ମାଧ୍ୟମରେ ସେମାନେ ନିଜ ଗ୍ରାମର ବିକାଶ ପାଇଁ ନୀତିନିୟମ ତିଆରି କରିପାରିବେ । ସରକାରଙ୍କ ଉନ୍ନତିମୂଳକ କାର୍ଯ୍ୟ କେବଳ ସରକାରଙ୍କ ବିଭିନ୍ନ ବିଭାଗର ନିୟନ୍ତ୍ରଣରେ ଥିଲା ଏବଂ ସେମାନେ ତାର ଫାଇଦା ଉଠାଇଥିଲେ । ଯାହାଫଳରେ ଗ୍ରାମର କିଛି ଉନ୍ନତି ହୋଇ ପାରୁନଥିଲା । ଏବେ କିନ୍ତୁ ପଞ୍ଚାୟତିରାଜ

ବ୍ୟବସ୍ଥା ଗ୍ରାମବାସୀଙ୍କୁ ଏହି କ୍ଷମତା ପ୍ରଦାନ କରିଛି । ଏହି ପରିପ୍ରେକ୍ଷୀରେ ପଞ୍ଚାୟତିରାଜ ବ୍ୟବସ୍ଥା ସମ୍ବନ୍ଧରେ ଅବଗତ କରାଇବାର ଆବଶ୍ୟକତା ବହୁତ ବେଶୀ । ରାଜନୈତିକ ପ୍ରକ୍ରିୟାରେ ଲୋକଙ୍କର ସାମିଲ୍ ହେବା ପାଇଁ ବେଶୀ ସୁବିଧା ସୁଯୋଗ ଦେଇଛି । ଏହାକୁ ଆଖି ଆଗରେ ରଖି ଅଗ୍ରଗାମୀ ମାଣ୍ଡିବିଶି ପଞ୍ଚାୟତରେ ପଞ୍ଚାୟତିରାଜ କର୍ମୀ, ଗ୍ରାମ କମିଟି ସଦସ୍ୟ ଓ ଗ୍ରାମ୍ୟସ୍ତରୀୟ ସରକାରୀ କର୍ମଚାରୀମାନଙ୍କୁ ନେଇ ପଞ୍ଚାୟତିରାଜ ଉପରେ ଏକ କର୍ମଶାଳା ଆୟୋଜନ କରାଯାଇଥିଲା ।

ଏହି କର୍ମଶାଳାରେ ମାଣ୍ଡିବିଶି ପଞ୍ଚାୟତର ପ୍ରାୟ ସମସ୍ତ ଲୋକ ଯୋଗ ଦେଇଥିଲେ । ଏହି କର୍ମଶାଳାର ପ୍ରଭାବ ବାହାରପଦା ମାଝୀ ଗ୍ରାମର ଲୋକଙ୍କ ଜରିଆରେ ହିଁ ପ୍ରଥମେ ପ୍ରକାଶିତ ହୋଇଥିଲା । ଗାଁର ଯୁବଗୋଷ୍ଠୀ ବେଶ୍ ସକ୍ରିୟ । ଗତବର୍ଷ ଏହି ଗାଁରେ ପଲ୍ଲୀସଭା ହୋଇ ନଥିଲା କି ଗ୍ରାମସଭାକୁ କେହି ଯାଇନଥିଲେ । ଗ୍ରାମସଭା ହେଲେ ସେମାନେ ଏହି ବିଷୟରେ କିଛି ଜାଣିପାରୁ ନଥିଲେ । ଏହି କର୍ମଶାଳାରେ ପଲ୍ଲୀସଭା ଓ ଗ୍ରାମସଭା ତଥା ପଞ୍ଚାୟତିରାଜ ବ୍ୟବସ୍ଥା ସମ୍ବନ୍ଧରେ ଜାଣିଲେ । ସେମାନଙ୍କ ମନ ହେଲା ଯେ ସେମାନଙ୍କ ଗାଁର ପଲ୍ଲୀସଭା ଠିକ୍ ଭାବରେ ହେଉନାହିଁ । ପଲ୍ଲୀସଭାର ଏକ ରିଜୋଲ୍ୟୁସନ୍ କପି ତାଙ୍କ ଗାଁରେ ରହିବା କଥା । ସେମାନେ ତାଲିମ୍ ପାଇବା ପରେ ଗ୍ରାମସଭାକୁ ଗଲେ ପଲ୍ଲୀସଭାରେ ଗ୍ରାମର ସମସ୍ତ ଲୋକ ଯୋଗଦେଇ ବିପିଏଲ୍ କାର୍ଡ଼, ଇନ୍ଦିରା ଆବାସ ଘର, ରାସ୍ତାକାମ ଓ ମୁଣ୍ଡାକାମ ସବୁ ଲେଖା ହୋଇ ଗ୍ରାମସଭାକୁ ଗଲା ଏବଂ କେତେକ ଦାବି ଗୃହୀତ ହେଲା । କିନ୍ତୁ ସେ ଅନୁଯାୟୀ କାମ ହେଲାନାହିଁ । ଗାଁ ଲୋକ, ୱାର୍ଡ଼ମେମ୍ବର କୃଷ୍ଣ ମାଝୀ, ଗାଁର ଯୁବକ ଜୟଦାନ ମାଝୀ, ସୁରେଶ ନାଏକ ତଥା ଗାଁର ବରିଷ୍ଠ ବ୍ୟକ୍ତି ବୀରସିଂ ମାଝୀଙ୍କ ନେତୃତ୍ୱରେ ପଞ୍ଚାୟତକୁ ଯାଇ ଗ୍ରାମସଭା ରିଜୋଲ୍ୟୁସନ କପି ପାଇଁ ୩ ଟଙ୍କାର ରସିଦ୍ କାଟି ଆବେଦନ କଲେ ।

ହେଲେ ପଞ୍ଚାୟତ ସଂପାଦକ ବିଭିନ୍ନ ଆଳ ଦେଖାଇ ରିଜୋଲ୍ୟୁସନ ଦେବା ପାଇଁ ମନା କଲେ । ସେ କହିଲେ ଯେ ବିଡ଼ିଓଙ୍କ ବିନା ଅନୁମତିରେ ଦିଆଯାଇ ପାରିବନାହିଁ । ଗ୍ରାମବାସୀମାନେ ସନ୍ଦେହ କଲେ ଯେ ଗ୍ରାମସଭାର ନିଷ୍ପତ୍ତିରେ ନିଶ୍ଚୟ ପରିବର୍ତ୍ତନ କରାଯାଇଛି । ତେଣୁ ଏ ବିଷୟରେ ସେମାନେ ବିଡ଼ିଓଙ୍କ ନିକଟକୁ ଲିଖିତ ଆକାରରେ ଜଣାଇ ତାଙ୍କର ଦୃଷ୍ଟି ଆପର୍ଷଣ କଲେ । ହେଲେ ମଧ୍ୟ କିଛି ପଦକ୍ଷେପ ନିଆଯାଉନାହିଁ । ଲୋକମାନେ ପଞ୍ଚାୟତର ନିୟମକାନୁନ୍ ଜାଣିଲା ପରେ ସଚେତନ ହୋଇ ଆଗକୁ ବାହାରିଛନ୍ତି । କିନ୍ତୁ ଆମର ଶାସନକଳ ତାଙ୍କୁ ଏ କ୍ଷେତ୍ରରେ ବାଧାଦେଇ ନିଜର ଦୁର୍ବଳତା ତଥା ହୀନ ମନୋବୃତ୍ତିର ପରିଚୟ ଦେଇଛି । ଆଜି ଲୋକମାନେ ଯେତେବେଳେ ସଚେତନ ହୋଇ ନିଜ ଅଧିକାର ସାବ୍ୟସ୍ତ କରିବାକୁ ବାହାରୁଛନ୍ତି, ସେତେବେଳେ ସେମାନେ ସରକାରଙ୍କ ସହାୟତା ନପାଇ ନିରାଶ ହେଉଛନ୍ତି ।

ମାର୍ଚ୍ଚ - ୨୦୦୨

# ଅଁଳାମିଣିଆକାର ଉଦ୍ୟମ

ଆମେ ମୁନ୍ଦାର ଗାଆଁକୁ ଚାଲି ଚାଲି ଯିବା ସମୟରେ ଗୋଟିଏ ବହୁତ ବଡ଼ ଘାଟି ପଡ଼ିଲା । ସାତ ଜଣ ମା' ବିଭିନ୍ନ କଥାବାର୍ତ୍ତା ଭିତରେ ଯାଉ ଯାଉ ଜଣେ ମା' କହିଲା ଚଣ୍ଡିଜାନୀଗୁଡ଼ା ମୁନ୍ଦାର ଗାଆଁଟିକୁ 'ଚାଉଳ ଖାଇବ ଦେଢ଼ ସେର।' ସତ କହିବାକୁ ଗଲେ କୋରାପୁଟ ଜିଲ୍ଲାରେ ଅବସ୍ଥିତ ଦଶମନ୍ତପୁର ବ୍ଲକଠାରୁ ମାତ୍ର ଆଠ କି.ମି. ଦୂର କିନ୍ତୁ ଚାରି କି.ମି. ଘାଟି ରାସ୍ତା ଅତିକ୍ରମ କରିଗଲେ ଏହି ଗାଆଁଟି ପଡ଼େ। ଉକ୍ତ ଗ୍ରାମଟିରେ ୪୪ଟି ପରିବାର ମଧ୍ୟରେ ୩୨ ଘର ଆଦିବାସୀ ଓ ୧୨ ଘର କମାର ସଂପ୍ରଦାୟର ଲୋକ ବାସ କରନ୍ତି। ଗାଆଁର ପ୍ରତ୍ୟେକ ଲୋକ ଡଙ୍ଗର ଚାଷ ଉପରେ ନିର୍ଭର କରି ଚଳନ୍ତି। ଦୁଇଟି ବା ତିନୋଟି ପରିବାରକୁ ଛାଡ଼ି ଦେଲେ ଅନ୍ୟମାନଙ୍କର ଉତ୍ପାଦିତ ଦ୍ରବ୍ୟ ମାତ୍ର ଆଠମାସ ପର୍ଯ୍ୟନ୍ତ ଯାଏ।

ପାଖ ଗାଆଁରୁ ପ୍ରାୟ ପାଞ୍ଚ କି.ମି. ଦୂରରେ ଥିବା ଦଣ୍ଡାବାଡ଼ ଗ୍ରାମର ସାହୁକାର ପାଖରୁ ଟଙ୍କା, ଧାନ, ମାଣ୍ଡିଆ, କୋଶଳା ଇତ୍ୟାଦି ଋଣକୁ ଆଣିଥାନ୍ତି। ସରକାରଙ୍କ ତରଫରୁ ଯେଉଁ କାମ ଆସିଥିଲା ସେହି କାମରେ ମଧ୍ୟ ଠିକ୍ ଭାବରେ ମଜୁରି ମିଳିଲା ନାହିଁ। ସାହୁକାରକୁ ଡରି ଏମାନେ ବାଧ୍ୟହୋଇ ପାଞ୍ଚଦିନ କାମ କରି ମାତ୍ର କୋଡ଼ିଏ କେଜି ଚାଉଳ ପାଇ ଚୁପ୍‌ଚାପ୍ ହୋଇ ରହିଗଲେ। କିନ୍ତୁ ମହିଳାମାନେ ଏକାଠି ହୋଇ ନିଜେ ସାହସ ବାନ୍ଧି ବ୍ଲକ୍‌ରୁ କାମ ଆଣିଲେ। ଗାଆଁର ଜଣେ ଶିକ୍ଷିତ ବ୍ୟକ୍ତି ଏହାକୁ ବୁଝାବୁଝି କଲେ। ମା'ମାନଙ୍କ ଭିତରେ ନିଜର ଆତ୍ମନିର୍ଭରଶୀଳତା ପାଇଁ ପ୍ରତି ମାସରେ କିଛି କିଛି ଟଙ୍କା ସଞ୍ଚୟ କରିବାକୁ ଆରମ୍ଭ କଲେ। ଏହା ସହିତ ପ୍ରତି ସପ୍ତାହରେ କିଛି ଚାଉଳ ମଧ୍ୟ ଉଠାଇଲେ। ନିଜର ସଂଚୟ ଟଙ୍କାକୁ ଚଳାଇ ନିଜ ନିଜ ଭିତରେ ଋଣ ନେଇ ଅନେକ ସମସ୍ୟା ଦୂର ହୋଇପାରିଛି। ଉକ୍ତ ଗ୍ରାମର ବିଭିନ୍ନ କାର୍ଯ୍ୟରେ ଭାଗ ନେଉଥିବା ୨୮ ବର୍ଷର ଜଣେ ମହିଳା, ଦେଖିବାକୁ ବହୁତ ପତଳା ତାର ନାମ ଅଁଳା ମିଣିଅକା। ସବୁବେଳେ ହସ ହସ ମୁହଁ। ଦୁଇଟି ପୁଅ ଓ ସ୍ୱାମୀ ସହିତ ବହୁତ ଅଭାବରେ ସେ ବାସ

କରୁଥିଲେ ମଧ୍ୟ ସେ ସଦା ସର୍ବଦା ହସ ଖୁସିରେ ଥାଏ । ତାର ଜମି ନଥିବାରୁ ଗାଆଁର ସାହୁକାର ପାଖରୁ ଡଙ୍ଗର ଜମିଟିଏ କିରିଛି ଏବଂ ଗାଁର ଜଣେ ଲୋକ ଖଣ୍ଡେ ବଗିଚା ଚାଷ ପାଇଁ ଦେଇଛି ।

ସେ ଗାଆଁରୁ ଆଗୁଆ ହୋଇ ବାହାରି ମାଆମାନଙ୍କୁ ଏକଜୁଟ କରାଇ ଦଳଟିଏ ଗଠନ କରିଛନ୍ତି । ବହୁତ କଷ୍ଟ କରି ଅନ୍ୟମାନଙ୍କୁ ବୁଝାଇ ସେ ପ୍ରଥମେ ଅର୍ଥ ପାଣ୍ଠି ଉଠାଇ ୧୫ ଜଣ ଲେଖାଏଁ ମାଆଙ୍କୁ ନେଇ ଦୁଇଟି ଦଳ ଗଠନ କଲା । ନଦୀରେ ଗାଧୋଇବା, ଜଙ୍ଗଲରୁ କାଠ ଆଣିବା, ଜମିରେ କାମ କରିବା ସମୟରେ ମାଆମାନଙ୍କୁ ବୁଝାଇଲା । ଏହି ଦୁଇଟି ଦଳ ପ୍ରତି ମାସରେ କିଛି କିଛି ସଂଚୟ କେବଳ କଲେ ତାହା ନୁହେଁ, ଏମାନେ ପାଳି କରି ଦୋକାନଟିଏ ଖୋଲି କିଣାବିକା ଦାୟିତ୍ୱ ନେଲେ । ଗାଆଁର ରାସ୍ତା, ନଳକୂପ, ଚାରିପାଖ ସଫା କଲେ । ବାପାମାନେ ମଦ ଖାଇ ଖାଦ୍ୟ ଓ ଟଙ୍କା ସାରି ଦେଇଥିବାରୁ ସେମାନେ ମଦ ବିକ୍ରୀ ବନ୍ଦ କଲେ । କିନ୍ତୁ ଏହାଦ୍ୱାରା କେତେ ଜଣ ଯୁବକ ଦଳଗଠନକୁ ବିରୋଧ କଲେ । ଯେତେବେଳେ ମାଆମାନେ ବ୍ଲକ ତରଫରୁ ୫୦୦୦ ଟଙ୍କା ଲେଖାଏଁ ଆୟକାରୀ କାର୍ଯ୍ୟ କରିବା ପାଇଁ ପାଇଲେ, ଏହି ଟଙ୍କାକୁ ନେଇ ମାଆମାନେ ମିଶି ଏକ ଦୋକନ କରିବା ସହ ଛେଳି ମଧ୍ୟ କିଣିଲେ । ଏହିପରି ବ୍ୟବସାୟ କରି ୧୦ ଜଣ ମାଆ ସମସ୍ତେ ସାହୁକାରର ଋଣ ସୁଝିପାରିଲେ । ତାଙ୍କ ପିଲାମାନଙ୍କ ପାଇଁ ବହି, ପ୍ୟାଣ୍ଟ, ସାର୍ଟ କିଣି ପାରିଲେ । ସରକାରୀ ସ୍କୁଲରେ ନାମ ଲେଖାଇଲେ । ଏହି ଗାଁର ମାଆମାନେ କହନ୍ତି ଯେ, "ଆମ୍ଭେମାନେ ଏକାଠି ହେବାରୁ ଋଣ ମୁକ୍ତ ହେଲୁ । ଆମର ପିଲାମାନଙ୍କୁ ଦି'ଅକ୍ଷର ପଢିବା ପାଇଁ ସ୍କୁଲରେ ଛାଡ଼ି ପାରିଲୁ ।"

ଥରେ ଗାଆଁରେ ପଲ୍ଲୀ ସଭା ହେଉଥାଏ । ଗାଁର ବିଭିନ୍ନ ଉନ୍ନତିମୂଳକ କାମ କଥା ପଡ଼ିଲା । ମହିଳା ମଣ୍ଡଳର ମାଆମାନେ ଯୋଗ ଦେଲେ । ଠିକାଦାରକୁ କାମ ନଦେଇ ନିଜେ ଗାଁ ଲୋକ ୩୦ ହଜାର ଟଙ୍କାର ଗାଁ ରାସ୍ତା କାମ ଆଣିବା ପାଇଁ ଜିଦ୍ ଧରିଲେ ଏବଂ ବିଡ଼ିଓଙ୍କୁ ମଧ୍ୟ ଦରଖାସ୍ତ ଦେଲେ । ବହୁତ କଷ୍ଟରେ ଗାଆଁକୁ କାମ ଆସିଲା । ଲୋକମାନେ ସର୍ବନିମ୍ନ ମଜୁରି ପାଇଲେ । ସେମାନଙ୍କ ଭିତରେ ସାହସ ମଧ୍ୟ ହେଲା । ଗୋଟିଏ ଦଳ ଦୋକାନ ଦାୟିତ୍ୱ ନେବା ବେଳେ ଅନ୍ୟ ଦଳ ଛେଳି ପାଳି ଆୟକାରୀ କାର୍ଯ୍ୟପାଇଁ ଦାୟିତ୍ୱ ନେଲେ ।

ବ୍ଲକରୁ ୮ କି.ମି. ଦୂରତାରେ ଗାଆଁଟି ଏବଂ ବିରାଟ ଘାଟି ରାସ୍ତା ଉଠିଲା ବେଳେ ଗାଁ ଲୋକଙ୍କୁ କଷ୍ଟ ଲାଗେ । ଏଠାକୁ କେଉଁ ସରକାରୀ ସ୍ୱାସ୍ଥ୍ୟ କର୍ମୀ ଆସିବ ? ତେଣୁ ଆପଣମାନେ ଅନୁମାନ କରିପାରୁଥିବେ ଏହି ମୁନ୍ଦାର ଗାଁର ଗର୍ଭବତୀ ମହିଳା ଓ ଛୋଟ ପିଲାମାନେ କେଉଁ ପ୍ରକାର ଚିକିତ୍ସା ପାଉଥିବେ ? ଖାଦ୍ୟ ନିରାପତ୍ତା କାର୍ଯ୍ୟକ୍ରମ ରେ ଉକ୍ତ

ଗାଁର ଅଁଳା, ସାଲାର, ସିଙ୍ଗାରୀ ଓ ଅନ୍ୟ କେତେକ ମାଆମାନେ ତାଲିମ୍ ନେଇ ବିଭିନ୍ନ ସରକାରୀ କାର୍ଯ୍ୟକ୍ରମ ବିଷୟରେ ସଚେତନ ହୋଇ ଅଙ୍ଗନୱାଡ଼ି ଦିଦିଙ୍କୁ ନିଜ ଗାଁ ବିଷୟରେ ପଚାରି ଥିଲେ ଯେ, ଆମ ଗାଁର ଗର୍ଭବତୀ ମହିଳା ଓ ଶିଶୁମାନଙ୍କୁ କାହିଁକି ଠିକ୍ ଭାବରେ ଖାଦ୍ୟ ଦିଆଯାଉନାହିଁ ଏବଂ ସ୍ୱାସ୍ଥ୍ୟ ପରୀକ୍ଷା ମଧ୍ୟ କରାଯାଉନାହିଁ। ଏହିପରି କହିବା ଦ୍ୱାରା ସେ ଅଁଳା ଗାଆଁକୁ ଆସିଲା ଏବଂ ମହିଳା ମଣ୍ଡଳର ପ୍ରତ୍ୟେକ ମାଆମାନେ ମିଶି ବ୍ଲକକୁ ଯାଇ ସି.ଡ଼ି.ପି.ଓ.ଙ୍କୁ ଦେଖାକରି କହିଲେ ଯେ ଆମ ପିଲାମାନଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରାଯାଇ । ଠିକ୍ ଭାବରେ ଖାଦ୍ୟ ମିଳୁ। ଏହା କହିବା ଦ୍ୱାରା ପ୍ରତିମାସରେ ପିଲାମାନଙ୍କୁ ଖାଦ୍ୟ ମିଳିଲା ଏବଂ ଗର୍ଭବତୀ ମହିଳା ଓ ଶିଶୁମାନଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରାଗଲା। ମାଆମାନେ ନିଜେ ଯାଇ ଖାଦ୍ୟ ଆଣି ପିଲାମାନଙ୍କୁ ରାନ୍ଧି ଖାଦ୍ୟ ଦେଉଛନ୍ତି।

ଏହି ଗାଆଁର ମାଆମାନଙ୍କୁ ଅଁଳା ଏକାଠି କରି ବୁଝାଇଲା ଯେ "ଆମର ଜମି ଗୁଡ଼ାକ ମରାମତି ହେବ, ହୁଡ଼ା ଦିଆହେବ ତେବେ ଆମେ ଅଧିକ ଫସଲ ପାଇବା। ଏହି ବିଷୟରେ ବିଡ଼ିଓଙ୍କୁ ଏକ ଦରଖାସ୍ତ ଦେବା । ଏହା ସହ ନଳକୂପ ମରାମତି ଏବଂ ଗାଆଁ ମଧ୍ୟରେ ଡ୍ରେନ ପାଇଁ ମଧ୍ୟ ଦାବି କରିବା।" ତାଙ୍କ କଥାରେ ମାଆମାନେ କେବଳ ନୁହେଁ ବାପାମାନେ ମଧ୍ୟ ରାଜି ହେଲେ। ନିଜର ଦାବିପତ୍ର ଆଣି ବିଡ଼ିଓଙ୍କୁ ଦେଲେ । ବିଡ଼ିଓ ଏସବୁ କାମ ତଦାରଖ କରିବା ପରେ ଦେବାପାଇଁ ପ୍ରତିଶ୍ରୁତି ଦେଲେ। ଦୁଃଖର କଥା ଯେ ଏହି ପଞ୍ଚାୟତରେ ଗ୍ରାମସଭା ହୋଇ ପାରୁ ନାହିଁ ବୋଲି, ଲୋକମାନଙ୍କର ପ୍ରକୃତ ଅଧିକାର ଗାଁର ଗରିବ ଲୋକମାନେ ପାଇବାରୁ ବଞ୍ଚିତ ହେଉଛନ୍ତି।

ଆମେ ଗାଆଁ ଲୋକଙ୍କ ସହ କଥା ହେଲାବେଳେ ଜଣେ ମାଆ ଆମ୍ବ କୋଇଲିକୁ ଶୁଖାଉଥିବାର ଦେଖି ଆମ୍ବ କୋଇଲି କିପରି ଖାଉଛ ବୋଲି ପଚାରିଲୁ। ସେ ମାଆ ଜଣକ କହିଲେ, "ଆମେ ବର୍ଷର ୪ ମାସ ଆମ୍ବଟାକୁଆ ପେଜ ନଖାଇଲେ କ'ଣ ଖାଇବୁ।" ଅଭାବ ସବୁବେଳେ ଅଛି। ଯାହାର ଜମି ନାହିଁ ତା'ର ଜୀବନ କିପରି ବଞ୍ଚିବ? ତଥାପି ଏପରି କେତେ ମଣିଷ ଆମ୍ବ ଟାକୁଆ ଜାଉ ଖାଇ କିଛିଦିନ ବଞ୍ଚିଛନ୍ତି। ମୁନ୍ଦାର ଗାଆଁଟି ଏବେ ବଦଳି ଯାଇଛି। ସେମାନଙ୍କ ପାଖରେ ୧୫,୦୦୦ରୁ ଅଧିକ ଟଙ୍କା ଅଛି। ଚାଉଳ ଦୁଇ ବସ୍ତାରୁ ଅଧିକ ଅଛି। ଏହାର ସହ କୁଟୁମ୍ବ ପାଣ୍ଠିର ମୁଖ୍ୟ ଦାୟିତ୍ୱ ମାଆମାନେ ନେଇଛନ୍ତି। ଗାଆଁରେ ଏକ ଜଙ୍ଗଲ ମଧ୍ୟ ସୁରକ୍ଷା କରି ପାରିଛନ୍ତି। ଭବିଷ୍ୟତରେ ଦିନେ କିପରି ଅଗ୍ରଗତି କରିପାରିବ ଏବଂ ବିଭିନ୍ନ ଉନ୍ନତିମୂଳକ କାମ ଗାଆଁରେ କରିପାରିବେ ସେଥିପାଇଁ ସାମୂହିକ ଭାବେ ଚେଷ୍ଟା କରୁଛନ୍ତି।

ମାର୍ଚ୍ଚ - ୨୦୦୩

# ଆମ ସଂଗଠନ କଥା

ଆପଣମାନେ ମାଣ୍ଡିବିଶି ମହିଳାମଣ୍ଡଳ ଓ "ଆମ ସଂଗଠନ" ବିଷୟରେ ପୂର୍ବରୁ ବହୁତ କଥା ଜାଣିଛନ୍ତି । ଆରୋହଣରେ ମଧ୍ୟ ଅନେକଥର ପ୍ରକାଶ ପାଇଛି । ବର୍ତ୍ତମାନ ସଂଗଠନ କିପରି ବିଭିନ୍ନ ପ୍ରକାର ବ୍ୟବସାୟ ତଥା ବ୍ଲକର ବିଭିନ୍ନ ପଞ୍ଚାୟତର ଲୋକମାନଙ୍କ ପାଇଁ ବିଭିନ୍ନ ସଚେତନତା ମୂଳକ କାର୍ଯ୍ୟ କରୁଛି ଓ ତା' ସହିତ ସରକାରୀ କର୍ମଚାରୀମାନଙ୍କ ସହିତ ସୁସଂପର୍କ ସ୍ଥାପନ କରି କିପରି ଲଘୁବନଜାତ ଦ୍ରବ୍ୟର ବଜାର ବ୍ୟବସ୍ଥା କରିପାରୁଛି, ସେ ବିଷୟରେ ପାଠକମାନଙ୍କୁ ସମ୍ୟକଧାରଣା ଦେବା ପାଇଁ ଏହି ପ୍ରସଙ୍ଗଟିକୁ ପ୍ରକାଶ କରୁଛୁ :

ପୂର୍ବେ କାଶୀପୁର ଅଞ୍ଚଳରେ ଚାରିଆଡ଼େ ଘନ ଜଙ୍ଗଲ ଥିଲା । ଲୋକମାନେ ଜଙ୍ଗଲ ଉପରେ ନିର୍ଭରକରି ବଞ୍ଚୁଥିଲେ । ଜଙ୍ଗଲରୁ ବିଭିନ୍ନ ପ୍ରକାର ଲଘୁବନଜାତ ଦ୍ରବ୍ୟ ଯଥା; ଝାଡ଼ୁ, ଖଲିପତ୍ର, ମହୁଲ, ଟୋଲ, ତେନ୍ତୁଳି, ହରିଡ଼ା, ବାହାଡ଼ା, ଅଁଳା, ଶାଳମଞ୍ଜି, କନ୍ଦା ଓ କରଡ଼ି ଆଦି ଜିନିଷ ପାଉଥିଲେ । ଏଗୁଡ଼ିକୁ ଖାଇବା ସଙ୍ଗେ ସଙ୍ଗେ ପାଖ ହାଟରେ ମଧ୍ୟ ବିକ୍ରୟ କରୁଥିଲେ । ସରଳ ଆଦିବାସୀମାନଙ୍କଠାରୁ ବେପାରୀମାନେ ଲଘୁବନଜାତ ଦ୍ରବ୍ୟ କମ୍ ମୂଲ୍ୟରେ ନେଉଥିଲେ ଏବଂ ଓଜନରେ ଠକୁଥିଲେ । ସେତେବେଳେ ପୁରୁଷମାନଙ୍କ ଅପେକ୍ଷା ମହିଳାମାନଙ୍କୁ କମ୍ ମଜୁରି ମିଳୁଥିଲା । ସେହି ସମୟରେ ମହିଳାମାନଙ୍କର ପ୍ରତିବାଦ କରିବାର ଶକ୍ତି ନଥିଲା । ଚାଷଠାରୁ ଆରମ୍ଭ କରି ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ, ତା'ସହିତ ଘରକାମ ଓ କୁଲିଭୂତି କାମ କରି ମଧ୍ୟ ସେମାନେ ଠିକ୍ ଭାବେ ନ୍ୟାୟ ପାଉନଥିଲେ । ଉକ୍ତ ଅଞ୍ଚଳର ଝିଅମାନେ ମଧ୍ୟ ପାଠ ପଢ଼ିବାରୁ ବଂଚିତ ହେଉଥିଲେ । ଏହି ଅଞ୍ଚଳର ମହିଳାମାନଙ୍କର ବିକାଶ ପାଇଁ ପ୍ରତି ପଞ୍ଚାୟତରେ ଅଗ୍ରଗାମୀ ଗାଆଁ, ଗାଆଁ ବୁଲି ମାଆମାନଙ୍କ ସହିତ ମିଶି ବିଭିନ୍ନ ସମସ୍ୟା ବିଷୟରେ ଆଲୋଚନା କଲା । ପ୍ରତି ପଞ୍ଚାୟତରେ ମହିଳା ମଣ୍ଡଳ ଗଠନ କଲା ଓ ମା'ମାନଙ୍କୁ ତାଲିମ୍ ଦେଲା । ବିଭିନ୍ନ ବିଷୟରେ ତାଲିମ୍ ପାଇବା ପରେ ୧୩ଟି ପଞ୍ଚାୟତକୁ ମିଶାଇ ଏକ ପଞ୍ଚାୟତ ସ୍ତରୀୟ ମହିଳା ମଣ୍ଡଳ ଗଠନ କରାଗଲା । ମହିଳା ମଣ୍ଡଳର ଆର୍ଥିକ ସ୍ଥିତିକୁ ବଢ଼େଇବା

ପାଇଁ ଅଗ୍ରଗାମୀ ପ୍ରଥମେ ଆଇ.ଟି.ଡ଼ି.ଏ ତରଫରୁ ଏକ କାର୍‌ପେଟ୍ ତାଲିମ୍ ଦେବାର ବ୍ୟବସ୍ଥା କରାଇଲେ। ସେଥିରେ ୫ଟି ପଞ୍ଚାୟତର ୪୦ ଜଣ ମହିଳା ତାଲିମ୍ ନେଉଥିଲେ। ଏବଂ ମାଣ୍ଡିବିଶିର କେତକ ମହିଳା ମଧ୍ୟ ସେଥିରେ ତାଲିମ ନେଉଥିଲେ। ଏହି ତାଲିମ୍‌ରେ ପ୍ରତ୍ୟେକ ମହିଳାଙ୍କୁ ଭତ୍ତା ହିସାବରେ ୭୫୦ ଟଙ୍କା ଲେଖାଁ ମିଳୁଥିଲା। ଏହି ତାଲିମ୍‌ରେ ମାଣ୍ଡିବିଶିର ମହିଳାମାନେ ଆଗୁଆ ହୋଇ ବାହାରିଲେ। ତାଲିମ୍‌ରୁ ମିଳୁଥିବା ସେହି ଭତ୍ତା ପଇସାରୁ କିଛି କିଛି ସଂଚୟ କରି ଏକ ଜମାଖାତା ଖୋଲି ସେଥିରେ ମୋଟ ୧୪, ୮୫୦ ଟଙ୍କା ବ୍ୟାଙ୍କରେ ଜମା ରଖିଲେ। ଏହା ପରେ ମାଣ୍ଡିବିଶି ମହିଳା ମଣ୍ଡଳର ମାଆମାନେ ଦେଖିଲେ ଯେ ଆଦିବାସୀ ଉନ୍ନୟନ ସମବାୟ ସମିତି (ଟି.ଡ଼ି.ସି.ସି.) ଏବଂ ବଡ଼ ବଡ଼ ସାହୁକାର, ବଡ଼ ବଡ଼ ବେପାରୀମାନେ ଲୋକମାନଙ୍କଠାରୁ ବହୁତ କମ୍ ଦାମରେ ଫୁଲଝାଡୁ କିଣି ନେଉଛନ୍ତି। ଏହା ସହ ଓଜନରେ ଠକୁଛନ୍ତି। ଏହି ବିଷୟରେ ମହିଳା ମଣ୍ଡଳର ମାଆମାନେ ଆଲୋଚନା କରି ନିଷ୍ପତ୍ତି ନେଲେ ଯେ, ନିଜ ଅଞ୍ଚଳର ଫୁଲଝାଡୁକୁ ସଂଗ୍ରହ କରି କିଣାବିକା କରିବେ। ଲାଇସେନ୍ସ ପାଇଁ ସରକାରଙ୍କ ପାଖରେ ଆବେଦନ କରିବେ। ଏହି ପଦକ୍ଷେପ ସଂପର୍କରେ ସରକାରଙ୍କର ସମସ୍ତ ପ୍ରଶାସନିକ ମହଲକୁ ଲିଖିତ ଆକାରରେ ଜଣାଇଥିଲେ ମଧ୍ୟ କୌଣସି ସୁଫଳ ମିଳିନଥିଲା। ତେଣୁ ମହିଳାମାନେ ଏକାଠି ହୋଇ ଏକଚାଟିଆ ବାଣିଜ୍ୟ ନୀତି ଓ ସ୍ୱାର୍ଥନ୍ୱେଷୀ ବ୍ୟବସାୟୀଙ୍କୁ ବିରୋଧକରି ଲଘୁବନଜାତ ଦ୍ରବ୍ୟର କିଣାବିକାର ଅଧିକାର ପାଇଁ ମୁଖ୍ୟମନ୍ତ୍ରୀଙ୍କୁ ଏକ ଦାବିପତ୍ର ଦେଇଥିଲେ।

କାଶୀପୁର ଅଞ୍ଚଳର କେତେକ ସାହସୀ ମହିଳା ମୁଖ୍ୟମନ୍ତ୍ରୀ ଓ ଶାସନ ସଚିବମାନଙ୍କୁ ଦେଖାକରି ଆଦିବାସୀମାନଙ୍କ ସମସ୍ୟା ଏବଂ ଲଘୁବନଜାତ ଦ୍ରବ୍ୟର କିଣାବିକାର ପୂର୍ଣ୍ଣ ଅଧିକାର ବିଷୟରେ ଆଲୋଚନା କରିଥିଲେ। ଏହାପରେ ସୁନାବେଡାର ଟି.ଡ଼ି.ସି.ସି ଡିଭିଜନାଲ ମ୍ୟାନେଜର ଓ କେ.ବି.କେ ଜିଲ୍ଲାର ଜିଲ୍ଲାପାଳମାନେ ଜଣାଇଥିଲେ ଯେ, ମହିଳାମଣ୍ଡଳ ଓ ସମିତିମାନେ ଲଘୁବନଜାତ ସଂଗ୍ରହ କରି ଏଜେଣ୍ଟମାନଙ୍କୁ ବିକ୍ରି କରିବେ। ଯେଉଁ ସମିତିଗୁଡ଼ିକ ଲଘୁବନଜାତ ଦ୍ରବ୍ୟ ସଂଗ୍ରହ କରିବେ ସେମାନଙ୍କୁ ୯% କମିଶନ ଦିଆହେବ ବୋଲି ନିଷ୍ପତ୍ତି ନିଆଯାଇଥିଲା। ଏହାପରେ ମହିଳାମାନେ ଲଘୁବନଜାତ ଦ୍ରବ୍ୟର କିଣାବିକାର ଲାଇସେନ୍ସ ପାଇଁ ଜିଲ୍ଲାପାଳଙ୍କୁ ସାକ୍ଷାତ କରିଥିଲେ। କିନ୍ତୁ ଜିଲ୍ଲାପାଳ କିଛି ପ୍ରତିଶ୍ରୁତି ଦେଇନଥିଲେ। ୧୯୯୪/୯୫ ମସିହା ବେଳକୁ ମାଣ୍ଡିବିଶି ମହିଳା ମଣ୍ଡଳ ପଞ୍ଜିକୃତ ହୋଇସାରିଥାଏ। ତେଣୁ ସେମାନେ ଗାଁମାନଙ୍କରୁ ଫୁଲଝାଡୁ ସଂଗ୍ରହ କରି ମହିଳା ମଣ୍ଡଳର ଗୋଦାମ ଘରେ ରଖିଲେ। କିଛିଦିନ ପରେ ସରକାର ସ୍ଥିର କଲେ ଯେ, ପଞ୍ଜିକୃତ ମହିଳାମଣ୍ଡଳଗୁଡ଼ିକୁ ନିଜ ନିଜ ଅଞ୍ଚଳର

ଲଘୁବନଜାତ ଦ୍ରବ୍ୟ ସଂଗ୍ରହ ତଥା ପୂର୍ଣ୍ଣ ପ୍ରସ୍ତୁତି ଓ ବିକ୍ରୟ ପାଇଁ ଟି.ଡ଼ି.ସି.ସି. ଲାଇସେନ୍ସ ମଂଜୁର କରିବ ।

ମହିଳା ମଣ୍ଡଳର ସଭ୍ୟାମାନେ ଉକ୍ତ ବିଷୟରେ ରାଜି ନହୋଇ କଳା ବ୍ୟବସାୟୀମାନଙ୍କଠାରୁ ରକ୍ଷା ପାଇବା ପାଇଁ ମହିଳା ମଣ୍ଡଳକୁ ସିଧାଭାବରେ ସରକାର ଲାଇସେନ୍ସ ଦେବାକୁ ହାଇକୋର୍ଟରେ ଏକ ପିଟିସନ୍ ଦାଖଲ କଲେ । କିନ୍ତୁ ଏହାର କିଛିଦିନ ପରେ ବନ ବିଭାଗର ଅଫିସରମାନେ ମହିଳାମଣ୍ଡଳ ଦ୍ୱାରା ସଂଗୃହୀତ ଝାଡ଼ୁକୁ କିଲୋପ୍ରତି ମାତ୍ର ୫ଟଙ୍କା ଦରରେ ମାଗିଲେ, କିନ୍ତୁ ମହିଳାମଣ୍ଡଳର ସଦସ୍ୟାମାନେ ଝାଡ଼ୁ ବିକ୍ରି କରିବା ପାଇଁ ସିଧା ମନାକରିଦେଲେ । ଏହାର ଦୁଇଦିନ ପରେ କାଶୀପୁରରେ ବନ ଅଧିକାରୀ ଟି.ଡ଼ି.ସି.ସି.ର ଶାଖା ପରିଚାଳକ ଓ ତହସିଲଦାର ମାଣ୍ଡିବିଶିରେ ପହଞ୍ଚି ମହିଳାମଣ୍ଡଳ ଦ୍ୱାରା ସଂଗୃହୀତ ୧୭୪ କ୍ୱିଣ୍ଟାଲ ଝାଡ଼ୁକୁ ଓଜନ ନକରି ପୋଲିସ୍ ସହାୟତାରେ ଧମକ ଚମକ ଦେଖାଇ ବଳପୂର୍ବକ ଗୋଦାମ୍ ଘରର ତାଲାଭାଙ୍ଗି ଟ୍ରକ୍ ଓ ଟ୍ରାକ୍ଟର ବୋଝେଇ କରି ନେଇଗଲେ । ଟି.ଡ଼ି.ସି.ସି. ଶାଖା ପରିଚାଳକ ମହିଳାମଣ୍ଡଳର ସଭ୍ୟାମାନଙ୍କୁ ଗାଳିଗୁଲଜ, ମାଡ଼ପିଟ୍ କରି ପଳାଇଥିଲେ । ମହିଳାମଣ୍ଡଳର ସଭ୍ୟାମାନେ ବହୁତ ପ୍ରତିବାଦ କରିଥିଲେ ମଧ୍ୟ ସରକାରୀ ଲୋକମାନେ କେହି ସେମାନଙ୍କ କଥା ଶୁଣି ନଥିଲେ । ବନପାଳ, ଟି.ଡ଼ି.ସି.ସି. ଶାଖା ପରିଚାଳକଙ୍କ ଏହି ହିଂସାତ୍ମକ କାଣ୍ଡ ଯୋଗୁଁ ସେମାନଙ୍କ ବିରୋଧରେ ମହିଳା ମଣ୍ଡଳର ସଭ୍ୟାମାନେ କାଶୀପୁର ଥାନାରେ ଏକ ମକଦ୍ଦମା ରୁଜୁ କଲେ ।

ରାୟଗଡ଼ା ଜିଲ୍ଲାପାଳ ନିଜେ ଆସି ଘଟଣା ସଂପର୍କରେ ତଦନ୍ତ କଲେ ଏବଂ କହିଲେ, କିଲୋପ୍ରତି ୭ଟଙ୍କା ହିସାବରେ ମୋଟ ୭୦ କ୍ୱିଣ୍ଟାଲ ଝାଡ଼ୁର ଦାମ୍ ଦିଆଯିବ । କିନ୍ତୁ ସଭ୍ୟାମାନେ ୧୭୪ କ୍ୱିଣ୍ଟାଲ ଝାଡ଼ୁର ଟଙ୍କା ଦାବି କଲେ । ଏହି ବିଷୟକୁ ତଦନ୍ତ କରି ଓଡ଼ିଶାର ଦକ୍ଷିଣାଞ୍ଚଳ ରାଜସ୍ୱ କମିଶନର ରାୟଗଡ଼ାର ଡି.ଏଫ୍.ଓ., ଟିଡି.ସି.ସି. ସୁନାବେଡ଼ା ଡିଭିଜିନାଲ ମ୍ୟାନେଜର ଓ ମହିଳା ମଣ୍ଡଳର ସଭ୍ୟାମାନଙ୍କୁ ନେଇ ଏକ ଆଲୋଚନା ହୋଇଥିଲା । ଏହି ଆଲୋଚନାରେ ମାଆମାନେ କହିଲେ, ସେମାନଙ୍କ ଗୋଦାମ ଘରେ ଯେତିକି ଫୁଲଝାଡ଼ୁ ଥିଲା, ଆମକୁ ସରକାର ସେତିକି ଫେରସ୍ତ କରାଇବା ଦରକାର । ଏହାପରେ ନିଷ୍ପତ୍ତି ହେଲା ଯେ କାଶୀପୁର ବନ ଅଧିକାରୀ ଏବଂ ଟି.ଡ଼ି.ସି.ସି. ଶାଖା ପରିଚାଳକ ମାଣ୍ଡିବିଶି ମହିଳା ମଣ୍ଡଳର ଗୋଦାମ ଘରେ ରଖି ତାପରେ ସେଗୁଡ଼ିକୁ ଓଜନ କରି ଟଙ୍କା ଦେବେ ।

ତା'ପରେ ମହିଳା ମଣ୍ଡଳ ଝାଡ଼ୁ କ୍ରୟ ଓ ବିକ୍ରୟ ପାଇଁ ଆବେଦନ କଲେ, କିନ୍ତୁ ବନବିଭାଗ ଅଧିକାରୀ କହିଲେ ଯେ, ଫୁଲଝାଡ଼ୁ ଗୋଟିଏ ପଞ୍ଚାୟତର ମହିଳାମାନଙ୍କୁ

ଦିଆଯାଇ ପାରିବ ନାହିଁ । କାରଣ ସଂପୂର୍ଣ୍ଣ କାଶୀପୁର ବନଅଞ୍ଚଳର ସମସ୍ତ ଝାଡୁ କ୍ରୟ କରିବାର ଗୋଟିଏ ମହିଳା ମଣ୍ଡଳର କ୍ଷମତା ନାହିଁ, ଏହା କେବଳ ବ୍ଲକ ସ୍ତରୀୟ ସଂଗଠନକୁ ଦିଆଯାଇପାରିବ । ଏହାପରେ ୧୯୯୫ ମସିହାରେ କାଶୀପୁର ବ୍ଲକର ୧୨ଟି ପଞ୍ଚାୟତର ମାଆମାନେ ସଂଗଠିତ ହେଲେ । ଶେଷରେ ମହିଳାମାନେ ନିଜର ଅଧିକାରକୁ ସାବ୍ୟସ୍ତ କରିବାକୁ ଯାଇ ୧୯୯୬-୯୭ ମସିହାରେ ୩୦ ଜଣ ମହିଳାଙ୍କୁ ନେଇ ଆଦିବାସୀ ମହିଳା ଶକ୍ତିସଂଗଠନ ( ଆମ ସଂଗଠନ) ଗଠନ କଲେ ଓ ଏହା ସରକାରଙ୍କ ଦ୍ୱାରା ପଞ୍ଜିକୃତ ହେଲା । ଝାଡୁ ସଂଗ୍ରହ ଓ ବିକ୍ରୟ ପାଇଁ ଆମ ସଂଗଠନକୁ ଲିଜ୍ ମିଳିଲା । ୧୯୯୬-୯୭ ମସିହାରେ ୩୧,୬୨୫ ଟଙ୍କା ସରକାରଙ୍କ ପାଖରେ ଆମସଂଗଠନ ରୟାଲ୍‌ଟି ବାନ୍ଧିଲା । ୧୯୯୭-୯୮ ମସିହାରେ ଦୁଇଥର ରୟାଲ୍‌ଟି ବାନ୍ଧିବାକୁ ହେଲା । ପ୍ରଥମେ ୬୯,୫୭୫ ଟଙ୍କା ପରେ ପୁଣି ୫୩,୫୭୫ ଟଙ୍କା ଦିଆଗଲା । ଏହା ଝାଡୁ ମୂଲ୍ୟର ୩୦% ଏବଂ କ୍ୱିଣ୍ଟାଲ ପିଛା ୧୮୮ ଟଙ୍କା ରୟାଲଟି ଦେବାକୁ ହେଲା ।

ସରକାରଙ୍କର ଏହି ନିୟମକୁ ମାନି ରୟାଲ୍‌ଟି ଦେଇ ଝାଡୁ କିଣାବିକା ଆରମ୍ଭ ହେଲା । ୧୯୯୬ ମସିହା, ଜାନୁଆରୀ ୨୪ ତାରିଖରେ କୋରାପୁଟର କଞ୍ଜରଭେଟର ମାଣ୍ଡିବିଶି ମହିଳାମଣ୍ଡଳ ସଭ୍ୟାମାନଙ୍କ ସହ ସାକ୍ଷାତ କରି ଆଲୋଚନା କଲାପରେ ମହିଳାମଣ୍ଡଳକୁ ଟି.ଡ଼ି.ସି.ସି. ଓ ବନବିଭାଗ ଅଧାଭାଗ ଝାଡୁ ଫେରସ୍ତ କଲେ । ଅବଶିଷ୍ଟ ଝାଡୁ ଖୁବ୍ ଶୀଘ୍ର ଫେରାଇଦେବେ ବୋଲି ପ୍ରତିଶ୍ରୁତି ଦେଲେ । ଆମ ସଂଗଠନ ଜଙ୍ଗଲଜାତ ଦ୍ରବ୍ୟର ଅଧିକାରକୁ ନେଇ ବାରମ୍ବାର ସରକାରୀ ମହଲରେ ଦାବି ଜଣାଇଛି । ପରିଶେଷରେ ସରକାର ୬୮ ପ୍ରକାର ଜଙ୍ଗଲଜାତ ଦ୍ରବ୍ୟ ଉପରୁ ରୟାଲ୍‌ଟି ଉଠାଇ ଦେଇଛନ୍ତି । ଏହା ସରକାରଙ୍କ ଜଙ୍ଗଲନୀତିକୁ ବଦଳାଇ ଦେଇ ଓ ଆଦିବାସୀମାନଙ୍କୁ ଅଧିକାର ଦେଇପାରିଛି । ଅଗ୍ରଗାମୀ ପ୍ରଥମେ ଆମ ସଂଗଠନର କେତକ ସଭ୍ୟାମାନଙ୍କୁ ଝାଡୁ ତାଲିମ୍ ଦେଲା, ତା'ପରେ ଅନ୍ୟ ସଭ୍ୟାମାନଙ୍କୁ ତାଙ୍କଠାରୁ ଝାଡୁ ତାଲିମ୍ ନେଇ ଝାଡୁବନ୍ଧା ଆରମ୍ଭ କଲେ । ବାହାରକୁ ମଧ୍ୟ ଆମ ସଂଗଠନର ସଭ୍ୟାମାନେ ଝାଡୁ ତାଲିମ୍ ଦେବାପାଇଁ ଯାଉଛନ୍ତି । ଏଥିସହିତ ପ୍ରତ୍ୟେକ ପଞ୍ଚାୟତର ମହିଳାମାନେ ଝାଡୁ ବାନ୍ଧି ଆମ ସଂଗଠନକୁ ବିକ୍ରୟ କରି ଉଚିତ୍ ମୂଲ୍ୟ ପାଇପାରିଲେ ।

ଆମ ସଂଗଠନର ମା'ମାନେ ପ୍ରଥମେ କାନ୍ଦୁଲ ଡାଲି ହାତରେ ଭାଜି, କୁଟିକି ଡାଲି ତିଆରି କରୁଥିଲେ । ଏହାପରେ ଓରମାସ୍ ସହାୟତାରେ ଏକ ଡାଲି ମେସିନ୍ ମିଳିଲା, ଯାହାଫଳରେ ଆମ ସଂଗଠନର ସଭ୍ୟାମାନେ ଠିକ୍ ଭାବରେ କମ୍ ପରିଶ୍ରମରେ ସଫା ଡାଲି ବାହାର କରିପାରୁଛନ୍ତି । ବର୍ତ୍ତମାନ ସଭ୍ୟାମାନେ ସରକାରଙ୍କ ସହ ଯୋଗାଯୋଗ କରି କାନ୍ଦୁଲ ଡାଲିକୁ ପ୍ରତିବର୍ଷ ବ୍ଲକ ଓ ଆଇ.ସି.ଡି.ସି କାର୍ଯ୍ୟାଳୟରେ ବିକ୍ରି କରୁଛନ୍ତି ।

ଗତବର୍ଷ ମୋଟ ୧୨୦ କ୍ୱିଣ୍ଟାଲ କାନ୍ଦୁଲ ଡାଲି ବିକ୍ରି କରିଛନ୍ତି । ଏହା ବ୍ୟତୀତ ଝାଡୁକୁ ବାହାର ରାଜ୍ୟର ବଡ଼ ବଡ଼ ବେପାରିମାନେ ମଧ୍ୟ କିଣି ନେଉଛନ୍ତି । ଏହା ସହିତ ବିଭିନ୍ନ ମେଳାରେ ମଧ୍ୟ ଉକ୍ତ ଜିନିଷଗୁଡ଼ିକ ମଧ୍ୟ ବିକ୍ରି ହୋଇପାରୁଛି । ଏହିପରି ଡଙ୍ଗାସିଲ ପଞ୍ଚାୟତରେ ମଧ୍ୟ ସମସ୍ତ ମହିଳାମାନଙ୍କୁ ନେଇ ଏକ ସଞ୍ଚୟ ଦଳ ଗଠନ କରାଯାଇଛି । ସେଠାରେ ମହିଳାମାନେ ହଳଦି ଓ ସୋରିଷ ସଂଗ୍ରହ କରି ଆମ ସଂଗଠନକୁ ବିକ୍ରି କରୁଛନ୍ତି । ବର୍ତ୍ତମାନ ଆମ ସଂଗଠନ ଫୁଲଝାଡୁ, କାନ୍ଦୁଲ ଡାଲି, ହଳଦି ଓ ସୋରିଷ ବ୍ୟବସାୟ କରୁଛି । ତା' ସହିତ ବିଭିନ୍ନ ଉନ୍ନତି ମୂଳକ କାର୍ଯ୍ୟକ୍ରମ କରୁଛି । ଯଥା ; - ଝିଅପିଲାମାନେ କିପରି ପାଠ ପଢ଼ିପାରିବେ, ମଦ ବନ୍ଦ କରିବା, କୁଟୁମ୍ବପାଣ୍ଠି, ଜଙ୍ଗଲ ସୁରକ୍ଷା, ପଲ୍ଲୀସଭା ଓ ଗ୍ରାମସଭା ବିଷୟରେ ଲୋକମାନଙ୍କୁ ଧାରଣା ଦେଉଛନ୍ତି । ବ୍ଲକ ସ୍ତରରେ ବିଭିନ୍ନ ର୍‍ୟାଲି, ପଦଯାତ୍ରା କରିଛନ୍ତି । ବିଭିନ୍ନ ସରକାରୀ କାର୍ଯ୍ୟକ୍ରମ ନିଜେ ହାତକୁ ନେଇ କାମ କରିଛନ୍ତି । ସେଗୁଡ଼ିକ ମଧ୍ୟରେ ଡ୍ରେନ, ସ୍କୁଲ, ରାସ୍ତା ଇତ୍ୟାଦି କାମ ଅନ୍ତର୍ଭୁକ୍ତ ।

ପୂର୍ବେ ଯେଉଁ ମାଆମାନେ ଆଗକୁ ବାହାରୁ ନଥିଲେ, ବର୍ତ୍ତମାନ ଆଗକୁ ଯାଉଛନ୍ତି । ବିଭିନ୍ନ ମିଟିଂରେ ସଭାପତିତ୍ୱ ମଧ୍ୟ କରୁଛନ୍ତି । ନିଜର ସମସ୍ୟାକୁ ନେଇ ଜିଲ୍ଲା ଓ ରାଜ୍ୟ ସ୍ତରରେ ପହଞ୍ଚାଇ ପାରୁଛନ୍ତି । ରାଜନୀତିରେ ସକ୍ରିୟ ଭାବେ ଅଂଶଗ୍ରହଣ କରିପାରୁଛନ୍ତି । ଆମ ସଂଗଠନର ସଭ୍ୟାମାନେ ପଞ୍ଚାୟତିରାଜ ବ୍ୟବସ୍ଥାରେ ଲୋକପ୍ରତିନିଧି ଭାବେ ନିର୍ବାଚିତ ହୋଇଛନ୍ତି । ଉଜ୍ଜଳ ଦେଇ ମାଝି ପଞ୍ଚାୟତ ସମିତି ଅଧ୍ୟକ୍ଷା, ଘାସେନ୍ ଝୋଡ଼ିଆ ସରପଞ୍ଚ, ସଞ୍ଜୁ ମାଝୀ ଜିଲ୍ଲା ପରିଷଦ ସଭ୍ୟା, ଗୁଞ୍ଜୁଲି ନାଏକ ୱାର୍ଡ଼ମେମ୍ବର, ଏହିପରି ଅନେକ ମହିଳା ଲୋକ ପ୍ରତିନିଧି ଭାବେ ନିର୍ବାଚିତ ହୋଇ ବିଭିନ୍ନ ପ୍ରକାର କାମ କରୁଛନ୍ତି । ବର୍ତ୍ତମାନ ଆମ ସଂଗଠନରେ ସୁମନୀ ଝୋଡ଼ିଆ ସଭାପତି ଓ ସୁଶିଳା ମାଝି ସମ୍ପାଦିକା ଭାବେ କାମ କରୁଛନ୍ତି । ଗୁଞ୍ଜୁଲି ନାଏକ, ମୁକ୍ତା ଝୋଡ଼ିଆ, ଶୁକ୍ରି ମାଝୀ, ଲାକାଇ ମାଝୀ, ଅନ୍ଧାରୀ ମାଝୀ, ମାଙ୍ଗାଲ ମାଝୀ, ସବାଇ ମାଝୀ, କମଳା ମାଝୀ, ଗୋମତି ଝୁଡିଆ ଏହିଭଳି କେତେଜଣ ମହିଳା କାଶୀପୁରର ବାତାବରଣକୁ ବଦଳାଇ ପାରିଛନ୍ତି । ଖାଲି ସେତିକି ନୁହେଁ, ଆହୁରି ଅନେକ ସଭ୍ୟା ଗାଆଁଗୁଡ଼ିକରେ ସଂଗଠନକୁ ସୁଦୃଢ଼ କରିଛନ୍ତି । ଆପଣମାନେ ଜାଣିଥିବେ, ଏହାପୂର୍ବରୁ ଆମ ସଂଗଠନର ସଭାପତି ଶ୍ରୀମତି ସୁମନୀ ଝୋଡ଼ିଆ ବିଭିନ୍ନ ଉନ୍ନତିମୂଳକ କାମ କରି ରାଜ୍ୟ ଓ ଦେଶସ୍ତରରେ ପୁରସ୍କାରମାନ ପାଇଛନ୍ତି । ବର୍ତ୍ତମାନ ଆମ ସଂଗଠନରେ ୧୦୦୦ରୁ ଉର୍ଦ୍ଧ୍ୱ ସଭ୍ୟ ଅଛନ୍ତି । ସାରା ଓଡ଼ିଶାରେ ଆଦିବାସୀମାନେ କିପରି ଅଧିକାର ପାଇବେ, "ଆମ ସଂଗଠନ"ର ସଂଗ୍ରାମ ଚାଲୁ ରହିଛି ।

ମାର୍ଚ୍ଚ - ୨୦୦୪

# ସରକାରୀ ଶିକ୍ଷକ: ଏକ ସାକ୍ଷାତକାର

ପଶ୍ଚିମ ଦିଗରେ କାଦମାଳୀ ପାହାଡ ଏବଂ ଦକ୍ଷିଣ ଦିଗରେ ବହୁ ଚର୍ଚ୍ଚିତ ବାଫଲାମାଳୀ ପର୍ବତ । ଉତ୍ତର ପୂର୍ବରେ ନାମହୀନ ଛୋଟ ଛୋଟ ମୁଣ୍ଡିଆ ଜଙ୍ଗଲ ଘେରା ମଧ୍ୟରେ ଦଣ୍ଡାବାଡ ଗ୍ରାମଟି ଅବସ୍ଥିତ । ଏହି ଗାଁରେ ଆଦିବାସୀ କନ୍ଧ ସଂପ୍ରଦାୟର ୪୮ଟି ପରିବାର ବସବାସ କରନ୍ତି । ରାୟଗଡା ଜିଲ୍ଲାର କାଶୀପୁର ବ୍ଲକରେ ଏହି ଗାଁଟି ଏକ ପ୍ରକାର ବିଛିନ୍ନ ହୋଇ ଏକ କୋଣରେ ରହିଯାଇଛି । ଗାଁଟିରେ କୌଣସି ସରକାରୀ କାର୍ଯ୍ୟକ୍ରମ ଠିକ୍ ଭାବରେ ପହଞ୍ଚି ପାରିନାହିଁ । ପ୍ରତ୍ୟେକ କ୍ଷେତ୍ରରେ ଏହି ଗାଁର ଲୋକମାନେ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଗାଁର ଲୋକମାନଙ୍କ ପାଖରେ ଜମି ନାହିଁ । କାରଣ ଯାହା ଜମିଥିଲା ଦୁଇବର୍ଷ ତଳେ ପ୍ରବଳ ବର୍ଷା ଯୋଗୁଁ ତାହା ବାଲିଚର ହୋଇଯାଇଛି । ତାହା ମଧ୍ୟ ଇ.ଟି.ଭି ଓଡ଼ିଆ କାର୍ଯ୍ୟକ୍ରମରେ ପ୍ରକାଶ ପାଇଥିଲା । ବର୍ତ୍ତମାନ ଏହି ଗାଁର ଲୋକମାନେ ପାହାଡ ଉପରେ ପୋଡୁ ଚାଷ କରି ଜୀବିକା ନିର୍ବାହ କରୁଛନ୍ତି ।

ଗାଁର ଲୋକମାନେ ସାଧାରଣତଃ ଶିକ୍ଷା ଅଭାବରୁ କୌଣସି ବିଷୟରେ ଜାଣୁନଥିଲେ, ତେଣୁ ବିଭିନ୍ନ ସୁବିଧା ସୁଯୋଗରୁ ବଞ୍ଚିତ ହେଉଥିଲେ । ଅନୁଧ୍ୟାନରୁ ଜଣାଯାଏ ଯେ ଅନେକ ବର୍ଷ ହେବ ଗାଁର ସରକାରୀ ସ୍କୁଲ ସ୍ୱୀକୃତି ପ୍ରାପ୍ତ ପାଇଥିଲେ ମଧ୍ୟ ତାହା କେବଳ କାଗଜ କଲମରେ ହିଁ ଚାଲିଥିଲା । ସ୍କୁଲରେ ନିଯୁକ୍ତି ପାଇଥିବା ଶିକ୍ଷକମାନେ ଗାଁର କେତେଜଣ ମୁଖିଆଙ୍କୁ ହାତକରି ଘରେ ରହୁଥିଲେ । ମଧ୍ୟାହ୍ନ ଭୋଜନ ପାଇଁ ଆସୁଥିବା ଡାଲି, ତେଲ ଓ ଲୁଣକୁ ସେହି ଲୋକମାନେ ବାଣ୍ଟି ନେଉଥିଲେ । ସେହିପରି କେତେଜଣ ଟାଉଟରଙ୍କୁ ଛାଡିଦେଲେ ଗାଁର ଅନ୍ୟ ଲୋକମାନେ ଜାଣିନଥିଲେ ଯେ ତାଙ୍କ ଗାଁରେ ଏକ ସରକାରୀ ସ୍କୁଲ ଅଛି । କିଛି ବର୍ଷ ପରେ ଶିକ୍ଷକମାନେ ଆସି ଏଠାରେ ସ୍କୁଲ ଆରମ୍ଭ କଲେ । କିଛି ଦିନ ପାଠ ପଢ଼ାଇବା ପରେ ସେମାନେ ମଧ୍ୟ ନିଜ ଘରେ ରହିଗଲେ । ଆଉ ଏ ଗାଁକୁ ପାଠ ପଢ଼ାଇବା ପାଇଁ ଆସିଲେ ନାହିଁ । ଏହିପାରି ୩/୪ଜଣ

ଶିକ୍ଷକ ଆସି ଚାଲି ଗଲେ । ଏହିପରି ଚାରିବର୍ଷ ବିତିଗଲା ପରେ ଦିନେ ଜଣେ ଶିକ୍ଷକ ଆସି ସେହି ଗାଁରେ ପହଞ୍ଚିଲେ ଓ ପିଲାମାନଙ୍କୁ ପାଠ ପଢ଼ାଇବା ପାଇଁ ଗାଁର ଲୋକମାନଙ୍କ ସହିତ ଆଲୋଚନା କଲେ । ଗାଁର ମା'ବାପମାନଙ୍କ ସହିତ ବାରମ୍ବାର ଆଲୋଚନା କରି ସ୍କୁଲ ଗୃହ ତିଆରି କରି ପିଲାମାନଙ୍କୁ ପାଠ ପଢ଼ାଇବା ଆରମ୍ଭ କଲେ । ପିଲାମାନଙ୍କୁ ନିଜ ହାତରୁ ସ୍ଲେଟ୍, ଖଡି, ବହି, ଚକୋଲେଟ୍ ଇତ୍ୟାଦି ଦେଇ ସ୍କୁଲକୁ ଆସିବା ପାଇଁ ଲୋକମାନଙ୍କୁ ମନାଇଲେ । ଗାଁ ଲୋକମାନଙ୍କ ସହିତ ଅତି ଆପଣାର ହୋଇ ସେଠାରେ ନିୟମିତ ସ୍କୁଲ ପରିଚାଳନା କରି ଆସୁଥିଲେ । ସେହି ପ୍ରଗତିଶୀଳ ମାନସିକତାର ସରକାରୀ ଶିକ୍ଷକଙ୍କ ସହିତ ଆରୋହଣର ଏହି ସାକ୍ଷାତକାର:-

ଆରୋହଣ- ଆପଣଙ୍କ ପରିଚୟ ?

ଉତ୍ତର- ମୁଁ ଶ୍ରୀ ନୀଳକଣ୍ଠ ଦାସ । ଦଣ୍ଡାବାଡ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ । ମୋର ଘର ଭଦ୍ରକ ଜିଲ୍ଲାରେ ।

ଆରୋହଣ- ଆପଣ ଏହି ଅଞ୍ଚଳରେ ଚାକିରି କେବେ ଓ କିପରି ପାଇଲେ ?

ଉତ୍ତର- ମୁଁ ବି.ଏ. ପାଶ୍ କରିବା ପରେ ରାୟଗଡା ଆସିଥିଲି । ସେତେବେଳେ ଆମର ଜଣେ ଶିକ୍ଷକ ଶ୍ରୀଯୁକ୍ତ ଗୌରାଙ୍ଗ ମଲ୍ଲିକ୍ ସେଠାରେ ଥିଲେ । ତାଙ୍କ ପାଖରେ ରହିଲି । ଚଳିବା ପାଇଁ କିଛି ପିଲାଙ୍କୁ ଟ୍ୟୁସନ କଲି । କିଛି ଦିନ ପରେ ସେଠାକାର ସ୍ଥାୟୀ ବାସିନ୍ଦା ସାର୍ଟିଫିକେଟ ବାହାର କଲି । ପ୍ରାଥମିକ ଶିକ୍ଷକ ଚୟନ ପାଇଁ ପରୀକ୍ଷାରେ ମୁଁ ଯୋଗ ଦେଲି ଓ କୃତକାର୍ଯ୍ୟ ହେଲି । ତା' ପରେ ଦଣ୍ଡାବାଡ ଗାଁ ସ୍କୁଲର ଶିକ୍ଷକପଦ ପାଇଁ ମୋ ନିକଟକୁ ନିଯୁକ୍ତି ପତ୍ର ଆସିଲା । ଏହି ନିଯୁକ୍ତି ପତ୍ର ମୋ ନିକଟରେ ୧୯୯୭ମସିହା ଅଗଷ୍ଟ ମାସ ୩ତାରିଖ ଦିନ ପହଞ୍ଚିଲା । ମୁଁ ଅଗଷ୍ଟ ୧୬ତାରିଖ ଦିନ ସ୍କୁଲରେ ଯୋଗଦେଲି ।

**ଆରୋହଣ-** ଆପଣ ନିଯୁକ୍ତି ପତ୍ର ପାଇଲା ପରେ ଦଣ୍ଡାବାଡ ଗ୍ରାମକୁ କିପରି ଆସିଲେ ?

ଉତ୍ତର- ସେତେବେଳେ ରାୟଗଡାରୁ କାଶୀପୁରକୁ ମାତ୍ର ଗୋଟିଏ ବସ୍ ଚାଲୁଥିଲା । ମୋର ବିଳମ୍ବ ହେବାରୁ ମୁଁ ଆଉ ବସ୍ ପାଇ ପାରିଲି ନାହିଁ । ତେଣୁ ଗୋଟିଏ କମାଣ୍ଡରରେ କାଶୀପୁର ଆସିଲି । ବ୍ଲକ୍‌ରେ ମୋର କାଶୀପୁର ସମିତି ସଭ୍ୟ ଓ ସରପଞ୍ଚଙ୍କ ସହିତ ଭେଟ ହେଲା । ସେମାନଙ୍କଠାରୁ ମୁଁ ଦଣ୍ଡାବାଡ ଗାଁ ବିଷୟରେ ବୁଝିଲି । ତା' ପରେ କାଶୀପୁରଠାରୁ ଚନ୍ଦ୍ରଗିରି ପର୍ଯ୍ୟନ୍ତ ଏକ ଟ୍ରାକ୍ଟର ଯୋଗେ ଆସିଲି । ଚନ୍ଦ୍ରଗିରି ଆଶ୍ରମ ସ୍କୁଲର ଶିକ୍ଷକ ଓ ସଭାପତିଙ୍କ ସହିତ ଦେଖା କରି ବାଟ ବୁଝି ଚାଲି ଚାଲି ଦଣ୍ଡାବାଡ ଗାଁରେ ପହଞ୍ଚିଲି ।

**ଆରୋହଣ-** ସେହି ସମୟରେ ଦଣ୍ଡାବାଡ ଗ୍ରାମର ଅବସ୍ଥା କିପରି ଥିଲା ?

**ଉତ୍ତର-** ସେତେବେଳେ ଗାଁର ଅବସ୍ଥା କଥା ମନେ ପକାଇଲେ ବହୁତ ଦୁଃଖ ଲାଗେ । ଗାଁର ଅଧିକାଂଶ ଲୋକ ଭଲରେ ମୁଠେ ଖାଇବାକୁ ପାଉ ନଥିଲେ କି ପିନ୍ଧିବାକୁ ଖଣ୍ଡେ କପଡା ମଧ୍ୟ ନଥିଲା । ଖାଦ୍ୟ କହିଲେ ଜଙ୍ଗଲରୁ  ସଂଗ୍ରହ କରୁଥିବା ବିଭିନ୍ନ ପକ୍ରାର କନ୍ଦା, ଶାଗ ଓ ଛତୁ । ଏହିସବୁ ଜିନିଷକୁ ଶିଝାଇ ଖାଉଥିଲେ । ଡଙ୍ଗର ଚାଷରୁ ଯାହା ମିଳୁଥିଲା, ତାହା ସାହୁକାର ପାଖରେ ଋଣ ଶୁଝିବାରେ ଚାଲିଯାଉଥିଲା ।

**ଆରୋହର-** ଗ୍ରାମରେ ସ୍କୁଲ ଗୃହ ନଥିଲା କି ଶିକ୍ଷକମାନେ ମଧ୍ୟ ରହୁ ନ ଥିଲେ । ଏହି ପରିପ୍ରେକ୍ଷୀରେ ଆପଣ କ'ଣ କଲେ ?

**ଉତ୍ତର-** ମୁଁ ପ୍ରଥମେ ଗାଁର ସବୁ ଲୋକମାନଙ୍କ ସହିତ ମିଶିଲି । ତା'ପରେ ଗାଁର ପ୍ରତ୍ୟେକ ଲୋକଙ୍କୁ ନେଇ ବୈଠକରେ ପିଲାମାନଙ୍କୁ ପାଠ ପଢ଼ାଇବା ପାଇଁ ବୁଝାଇଲି । ସ୍କୁଲ ଘର ତିଆରି ପାଇଁ ମଧ୍ୟ ବୈଠକରେ ଆଲୋଚନା ହେଲା । ମୁଁ ପିଲାମାନଙ୍କୁ ବାହାରେ ପାଠ ପଢ଼ାଉଥାଏ । ଏହିପରି ସାତ ମାସ ବିତିଗଲାପରେ, ଗାଁର ସବୁ ଲୋକ ମିଶି ଏକ ସ୍କୁଲ ଘର ତିଆରି କଲେ । ମୁଁ ଲୋକମାନଙ୍କ ସହିତ ମଧ୍ୟ ତିଆରି କାର୍ଯ୍ୟରେ ସହଯୋଗ  କଲି । ଏଥିପାଇଁ କୌଣସି ସରକାରୀ ସହାୟତା ମିଳି ନଥିଲା । ସଂପୂର୍ଣ୍ଣଭାବେ ଗାଁ ଲୋକଙ୍କ  ସହାୟତାରେ ହିଁ ଦୁଇ ବଖରା ସ୍କୁଲ ଘର ତିଆରି ହେଲା । ଗୋଟିଏ ବଖରାରେ ମୁଁ ରହିଲି ଓ ଅନ୍ୟଟିରେ ପିଲାମାନଙ୍କୁ ପାଠ ପଢ଼ାଇଲି ।

**ଆରୋହଣ-** ଗାଁର ସବୁ ପିଲାମାନେ ପାଠ ପଢ଼ିବା ପାଇଁ ଆସିଲେ କି ?

**ଉତ୍ତର-** ପ୍ରଥମେ, ପ୍ରଥମେ ସବୁ ପିଲା ପାଠ ପଢ଼ିବା ପାଇଁ ଆସୁ ନ ଥିଲେ କିମ୍ବା ସେମାନଙ୍କ ବାପା-ମା'ମାନେ ମଧ୍ୟ ସେଥିପ୍ରତି ଦୃଷ୍ଟି ଦେଉନଥିଲେ । ମୁଁ ଲୋକମାନଙ୍କୁ ନେଇ ବାରମ୍ବାର ମିଟିଂ କଲି ଓ ପିଲାମାନଙ୍କୁ ନିୟମିତି ସ୍କୁଲକୁ ପଠାଇବା ପାଇଁ ସେମାନଙ୍କୁ ବୁଝାଇଲି । ଏପରିକି ଯଦି ତୁମମାନଙ୍କର ଆର୍ଥିକ ପରିସ୍ଥିତି ଭଲ ନାହିଁ ତେବେ ମୁଁ ପିଲାମାନଙ୍କୁ ସାହାଯ୍ୟ କରିବି ବୋଲି ମଧ୍ୟ ସେମାନଙ୍କୁ ବୁଝାଇଲି । ଏହାପରେ ଧୀରେ ଧୀରେ ପିଲାମାନେ ସ୍କୁଲକୁ ଆସିଲେ । ମୁଁ ପିଲାମାନଙ୍କୁ ସିଲଟ, ଖଡି, ବହିପତ୍ର, ନଟ୍ଟୁ, ଚକୋଲେଟ୍ ଆଦି ଜିନିଷ ଦେଲି ଓ ପିଲାମାନଙ୍କ ସହିତ ଖୁବ୍ ଆନ୍ତରିକତାର ସହିତ ମିଶିଲି । ପିଲାମାନଙ୍କର ମୋ ପ୍ରତି ଭୟ ଦୂର ହୋଇ ଭଲ ପାଇବା ଆରମ୍ଭ ହେଲା ଏବଂ ଲୋକମାନେ ମଧ୍ୟ ମୋତେ ଆପଣାର କରିନେଲେ । ତେଣୁ ଏହି ଗାଁରେ ଯେକୌଣସି କାମ ହେଲେ ମୋତେ ନ ପଚାରି ଗାଁ ଲୋକମାନେ କୌଣସି ପଦକ୍ଷେପ ନିଅନ୍ତି ନାହିଁ ।

ଆରୋହଣ- ବର୍ତ୍ତମାନ ଦଣ୍ଡାବାଡ ଗାଁରେ ଗୋଟିଏ ସରକରୀ ସ୍କୁଲ ତିଆରି ହୋଇଛି, ଏହା କିପରି ହେଲା ?

ଉତ୍ତର- ୨୦୦୦ମସିହାରେ କାଶୀପୁର ବ୍ଲକର ତତ୍‌କାଳୀନ ଗୋଷ୍ଠୀ ଉନ୍ନୟନ ଅଧିକାରୀଙ୍କୁ ମୁଁ ବ୍ୟକ୍ତିଗତ ଭାବେ ଭେଟି ଦଣ୍ଡାବାଡ ପରିଦର୍ଶନ କରିବା ପାଇଁ ଅନୁରୋଧ କଲି । ଏହା ପରେ ବି.ଡି.ଓ. ମହୋଦୟ ଦଣ୍ଡାବାଡ ସ୍କୁଲ ପରିଦର୍ଶନ କଲେ ଓ ସ୍କୁଲ ଘର ତିଆରି ପାଇଁ ସମସ୍ତ ବ୍ୟବସ୍ଥା କରିବେ ବୋଲି ପ୍ରତିଶ୍ରୁତି ଦେଲେ । ତା' ସହିତ ଡି.ପି.ଇ.ପି, ଓବି.ଆର୍.ସି ସହାୟତାରେ ସ୍କୁଲ ଘର ତିଆରି ପାଇଁ ସ୍କୁଲର ସଭାପତି ସମସ୍ତ ବ୍ୟବସ୍ଥା କରିଦେଲେ । ୨୦୦୧ ମସିହାରେ ସ୍କୁଲର ଘର କାମ ଆରମ୍ଭ ହୋଇ ୬/୭ମାସ ଭିତରେ ସଂପୂର୍ଣ୍ଣ ହୋଇଗଲା ।

ଆରୋହଣ- ବର୍ତ୍ତମାନ ଆପଣଙ୍କ ସ୍କୁଲରେ କେତେଜଣ ଶିକ୍ଷକ ଅଛନ୍ତି ?

ଉତ୍ତର- ବର୍ତ୍ତମାନ ଆମେ ଦୁଇଜଣ ଶିକ୍ଷକ ଅଛୁ । ଅନ୍ୟ ଶିକ୍ଷକ ଜଣକ ଏଠାରେ ରହୁ ନାହାଁନ୍ତି କି ନିୟମିତ ସ୍କୁଲକୁ ମଧ୍ୟ ଆସୁ ନାହାଁନ୍ତି ।

ଆରୋହଣ- ଆପଣଙ୍କ ସ୍କୁଲରେ କେତୋଟି ଶ୍ରେଣୀ ଗୃହ ଅଛି ଓ କେତେଜଣ ଛାତ୍ର ଛାତ୍ରୀ ପାଠ ପଢୁଛନ୍ତି ?

ଉତ୍ତର- ଆମ ବିଦ୍ୟାଳୟରେ ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଛି । ମାତ୍ର ୩ଗୋଟି ଶ୍ରେଣୀ ଗୃହ ରହିଛି । ସେଥିରେ ଗୋଟିଏ ଶ୍ରେଣୀ ଗୃହରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀର ପିଲାମାନେ ଏକାଠି ବସି ପାଠ ପଢ଼ନ୍ତି ଓ ଆଉ ଗୋଟିଏ ଶ୍ରେଣୀ ଗୃହରେ ଚତୁର୍ଥ ଓ ପଞ୍ଚମ ଶ୍ରେଣୀର ପିଲାମାନେ ଏକାଠି ବସି ପାଠ ପଢ଼ନ୍ତି । ଅନ୍ୟଟିକୁ ସ୍କୁଲର କାର୍ଯ୍ୟାଳୟ ଭାବେ ବ୍ୟବହାର କରାଯାଉଛି । ୧୯୯୮ ମସିହାରେ ମୋଟ ଛାତ୍ର-ଛାତ୍ରୀଙ୍କ ସଂଖ୍ୟା ଥିଲା ୪୮ । ବର୍ତ୍ତମାନ ୬୧ଜଣ ଛାତ୍ର ଛାତ୍ରୀ ପାଠ ପଢୁଛନ୍ତି । ସେଥି ମଧ୍ୟରୁ ପ୍ରଥମ ଶ୍ରେଣୀର ଛାତ୍ର ସଂଖ୍ୟା ୪ ଏବଂ ଛାତ୍ରୀଙ୍କ ସଂଖ୍ୟା ୬, ଦ୍ୱିତୀୟୀ ଶ୍ରେଣୀର ଛାତ୍ର ସଂଖ୍ୟା ୪ ଏବଂ ଛାତ୍ରୀଙ୍କ ସଂଖ୍ୟା ୬, ତୃତୀୟ ଶ୍ରେଣୀର ଛାତ୍ର ସଂଖ୍ୟା ୧୦ ଏବଂ ଛାତ୍ରୀଙ୍କ ସଂଖ୍ୟା ୮, ଚତୁର୍ଥ ଶ୍ରେଣୀର ଛାତ୍ର ସଂଖ୍ୟା ୭ ଏବଂ ଛାତ୍ରୀଙ୍କ ସଂଖ୍ୟା ୬ ଓ ପଞ୍ଚମ ଶ୍ରେଣୀର ଛାତ୍ର ସଂଖ୍ୟା୯ ଏବଂ ଛାତ୍ରୀଙ୍କ ସଂଖ୍ୟା ୧ ।

ଆରୋହଣ- ସ୍କୁଲରେ ପିଲାମାନଙ୍କୁ ଦିଆଯାଉଥିବା ମଧ୍ୟାହ୍ନ ଭୋଜନ ସଂପର୍କରେ କିଛି କହିବେ କି ?

ଉତ୍ତର- ବର୍ତ୍ତମାନ ସ୍କୁଲରେ ସମସ୍ତ ପିଲାମାନଙ୍କୁ ମଧ୍ୟାହ୍ନ ଭୋଜନ ଠିକ୍ ଭାବରେ ଦିଆଯାଉଛି । ପ୍ରତ୍ୟେକ ପିଲା ପ୍ରତି ୧୨୫ଗ୍ରାମ ଚାଉଳ, ୨୫ଗ୍ରାମ ଡାଲି, ୧ଗ୍ରାମ ତେଲ ଓ ୨ଗ୍ରାମ ଲୁଣ ହିସାବରେ ରୋଷେଇ କରାଯାଇ ପିଲାମାନଙ୍କୁ ଖାଇବା ପାଇଁ

ଦିଆଯାଉଛି । ଏଥିରେ ଗାଁର ଲୋକମାନେ ମଧ୍ୟ ସହଯୋଗ କରୁଛନ୍ତି । ପିଲାମାନେ ମଧ୍ୟ ନିୟମିତି ସ୍କୁଲକୁ ଆସୁଛନ୍ତି ।

**ଆରୋହଣ-** ବର୍ତ୍ତମାନ ଗାଁର ଲୋକମାନେ ଆପଣଙ୍କୁ କିପରି ବ୍ୟବହାର ଦେଖାଉଛନ୍ତି ?

**ଉତ୍ତର-** ଗାଁର ସମସ୍ତ ଲୋକ ମୋତେ ଭଲ ବ୍ୟବହାର ଦେଖାଉଛନ୍ତି । ପ୍ରଥମତଃ ରହିବା ପାଇଁ ମୋତେ ଗାଁ ଭିତରେ ଗୋଟିଏ ଘର ଦେଇଛନ୍ତି । ମୋତେ ଯେତେବେଳେ ଜ୍ୱର ହୁଏ, ଗାଁ ଲୋକମାନେ ମୋ ସାଥିରେ କାଶୀପୁର ସ୍ୱାସ୍ଥ୍ୟ କେନ୍ଦ୍ର ପର୍ଯ୍ୟନ୍ତ ଯାଆନ୍ତି । ତା' ଛଡା କାଶୀପୁରଠାରୁ ଆସୁଥିବା ମଧ୍ୟାହ୍ନ ଭୋଜନ ସାମଗ୍ରୀ ଆଣିବାରେ ସଂପୂର୍ଣ୍ଣ ସାହାଯ୍ୟ କରନ୍ତି । ଗାଁରେ କୌଣସି ହାନି ଲାଭ ହେଲେ ସର୍ବପ୍ରଥମେ ମୋତେ ଜଣାନ୍ତି । ସେମାନଙ୍କର ପ୍ରତ୍ୟେକ ପର୍ବ-ପର୍ବାଣିରେ ମୋତେ ସାମିଲ କରନ୍ତି । ଯେତେବେଳେ ମୁଁ ବାହାରକୁ କୌଣସି କାମରେ ଯିବାର ଥାଏ, ତେବେ ସେ ସମୟରେ ଲୋକମାନେ ମୋତେ ଜଙ୍ଗଲ ପାରି କରି ଚନ୍ଦ୍ରଗିରି ଠାରେ ଛାଡି ଆସନ୍ତି । ମୋତେ ଲାଗେ ସତେ ଯେପରି ମୁଁ ଏ ଗାଁର ବଡ ପୁଅ ।

ମାର୍ଚ୍ଚ - ୨୦୦୪



# ଚାରୋଟି ଗାଁ'କମିଟିର କଥା

## ୧- ସାନଚେକ୍ନା

କାଶୀପୁର ବ୍ଲକର ସୁଙ୍ଗେର ପଞ୍ଚାୟତର ସାନଚେକ୍‌ନା ଗାଁ । ଆଇଫାଡ୍ (ଓଡ଼ିଶା ଆଦିବାସୀ ଉନ୍ନୟନ ପ୍ରକଳ୍ପ) ହେଉଛି, କାଶୀପୁରରେ ଥିବା ଏକ ଦାମୀ ସରକାରୀ ସଂସ୍ଥା । ସେ ଗରିବ ଆଦିବାସୀମାନଙ୍କ ଉନ୍ନତି ପାଇଁ କାଶୀପୁରରେ କାମ କରୁଛି । ଠିକାଦାରୀ ପ୍ରଥାର ବିଲୋପ କରି ଗାଁ କମିଟିରେ କାମ ନେବା କଥା ଚିନ୍ତା କଲା ବେଳେ ଏହାର କ'ଣ ନୀତି ନିୟମ ରହିଛି ? ସାନଚେକନା ଗାଁ ଲୋକମାନେ ଯେତେବେଳେ କମିଟି ଜରିଆରେ କାମ ନେବାକୁ ସ୍ଥିର କରି ସମସ୍ତଙ୍କ ଘରୁ ସୁନା ବନ୍ଧା ପକାଇ ଟଙ୍କା ଆଣି ୱାର୍କ ଅର୍ଡ଼ର ଆଣିବା ପାଇଁ ଆଇଫାଡ୍ ଅଫିସ୍‌କୁ ଯେଉଁ ଖୁସିରେ ଯାଇଥିଲେ ଏବଂ କାମମଧ୍ୟ ଆଣିଥିଲେ, ସେତେବେଳେ ସେମାନେ କଣ ଜାଣିଥିଲେ ଯେ, ତାଙ୍କର ଏ ଖୁସି ରହିବ ନାହିଁ ବୋଲି ! ଫାଇନାଲ୍ ବିଲ୍ କରିବା ବେଳେ ଏତେ ହଇରାଣ ହେବାକୁ ପଡ଼ିବ ବୋଲି ? ଜାଣିବା ସେଇ ଗାଁର ଦୁଃଖ କାହାଣୀ ...

କାଶୀପୁର ବ୍ଲକର ସୁଙ୍ଗେର ପଞ୍ଚାୟତରେ ସାନଚେକ୍‌ନା ଗାଁ । ପଞ୍ଚାୟତ ଅଫିସ୍‌ଠାରୁ ୧୨ କିଲୋମିଟର ଚାଲି ଚାଲି ଗୋଟିଏ ଘାଟି ପାରିହେବା ପରେ ଗାଁଟି ପଡ଼େ । ଗାଁରେ ଆଦିବାସୀ ଓ ଗଉଡ଼ ଘର ମିଶି ମୋଟରେ ୩୮ ପରିବାର ବାସ କରୁଛନ୍ତି । ୧୨ ଘର ଗଉଡ଼ ଲୋକଙ୍କର କିଛି କିଛି ଜମି ଅଛି । ମାତ୍ର ଆଦିବାସୀମାନଙ୍କର ଜମି ନାହିଁ କହିଲେ ଚଳେ । ଡଙ୍ଗର ଟିକିରା ମାରି କୁଲି ମଜୁରି ଯାଇ ସେମାନେ ଗୁଜୁରାଣ ମେଣ୍ଟାଇ ଥାନ୍ତି । କାଶୀପୁର ବ୍ଲକରେ ବିଭିନ୍ନ ଉନ୍ନତିମୂଳକ କାମ କରି ଆଦିବାସୀମାନଙ୍କର ଉନ୍ନତି କରିବା ପାଇଁ ଆଇଫାଡ୍ ସଂସ୍ଥା ଆସିଛି । ଏହି ସଂସ୍ଥାର କାମ ପାଖ ଦୁଇଟି ଗାଁରେ ହେବା ପରେ ସାନଚେକ୍‌ନା ଗାଁର ରାତି ସ୍କୁଲର୍ ଗୁରୁଭାଇ ଗୁରୁବାରୁ ମାଝୀ ଗାଁରେ ମିଟିଂ କରି ନିଜ ଗାଁରେ ଏକ କଜ୍‌ୱେ କାମ ପାଇଁ

ଦରଖାସ୍ତ ଲେଖି ସଙ୍ଗରେ ଗାଁ ଭାଇମାନଙ୍କୁ ଆଣି ଆଇଫାଡ୍ ଅଫିସକୁ ଆସିଲେ ।

ଦରଖାସ୍ତ ହେବା ପରେ ଏକ ଲକ୍ଷ ଦଶ ହଜାର ଟଙ୍କାର କାର୍ଯ୍ୟାଦେଶ (ୱାର୍କ ଅର୍ଡ଼ର) ମାନସିଂ ମାଝୀ ନାମରେ ମିଳିଲା । କାର୍ଯ୍ୟାଦେଶ ନେଇ ଖୁସିରେ ଗାଁକୁ ଫେରିବା ପରେ କାମ ଆରମ୍ଭ କରିବା ପାଇଁ ବାହାରିଲେ, କିନ୍ତୁ କାମ କରିବା ପୂର୍ବରୁ କିଛି ଟଙ୍କା ଦରକାର । କେଉଁଠୁ ଆସିବ ଭାବି ନିଜେ ନିଜର ସୁନା ବନ୍ଧା ପକାଇବା ପାଇଁ ସ୍ଥିର କଲେ । ଜଣକର ସୁନାରେ ହେବ ନାହିଁ ବୋଲି ଗାଁର ପାଞ୍ଚ ଜଣଙ୍କର ସୁନା ମିଶାଇ ସୁଙ୍ଗେର ଷ୍ଟେଟ୍‌ବ୍ୟାଙ୍କ ଗଲେ । ଦୁଇ ତୋଳା ସୁନା ବ୍ୟାଙ୍କରେ ଦେଇ ୬୦୦୦ ଟଙ୍କା ଆଣି ୧୪.୧୧.୯୪ ତାରିଖରେ କାମ ଆରମ୍ଭ କଲେ ।

ପ୍ରଥମେ ପଥର ୩୫ ଛଟା, ମେଟାଲ ୩୮ ଛଟା ଓ ଚିପ୍‌ସ୍ ୧୯ ଛଟା ପିଟି ଜମା କଲେ । ତା'ପରେ ୩ଫୁଟ ଓସାର ଓ ୩ଫୁଟ ଲମ୍ବର ଗାତ ମାରିସାରିବା ପରେ ବିଲ୍ ଓ ସିମେଣ୍ଟ ପାଇଁ ଆଇଫାଡ୍ ଅଫିସ୍‌କୁ ଗଲେ । ପ୍ରଥମ ବିଲ୍ ୫୦୦୦ ଟଙ୍କା କଲେ । ସେଥିରୁ ଜେ.ଇ. ବିଲ୍ କରିଥିବା ପାଇଁ କିଛି ନେଲେ । ବାକି ଟଙ୍କା ଓ ସିମେଣ୍ଟ ୬୦ ବସ୍ତା ଆଣି ଗାଁକୁ ଫେରିଲେ । ଏତିକି ଟଙ୍କାରେ ସୁନା ମୁକୁଳାଇବେ କିପରି ! ନିଜ ନିଜର ଟଙ୍କା ଠୁଳ କରି ବ୍ୟାଙ୍କରେ ରଖିଥିବା ସୁନା ମୁକୁଳାଇଲେ । ତା'ପରେ କାନ୍ଥ ଉଠାଇବା ପାଇଁ ବାଲି ବୋହି, ମିସ୍ତ୍ରୀ ଆଣି କାମ କଲେ । ଏତେ ପର୍ଯ୍ୟନ୍ତ ଧୈର୍ଯ୍ୟର ସହ ଲୋକମାନେ ଟଙ୍କା ପାଇବା ଆଶାରେ ନିଜ ଘରୁ ପେଯ ପିଇ କାମରେ ମାତିଥାନ୍ତି । ଟଙ୍କାର ଅଭାବ ଖଟିଖିଆ ଗରିବ ଆଦିବାସୀମାନଙ୍କ ପାଇଁ ସବୁ ଦିନ ଲାଗି ରହିଛି । ନିଜ ଗାଁର କାମ ହେଲେ ମଧ୍ୟ କେତେ ଦିନ ଭୋକ ଉପାସରେ କାମ କରିବେ ।

ବଞ୍ଚିବା ପାଇଁ ତ ପେଯ ଟିକେ ଦରକାର । ଏତିକି ଦିନ କାମ ଭିତରେ ୬୦ ବସ୍ତା ସିମେଣ୍ଟ ସରିଗଲା । ତେଣୁ ଗାଁ ଲୋକ ଯେତିକି କାମ ହୋଇଥିଲା, ସେହି କାମର ବିଲ୍ ଓ ସିମେଣ୍ଟ ପାଇଁ ପୁଣି ଆଇଫାଡ୍ ଅଫିସକୁ ଗଲେ । ଅଫିସ୍‌ରେ ବିଲ୍ ଓ ସିମେଣ୍ଟ ମାଗିବାରୁ ଜେ.ଇ. ମହାଶୟ ଘରକୁ ଆସ ବୋଲି କହିଲେ । ଘରକୁ ନ ଆସିଲେ ବିଲ୍ କରିବାକୁ ମନାକରିବାରୁ ବାଧ୍ୟ ହୋଇ ଲୋକମାନେ ଜେ.ଇ.ଙ୍କ ଘରକୁ ଗଲେ । ସେଠାରେ ୬୦୦୦ ଟଙ୍କା ବିଲ୍ କରାଗଲା । ସେଥିରୁ ମଧ୍ୟ ଖର୍ଚ୍ଚ ବାବଦକୁ କିଛି ନେଲେ । ସିମେଣ୍ଟ ପରେ ମିଳିବ କହିବାରୁ ଟଙ୍କାନେଇ ଲୋକମାନେ ଗାଁକୁ ଆସିଲେ । ବିଲ୍ ବିଷୟରେ ସମସ୍ତଙ୍କୁ ବୁଝାଇଲେ ଏବଂ ଟଙ୍କା ସମସ୍ତେ ବାଣ୍ଟଣକରି ନେଲେ । ଏହି ଅଫିସ୍‌କୁ ସିମେଣ୍ଟ ପାଇଁ ଦୁଇ ମାସ ଦୌଡ଼ିବା ପରେ ୫୦ ବସ୍ତା ସିମେଣ୍ଟ ଆଣି କାମ ପୁଣି ଆରମ୍ଭ କଲେ ।

କାନ୍ଥ ଉଠାଇବା ପରେ ଉପରେ ଚିପ୍‌ସ୍ ଓ ମେଟାଲ୍ ପକାଇଲେ । ଏହାପରେ ରନିଙ୍ଗ ବିଲ୍ ୬୨୬ ଟଙ୍କାର ଦିଆଗଲା କଡ଼ କାନ୍ଥ କାମ ଆରମ୍ଭ ହେଲା । ଏହି କାମ ପାଇଁ ସିମେଣ୍ଟ ଅଭାବ ପଡ଼ିବାରୁ ପାଖ ଗାଁ କୋଡ଼ିଗୁଡ଼ା ଓ ଗଜପଦରରୁ ୧୦ ବସ୍ତା ସିମେଣ୍ଟ ଆଣି କାମ କଲେ । ପାଖ ଗାଁରୁ ଆଣିବାର ଉଦ୍ଦେଶ୍ୟ ଥିଲା ଯେ, ସିମେଣ୍ଟ୍ ପାଇଁ ପୁଣି ଦୁଇମାସ କାମ ବନ୍ଦ ନହେଉ । ଯାହା ହେଉ କାମ ସରିଗଲା । ଲୋକେ ପୁଣି ତୃତୀୟ ଥର ପାଇଁ ଅଫିସ୍‌କୁ ଗଲେ । ୭ ହଜାର ୨୧୯ ଟଙ୍କାର ବିଲ୍ ହେଲା । ସେଥିରୁ ଜେ.ଇ. ଖର୍ଚ୍ଚ ବାବଦକୁ ନେଲେ । ୪୦ ବସ୍ତା ସିମେଣ୍ଟ ଓ ବାକି ଟଙ୍କା ନେଇ ଗାଁକୁ ଫେରିଲେ । ପଡ଼ୋଶୀ ଗାଁରୁ ଆଣିଥିବା ୧୦ ବସ୍ତା ସିମେଣ୍ଟ ଫେରାଇବା ପରେ ବାକି ସିମେଣ୍ଟ ନେଇ କଡ଼କାନ୍ଥ କାମ ଶେଷ କଲେ । ଯାହାହେଉ ଏହାରି ମଧ୍ୟରେ ସମୁଦାୟ ୭୩ ଛଟା ପଥର, ୭୩ ଛଟା ମେଟାଲ ପିଟି ଗାଁ ଲୋକଙ୍କର କେତେ ମେହେନତର କାମଟି ଶେଷ ହେଲା । କିନ୍ତୁ ଗୁରୁବାରୁ ମାଝୀ ଓ ମାନ୍‌ସିଂ ମାଝୀ କହନ୍ତି, ଆକାଶରୁ ଟୋପା ଟୋପା ବର୍ଷା ପଡ଼ିବା ଯାହା, ଥର ଥର ହୋଇ ତିନି ଥରରେ ବିଲ୍ କରିବା ସେୟା । ଆହୁରି ଲୋକଙ୍କର ୨୭ ଦିନ କାମର ମଜୁରୀ ପାଇବାକୁ ବାକି ଅଛି । କାମ ଆରମ୍ଭ ଦିନଠାରୁ ଲୋକମାନେ ଆଇଫାଡ୍ ଅଫିସ୍‌ରୁ ବିଲ୍ ଆକାରରେ ୧୮ ହଜାର ୮୯୫ ଟଙ୍କା ଓ ସିମେଣ୍ଟ ୧୫୦ ବସ୍ତା ନେଇ କାମ କରିଛନ୍ତି । ଗ୍ରାମବାସୀ ଯେତେବେଳେ ଚୂଡ଼ାନ୍ତ ବିଲ୍ କରିବାକୁ ଯାଇଥାନ୍ତି, ଜେ.ଇ. ମାହାପ୍ରୁ କହନ୍ତି, ତୁମର ଆଉ ୧୦ ହଜାର ଟଙ୍କା ପାଇବାକୁ ଅଛି । ଗାଁ ଲୋକଙ୍କ ମନରେ ପ୍ରଶ୍ନ ଯେ, ଯଦି ଆଉ ୧୦ ହଜାର ଟଙ୍କା ପାଇବାକୁ ଅଛି, ତେବେ ବାକିଟଙ୍କା ଗଲା କୁଆଡ଼େ ? ଗାଁ କମିଟି ବଦଳରେ ସେହି କାମକୁ ଠିକାଦାର ନେଇଥିଲେ, କାର୍ଯ୍ୟାଦେଶ ଅନୁଯାୟୀ ନିଶ୍ଚୟ ବିଲ୍ କରି ଟଙ୍କା ନେଇଥାନ୍ତେ ।

ଜାନୁଆରୀ ୧୯୯୫ରେ କାମଟି ଶେଷ ହେଲା । ଗାଁ ଲୋକ ବାରମ୍ବାର ଆଇଫାଡ୍ ଅଫିସ୍‌କୁ ଧାଇଁଥିଲେ ମଧ୍ୟ ତାଙ୍କ କଥା ଶୁଣାଯାଇନାହିଁ । ଏ ବର୍ଷ ଜୁନ୍ ୧୯ ତାରିଖର ଘଟଣା । ଗାଁର ମହିଳା, ପୁରୁଷ ସମସ୍ତେ ମିଶି ଆଇଫାଡ୍ ଅଫିସ୍ ଘେରାଉ କଲେ । ହାକିମମାନଙ୍କୁ ଅଫିସ୍ ବାହାରକୁ ଛାଡ଼ିଲେ ନାହିଁ । ଶେଷରେ ସେମାନେ କହିଲେ, ତୁମର ଚୂଡ଼ାନ୍ତ ବିଲ୍ ହୋଇ ଯାଇଛି, ଦୁଇ ଦିନ ପରେ ଆସ । ଟଙ୍କା ନେଇଯିବ । ଜୁନ୍ ୨୪ ତାରିଖ ଦିନ ଯାଇ ଆଇଫାଡ୍ ଅଫିସ୍ ୧୦ ହଜାର ୩୪୦ ଟଙ୍କାର ବିଲ୍ ନେଇ ଫେରିଛନ୍ତି । ଏଇଟା ପୁଣି ସେମାନଙ୍କର ଚୂଡ଼ାନ୍ତ ବିଲ୍ ବୋଲି କହିବାରୁ ଲୋକମାନେ ଗାଁକୁ ପଳାଇ ଆସିଲେ । ଏ ବିଲ୍ ପାଇଁ କେତେଥର

ସେମାନେ ଏ ଅଫିସ୍‌କୁ ଧାଉଁଥିବେ କେଜାଣି ?

ଏହିପରି ହଇରାଣ ହବା ଦ୍ୱାରା ଲୋକଙ୍କ ମନୋବଳ ଭାଙ୍ଗି ପଡୁଛି । ଗାଁ କମିଟିରେ କାମ ନେଇ କରିବା ପାଇଁ ଲୋକଙ୍କ ପାଖରେ ସେମିତି ସମ୍ବଳ ନାହିଁ ଯେ, ଘରୁ ଖାଇ କାମ କରିବେ । କାମଟି ଭଲ ହେବ ଭାବି ଲୋକମାନେ ବହୁତ ମଜବୁତ୍ କାମ କରିଥାନ୍ତି । କିନ୍ତୁ ଜେ.ଇ. ମହାଶୟ, ବିଲ୍ କରିବା ବେଳେ କମାଇ ଦେଉଛନ୍ତି । ଲୋକମାନେ ପରିଶ୍ରମ କରି ଯେଉଁ କାମ କରୁଛନ୍ତି, ତା'ର ମୂଲ୍ୟ କିଏ ଦେଉଛି । ସରକାର ନା ସରକାରୀ କର୍ମଚାରୀ ?

## (୨) ବେଲଗଛତୁଣ୍ଡା

ଗାଁର ନାଁ ବେଲଗଛତୁଣ୍ଡା । ପୂର୍ବ ପୁରୁଷରୁ ଏହି ନାଁ ରହିଆସିଛି । ଚାରିପାଖରେ ବେଲଗଛ । ମଝିରେ ଗାଁଟି ଥିବାରୁ ତା'ର ନାଁ ଏହିପରି ହୋଇଛି । ମାତ୍ର ଆଜିକାଲି ଆଉ ସେହି ବେଲଗଛ ଗୋଟିଏ ହେଲେ ଦେଖିବାକୁ ମିଳୁ ନାହିଁ । ଜଙ୍ଗଲ ନଷ୍ଟ ହେବା ସଙ୍ଗେ ସଙ୍ଗେ ଏହି ବେଲଗଛଗୁଡ଼ିକୁ କଟାଯାଇ ନଷ୍ଟ ହୋଇଯାଇଛି । ଗାଁଟିରେ ମୋଟ ୩୪ଟି ପରିବାର ବସବାସ କରୁଛନ୍ତି । ସେଥି ମଧ୍ୟରୁ ୫ଟି ଆଦିବାସୀ ଓ ବାକି ୨୯ଟି ହରିଜନ ପରିବାର । ପଞ୍ଚାୟତ ଡଙ୍ଗାଶିଳଠାରୁ ଏହି ଗାଁଟି ପାଞ୍ଚ କି.ମି. ଓ ବ୍ଲକ କାଶୀପୁରଠାରୁ ୨୮ କି.ମି. ଦୂର । ବର୍ତ୍ତମାନ କେତୋଟି ପିଲା ପେରିଙ୍ଗିରି ସ୍କୁଲକୁ ପାଠ ପଢ଼ିବାକୁ ଯାଉଛନ୍ତି । ନଚେତ୍ ଗାଁରେ ସାକ୍ଷରତା ନାହିଁ କହିଲେ ଚଳେ ।

ଗାଁରେ ଟିକିଏ ପୂର୍ବରୁ ନଦୀଟିଏ ପଡ଼େ । ନଦୀଟି କଡ଼େ କଡ଼େ ଲୋକମାଙ୍କର ଚାଷ ଜମି ରହିଛି । ଚାରିପାଞ୍ଚ ବର୍ଷ ଆଗରୁ ବ୍ଲକ ତରଫରୁ ସେଠାରେ ଏକ ଆଡ଼ିବନ୍ଧ କରାଯାଉଥିଲା । ସେତେବେଳେ ଲୋକମାନେ କାମ ବିଷୟରେ କିଛି ଜାଣି ନଥିଲେ କି ଗାଁରେ ଗାଁ କମିଟି ମଧ୍ୟ ନଥିଲା । ମାତ୍ର ସରକାରଙ୍କର ନିୟମାବଳୀ ଅନୁସାରେ ବ୍ଲକ କାମ୍ ସବୁ ଗାଁ କମିଟି ଜରିଆରେ ହେବ । ସେ ଯାହା ହେଉ, ଏହି ଆଡ଼ିବନ୍ଧ କାମକୁ ଜଣେ ଠିକାଦାର ନେଇ କାମ କରାଇଲା । କୁଲି ମଜୁରୀ ଯାହା ତ ଦେଲା, କାମ ସରିବା ପରେ ପାଖାପାଖି ପଚାଶ କି ଷାଠିଏ ଏକର ଜମିରେ ପାଣି ମାଡ଼ି ଭଲ ଚାଷ ହେଲା, ଗାଁ ଲୋକେ ଟିକେ ଭଲରେ ଚଳିଲେ । ମାତ୍ର ସେ କାମ କେମିତି ହୋଇଥିଲା କେଜାଣି ଗୋଟିଏ ବର୍ଷ ଭିତରେ ବନ୍ଧଟି ଭାଙ୍ଗିଗଲା । ଚାଷ ଜମିକୁ ଆଉ ପାଣି ମାଡ଼ିଲା ନାହିଁ କି ଚାଷ ମଧ୍ୟ ହେଲା ନାହିଁ । ଆଗରୁ ଗାଁ ଲୋକେ ଯେମିତି ହଇରାଣ ହେଉଥିଲେ, ସେମିତି ହେଲେ । ଆଖପାଖ ଗାଁକୁ ଦେଖି ଆସ୍ତେ

ଆସ୍ତେ ଏହି ଗାଁଲୋକଙ୍କର ଚେତନା ହେଲା । ଗାଁରେ କମିଟି ତିଆରି କଲେ, ସେଥିରେ ସାତଜଣଙ୍କୁ ସଦସ୍ୟ ରଖିଲେ । ସେଥି ମଧ୍ୟରୁ ତିନିଜଣ ମହିଳା ମଧ୍ୟ ସଦସ୍ୟା ହେଲେ । ତା'ପରେ ସେହି ଆଡ଼ିବନ୍ଧକୁ ମରାମତି କରିବା ପାଇଁ ସେମାନେ ବ୍ଲକକୁ ଦରଖାସ୍ତ ଲେଖିଲେ । ବୁଝାବୁଝି କରିବାରୁ ଜଣାପଡ଼ିଲା ଯେ, ମରାମତି ପାଇଁ ପଚାଶ ହଜାର ଟଙ୍କା ଆସିଛି । ଗାଁ ଲୋକେ କହିଲେ, ଆମେ କାମଟି ଆମ ଗାଁ କମିଟି ଜରିଆରେ ନେଇ କରିବୁ । ଭଲ କାମ କରିବୁ, ଯେମତିକି ତାହା ମଜବୁତ୍ ହେବ । ସରକାର ସିନା ନିୟମ କରିଛି, ଗାଁ କାମ ଗାଁକମିଟି ଜରିଆରେ ହେବ, ମାତ୍ର ସେ ନିୟମ କାର୍ଯ୍ୟକାରୀ କରାଯାଉନାହିଁ । ଯେଉଁମାନେ ନିୟମ କରୁଛନ୍ତି, ସେହିମାନେ ନିୟମ ଭାଙ୍ଗୁଛନ୍ତି । ସରକାରୀ କର୍ମଚାରୀମାନେ ନିରୀହ ସରଳ ଆଦିବାସୀମାନଙ୍କୁ ହତାଶ କରୁଛନ୍ତି, ସେକଥା ନକହିଲେ ଭଲ । ସେହି କାମକୁ ଜଣେ ଠିକାଦାର ଯାଇ ମାଗିଲେ, ଥରକରେ ଦିଆଯାଉଛି । ଅଥଚ କମିଟି ଲୋକେ ଦଶପନ୍ଦର ଥର ଯାଇ ହାରିଗୁହାରି କଲେ ମଧ୍ୟ ସେମାନଙ୍କୁ ଫେରାଇ ଦିଆଯାଉଛି । ଏହାର କାରଣ କ'ଣ ହୋଇ ପାରେ... !

ବେଲଗଛତୁଣ୍ଡାର ମହିଳା ଓ ପୁରୁଷମାନେ କହନ୍ତି, ପଚାଶ ହଜାର ଟଙ୍କାର କାମ ପାଇଁ ଆମେ ସାତମାସ ହେଲାଣି, ଏପଟ ସେପଟ ହେଉଛୁ । ଏଗାର ଥର ଦରଖାସ୍ତ ଦେଇ ସାରିଲୁଣି । ମାତ୍ର ଆମ କଥା କେହି ଶୁଣୁ ନାହାନ୍ତି । ଗତ ଏଗାର ମାର୍ଚ୍ଚ ୧୯୯୬ରେ ଜିଲ୍ଲାପାଳ ଡଙ୍ଗାଶିଳ ଆସିଥିଲେ । ତାଙ୍କୁ ଯାଇ ଦେଖାକରି ସବୁ କଥା କହିଲେ । ସେ କହିଲେ, ହଉ ବୁଝିବା । କିଛି ଦିନ ପରେ ନବୁଝିବାରୁ ଦୁଇ ଦୁଇଥର ରାୟଗଡ଼ା ଜିଲ୍ଲାପାଳ, ଉପଜିଲ୍ଲାପାଳଙ୍କ ପାଖକୁ ଯାଇ କେବଳ ଆଶ୍ୱାସନା ବାଣୀ ଶୁଣି ଫେରିଲେ । ବିଡ଼ିଓ ପାଖକୁ ଯା', ତା' ପାଖକୁ ଯା" । ଏହିପରି କହି ସେମାନେ ଆମକୁ ବେଶୀ ହଇରାଣ କରୁଛନ୍ତି । ମଇମାସ ୭ ତାରିଖରେ ବିଡ଼ିଓଙ୍କୁ କହିବା ପରେ ବିଡ଼ିଓ କହିଲେ, ୧୦ ଜୁନ୍‌ରେ ରାୟଗଡ଼ାରେ ଆମର ମିଟିଂ ଅଛି । ସେଠାରେ ତୁମ ଗାଁ କଥା ବୁଝାଯିବ । ମାତ୍ର ଆଜି ପର୍ଯ୍ୟନ୍ତ ଆମକୁ କାମ ମିଳୁନି କି ଆମ କଥା କ'ଣ ବୁଝିଲେ କିଛି କହୁନାହାନ୍ତି । ଆମେ ତୁଚ୍ଛାକୁ ସମୟ ନଷ୍ଟ କରି ବାରମ୍ବାର ଡଙ୍ଗାଶିଳ, କାଶୀପୁର ଧାଉଁଛୁ । ଏବେ ଆମେ ଠିକ୍ କରିଛୁ- ଗାଁର ସବୁ ଲୋକଯାଇ ବ୍ଲକ ଅଫିସ୍‌ରେ ଧାରଣା ଦେବୁ । କାମ ନଦେଲେ ଆମେ ଫେରିବୁ ନାହିଁ ।" ଏସବୁ କଥା ତୁମେ କେଉଁଠୁ ଜାଣିଲ ପଚାରିବାରୁ ସେମାନେ କହିଲେ, "ଆମ ପାଖ ଗାଁର ପାଟିଆଶିଳ, ଅଣଗାର, ରେଙ୍ଗଣଶିଳର ମା'ମାନେ ଏକାଠି ହୋଇ ଏମିତି କାମ ଆଣି ବହୁତ ଭଲ କାମ କରିଛନ୍ତି । ସେମାନଙ୍କଠାରୁ ଆମେ ଦେଖିଛୁ । ସେମାନେ

ଯଦି କାମ ଆଣି କରିପାରୁଛନ୍ତି, ଆମେ କାହିଁକି ପାରିବୁ ନାହିଁ ! ଆମର ମଧ୍ୟ ସାହସ ଅଛି । ଶକ୍ତି ଅଛି । ଆମମାନଙ୍କ ମଧ୍ୟରେ ଏକତା ଅଛି । କାମ ନହେବ ପଛେ, ଆମ ଗାଁ କାମ ଆମେ ଅନ୍ୟ କାହାକୁ ଦେବୁ ନାହିଁ । ଯଦି କିଏ ଆଣି କଲା, ଆମେ କରାଇ ଦେବୁ ନାହିଁ । ଏଇଟା ଆମର ଶେଷ ନିଷ୍ପତ୍ତି ।" ଏ କଥା ଗାଁର ବୁଢ଼ାବୁଢ଼ୀଙ୍କଠାରୁ ଆରମ୍ଭ କରି ଧାଙ୍ଗଡ଼ା ଧାଙ୍ଗଡ଼ୀ ପର୍ଯ୍ୟନ୍ତ ସମସ୍ତେ ଏକ ସ୍ୱରରେ କହୁଥିଲେ । ୧୦ ଜୁନ୍ ପରକୁ ସେମାନେ ଅପେକ୍ଷା କରି ବସିଛନ୍ତି ଯେ, ମିଟିଂରେ ସେହି ଗାଁ କଥା କ'ଣ ବିଚାର କରାଯାଉଛି ।

## (୩) ଝିରିଖୋଲ

ମାଇକଞ୍ଚ ଗ୍ରାମପଞ୍ଚାୟତର ଝିରିଖୋଲ ଏକ ଗାଁ । ଗାଁଟିରେ ୫୫ଟି ଆଦିବାସୀ ପରିବାର ରହନ୍ତି । ସେମାନେ ଦୁଃଖେସୁଖେ ଚଳନ୍ତି । ସରକାର ଓ ଆଇଫାଡ୍ ତରଫରୁ ରସ୍ତାଘାଟଠାରୁ ଆରମ୍ଭ କରି ଗଛଲଗା ପର୍ଯ୍ୟନ୍ତ ବିଭିନ୍ନ ଉନ୍ନତିମୂଳକ କାମ ସବୁ ଆଦିବାସୀ ଅଞ୍ଚଳରେ କରାଗଲା । ଏହି ଗାଁରେ ରାସ୍ତାଘାଟ ଅସୁବିଧା ଥିବାରୁ ରାସ୍ତା କାମ ପାଇଁ ଗାଁର ମହିଳା ଓ ପୁରୁଷମାନେ ମିଶି ବ୍ଲକ ଅଫିସ୍‌କୁ ଆସିଲେ । ବହୁବାର ଆସିବା ପରେ ଶେଷରେ କାମଟି ହେବ ବୋଲି ମଞ୍ଜୁର ହେଲା । ଲୋକମାନେ ଗାଁ କମିଟିରେ କାମ କରିବାକୁ ଦାବି କଲେ । କିନ୍ତୁ ସେହି ରାସ୍ତାଟି ଚାରିପାଞ୍ଚୋଟି ଗାଁ ଭିତର ଦେଇ ଯାଉଥିବାରୁ କାମଟି କମିଟିରେ ନଦେଇ ମାଇକଞ୍ଚର ଜଣେ ଠିକାଦାର ହାତରେ ଦିଆଗଲା । ସେ କାର୍ଯ୍ୟାଦେଶ ପାଇଲା । ରାସ୍ତା କାମ ଆରମ୍ଭ ହେଲା ।

ଗାଁ ଲୋକେ ସମସ୍ତେ ଆସି କାମ କଲେ । ୫୫ ପରିବାର ଭିତରୁ କାହାଘରୁ ଜଣେ ତ କାହାଘରୁ ଦୁଇଜଣ ହୋଇ ସବୁ ପରିବାର କାମରେ ସାମିଲ ହେଲେ । କାମ ଆରମ୍ଭ ହୋଇ ମାସେ ହେବା ପରେ ପଇସା ମଞ୍ଜୁର ହୋଇନି ବୋଲି କହିବାରୁ, ବିନା ମଜୁରିରେ ଲୋକମାନେ ତାଙ୍କ ନିତିଦିନର ମାଣ୍ଡିଆ ପେଜ ପିଇ କାମରେ ଲାଗିଥା'ନ୍ତି । ଗରିବ ଲୋକେ କେତେ ଦିନ ବା ମାଗଣାରେ କାମ କରିବେ । ଲୁଣ ମରୀଚ କିଣିବା ପାଇଁ ପଇସା ଦରକାର । ଯେତେବେଳେ ଗାଁ ଲୋକ ପଇସା ମାଗିଲେ, ସେତେବେଳେ ଠିକାଦାର କୋଡ଼ିଏ ଦିନ କାମ କରିଥିବା ଲୋକଙ୍କୁ ଚାରି ଦିନର, ମାସେ କାମ କରିଥିବା ଲୋକଙ୍କୁ ୭ ଦିନର ଏମିତି ସମସ୍ତଙ୍କୁ କିଛି ନା କିଛି ଦେଇ କାମ ଚଳେଇ ରଖିଲେ । ପୁଣି କିଛି ଦିନ ଗଲାପରେ ଲୋକମାନେ ମଜୁରି ମାଗିଲେ । ପୁଣି ସେହିପରି ଉତ୍ତର ହେଲା ।

ସହଜରେ ତ ଗରିବ ଲୋକ ମଜୁରି ପାଇଲେ ପେଟ ପାଇଁ ଖାଦ୍ୟ କିଣି ଖାଇବେ । କେତେଦିନ ଏମିତି ଚାଲିଥିବ ଭାବି ପଇସା ନଦେଲେ କାମ କରିବୁନି । କାମ ବନ୍ଦ କରିବେ ବୋଲି ଠିକ୍ କଲେ । ତା'ପରେ ଗାଁ ଲୋକେ ମିଶି ଠିକାଦାର ପାଖକୁ ବାରମ୍ବାର ଗଲେ ମଧ୍ୟ ସେ କେଉଁ ଦିନ ଘରେ ନଥିବ ତ କେଉଁଦିନ ଦେଖାହେଲେ କହିବ, ଟଙ୍କା ମିଳିନି କି ବିଲ୍ ମଞ୍ଜୁର ହୋଇନାହିଁ । ଏମିତି ଲୁଚିଛପି ଲୋକମାନଙ୍କୁ ଭୁଆଁ ବୁଲାଇ ଚାରିପାଞ୍ଚ ମାସ ହୋଇଯାଇଥିଲେ ମଧ୍ୟ ତାଙ୍କର ପ୍ରାପ୍ୟ ଏପର୍ଯ୍ୟନ୍ତ ମିଳୁନାହିଁ । ସରକାରଙ୍କ ଘୋଷିତ ସର୍ବନିମ୍ନ ମଜୁରୀ ୨୫ ଟଙ୍କା କଥା ପଚାରୁଛି କିଏ ।

ଠିକାଦାର ପାଖରୁ ନିରାଶ ହୋଇ ଲୋକମାନେ ବିଡ଼ିଓଙ୍କୁ ଏ ବିଷୟରେ ଏକ ଦରଖାସ୍ତ ଦେବେ ବୋଲି ସ୍ଥିର କରିଛନ୍ତି । ଯଦି ବିଡ଼ିଓ ଏହାର କିଛି ପ୍ରତିକାର ନକରିବେ, ତେବେ ସେମାନେ ଶ୍ରମ ନ୍ୟାୟାଳୟରେ ମକଦ୍ଦମା କରିବେ ।

### (୪) କାରାଝୋଲା

ରାୟଗଡ଼ା ଜିଲ୍ଲାର ଟିକିରି ପଞ୍ଚାୟତରେ କାରାଝୋଲା ଗୋଟିଏ ଆଦିବାସୀ ଗାଁ । ବଣ ଭିତରେ ଗାଁଟି ରହୁଥିବାରୁ ଯିବା ଆସିବାର କିଛି ସୁବିଧା ନାହିଁ କହିଲେ ଚଳେ । ଏହାର ସୁଯୋଗ ନେଇ କେତେକ କୁଚକ୍ରୀ ସାହୁକାର, ମହାଜନମାନେ ଗାଁ ଭିତରକୁ ଯାଆନ୍ତି । ବର୍ଷକରେ ଥରେ ଅଧେ ଆର.ଆଇ. କିମ୍ବା ଫରେଷ୍ଟ ଗାର୍ଡ଼, ବଟି ଆଦାୟ କରିବାକୁ ଆସିଥାନ୍ତି । ଗାଁର ଲୋକମାନଙ୍କ କିଛି ବାହାର ଅନୁଭୂତି ନାହିଁ କହିଲେ ଚଳେ । ସାପ୍ତାହିକ ହାଟ ଗାଁଠାରୁ ଦଶ ବାର କି.ମି. ଦୂର ହୋଇଥିବାରୁ ସବୁଲୋକ ଯାଇପାରନ୍ତି ନାହିଁ, ତେଣୁ ଗାଁକୁ ଆସୁଥିବା ବେପାରୀମାନଙ୍କୁ କମ୍ ଦରରେ ଜିନିଷ ବିକି ଚଢ଼ା ଦରରେ ତାଙ୍କଠାରୁ ଆବଶ୍ୟକୀୟ ଜିନିଷ କିଣିବାକୁ ବାଧ୍ୟ ହୋଇଥାଆନ୍ତି ।

ଗାଁର ପଞ୍ଚାୟତ ରାସ୍ତା ମରାମତି ପାଇଁ ପଞ୍ଚାୟତକୁ ଟଙ୍କା ଆସେ । ଏହାକୁ ନିକଟସ୍ଥ ପଞ୍ଚାଳି ଗ୍ରାମର ଜଣେ ହରିଜନ ଏହି କାମ ପାଇଁ ପଞ୍ଚାୟତ ଅଫିସରୁ ଅନୁମତି ଆଣିଲା । ସେ ଗାଁର କେତେ ଜଣ ବୁଢ଼ାଲୋକଙ୍କୁ ହାତରେ ରଖି ସେମାନଙ୍କୁ ୬୦ ଟଙ୍କାର ମଦ ଏବଂ ସମୁଦାୟ କାମ ପାଇଁ ତିନି ହଜାର ଟଙ୍କା ଦେଇ କାମଟି କରାଇବା ପାଇଁ କହି ଚାଲିଗଲା । ଗାଁରେ ଚାଲୁଥିବା ରାତି ସ୍କୁଲରେ ଶ୍ରୀ ଲୁକି ମାଝୀ ପାଠ ପଢ଼ାଉଥା'ନ୍ତି । ସେ ଲୋକଙ୍କୁ ବୁଝାଇବା ଫଳରେ ଗାଁ ଜମିରେ ଜଳ ସେଚନ ପାଇଁ ଏକ ମୁଣ୍ଡା କାମ ଗାଁ କମିଟି ଜରିଆରେ ଚାଲିଥାଏ । ସେତିକି ବେଳେ ଗାଁ

ଲୋକେ ଜାଣିବାକୁ ପାଇଲେ ଯେ ଗାଁର କାହାରିକୁ ନପଚାରି କେତେକ ବୃଦ୍ଧଲୋକଙ୍କର ଟିପ ଚିହ୍ନ ନେଇ ଯାଇ ରାସ୍ତାକାମ ପାଇଁ ଠିକା ସେ ହରିଜନ ଲୋକ ନେଇଯାଇଛି । ଏହା ଜାଣିଲା ପରେ ଗାଁର ସଭିଏଁ ଟିପ ଦେଇଥିବା ବୁଢ଼ାମାନଙ୍କୁ ପଚାରି ସବୁକଥା ଜାଣିବା ପରେ ସେମାନେ କାମଟି କମିଟି ଜରିଆରେ କରିବାର ନିଷ୍ପତ୍ତି ନେଇ ସରପଞ୍ଚ ନିକଟରେ ଆବେଦନ କଲେ, କିନ୍ତୁ ସରପଞ୍ଚଙ୍କର ଠିକାଦାର ସହିତ ସଲାସୁତରା ଥିବାରୁ ସେ ଗାଁ କମିଟିକୁ ବିଭିନ୍ନ ପ୍ରକାର ଆଳ ଦେଖାଇ ଫେରାଇ ଦେଲେ । ଏହାପରେ ନିକଟସ୍ଥ ରାଗୁଡ଼ାର 'ସୁନାଦେଈ ମହିଳା ମଣ୍ଡଳ'ର ସଂପାଦିକା ଶ୍ରୀମତୀ ଦୀପାଇ ମାଝୀ ତାଙ୍କ ଗାଁରେ କିଭଳି ୬୦ ହଜାର ଟଙ୍କା ରାସ୍ତା କାମ ଠିକାଦାରର କାର୍ଯ୍ୟଦେଶକୁ ରଦ୍ଦକରି ନିଜେ ଗାଁର ମହିଳା ମଣ୍ଡଳ ଦ୍ୱାରା କରାଇଥିଲେ ତାହା କାରାଝୋଲା ଗାଁ ଲୋକଙ୍କୁ ବୁଝାଇଲେ । ଗାଁ ଲୋକ ବା ମହିଳାମାନଙ୍କ ଏକଜୁଟ ହେବାର ଗାରିମା ବୁଝି ପାରି ପୁଣି କାରାଝୋଲାର ମା'ମାନେ ଗୋଟିଏ ଦରଖାସ୍ତ ଲେଖି ଦୀପାଇ ମାଝୀଙ୍କ ସହ ସରପଞ୍ଚ ପାଖକୁ ଗଲେ ଏବଂ ପଞ୍ଚାୟତ ଅଫିସ୍‌ରେ ଦିନ ୧୧ଟାରୁ ଉପର ବେଳେ ୪ଟା ପର୍ଯ୍ୟନ୍ତ ବସି ରହି କମିଟି ନାମରେ ସେହି ରାସ୍ତା କାମର କାର୍ଯ୍ୟାଦେଶ ଆଣି ଆସିଲେ । କାର୍ଯ୍ୟାଦେଶ କାଗଜ ଦେଖି ଗାଁର ଲୋକମାନେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ତାଙ୍କୁ ଠିକାଦାର ଛିଣ୍ଡାଇଥିବା ଟଙ୍କାଠାରୁ ସମୁଦାୟ ଅନୁଦାନ କେତେ ଯେ ଅଧିକ ତାହା ସେ ଦିନ କାରାଝୋଲା ଗାଁର ଲୋକମାନେ ବୁଝିପାରିଥିଲେ । ଏହି କାମରେ ଗାଁର ଲୋକମାନେ ୧୨ ହଜାର ଟଙ୍କା ପାଇଥିଲେ । ସେହି ଦିନଠାରୁ ଶପଥ କରିଥିଲେ ଗାଁର କୌଣସି କାମ ଠିକାଦାରକୁ ନଦେଇ ଗାଁ କମିଟି ଜରିଆରେ କରିବେ ।

ଜୁଲାଇ - ୧୯୯୬



# କଲମ ନହେଲେ କଥା ତ ଅଛି

କୋରାପୁଟ ଜିଲ୍ଲା ଦଶମନ୍ତପୁର ବ୍ଲକର ମାଣ୍ଡିଆଗୁଡ଼ା ଗାଁ । ସେଇଠି ଡାଳିମ୍ବ ଜାନୀର ଘର । ବାପା ନାମ ବୁର୍ସା ପେରିଶିକା, ମାଆର ନାମ ଦୀପାଇ ପେରିଶିକା । ପିଲାଦିନେ ପାଠ ପଢ଼ିବାକୁ ବହୁତ ଇଚ୍ଛା ଥିଲେ ବି ବାପା ମାଆଙ୍କ ଯୁକ୍ତି ଆଗରେ ସେ ହାର ମାନି ନୀରବ ରହି ଯାଇଥିଲା । କାରଣ ସେତେବେଳେ ଝିଅ ପିଲାଙ୍କ ପାଠ ପଢ଼ା ଉପରେ କେହି ଗୁରୁତ୍ୱ ଦେଉ ନଥିଲେ । ଷୋଳ ବର୍ଷ ବୟସରେ ଡାଳିମ୍ବ କାକିରିଗୁମା ପଞ୍ଚାୟତର ମାଲିଗୁଡ଼ା ଗାଁର ଦାନୁ ଜାନୀଙ୍କୁ ବିବାହ କରିଥିଲା । ବାହାଘରର ପାଞ୍ଚୋଟି ମାସ ଶ୍ୱଶୁର ଘରେ ଭଲରେ କଟିଯିବା ପରେ ତା'ର ଦୁଃଖର ଦିନ ଆସି ପହଞ୍ଚି ଯାଇଥିଲା । ଶାଶୁ ଓ ନଣନ୍ଦ ମିଶି ତାକୁ ବହୁତ ଗାଳି ଗୁଲଜ କରି ଘରୁ ବାହାର କରିଦେବାକୁ ସ୍ଥିର କଲେ । ଡାଳିମ୍ବ ଏହାର ଦୃଢ଼ ବିରୋଧ କରିଥିଲା । ଶେଷରେ ସ୍ୱାମୀକୁ ସାଙ୍ଗରେ ଧରି ବାପାଘରକୁ ପଳାଇ ଆସିଲା । ସେହିଠାରେ ସେ ଆରମ୍ଭ କରିଥିଲା ତା'ର ସଂସାର । ବର୍ତ୍ତମାନ ତାର ପରିବାର କହିଲେ, ସ୍ୱାମୀ, ଦୁଇଟି ଝିଅ ଓ ସେ ନିଜେ । ବଡ଼ ଝିଅ ଦ୍ୱିତୀୟ ଶ୍ରେଣୀରେ ପଢ଼େ । ସ୍ୱାମୀ ଚାଷ କାମ କରେ । ଚାଷ ଫସଲ ସାହୁକାର ଘରକୁ ଦେଇଦେଉଥିଲୁ ଏବଂ ଆମେ ଯେଉଁ ଅସୁବିଧାରେ ରହୁଥିଲୁ ସେହି ଅସୁବିଧା ପୁଣି ଭୋଗୁଥିଲୁ । କିନ୍ତୁ ସେ ସମୟ ବଦଳିଛି । ଆମମାନଙ୍କର ଚେତନା ହୋଇଛି । ଆମେ ଏବେ ନିଜ ନିଜ ଗାଁରେ 'କୁଟୁମ୍ବ ପାଣ୍ଠି' ରଖିଛୁ । ଯେଉଁଥିରୁ ବର୍ଷାଦିନେ ଗାଁ ଲୋକେ ଋଣ ନେଇ କଳନ୍ତର ସହ ପାଚି ହେଲା ପରେ ଫେରସ୍ତ କରୁଛୁ ।

ତା' ମତରେ ସେ ଦୁଇଟି ସଫଳ କାମ କରିଛି । ଗୋଟିଏ ହେଲା, ନିଜ ଗାଁ'ରେ ମଦ ବନ୍ଦ କରି ପାରିଛି । କେମିତି ମଦ ବନ୍ଦ କଲୁ ପଚାରିବାରୁ ସେ କହେ, " ଆମ ଗାଁରେ ଜଣେ ହରିଜନ ଲୋକ ମଦ ରାନ୍ଧୁଥିଲା । ଯାହା ଫଳରେ କି ଗାଁର ସବୁ ଲୋକେ ସେଠାରେ ଯାଇ ମଦ ପିଉଥିଲେ । ଆମ ଆଦିବାସୀ ଲୋକତ ସବୁଦିନେ ଅସୁବିଧାରେ ଅଛୁ । ସେଥିରେ ଏହି ମଦ ପିଇବା ଦ୍ୱାରା ପୁରୁଷ ଲୋକ ଯାହା ରୋଜଗାର କଲା ସବୁ ମଦ ଭାଟିରେ ଗଲା । ମଦ ପିଇ ମାତାଲ ହୋଇ ଘରକୁ ଆସି ମାଇଝୀ (ସ୍ତ୍ରୀ) ଉପରେ

ଚାଲେ ଗାଳିଗୁଲଜ ଓ ଅତ୍ୟାଚାର । ପିଲା ମାଇଝୀ ମଲେ କି ଗଲେ ସେମାନଙ୍କର କିଛି ଯାଏ ଆସେ ନାହିଁ । ତାଙ୍କର ମଦଭାଟି ଅଛି ତ ସବୁଅଛି । ଏହି ସବୁ ଅସୁବିଧାକୁ ଦେଖି ଆମେ ଗାଁର ସବୁ ମା' ଏକାଠି ହୋଇ ବାରମ୍ବାର ମିଟିଂ କରି ଏହି କଥା ଆଲୋଚନା କଲୁ ଏବଂ ମଦ ନ ପିଇବାପାଇଁ ବହୁତ ବୁଝାଇଲୁ । ମାତ୍ର ଆମ କଥା କେହି ଶୁଣିଲେ ନାହିଁ । ଟଙ୍କା ନମିଳିଲେ ଘରୁ ଧାନ, ମାଣ୍ଡିଆ, ବାସନ କୁସନ ବୋରାଇ ନେଇ ଭାଟିରେ ଦେଇ ମଦ ପିଇଲେ । ଆମେ ଅନ୍ୟ କିଛି ଉପାୟ ନପାଇ କେତେଜଣ ମାଆ ମିଶି ଥାନାରେ ଯାଇ ମଦ ରାନ୍ଧିବା କଥା କହିଲୁ । ଥାରେ ଥିବା ହେଡ୍ଡୁ ଆମ କଥା ସବୁ ଶୁଣିଲା ଏବଂ କହିଲା, "ଯେତେବେଳେ ସେ ମଦ ରାନ୍ଧୁଥିବ ସେତେବେଳେ ମତେ ଧରାଇଦେଲେ ମୁଁ ତା କଥା ବୁଝିବି ଓ ତୁମମାନଙ୍କୁ ୨୦ ଟଙ୍କା ଲେଖାଏଁ ପୁରସ୍କାର ଦେବି ।"

ଥାନାରୁ ଫେରି ଆମେ ଗାଁରେ ଏକ ମିଟିଂ କଲୁ । ମିଟିଂରେ ଠିକ୍ ହେଲା ଯେ ଯେତେବେଳେ ସେ ମଦ ରାନ୍ଧିବ, ସେତେବେଳେ ଆମେ ଯାଇ ଥାନା ବାବୁକୁ ଡାକି ଆଣିବୁ । ଏବଂ ତା ସାମନାରେ ମଦ ହାଣ୍ଡି ଚପି ଦେବୁ । ପୁରୁଷମାନଙ୍କ ଅଜାଣତରେ ଆମେ ଏହି କଥା ନିଷ୍ପତ୍ତି ନେଲୁ । ପୂର୍ବ ଯୋଜନା ଅନୁଯାୟୀ ଲୋକ ମଦ ରାନ୍ଧିବା ସମୟରେ ଆମେ ଥାନାକୁ ଯାଇ ହେଡ୍କୁ କହିବାରୁ ସେ ଦୁଇଜଣ ଜମାନ୍କୁ ଆମ ସାଙ୍ଗରେ ପଠାଇଲା । ଯେଉଁଠାରେ ମଦ ରନ୍ଧା ହେଉଥିଲା, ସେଠାରେ ଆମେ ପହଞ୍ଚିବା ମାତ୍ରେ ମଦ ରାନ୍ଧୁଥିବା ଲୋକ ଆମକୁ ଦେଖି ଦୌଡ଼ି ପଳାଇଲା । ତାକୁ ଆମେ ଗୋଡ଼ାଇଲୁ, ହେଲେ ଧରି ପାରିଲୁ ନାହିଁ । ତାପରେ ମଦ ରାନ୍ଧୁଥିବା ହାଣ୍ଡି ସବୁ ଚପିଦେଲୁ । ସେହିଦିନଠାରୁ ଡରରେ ସେ ଆଉ ଆମ ଗାଁରେ ମଦ ରାନ୍ଧୁନି କି ଆମ ଗାଁର କେହି ଲୋକ ମଦ ପିଉ ନାହାନ୍ତି । ବାହାରୁ ଯଦି କେହି ମଦ ପିଇ ଆସି ରାଟୁ (ଗାଳି) କରେ ତାହେଲେ ଆମେ ସମସ୍ତେ ମିଶି ତାକୁ ନିଆଁ ପାଣି ବନ୍ଦ କରି ଦେବାକୁ ସ୍ଥିର କରିଛୁ ।"

ଏହାର ଏକ ବର୍ଷପରେ ଆଉ ଜଣେ ଭାଟିବାଲା ତାଙ୍କ ଗ୍ରାମକୁ ଆସି ମାଆମାନଙ୍କ ଅଜାଣତରେ ପୁରୁଷ ଲୋକମାନଙ୍କୁ ଆଉଥରେ ଭାଟି ବସାଇବା ପାଇଁ ୧୫ ଶହ ଟଙ୍କା ଦେଉଥିଲା । କୌଣସି ସୂତ୍ରରୁ ମାଆମାନେ ଏ ଖବର ପାଇ ଭାଟି ବାଲାକୁ ବିରୋଧ କରିଥିଲେ । ଡାଳିମ୍ବ ମତରେ "ଯଦି ଏହି ଭଳି ସବୁ ମାଆମାନେ ଏକଜୁଟ ହୋଇ ମଦ୍ଦ ବିରୋଧରେ ପଦକ୍ଷେପ ମାନ ନେବେ ତେବେ କେହି ଆଉ ମଦ ରାନ୍ଧିବାକୁ କି ଖାଇବାକୁ ସାହସ କରିବେ ନାହିଁ ।"

ଗତ ୩୦ ଅଗଷ୍ଟ ୧୯୯୬ରେ କୋରାପୁଟଠାରେ ଆୟୋଜିତ ପୁଲିସ୍ ଓ ଜନସାଧାରଣ ଆଲୋଚନା ସଭାରେ ଯୋଗଦେଇ ଡାଳିମ୍ବ କହିଲା, "ଦଶମନ୍ତପୁର

ବ୍ଲକର ବିଭିନ୍ନ ଗ୍ରାମରେ ବେଆଇନ୍ ଭାବେ ଦେଶୀମଦ ରନ୍ଧା ଚାଲିଛି । ଆମେ ମାଆମାନେ ଏକାଠି ହୋଇ ଏହାର ବିରୋଧ କରିବାରୁ ସେମାନେ କହୁଛନ୍ତି, ଆମେ ଥାନା ବାବୁଙ୍କୁ ପ୍ରତିମାସରେ ପଇସା ବାନ୍ଧୁଛୁ । ତେଣୁ ମଦ ରାନ୍ଧିବୁ । ଏହିକଥା ଶୁଣି ପୁଲିସ୍‌ବାବୁମାନଙ୍କ ମୁହଁ ଶୁଖି ଯାଇଥିଲା । କାରଣ ସାମାନ୍ୟ ଜଣେ ଆଦିବାସୀ ମହିଳା ଏଇଭଳି ଏକ ସଭାରେ ସମଗ୍ର ପୁଲିସ୍ ବିଭାଗକୁ ଆକ୍ଷେପ କରିଥିଲା ।

ସେ ପୁଣି କହେ, " ଆଦିବାସୀ ଅଞ୍ଚଳରେ ଯେ କୌଣସି ଉନ୍ନତିମୂଳକ କାମ ପାଇଁ ସଙ୍ଗଠନର ଆବଶ୍ୟକତା ରହିଛି । ତେଣୁ ପ୍ରତିଗାଁରେ ମାଆମାନେ ସଙ୍ଗଠନ କରିବା ଉଚିତ୍ । ଆମେ ମଧ୍ୟ ଆମ ଗାଁରେ ଏକ ମହିଳା ସଙ୍ଗଠନ ଗଠନ କରିଛୁ । ଏଥିରେ ୧୬ ଜଣ ମାଆ ସଭ୍ୟା ଅଛୁ । ଆଉରି ମଧ୍ୟ ମାଆମାନଙ୍କୁ ମିଶେଇବା ପାଇଁ ଚେଷ୍ଟା କରୁଛୁ । ଆମର ଲକ୍ଷ୍ୟ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବୁ । ଗାଁର ଯେ କୌଣସି ସରକାରୀ କାମ ଆସିଲେ ଆମେ ଅନ୍ୟ କାହାକୁ ନଦେଇ ନିଜେ କରିବୁ । ନିଜ ଗାଁର କଜ୍‌ୱେ କାମ ପାଇଁ ସେ କିପରି ଲଢ଼େଇ କରିଥିଲା ସେ ବିଷୟରେ ସେ କହେ, "ଆମ ଗାଁକୁ କଜ୍‌ୱେ କାମ ଆସିଛି ବୋଲି ଆମେ ଜାଣିନାହୁଁ । ମାତ୍ର ହଠାତ୍ ଦିନେ ହେଖିଲା ବେଳକୁ ଆମ ଗାଁ ପାଖ ରାସ୍ତା କଡ଼ରେ କେତେ ଜଣ ଲୋକ ବସି ଟିପ୍‌ସ ପିଟୁଛନ୍ତି । ସେମାନଙ୍କୁ ପଚାରିଲାବେଳକୁ ଜଣା ପଡ଼ିଲା ଯେ ଆମ ଗାଁ କଜ୍‌ୱେ କାମ ପାଇଁ ଚିପ୍‌ସ କରାଯାଇଛି ।

ଏହାର କିଛିଦିନ ପରେ ଜଣେ ଲୋକ ଆମ ଗାଁକୁ ଆସି ଲୋକମାନଙ୍କୁ ବୁଝାଇ ଗାଁକୁ କାମ ଆସିବ ବୋଲି କହି ସାଧା କାଗଜରେ ସନ୍ତକ/ଟିପ ମାରିବାକୁ କହିବା ସମୟରେ ମୁଁ ପହଞ୍ଚି ଯାଇ କାମ ବିଷୟରେ ପଚାରି ଥିଲି ।" ସେ କହିଲା, "ତୁମ ଗାଁକୁ ଏକ କଜ୍‌ୱେ କାମ ମୁଁ ଠିକାରେ ଆଣିଛି ।" ମୁଁ କହିଲି, "ଆମ ଗାଁ କାମ ଆମେ ଜାଣିନୁ ତୁମେ କିପରି ଆଣିଲ ? ଆମେ ବିଡ଼ିଓଙ୍କଠାରୁ ବୁଝି ସାରିଲା ପରେ ଯାହା ହେବ । କାହାରିକୁ ସନ୍ତକ ନଦେବା ପାଇଁ କହି ମୁଁ ସିଧା ଆସିଥିଲି ବ୍ଲକ ଅଫିସ୍‌କୁ । ସେଠାରେ ବିଡ଼ିଓଙ୍କୁ ପଚାରିବାରୁ ସେ କହିଲେ "ମୁଁ ଅନ୍ୟ କାହାକୁ କାମ ଦେଇନାହିଁ । ତୁମ ଗାଁପାଇଁ କାମ ଠିକ୍ ହେଲେ ତୁମକୁ ହିଁ ଦିଆଯିବ ।" କିଛିଦିନ ପରେ ସେହି ଲୋକ ଅନ୍ୟ ଗାଁରୁ କୁଲି ଆଣି କାମ ଆରମ୍ଭ କରିବା ସମୟରେ ମୁଁ ଏବଂ ମୋ ସହିତ ଅନ୍ୟ କେତେଜଣ ମାଆଙ୍କୁ ସାଙ୍ଗରେ ନେଇ ଏହାର ବିରୋଧ କରିବାରୁ ସେହି ଠିକାଦାର ବାଧ୍ୟ ହୋଇ କାମ ବନ୍ଦ କରି ଚାଲିଯାଇଥିଲା । ତାପରେ ଆମେ ଅନେକ ଥର ଏହି କାମ ପାଇଁ ବ୍ଲକକୁ ଯାଇଥିଲେ ମଧ୍ୟ ଆମକୁ କାମ ଦିଆଯାଇ ନାହିଁ କି, ଏପର୍ଯ୍ୟନ୍ତ ସେ କାମ ହୋଇ ନାହିଁ । ଯେଉଁଦିନ ହେଉ ପଛେ ଆମେ କାମ ନିଜେ କରିବୁ, ଅନ୍ୟ କାହାରିକୁ ଦେବୁ ନାହିଁ ବୋଲି ନିଷ୍ପତ୍ତି ନେଇଛୁ ।"

ଶିକ୍ଷା ଉପରେ ମଧ୍ୟ ଡାଲିମ୍ବ ଗୁରୁତ୍ୱ ଦେଇ କହେ, "ଆମ ଗାଁରେ ପାଠ ପଢ଼ିବା ପାଇଁ ସରକାରୀ ସ୍କୁଲ ନାହିଁ । ଗାଁଠାରୁ ୩ କି.ମି. ଦୂରରେ ଦଶମନ୍ତପୁରଠାରେ ଏକ ସରକାରୀ ବିଦ୍ୟାଳୟ ଅଛି । ସେଠାକୁ ଯିବାପାଇଁ ଏକ ନଦୀ ପଡୁଥିବାରୁ ଛୋଟ ଛୋଟ ପିଲାମାନେ ଯାଇପାରୁ ନାହାନ୍ତି । ତେଣୁ ପିଲାମାନେ ପାଠ ପଢ଼ିବାପାଇଁ 'ଅଗ୍ରଗାମୀ' ସଂସ୍ଥା ତରଫରୁ ଏକ ରାତ୍ରିସ୍କୁଲ କରିଛୁ । ମୋର କାମ ହେଲା ସବୁ ପିଲା କିପରି ସେଠାକୁ ପଢ଼ିବାକୁ ଯିବେ ସେ କଥା ଦେଖିବି । ମୁଁ ମଧ୍ୟ ସବୁଦିନେ ସ୍କୁଲ ଯାଇ ଦେଖୁଛି । ଯେଉଁପିଲା ଆସି ନଥାଏ, ତାଙ୍କ ଘରକୁ ଯାଇ ତା'ର ବାପା ମାଆଙ୍କୁ ବୁଝାଇ ପିଲାଙ୍କୁ ପଠେଇବା ପାଇଁ କହେ । ସେମାନେ ମୋ କଥା ଶୁଣନ୍ତି । ମୋର ବାପା ମାଆ ଯଦି ଏତିକି କରି ପାରିଥାନ୍ତେ, ତାହାହେଲେ ମୁଁ କ'ଣ ଏମିତି ହୋଇ ରହିଥାନ୍ତି ? ବହିଟିଏ ଦେଖିଲେ ପଢ଼ିପକାଇବାକୁ ଇଛାହୁଏ । ମାତ୍ର କ'ଣ କରିବି ପଢ଼ି ଜାଣିଥିଲେ ସିନା ହୋଇଥାନ୍ତା ! ପାଠ ପଢ଼ିନି ବୋଲି କ'ଣ ମୁଁ ଚୁପ୍ ହୋଇ ବସିଯିବି । ପାଠ ସିନା ପଢ଼ିନି, ପାଟିତ ଅଛି । ଯାହା ଆମେ କଲମ ମୁନରେ କରି ନପାରିବା, ତାହାକୁ ଆମେ ପାଟିରେ ତ କରି ପାରିବା । ଅନ୍ୟାୟ, ଅତ୍ୟାଚାର ବିରୋଧରେ ସ୍ୱରତୋଳନ କରିବା ପାଇଁ ଆମ ଆଦିବାସୀ ମାଆମାନଙ୍କ ପାଟି ହିଁ ଯଥେଷ୍ଟ । ତଥାପି ମୁଁ ପିଲାମାନଙ୍କ ପାଖରେ ବସି ଅକ୍ସ ଅକ୍ସ ଲେଖି ଶିଖୁଛି । ବହି ଆଡ଼େଇ ଛବି ଦେଖୁଛି । ଏବେ ମୁଁ ମୋର ନାଆଁ ଲେଖି ପାରିଲିଣି । ଲାଜ ଛାଡ଼ି କିପରି ଆମ ଗାଁର ସବୁ ମାଆ ନିଜର ନାମ ଲେଖିପାରିବେ, ସେ କଥା ମଧ୍ୟ ମୁଁ ଚେଷ୍ଟା କରୁଛି ।

ଏହିସବୁ କାମ କରିବା ଦ୍ୱାରା ତୋର ବ୍ୟକ୍ତିଗତ ଭାବେ କ'ଣ ଉନ୍ନତି ହୋଇଛି ବୋଲି ପଚାରିବାରୁ ସେ କହେ, "ଘରେ ଥିଲେ ମୁଁ କଣ ଏତେ କଥା ଜାଣି ପାରିଥାନ୍ତି । ଲୋକମାନଙ୍କ ପାଇଁ କରିବାକୁ ମତେ ବହୁତ ଖୁସି ଲାଗୁଛି । କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଗ୍ରାମସ୍ତରୀୟ ସଂଗଠନ ଇତ୍ୟାଦି ବିଷୟରେ ମୁଁ କେତେକଥା ଶିଖି ପାରିଛି । ସରକାରୀ ଏବଂ ବେସରକାରୀ ସ୍ତରରେ ଥିବା ଅଫିସରମାନଙ୍କ ସାମନାରେ କଥା କହିବାର ସାହାସ ଆସିଛି । ଓଡ଼ିଶା ତଥା ଓଡ଼ିଶା ବାହାରେ ଥିବା ଆଦିବାସୀ ଭାଇ ଭଉଣୀମାନଙ୍କ ସହିତ ମିଶିବାର ସୁଯୋଗ ପାଇଛି ।"

ସେ କହେ, "ତାଲିମ୍ ନେଲେ କିମ୍ବା କେତେଟା ରାଜ୍ୟ ବୁଲି ଆସିଲେ ସବୁ କାମ ହୋଇ ଯିବନାହିଁ । ଯାହା ମୁଁ ଶିଖିଛି, ତାକୁ କାମରେ ଲଗାଇଲେ ଯାଇ ଭଲ ହେବ । ଏକଥା ମୁଁ କରିକି ଦେଖାଇ ପାରିବି ବୋଲି ଆଶା କରିଛି ଏବଂ ଏଥିପାଇଁ ମତେ ସମସ୍ତେ ସାହାଯ୍ୟ ସହଯୋଗ କରିବେ ବୋଲି ମୋର ଆଶା ରହିଛି ।"

ଅକ୍ଟୋବର - ୧୯୯୬

# ଲାଗି ଲାଗି ପାଇଲେ

କାହାଣୀ ନୁହେଁ ଏକ ସତ ଘଟଣା । ଘଟଣାଟି ଘଟିଯାଇଛି ରାୟଗଡ଼ା ଜିଲ୍ଲାର ମାଣ୍ଡିବିଶି ପଞ୍ଚାୟତର ଚିଲିଗୁଡ଼ା ଗାଁରେ । ମାଣ୍ଡିବିଶି ପଞ୍ଚାୟତଠାରୁ ତିନି କିଲୋମିଟର ଦୂରରେ ଗାଆଁଟି ଅବସ୍ଥିତ । ଆଦିବାସୀ ଓ ହରିଜନ ମିଶି ଥିଲେ ମଧ୍ୟ ସେଠାରେ ଆଦିବାସୀ ପରିବାର ସଂଖ୍ୟା ଅଧିକ । ସେମାନେ ଡଙ୍ଗର ଚାଷ କରି ନିଜର ପରିବାର ଚଳାଇଥାନ୍ତି । ଏହି ଗାଁରେ ଥିବା ୧୨ଟି ଜମିହୀନ ଆଦିବାସୀ ପରିବାର ଆଜକୁ ପ୍ରାୟ ପାଞ୍ଚବର୍ଷରୁ ବେଶି ଦିନ ହେବ 'କୁଟୀନିଦର' ଡଙ୍ଗରର ଅନାବାଦୀ ଜମିକୁ ଲାଗି ମାଣ୍ଡିବିଶିର ଜଣେ ସାହୁକାରର ୨ ଏକର ୧୨ ଡେସିମିଲ୍ ପଟ୍ଟା ଜମି ଅଛି । ତେଣୁ ଆଦିବାସୀମାନେ ଚାଷ କରୁଥିବା ଅନାବାଦୀ ଜମିକୁ ନିଜର ପଟ୍ଟା ଜମି କହି ସେମାନଙ୍କଠାରୁ ଭାଗ ନେଉଥିଲେ । କାରଣ ଏହି ନିରୀହ ସରଳ ଆଦିବାସୀମାନେ ଜାଣି ପାରୁନଥିଲେ ପ୍ରକୃତରେ ସେହି ଜମି ଅନାବାଦୀ ଜମି କି ସାହୁକାରର ପଟ୍ଟା ଜମି ? ଏହାର ସତ୍ୟାସତ୍ୟ ଜାଣିବା ପାଇଁ ସେହି ୧୨ ଜଣ ଲୋକ ତଦନ୍ତ ଲାଗି ୧୯୯୨ ମସିହା ସେପ୍ଟେମ୍ବର ମାସ ୨୨ ତାରିଖରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ଜିଲ୍ଲାପାଳ ଓ ସ୍ଥାନୀୟ ତହସିଲଦାରଙ୍କୁ ଆବେଦନ କଲେ ।

ଏହାର କିଛିଦିନ ପରେ ତହସିଲଦାରଙ୍କ ନିର୍ଦ୍ଦେଶକ୍ରମେ ମାଣ୍ଡିବିଶିର ରାଜସ୍ୱ ନିରୀକ୍ଷକ ସେହି ୧୨ ଜଣ ଆଦିବାସୀ ଓ ସାହୁକାରଙ୍କୁ ଡାକି ଏହାର ସର ଜମିନ୍ ତଦନ୍ତ କଲେ ଏବଂ ସେହି ୧୨ ଜଣ ଆଦିବାସୀ ନାମରେ ସରକାରଙ୍କ ନିୟମାନୁଯାୟୀ ଜବରଦଖଲ ମକଦ୍ଦମା କଲେ ଓ କହିଲେ, "ଆଜିଠାରୁ ଏହି ଜମିରୁ ସାହୁକାରକୁ କିଛି ଭାଗ ଦେବନାହିଁ ।" ଏହି ତଦନ୍ତ ପରେ ମକଦ୍ଦମା ଅନୁଯାୟୀ ପ୍ରତ୍ୟେକ ୨୦ ଟଙ୍କା ଲେଖାଏଁ ଦେଇ ରସିଦ୍ ମଧ୍ୟ ନେଇଥିଲେ । ଏହାପରେ ସାହୁକାର ସେହି ଆଦିବାସୀ ମାନଙ୍କୁ ବହୁତ ଗାଳି ଗୁଲଜ କରିବା ସଂଗେ ସଂଗେ ମାଡ଼ ମାରିବାକୁ ଧମକ ମଧ୍ୟ ଦେଲା ଏବଂ ସେହି ୧୨ ଜଣଙ୍କ ନାମରେ କାଶୀପୁର

ଥାନାରେ ଏକ ମକଦ୍ଦମା ଦାଏର କଲା । ଥାନାବାବୁ ସେହି ୧୨ ଜଣଙ୍କୁ ଥାନାକୁ ଡାକି କହିଲେ, "ଯଦି ତୁମେମାନେ ସେହି ଜମି ଫସଲରୁ କୌଣସି ଭାଗ ସାହୁକାରକୁ ନଦିଅ, ତେବେ ତୁମମାନଙ୍କୁ ଦଣ୍ଡ ଦିଆଯିବ ।" ସେତେବେଳେ ସେହି ଆଦିବାସୀମାନେ କହିଲେ, "ଆପଣ ଯାହା କରିବାର କରନ୍ତୁ କିନ୍ତୁ ଆମେ କୌଣସି ପ୍ରକାରେ ସେହି ଜାଗା ଛାଡ଼ିବୁ ନାହିଁ କି ସାହୁକାରକୁ ଭାଗ ଦେବୁ ନାହିଁ ।" ଏହି କଥା ଶୁଣି ଥାନାବାବୁ କହିଲେ ତଦନ୍ତ ପରେ ଏହାର ବିଚାର କରିବେ । ମାତ୍ର ତଦନ୍ତ କରିବାକୁ ଆଉ ଆସିଲେ ନାହିଁ ।

ଏହାପରେ ଫସଲ ଅମଳ ସମୟ ଆସିଲା । ସାହୁକାରର ୨ ଏକର ୧୨ ଡିସିମିଲ୍ ଜମିରେ ଭାଗ ଚାଷ କରିଥିବାରୁ ଧାନ କାଟିବା ବେଳକୁ ସେମାନେ ସାହୁକାରକୁ ଡାକିଥିଲେ । ମାତ୍ର ସାହୁକାର କହିଲା, "ତୁମେମାନେ କରିଥିବା ଡଙ୍ଗର ଚାଷରୁ ମତେ ଭାଗ ଦେଲେ ମୁଁ ଯିବି ନହେଲେ ମୁଁ ଯିବିନାହିଁ । ମୋ ଅନୁପସ୍ଥିତିରେ ଯଦି ତୁମେ ଧାନ କାଟି ନେବ ତାହେଲେ ମୁଁ ତୁମ ନାମରେ ଚୋରି ମକଦ୍ଦମା କରିବି ।" ଏକଥା ଶୁଣି ସେମାନେ ତହସିଲଦାରଙ୍କ ପରାମର୍ଶ ଲୋଡ଼ିଲେ । ତହସିଲଦାର କହିଲେ, " ତୁମେ ଆଉଥରେ ତାକୁ ଡାକ, ସେ ଯଦି ନଯିବ ତାହେଲେ ତୁମେମାନେ ମତେ ଜଣାଇଲେ ମୁଁ ଲୋକ ପଠାଇବି ଓ ତୁମେମାନେ ଧାନ କାଟି ଅଧାଧାନ ଜମି ପାଖରେ ରଖି ଆଉ ଅଧେ ନେଇଯିବ ।" ଏହି କଥା କୌଣସି ମତେ ସାହୁକାର ଜାଣିପାରି ଅନ୍ୟ ଉପାୟ ନପାଇ ଧାନ କଟା ବେଳେ ଜମି ପାଖକୁ ଆସି ତା ଜମିରୁ ଅଧା ଧାନ ଘରକୁ ନେଲା । ଡଙ୍ଗର ଚାଷରୁ ସେମାନେ କିଛିହେଲେ ଭାଗ ଦେଲେ ନାହିଁ ।

ଏହି କଥା କହିଲା ବେଳକୁ ଯେତିକି ସହଜ ଲାଗୁଛି, ସେତିକି ସହଜରେ କାମଟା ହୋଇ ନାହିଁ । ଜମିପାଇଁ ଆବେଦନ କରିବା ଦିନଠାରୁ ଫସଲ ଅମଳ ପର୍ଯ୍ୟନ୍ତ ସେହି ସାହୁକାର ଏହି ନିରୀହ ଆଦିବାସୀମାନଙ୍କୁ ବହୁତ ଖରାପ ଭାଷାରେ ଗାଳି ଗୁଲଜ କରିବା ସହିତ ଜୀବନରୁ ମାରି ଦେବାକୁ ଧମକ ମଧ୍ୟ ଦେଇଛି । ଏପରିକି ଫସଲ ଜଗିବା ପାଇଁ କରିଥିବା ମଞ୍ଚାକୁ ମଧ୍ୟ ପୋଡ଼ି ଦେଇଛି । ମାତ୍ର ସବୁ ସମୟରେ ପରିସ୍ଥିତିକୁ ମୁକାବିଲା କରିବା ପାଇଁ ଏହି ବାର ଘର ଆଦିବାସୀମାନଙ୍କ ସ୍ତ୍ରୀମାନଙ୍କ ସହିତ ଅନ୍ୟ ଗାଁର ମା'ମାନେ ମଧ୍ୟ ସାହାଯ୍ୟ କରିବା ଲାଗି ଆଗକୁ ବାହାରି ଆସିଛନ୍ତି ।

କିନ୍ତୁ ସେହି ସାହୁକାର କୂଟ ଚକ୍ରାନ୍ତ ସରିନାହିଁ । ସେମାନଙ୍କୁ ହଇରାଣ କରିବା ଲାଗି ଆହୁରି ଷଡ଼ଯନ୍ତ୍ର କଲା । ପାଖାପାଖି ଗାଁରେ ଲୋକଙ୍କୁ ମତାଇ କହିଲା ଯେ

"ଜମିରୁ ଚିଲିଗୁଡ଼ା ଲୋକ କାହିଁକି ଏକୁଟିଆ ଫସଲ ଖାଇବେ, ତୁମେମାନେ କାହିଁକି ଖାଇବ ନାହିଁ?" ଏହି କଥାରେ ପଡ଼ି ଗତ ୫ ଅକ୍ଟୋବର ୧୯୯୫ ଦିନ ୧୦ ଘଣ୍ଟା ସମୟରେ ମାଣ୍ଡିବିଶିର ପ୍ରାୟ ସବୁଲୋକ 'କୁଟିନିଦର' ଜମିକୁ ଯାଇ ଦର ପାଚିଲା ଧାନସବୁକୁ କାଟି ଆଣିଲେ । ଚିଲିଗୁଡ଼ା ଲୋକ ଏହାର ପ୍ରତିରୋଧ କରି ପାରି ନଥିଲେ । କାରଣ ସେମାନଙ୍କ ସଂଖ୍ୟାଥିଲା ବହୁତ ବେଶୀ । ଆଉ କିଛି ଉପାୟ ନପାଇ ୬ ଅକ୍ଟୋବର ୧୯୯୫ରେ ସେମାନେ ଥାନାରେ ଗୋଟିଏ ଏତଲା ଦେଲେ ଏବଂ ୯ ଅକ୍ଟୋବର ୧୯୯୫ ରିଖରେ ପୁଲିସ୍ ଆସି ଧାନ କାଟିବା ଲୋକଙ୍କ ନାମ ଲେଖିନେଇ ଅକ୍ଟୋବର ୧୦ ତାରିଖରେ ଥାନାରେ ହାଜର ହେବା ପାଇଁ କହିଲେ । ମାତ୍ର ସେମାନେ ନ୍ୟାୟ ପାଇ ପାରିଲେ ନାହିଁ । ପୁଲିସ୍‌ର କଥା ଅନୁସାରେ ୧୧ ତାରିଖରେ ଏକ ଟ୍ରକଭଡ଼ା କରି ନାମ ଲେଖା ଯାଇଥିବା ସବୁ ଲୋକ କାଶୀପୁର ଥାନାରେ ପହଞ୍ଚିଲେ । ବଡ଼ବାବୁ ଥାନାରେ ନଥିବାରୁ ସେମାନେ ସନ୍ଧ୍ୟାରେ ଫେରିଗଲେ । ମାତ୍ର ଚିଲିଗୁଡ଼ା ଲୋକ ଏସବୁ ବିଷୟରେ କିଛି ଜାଣି ନପାରିବାରୁ ୧୭ ଅକ୍ଟୋବର ୧୯୯୫ରେ ଥାନାକୁ ଆସି ପଚାରିଲେ । ଥାନାବାବୁ କିଛି ନଜାଣିବା ପରି ବ୍ୟବହାର କରିବାରୁ ସେମାନେ ଫେରିଯାଇଥିଲେ ।

ତା ପରଦିନ ତା ୧୮.୧୦.୯୫ ରିଖରେ ଜିଲ୍ଲାପାଳ କାଶୀପୁର ଆସୁଥିବାର ଖବର ପାଇ ସେମାନେ ଦରଖାସ୍ତ ଲେଖି କାଶୀପୁର ଡାକ ବଙ୍ଗଳାରେ ଜିଲ୍ଲାପାଳଙ୍କୁ ଦେଖାକରି ସବୁ କଥା କହିଲେ । ସମସ୍ତ କଥା ଶୁଣି ସାରିବା ପରେ ଜିଲ୍ଲାପାଳ କହିଲେ, "ଯେହେତୁ ତୁମେମାନେ ଦଖଲରେ ଅଛ, ତେଣୁ ଜମିଟା ତୁମ ନାମରେ ହେବ ।" ଏହାର ତଦନ୍ତ କରିବାକୁ ତହସିଲଦାରଙ୍କୁ କହିଲେ ଏବଂ ମାଣ୍ଡିବିଶିର ଲୋକମାନେ ଯେଉଁ ପରିମାଣ ଧାନ କାଟି ନେଇଛନ୍ତି ସେହି ପରିମାଣର ଧାନ ଚିଲିଗୁଡ଼ା ଲୋକଙ୍କୁ ମିଳିବ ବୋଲି ପ୍ରତିଶ୍ରୁତି ଦେବାରୁ ସେମାନେ ଆଶ୍ୱସ୍ତ ହୋଇ ଫେରିଆସିଥିଲେ ।

ଏହାପରେ ଶୁଣିବାକୁ ମିଳେଯେ, ଗରିବ ଆଦିବାସୀମାନଙ୍କ ବିରୋଧରେ ମକଦ୍ଦମା ଲଢ଼ିବା ପାଇଁ ସେହି ସାହୁକାର ମାଣ୍ଡିବିଶିର ରାଜସ୍ୱ ଗ୍ରାମରୁ ସମସ୍ତ ପରିବାରରୁ ମୋଟ ତିନିହଜାର ଛଅ ଶହ ଟଙ୍କା ଆଦାୟ କରି ତାକୁ ମଧ୍ୟ ଖାଇଦେଇଛି ।

ବର୍ତ୍ତମାନ ରାୟଗଡ଼ା କୋର୍ଟରେ କେଶ୍ ବିଚାର ପାଇଁ ରହିଛି ଓ ଆଦିବାସୀଙ୍କ ଜମିକୁ କାଟିନେଇଥିବା ଧାନ ସେମାନେ ଫେରସ୍ତ ପାଇନାହାନ୍ତି କି ଉପଯୁକ୍ତ ନ୍ୟାୟ ପାଇ ନାହାନ୍ତି । ତଥାପି ସେମାନେ ଏ ବର୍ଷ ସେହି ଜମିରେ ଘାଟୁମାରି ଜମିକୁ ସମତଳ କରି ଚାଷ କରିଛନ୍ତି ।

ଗତ ଅଗଷ୍ଟ ମାସ ୧୯୯୬ ମସିହା ପ୍ରଥମ ସପ୍ତାହରେ 'କୁଟୀନିଦର' ଜମି ଏହି ୧୨ ଜଣଙ୍କ ନାମରେ ପଟ୍ଟା କରାଯିବ । ଯଦି କାହାର କିଛି ଅଭିଯୋଗ ଥାଏ, ତେବେ ତା ୧୭.୮.୯୬ ରିଖ ସୁଦ୍ଧା ତହସିଲଦାରଙ୍କୁ ଜଣାଇବେ ବୋଲି ତହସିଲ୍‌ଦାର ମାଣ୍ଡିବିଶିର ରାଜସ୍ୱ ନିରୀକ୍ଷକଙ୍କ କାର୍ଯ୍ୟାଳୟରେ ଏକ ନୋଟିସ୍ ଦେଲେ । ଏହି କଥା ଶୁଣିବା ପରେ ସାହୁକାର ହଳିଆ ସାହିରୁ ୧୦ଜଣ ଆଦିବାସୀଙ୍କୁ ନେଇ ଅଭିଯୋଗ କଲେ ଯେ ସେହି ଜମି ହଳିଆ ସାହିର ଆଦିବାସୀଙ୍କୁ ଦିଆଯାଉ । କିନ୍ତୁ ତହସିଲଦାର ବିଚାର କରି ଚିଲିଗୁଡ଼ାର କୁଟିନିଦର ଜମିକୁ ଚାଷ କରୁଥିବା ୧୨ଜଣ ଆଦିବାସୀଙ୍କ ନାମରେ ରେକର୍ଡ଼ କରି ସ୍ଥାୟୀ ପଟ୍ଟା ଦେବାର ବ୍ୟବସ୍ଥା କଲେ, ଏବଂ ହଳିଆ ସାହି ଗରିବ ଆଦିବାସୀଙ୍କୁ ସେହି ଜମିକୁ ଲାଗି ରହିଥିବା ଡଙ୍ଗର (ଯେଉଁଠିରେ ସରକାର କାଜୁ ଚାରା ଲଗାଇଛନ୍ତି) ତାହା ଦେବା ପାଇଁ ସ୍ଥିର କରିଛନ୍ତି ।

ଦୀର୍ଘଦିନ ଧରି ଧୈର୍ଯ୍ୟ ଆଉ ସାହସର ସହିତ ଚିଲିଗୁଡ଼ାର ଲୋକମାନେ ସଂଗ୍ରାମ କରି ସେମାନଙ୍କ ଜମିକୁ ଫେରି ପାଇଲେ ଏବଂ ସାହୁକାରକୁ ହଟାଇଲେ । ଏହା ଫଳରେ ଆଉ ଗୋଟିଏ ଗାଁର ଲୋକମାନଙ୍କୁ କିଛି ଜମି ମିଳିବାରୁ ସେମାନେ ମଧ୍ୟ ଉପକୃତ ହେଲେ । ଏହା ଅନ୍ୟ ଆଦିବାସୀ ମହିଳା ପୁରୁଷମାନଙ୍କୁ ସେମାନଙ୍କ ନ୍ୟାଯ୍ୟଦାବି ପାଇବା ପାଇଁ ଲଢ଼େଇ କରିବାକୁ ନିଶ୍ଚୟ ପ୍ରେରଣା ଯୋଗାଇବ ବୋଲି ଆମେ ଆଶା କରୁଛୁ ।

ଅକ୍ଟୋବର - ୧୯୯୬



# ଘଣ୍ଟିଆଦରର ମହିଳା ବଳ

ପୂରା ଗାଆଁଟା ଖୁସିରେ ମତୁଆଲା । ଲୋକଙ୍କର ବହୁତ ଦିନର ଦାବି ଫଳବତୀ ହୋଇଛି । ଏହା ଘଣ୍ଟିଆଦର ଗାଁର ଘଟଣା । ଏହା ମୟୂରଭଂଜ ଜିଲ୍ଲାର ଠାକୁରମୁଣ୍ଡା ବ୍ଲକ ମୁଖ୍ୟାଳୟଠାରୁ ୧୭ କି.ମି. ଦୂରରେ ଅବସ୍ଥିତ । ବର୍ଷା ଦିନେ ସାଳନ୍ଦୀ ନଦୀ ଏ ଗାଁ ପାଇଁ ଗୋଟିଏ ଅଭିଶାପ । ଏହାର ପ୍ରଖର ସ୍ରୋତରେ ଏହାକୁ କେହି ପାରିହୋଇ ପାରନ୍ତି ନାହିଁ । ଫଳରେ ତିନିଦିନ କାମରେ ଲାଗୁଥିବା ଜିନିଷ ପତ୍ର କିଣା ବିକାରେ ଘୋର ଅସୁବିଧା ହୋଇଥିଲା ।

ଏହି ନଦୀ ଉପରେ ଗୋଟିଏ ପୋଲ ନିର୍ମାଣ ପାଇଁ ବହୁ ଦିନରୁ ଲୋକମାନେ ଦାବି କରି ଆସୁଥିଲେ ମଧ୍ୟ ଏତେଦିନପରେ ସରକାର ଲୋକମାନଙ୍କ ଗୁହାରି ଶୁଣିଲେ ଏବଂ ପୋଲତିଆରି କାମ ଆରମ୍ଭ ହେଲା । ମାତ୍ର ଯେଉଁମାନେ ସେଠାରେ କାମ କଲେ ସେମାନଙ୍କୁ ଦୈନିକ ମଜୁରି ୨୫ ଟଙ୍କା ପାଇବାରୁ ବଞ୍ଚିତ କରାଗଲା । ମଜୁରି ବାବଦକୁ ପୁରୁଷମାନଙ୍କୁ ୧୫ ଟଙ୍କା ଏବଂ ମହିଳାମାନଙ୍କୁ ୧୨ ଟଙ୍କା ଦିଆଗଲା ।

ଏମିତି କିଛି ଦିନ କଟିଗଲା... ମଜୁରି ସଂକ୍ରାନ୍ତରେ ଯଦି କିଛି କୁହାଯାଏ, ତେବେ କାମ ବନ୍ଦ ହୋଇଯିବାର ସମ୍ଭାବନା ଥିବାରୁ ଲୋକମାନେ କିଛି କହି ପାରନ୍ତି ନାହିଁ । ମାତ୍ର ଏମିତି କେତେ ଦିନ ଚାଲିବ ? ଦିନେ ଦେଖାଗଲା ସ୍ଥାନୀୟ ଗ୍ରାମ ପଞ୍ଚାୟତ ଅଫିସ୍‌ରେ ଏହି ଗାଁର ଉତ୍ସାହୀ ମହିଳା ବୈଦେହୀ ମହାନ୍ତ ଓ ତାର କେତେ ଜଣ ଅନୁଗାମୀ ମାଆ, ସ୍ଥାନୀୟ ସରପଞ୍ଚଙ୍କୁ ସେମାନଙ୍କ ଦାବି ଜଣାଇବା ସହିତ ଦୈନିନ୍ଦିନ ସରକାରୀ ମଜୁରି ବିଷୟରେ ତଥା ସେମାନଙ୍କ ପ୍ରତି ହେଉଥିବା ଅବିଚାର ପ୍ରତି ଦୃଷ୍ଟି ଆକର୍ଷଣ କରିଥିଲେ । ସରପଞ୍ଚ ମଧ୍ୟ ଯଥାସମ୍ଭବ ସମସ୍ୟାର ସମାଧାନ ପାଇଁ ପଦକ୍ଷେପ ନେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ସରକାରୀ ଯୋଜନା ସଂପର୍କରେ ଧାରଣା ଦେଇ ସେମାନଙ୍କୁ ଉତ୍ସାହିତ କରିଥିଲେ । ଫଳରେ ଏହି ମହିଳା ଦଳ ଅଧିକ ସକ୍ରିୟ ହୋଇ କାମ କରିବାକୁ ଆଗେଇ ଆସିଲେ । ମାଆମାନଙ୍କୁ ଏକାଠି

କରାଇ ସବୁ ସମସ୍ୟାର ସମାଧାନ କରିବାର ଆଶା ସେମାନଙ୍କର ଦୃଢ଼ ହେଲା । ଥରକୁ ଥର ମିଟିଂ କଲେ ଏବଂ ମିଟିଂରେ ସବୁ କଥା ଆଲୋଚନା କଲେ । ପ୍ରଥମେ ପ୍ରଥମେ ପୁରୁଷମାନେ ଏହା ଆଂଶିକ ଭାବେ ବିରୋଧ କରୁଥିଲେ । ଶେଷରେ ମହିଳାମାନଙ୍କ ମହତ ଉଦ୍ଦେଶ୍ୟ ପ୍ରତି ସହାନଭୁତି ଦେଖାଇ ସହଯୋଗ କରିବାକୁ ଆଗେଇ ଆସିଲେ । ମାଆମାନଙ୍କର ସଂଗଠନ ଦୃଢ଼ ହେଲା । ପ୍ରାଥମିକ ସ୍ତରରେ କାମ କରାଯାଉଥିବା ଠିକାଦାରଠାରୁ କୁଲି ମଜୁରି ୨୫ ଟଙ୍କା ଦାବି କରି ପାଇଲେ । ସେଥିପାଇଁ ସେମାନଙ୍କୁ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ତାପରେ ହଠାତ୍ ଦିନେ ଦେଖିବାକୁ ମିଳିଲା ଗାଁ ମଝିରେ ଏକ ଟ୍ରକ ଓ ସାମାନାରେ ବୈଦେହୀ ସହିତ ଅନ୍ୟ କେତେଜଣ ମାଆ, ଦୁଇ ପକ୍ଷଙ୍କ ମଧ୍ୟରେ ପାଟିତୁଣ୍ଡ ଆରମ୍ଭ ହୋଇଗଲା । ସଙ୍ଗେସଙ୍ଗେ ଗାଁ ଲୋକେ ସେଠାରେ ଆସି ରୁଣ୍ଡ ହୋଇଗଲେ । ସମସ୍ତ ବିଷୟରେ ଅବଗତ ହେଲେ ଯେ ନିତିଦିନ କାଠ ବ୍ୟବସାୟ କରୁଥିବା ବ୍ୟବସାୟୀ ଏବଂ ତାହାକୁ ଆଖିବୁଜି ସହଯୋଗ କରୁଥିବା ଜଙ୍ଗଲ ବିଭାଗର କର୍ମଚାରୀଙ୍କ ସମର୍ଥନରେ ଏହି ଅଞ୍ଚଳରୁ ଟ୍ରକ୍ ଟ୍ରକ୍ କାଠ କଟା ଯାଇ ବାହାରକୁ ଚାଲାଣ କରାଯାଉଛି । ଫଳରେ ଜଙ୍ଗଲ ନଷ୍ଟ ହେବା ସଙ୍ଗେ ସଙ୍ଗେ ଆଦିବାସୀଙ୍କ ଜୀବୀକା ନିର୍ବାହରେ ବାଧା ସୃଷ୍ଟି ହେବାକୁ ଲାଗିଛି । ଏହି କଥାକୁ ବୁଝି ଏହାର ସମାଧାନ ନିମନ୍ତେ ମହିଳାମାନେ ଅଣ୍ଟା ଭିଡ଼ିଲେ ଏବଂ ଆଗକୁ ଆସି କାଠ ଟ୍ରକକୁ ଅଟକାଇଲେ । ଶେଷରେ ମହିଳାମାନଙ୍କୁ ବିରୋଧ କରି କାଠ ବୋଝେଇ ହୋଇ ଯାଉଥିବା ଟ୍ରକକୁ ସମସ୍ତେ ଅଟକାଇଲେ । ଟ୍ରକ୍ ଆଉ ଯାଇ ପାରିଲାନାହିଁ । ଗାଁର ଲୋକମାନେ ଟ୍ରକ୍‌ରୁ କାଠ ସବୁ ବାହାର କରି ଗୋଟିଏ ଜାଗାରେ ଗଦା କରି ଦେଲେ । ଏବେ ମଧ୍ୟ ସେହି କାଠ ଜମା ହୋଇ ରହିଛି । ସେହି ଦିନଠାରୁ କାଠ କଟାହୋଇ ବାହାରକୁ ଚାଲାଣ ହେବା ବନ୍ଦ ହୋଇଯାଇଛି ।

ଏହିପରି ଅନେକ ଉନ୍ନତି ମୂଳକ କାମ କରି ଏବେ ସେହି ପାଖରେ ଥିବା ଆହୁରି ଚାରୋଟି ଗାଁର ମାଆମାନଙ୍କୁ ସାଙ୍ଗରେ ମିଶାଇ ଏକ ମିଳିତ ଜଙ୍ଗଲ କମିଟି ଗଠନ କରି ଜଙ୍ଗଲ ସୁରକ୍ଷା କରିଛନ୍ତି । ଏହି ସକ୍ରିୟ ମହିଳାମାନେ କହନ୍ତି, ଏପର୍ଯ୍ୟନ୍ତ ଆମେ କିଛି କାମ କରିପାରି ନାହୁଁ । ଆମକୁ ଆହୁରି ଆହୁରି ଅନେକ କାମ କରିବାକୁ ଅଛି । ଆମ ସାଙ୍ଗରେ ଆହୁରି ମାଅମାନଙ୍କୁ ମିଶାଇ ଆମ ସଂଗଠନକୁ ମଜଭୂତ କରି ଗାଁର ବିଭିନ୍ନ ଉନ୍ନତି ମୂଳକ କାମ କରିବାକୁ ନିଷ୍ପତ୍ତି ନେଇଛୁ ।

ଅକ୍ଟୋବର - ୧୯୯୬

# ଉଜ୍ଜଳ ଦେଇର ଜାଣିବାର ଅଧିକାର

ଏହା ସମସ୍ତଙ୍କୁ ଜଣାଯେ, ଆଦିବାସୀ ଲୋକମାନେ ପରିଶ୍ରମ କରି ବଞ୍ଚିବା ଜାଣନ୍ତି। ଡଙ୍ଗର ମାରି କଠିନ ପରିଶ୍ରମ କରି ପିଲାଛୁଆଙ୍କୁ ପାଳିବା ସେମାନଙ୍କ ଜୀବନର ସାଧାରଣ ଅଭ୍ୟାସ। ସେମାନଙ୍କ ପାଖରେ ନେତୃତ୍ୱର ଅଭାବ ରହିଛି। ସେମାନେ ଅଶିକ୍ଷିତ, କୌଣସି କାମରେ ଆଗ୍ରହ ନାହିଁ, ଭବିଷ୍ୟତ ତଥା ନିଜର ଉନ୍ନତି ବିଷୟରେ ଚିନ୍ତା କରୁନାହାନ୍ତି, ସରକାରଙ୍କର ଯୋଜନା ବିଷୟରେ ମୁଣ୍ଡ ଖେଳାନ୍ତି ନାହିଁ। ତେଣୁ ଯେତେ ବଡ଼ବଡ଼ ସମସ୍ୟା ସବୁ ଆଦିବାସୀ ଅଞ୍ଚଳରେ ହିଁ ମୁଣ୍ଡ ଟେକୁଛି। ଯେତେ ପ୍ରକାରର ଶୋଷଣ ଠକେଇ ଏହି ଆଦିବାସୀ ଅଞ୍ଚଳରେ ହିଁ ଦେଖାଯାଉଛି।

କିନ୍ତୁ କିଏ ଜାଣିଥିଲା ଆଦିବାସୀ ପରିବାରରେ ଜନ୍ମ ନେଇଥିବା ଆଦିବାସୀ ଝିଅ ଉଜ୍ଜଳ ଦେଇ ଦିନେ ଗାଁ, ସମାଜ ଓ ପରିବାରକୁ ଉଜ୍ଜଳ କରି ଆଗକୁ ବାହାରି ଆସିବ ବୋଲି। ସମୟ ଆସିଛି ସେମାନେ ନିଜ ଗାଁଗହଳି କଥା ଚିନ୍ତା କରିପାରୁଛନ୍ତି। ନିଜ ଜୀବନ ଜୀବୀକା ଉପରେ ବାଧା ସୃଷ୍ଟି ହେଉଛି ଭାବି ସଂଗ୍ରାମ କରି ପାରୁଛନ୍ତି। ସ୍ୱାମୀ ପୁଲକୁମାର ମାଝୀଙ୍କର ପ୍ରେରଣା ନିଜର ଆଗ୍ରହ ସ ନିଜ ନେତୃତ୍ୱର ବିକାଶ ଘଟାଇ ଉଜ୍ଜଳ ଦେଇ ଆଜି ନିଜଗାଁ, ସମାଜ ତଥା ନିଜ ଅଞ୍ଚଳର ଉନ୍ନତି କାମ କରିବା ପାଇଁ ଆଗେଇ ଆସିବା ସହିତ କାଶୀପୁର ବ୍ଲକରେ କାମ କରୁଥିବା ଓଡ଼ିଶା ଆଦିବାସୀ ଉନ୍ନୟନ ସଂସ୍ଥା (ଆଇଫାଡ଼୍) ଷ୍ଟିୟିରଂ କମିଟିରେ ଜଣେ ମେମ୍ବର ହେବାର ସୁଯୋଗ ପାଇଛି। ଆଇଫାଡ଼୍ ମିଟିଂରେ କଣ କଥାବାର୍ତ୍ତା ହେଉଛ ପଚାରିବାରେ ଉଜ୍ଜଳ ଦେଇ କହନ୍ତି।

ଆମ ଗାଁରେ ଆଇଫାଡ଼୍‌ବାଲା ଷ୍ଟିୟରିଂ କମିଯିର ସଦସ୍ୟ ହେବା କଥା କହିଲା ବେଳେ ଗାଆଁ ଲୋକେ ମୋ ନାମକୁ ହିଁ କହିଥିଲେ। ମୋ ପାଖକୁ ଚିଠି ଆସିଲା ପରେ ମୁଁ ଜାଣିଲି, ଷ୍ଟିୟରିଂ କମିଟିରେ ମୁଁ ସଦସ୍ୟା ହୋଇଛି। ସଦସ୍ୟା ହେବା ପରେ ମିଟିଂରେ ଯୋଗଦେବା ପାଇଁ ମୋ ପାଖକୁ ଦୁଇଥର ଚିଠି ଆସିଛି।

ମୋତେ କାହିଁକି ସଦସ୍ୟା କରିଛନ୍ତି ପଚାରିବାରୁ, ସେ ବିଷୟରେ ମୋତେ କୁହାଗଲା ଯେ, "ତୁମେ ଆଜିଠାରୁ ଷ୍ଟିୟରିଂ କମିଟିର ସଦସ୍ୟ ହେଲ, ତୁମ ଅଞ୍ଚଳରେ କ'ଣ କାମ

କଲେ ଭଲ ହେବ ଏବଂ ସବୁ ସୁବିଧା ଅସୁବିଧା ବିଷୟରେ ତୁମେ ଜଣାଇବ ।” ତାପରେ ଗତ ଅଗଷ୍ଟ ମାସରେ ଦ୍ୱିତୀୟ ବୈଠକରେ ରାୟଗଡ଼ାର ଜିଲ୍ଲାପାଳ, ଏମ୍.ଏଲ.ଏ ବିଡ଼ିଓ ଓ ପ୍ରକଳ୍ପ ପରିଚାଳକଙ୍କ ସହିତ ଆମ ଆଦିବାସୀ ଭାଇ ଭଉଣୀ କେତେଜଣ ଉପସ୍ଥିତ ଥିଲେ । ଉଜ୍ଜଳର କହିବା ଅନୁଯାୟୀ ଆଲୋଚନାର କଥାବାର୍ତ୍ତା ଏହିପରି :

***ପ୍ରକଳ୍ପ ପରିଚାଳକ :*** ଯେଉଁ ପାଣିମୁଣ୍ଡା, କେନାଲ କାମ ହୋଇଛି, ସେ ବିଷୟରେ ଜେ.ଇ.ମାନେ କହୁଥିଲେ, ବର୍ଷାଦିନ ପାଇଁ କାମ ସରିପାରିଲା ନାହିଁ । ବର୍ଷାଦିନ ଗଲେ କାମ ଆରମ୍ଭ ହେବ । ଜଙ୍ଗଲରେ ଗଛଲଗା ପାଇଁ ‘ଆଇଫାଡ୍’ ସାର ଦେବ, ଚାରା ଦେବ । ଗାଁଲୋକେ ଦାୟିତ୍ୱ ନେଇ ଗଛ ଲଗାଇବେ ଓ ଜଗିବେ ।

***ଉଜ୍ଜଳ ଦେଈ :*** ଆଜ୍ଞା ! ଆମ ଗାଁରେ ଆମେ ପଟ୍ଟା ପାଇବା ଆଶାରେ ଗଛ ଲଗାଇଲୁ । କିନ୍ତୁ ଏ ପର୍ଯ୍ୟନ୍ତ କାହିଁକି ସେ କଥା ବୁଝାଯାଉ ନାହିଁ ?

*ପ୍ରକଳ୍ପ ପରିଚାଳକ :* ଆମେ ସେହି ଜଙ୍ଗଲର ପଟ୍ଟା ମହିଳାମାନଙ୍କ ନାମରେ କରିଦେବୁ ।

***ଉଜ୍ଜଳ ଦେଈ :*** ଠିକାଦାର କାମ ନେଲେ ସେମାନଙ୍କର ବିଲ୍ ଫଟାଫଟ ହେଉଛି, ଗାଁଲୋକେ କାମ ନେଲେ କାହିଁକି ଠିକ୍‌ରେ ବିଲ୍ ହେଉନାହିଁ ? କାମ ସରିଗଲେ ମାପଚୁପ ଠିକ୍‌ରେ କରାଯାଉନାହିଁ କାହିଁକି ?

***ଗୁରୁବାରୁ ମାଝୀ :*** ଆଜି ଯଦି ମୋ କଥା ଠିକ୍‌ରେ ବୁଝାନଯିବ, ମୁଁ ଏହି ଆଇଫାଡ୍ ଅଫିସ୍ ସାମ୍ନାରେ ମରିବି । ଗାଁ ଲୋକଙ୍କ ପାଖରେ କାହିଁକି ଖରାପ ହେବି ?

***ଜିଲ୍ଲାପାଳ :*** ତୁମେ ସବୁ ଚାଲାକ ହେଇଗଲଣି, ଶିକ୍ଷିତ ହେଲଣି, ତୁମକୁ ଆମେ କଣ କହିବୁ ? ଯେତେ ଟଙ୍କାର କାମ ଆସିଥିବ ସେତେ ଟଙ୍କା ବିଲ୍ ହେବ ? ତୁମେ ଯଦି ଫାଶୀ ହୋଇ ମରିବ ସୁମନୀ ତୁମର ପୁଲିସ୍ ଅଛି ସିଏ ବୁଝିବ ।

***ଉଜ୍ଜଳ ଦେଈ :*** ମେଡ଼ିକାଲ ବିଷୟରେ କଥା ହେବା ସମୟରେ ମୁଁ କହିଲି, ଆମ ସୁଙ୍ଗେର ମେଡ଼ିକାଲର ଅସୁବିଧା କଥା । ପାଖାପାଖି ଗାଁର ରୋଗୀମାନଙ୍କୁ ସିନା ଲୋକମାନେ ଘରକୁ ନେଇ ଯାଇ ପାରିବେ, ଦୂର ଗାଁ ଲୋକେ କଣ ରୋଗୀଙ୍କୁ ଗଛ ମୂଳେ ଧରି ରହିବେକି ? ରୋଗୀ ରହିବା ପାଇଁ ଘର କାହିଁକି ହେଉ ନାହିଁ ?

***ପ୍ରକଳ୍ପ ପରିଚାଳକ :*** ସୁଙ୍ଗେର ମେଡ଼ିକାଲରେ ରୋଗୀ ରହିବା ଘର ପାଇଁ ଲେଖାପଢ଼ା ହୋଇଯାଇଛି । ବର୍ଷା ଛାଡ଼ିଲେ ସେ କାମ ଆରମ୍ଭ ହେବ । ଏ ବର୍ଷ ଆଳୁ ବିହନ ନେଲେ କେଜି ପିଛା ଏକଟଙ୍କା ବାନ୍ଧିବାକୁ ପଡ଼ିବ । ଯିଏ ଯେତେ ଶୀଘ୍ର ଟଙ୍କା ବାନ୍ଧିବ, ତାକୁ ସେତେଶୀଘ୍ର ଆଳୁ ମିଳିବ ।

***ଉଜ୍ଜଳ ଦେଈ :*** ଗଲା ବର୍ଷ ଆଳୁ ବିହନ ଦେବ ଦେବ କହି ଦେଲ ନାହିଁ। ଲୋକମାନେ ଜମିକୁ ହଳକରି ପଡ଼ିଆ ପକାଇଲେ, କିଛି ହେଲେ ଫସଲ କରି ପାରିଲେ ନାହିଁ। ଏବର୍ଷ କଣ ଲୋକଙ୍କର ଭରସା ପାଇବ?

ମୁଁ ନିଜେ ଏକଥା ଶୁଣିବା ପରେ, ଟଙ୍କା ବାନ୍ଧିକରି ମାସେ ହେଲାଣି, ଜମିକୁ ହଳ କରି ରଖିଛୁ, ଏପର୍ଯ୍ୟନ୍ତ ଆଳୁ ବିହନ ମିଳୁନାହିଁ। ଆମେ ଯେଉଁ ମିଟିଂ ସବୁ କରୁଛୁ, ସେଭଳିଆ ମିଟିଂ ଏଠାରେ ହେଉନାହିଁ। ବଡ଼ବଡ଼ ବାବୁମାନେ ଅଛନ୍ତି, ଇଂରାଜୀ, ହିନ୍ଦୀ ଓ ତେଲୁଗୁରେ କଥାବାର୍ତ୍ତା ହେଉଛନ୍ତି, ଆମେ ଅପାଠୁଆ ଆଦିବାସୀ ଲୋକ, ସେକଥା ବୁଝିବୁ କୁଆଡୁ? ଏବେଠାରୁ ଯେଉଁ ମିଟିଂ ହେବ, କହିବି- ଏଠାରେ ଯାହା କଥା ହେଉଛ ସବୁ **ଓଡ଼ିଆରେ** କୁହ, ଯଦି ଓଡ଼ିଆରେ ନକହିବ, ତାହାହେଲେ କାହିଁକି କମିଟିରେ ଆମମାନଙ୍କୁ ରଖିଛ? ଯାହା କରିବାର କଥା ତୁମେମାନେତ କରିଦେବ, ଆମର ରହିବା କାଇଁକି ଲୋଡ଼ା?

ଏଠାରେ ଯାହା ଉପସ୍ଥାପିତ ହେଲା, ତାହା କେବଳ ଉଜ୍ଜଳର 'ଜାଣିବାର ଅଧିକାର'ର ବିଷୟ ନୁହେଁ। ତାହା ସାଧାରଣ ଲୋକଙ୍କର ସ୍ୱାର୍ଥ ସମ୍ବଳିତ ପ୍ରଶ୍ନ। ଯାହା ତା'ର ଜାଣିବାର ଆଗ୍ରହ ଭିତରର କଥା, ତାହା ସବୁ ସାଧାରଣ ଜନତାଙ୍କର ସମୂହ ବିକାଶ ପାଇଁ ଆସୁଥିବା ସମ୍ବଳର ସଦୁପଯୋଗ ସକାଶେ ଏକ ମାନବିକ ହକ୍‌ର ପ୍ରଶ୍ନ। ଉଜ୍ଜଳର ପ୍ରଶ୍ନ ଭିତରେ ଯାହା ବାହାର ଲୋକଙ୍କୁ ଗୁରୁତର ମନେ ହୋଇ ନପାରେ, ତାହା ସ୍ଥାନୀୟ ଜନତାଙ୍କ ଜାଣିବାର ଓ ଜୀଇଁବାର ପ୍ରସଙ୍ଗ ଉପରେ ନିର୍ଭର କରୁଛି। ମାତ୍ର ସୂଚନା ପାଇବା ପାଇଁ ସମ୍ଭ୍ରାନ୍ତ ଅମଲାତନ୍ତ୍ର କେତେ ସୁଯୋଗ ଦେଉଛି, ତାହା ହିଁ ଏବେର ଆହ୍ୱାନ।

ଅକ୍ଟୋବର - ୧୯୯୬



# ଇନ୍ଦ୍ରାବତୀ ବନ୍ଧଦ୍ୱାରା ବାସଚ୍ୟୁତ ହୋଇ ଜୀବନ କାଟୁଥିବା ଗୋଟିଏ ଗାଁର କାହାଣୀ

ଡଙ୍ଗାଝରଣ, ଇନ୍ଦ୍ରାବତୀ ଗାଁଠାରୁ ଦୁଇ କି.ମି. ଦୂରରେ ପାହାଡ ତଳେ ଗାଁଟିଏ । ଗାଁଟି ଖାତୀଗୁଡାଠାରୁ ମୁଖୀଗୁଡା ପର୍ଯ୍ୟନ୍ତ ଯାଇଥିବା ମୁଖ୍ୟ ରାସ୍ତାର ବାମ ପଟରେ ଅବସ୍ଥିତ । ରାସ୍ତାଟିକୁ ଦେଖିଲେ ଜଣାପଡେ ପ୍ରାୟ ବହୁ ଆଗରୁ ସେହି ଅଞ୍ଚଳ ପାଇଁ ରାସ୍ତାଘାଟର କୌଣସି ସୁବିଧା ସୁଯୋଗ ନଥିଲା । ଇନ୍ଦ୍ରାବତୀ ବନ୍ଧ ହେବାରୁ ପାହାଡ କଟାଯାଇ ରାସ୍ତା ତିଆରି କରାଯାଇଛି । ପାତରଧରା ନାମରେ ବହୁ ଆଗରୁ ଇନ୍ଦ୍ରାବତୀ ନଦୀ ବନ୍ଧର ଠିକ୍ ଉପରେ ଥିଲା । ଏବେ କିନ୍ତୁ, ରିଜରଭର ଭିତରେ ରହିଛି । ଏହି ଗାଁଟିରେ ସର୍ବ ମୋଟ ଆଠ/ଦଶଟି ଆଦିବାସୀ ପରିବାର ବାସ କରୁଥିଲେ । ସମତଳ ଜମି ଓ ଡଙ୍ଗରକୁ ନେଇ ଲୋକମାନେ ଆରାମରେ ଜୀବନଯାପନ କରୁଥିଲେ ।

ସେତେବେଳେ ସରକାରଙ୍କର ନିର୍ଦ୍ଦେଶକ୍ରମେ ଇନ୍ଦ୍ରାବତୀ ନଦୀ ଉପରେ ବନ୍ଧ ବନ୍ଧାଯିବାର ଉପଯୁକ୍ତ ସ୍ଥାନ ନିରୂପଣ କରାଯାଇ ବନ୍ଧ କାମ ଆରମ୍ଭ ହେଲା । କୁଲି କାମ କରିବା ପାଇଁ ଅନ୍ୟ ଗାଁର ଲୋକ ଆସି ରହୁ ରହୁ ସେହି ଗାଁରେ ରହିଗଲେ । ଗାଁ ଉଠିବା ବେଳକୁ ପାଖାପାଖି ୧୭ଟି ପରିବାର ସେହି ଗାଁରେ ରହୁଥିଲେ । ବନ୍ଧ କାମ ସରିବା ପରେ ସେହି ଗାଁର ଲୋକମାନେ ଯେତେବେଳେ ଜାଣିଲେ ସେମାନଙ୍କର ଗାଁ ପାଣିରେ ବୁଡିଯିବ ସେମାନେ ଚିନ୍ତା କରିପାରିଲେ ନାହିଁ କେଉଁଠିକୁ ଯିବେ । ନିଜ ଗାଁର ମାଟି, ପାଣି, ପବନ ତାଙ୍କୁ ଅନ୍ୟ କେଉଁଠି ମିଳିବ ? ଏହିପରି ଦୟନୀୟ ପରିସ୍ଥିତି ମଧ୍ୟରେ ଲୋକଙ୍କୁ ଟଙ୍କା ଦେଇ ଦିଆଗଲା । ଟଙ୍କା ପାଇବା ପରେ କ'ଣ କରିବେ କ'ଣ ନାଇଁ ସେମାନେ କିଛି ଜାଣି ପାରିଲେ ନାହିଁ ।

ଲୋକମାନେ କହନ୍ତି, ସେତେବେଳେ ଛୋଟ ଛୋଟ ଝିଅ ପୁଅଙ୍କ ହାତରେ ମଧ୍ୟ କିଛି ଟଙ୍କା ବିଡା ଦେଖିବାକୁ ମିଳୁଥିଲା । ତେଣୁ ଲୋକେ ଯେଉଁ ବାଟରେ ପାରିଲେ

ସେହି ବାଟରେ  ଟଙ୍କାକୁ ଖର୍ଚ୍ଚ କରିଦେଲେ । ଠିକ୍ ଯେଉଁ ସମୟରେ ଲୋକଙ୍କ ହାତରେ ପଇସା ସରି ଯାଇଛି ସେହି ସମୟରେ ଲୋକଙ୍କୁ ଗାଁ ଛାଡିବାକୁ କୁହାଗଲା । ଯଦି ନ ଯିବ ପାଣି ମାଡିଯିବ ବୋଲି ମଧ୍ୟ କୁହାଗଲା । ତେଣୁ ଲୋକମାନେ ଜୀବନ ବିକଳରେ ଯିଏ ଯେଉଁଠି କି ପାରିଲେ ପଳାଇଗଲେ । ସେମାନେ ନିଜ ଅଞ୍ଚଳ ଛାଡି ଅନ୍ୟ ଜାଗାକୁ ଯିବେ ନାହିଁ ଭାବି ଯେଉଁ ଡଙ୍ଗର ସବୁକୁ କମାଣି କରି ବଞ୍ଚୁଥିଲେ ସେହି ଡଙ୍ଗର ଉପରକୁ ଚାଲିଗଲେ । ଡଙ୍ଗର ଉପରେ ପାହାଡର ଶୃଙ୍ଗପରି ଗାଁଟିଏ ତିଆରି କରି ଛୋଟ ଛୋଟ କୁଡିଆମାନ ବାନ୍ଧି ବାକି ଜୀବନ ସେହିଠାରେ କାଟିବା ପାଇଁ ସ୍ଥିର କରି ରହିଲେ । ପାହାଡର ଠିକ ଅଧ କି.ମି. ତଳକୁ ଆସିଲେ ମୁଖ୍ୟରାସ୍ତା । ଅନ୍ୟପଟେ ଏକ ଛୋଟ ଝରଣା ବହି ଯାଉଥିଲା । ସେହି ଝରଣାର ନାମାନୁସାରେ ଗାଁ'ଟି ନାମକରଣ କରିଥିଲେ 'ଡଙ୍ଗାଝରଣ' ।

ସେହିଦିନଠାରୁ ପାତରଧରା ନାମ ବଦଳରେ ଡଙ୍ଗାଝରଣ ନାମରେ ନାମିତ ହୋଇ ଆରମ୍ଭ ହେଲା ଲୋକଙ୍କର ଅନ୍ୟ ଏକ ନୂଆଜୀବନ । କିଛି ଦିନ ପରେ ଗଉଡ କୁରୁମୁଲିରୁ କୋଡୋଟି ହରିଜନ ପରିବାର ଆସି ସେହି ଗାଁରେ ରହିଲେ । ଆସ୍ତେ ଆସ୍ତେ ପରିବାର ସଂଖ୍ୟା ବଢ଼ିବା ସହିତ ଜନସଂଖ୍ୟା ମଧ୍ୟ ବଢି ଚାଲିଲା । ବର୍ତ୍ତମାନ ଗାଁଟିରେ ୧୭ଟି ଆଦିବସୀ ହରିଜନ ପରିବାର ରହୁଛନ୍ତି । ବର୍ତ୍ତମାନ ଲୋକଙ୍କ ଜୀବନଯାପନ ପ୍ରଣାଳୀ ଏତେ ଅସହ୍ୟ ହୋଇ ପଡିଛି ଯେ, ପ୍ରତ୍ୟେକ ମୁହୂର୍ତ୍ତରେ ଲୋକମାନେ ସେମାନଙ୍କର ପୁରୁଣା ଗାଁକୁ ଝୁରି ହେଉଛନ୍ତି । ପୁରୁଣା ଗାଁର ଚାଷଜମି, ପାଣିର ସୁବିଧା ସବୁକୁ ଛାଡି ଆସି ବର୍ତ୍ତମାନ ଶୁଖିଲା ଡଙ୍ଗରରେ ଦାନ୍ତ କାମୁଡି ପଡିବା ବ୍ୟତୀତ ସେମାନଙ୍କର ଅନ୍ୟ କୌଣସି ପନ୍ଥା ନାହିଁ । ଲୋକଙ୍କର ଭାଗ୍ୟକୁ ସରକାରଙ୍କର ଦୟା । ଯାହା ହେଉ ସରକାର ଜମା ଖାତା ମାଧ୍ୟମରେ  କିସ୍ତି କିସ୍ତି କରି ଟଙ୍କା ଦେଇଥିଲା । ତେଣୁ ଦ୍ୱିତୀୟ କିସ୍ତି ଟଙ୍କାରେ ଲୋକମାନେ କିଛି କିଛି ଜମି କିଣିଥିଲେ । ଅଧିକ ବା କିଣି ପାରିଥାନ୍ତେ କିପରି ? ସେମାନଙ୍କୁ ଜମି ପାଇଁ ଏକର ପିଛା ତିନି/ଚାରି ହଜାର ଟଙ୍କା ମିଳିଥିବା ବେଳେ ସେମାନେ କିଣିବା ସମୟରେ ଏହାର ଦାମ୍ ଏକର ପିଛା ୨୦/୩୦ହଜାରକୁ ବଢ଼ି ଯାଇଥିଲା । ସେ ଜମି ପୁଣି ନିଜ ଗାଁର ନୁହେଁ । କିଏ ଖାତିଗୁଡାରେ ତ କିଏ ତେନ୍ତୁଳିଖୁଣ୍ଟି ପୁଣି କିଏ ନବରଙ୍ଗପୁରରେ ଜମି କିଣିଥିଲେ ।

ଏତେ ଦୂରରେ ନିଜେ ଜମି ଚାଷ କରି ପାରୁନଥିବାରୁ ଭାଗ ଦେଇ ଦେଉଥିଲେ । ଭାଗବାଲା ଯାହା ଦେଉଥିଲା ତାକୁ ଆଣି କୌଣସି ମତେ ଦୁଇ/ତିନି ମାସ ଚଳୁଥିଲେ ଅନ୍ୟ ଦିନମାନଙ୍କରେ କୁଲିଭୁତି ହେଲା ସେମାନଙ୍କର ନିତିଦିନିଆ କାମ । ସମୟ

ସମୟରେ ଦୂର ଜଙ୍ଗଲରୁ କାଠ କାଟି ଖାଟି ଗୁଡ଼ା ବଜାରରେ ବିକ୍ରୀ କରନ୍ତି । ସେଥିରୁ ମଧ୍ୟ କିଛି ଦିନ ଚଳିଯାଆନ୍ତି ।

ଆଦିବାସୀମାନଙ୍କର ଇତିହାସ ଦେଖିଲେ ଜଣାପଡେ ସେହି ଗରିବ ଆଦିବାସୀମାନେ ସବୁ ସମୟରେ କୌଣସି ନା କୌଣସି ଅସୁବିଧାର ସମ୍ମୁଖୀନ ହୋଇ ପୁଣି ମୁଣ୍ଡ ଟେକିଛନ୍ତି । ସେତିକିରେ ସରିନାହିଁ ଗାଁ'ଟିର ଦୁଃଖ । ଯେଉଁ ଡଙ୍ଗରକୁ ନିଜର ଭାବି ଲୋକେ କୁଡିଆ କରି ବସା ବାନ୍ଧିଥିଲେ ସେହି ଡଙ୍ଗର ଉପରେ ଆଖି ପଡିଲା ସରକାରୀ ବାବୁମାନଙ୍କର । ସେମାନଙ୍କୁ କୁହାଗଲା, ଏ ଜାଗା ତୁମର ନୁହେଁ, ଏହା ସରକାରଙ୍କର । ଡଙ୍ଗରରୁ କାଠ କାଟୁଥିବାରୁ ସେମାନଙ୍କ ନାଁରେ କେଶ୍ ହେଲା । ସେ କେଶ୍‌ରୁ ନିଜକୁ ମୁକୁଳାଇବା ପାଇଁ ଲୋକମାନେ ନିଜର ସମସ୍ତ ଜମି ବିକ୍ରୀ କରି ସବୁ ଟଙ୍କା ସାରିଛନ୍ତି । ବର୍ତ୍ତମାନ ଗାଁ'ଟିରେ କେତୋଟି ହରିଜନ ପରିବାରକୁ ଛାଡିଦେଲେ ଅନ୍ୟ କାହା ପାଖରେ ଜମି ନାହିଁ । ଯେଉଁ କତେଜଣଙ୍କ ପାଖରେ କିଛି ଜମି ଥିଲା ସେମାନେ ବିଭିନ୍ନ ଅସୁବିଧାର ସମ୍ମୁଖୀନ ହୋଇ ଜମିକୁ ବନ୍ଧା ପକାଇଛନ୍ତି । ଜମିକୁ ମୁକୁଳାଇବା ମଧ୍ୟ ସେମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ଯାହାଫଳରେ ଜମି ସେମାନଙ୍କର ହାତରୁ ଚାଲିଯିବାର ସମ୍ଭାବନା ମଧ୍ୟ ରହିଛି ।

ବର୍ତ୍ତମାନ ଲୋକମାନେ ଗାଁ ଚାରିପାଖରେ ଥିବା ପାଖାପାଖି ୧୦ଏକର ଡଙ୍ଗରକୁ ଚାଷ କରି କିଛି କିଛି ମାଣ୍ଡିଆ, କୋଶଳା ପାଉଛନ୍ତି । ବନ୍ଧକାମ ସରି ଯାଇଥିବାରୁ ଲୋକମାନେ ସେପରି କୁଲି କାମ ମଧ୍ୟ ପାଉନାହାନ୍ତି । କୁଲି ପାଇଁ ବହୁଦୂର ଗାଁକୁ ଯିବାକୁ ପଡୁଛି । ଅଧିକାଂଶ ଦନି ଉପାସରେ ରହିବାକୁ ପଡୁଛି । ଗାଁର ବୁଢ଼ାବୁଢ଼ୀମାନେ କହୁଛନ୍ତି, 'ଆମେ କ'ଣ କରିବୁ । ପୁରୁଣା ଗାଁ ହୋଇଥିଲେ ବୃତ୍ତି କରି ଜୀବନ କଟାନ୍ତୁ । ଏଠି ନା ତ ଭୁତି ମିଳୁଛି, ନା ତ ଆମେ କିଛି କାମ କରି ପାରୁଛୁ । ସରକାର ମଧ୍ୟ ଆମକୁ ଚାହୁଁନାହାନ୍ତି । ବୁଢ଼ାବୁଢ଼ୀ ଭତ୍ତା ମଧ୍ୟ ଆମକୁ ମିଳୁନାହିଁ । ପୁରୁଣା ଗାଁରେ ଆମେ କେତେ ଧାନ କେତେ ମାଣ୍ଡିଆ କମାଣି କରୁଥିଲୁ । ଜଣଙ୍କର ନଥିଲେ ଗାଁ ସାରା ଲୋକ ଟିକେ ଟିକେ ଦେଇ ତା'ର କୁଟୁମ୍ବକୁ ବଞ୍ଚାଇ ଦେଉଥିଲେ । ବର୍ତ୍ତମାନ ଆମକୁ ମାଣ୍ଡିଆ ପେଯ ଟିକେ ମିଳୁନାହିଁ । ଗାଧୋଇବା ପାଇଁ ପାଣିଟିକେ ନାହିଁ । ଗୋଟିଏ କୂଅରେ ବାପା ଓ ମା'ମାନେ ଗାଧୋଇବା ଆମ ଆଦିବାସୀ ପାଇଁ ନୂଆ କଥା । ସରକାର ଭାବୁଛନ୍ତି ଏହିଭଳି ଯୋଜନା ମାଧ୍ୟମରେ ଲୋକମାନଙ୍କର ଜୀବନ ଧାରଣର ମାନ ବଢ଼ିବଢ଼ି ଚାଲିଛି । କିନ୍ତୁ କେତେ ବଢୁଛି କେତେ କମୁଛି ତା'ର ମୂଲ୍ୟାଙ୍କନ କରୁଛି କିଏ ?'

ବୁଡି ଅଞ୍ଚଳ ଗାଁ ବୋଲି ସରକାରଙ୍କର ସେମିତି କିଛି ସୁବିଧା ସୁଯୋଗ ଗାଁ'ଟିକୁ

ଯାଇନାହିଁ । ଲୋକଙ୍କର ଯିବା ଆସିବା ପାଇଁ ପାହାଡ ତଳୁ ଗାଁ ଉପରକୁ ପ୍ରାୟ ୧/୨କି.ମି. ପର୍ଯ୍ୟନ୍ତ ଗୋଡି ରାସ୍ତାଟିଏ ରହିଛି । ଗାଁ ଭିତରେ ଗୋଟିଏ ନଳକୂଅ । ସିଏ ପୁଣି ଅକାମି ଅବସ୍ଥାରେ ପଡିରହିଛି । ଦୁଇ ସାହିର ପିଇବା ପାଣି ଓ ଗାଧୋଇବା ନିର୍ଭର କରେ ଗୋଟିଏ ନଳକୂଅ ଉପରେ । ଏହା ବ୍ୟତୀତ ଅନ୍ୟ କୌଣସି ସୁବିଧା ସୁଯୋଗ ନାହିଁ । । ଅନ୍ୟ କୌଣସି କାମ ପାଇଁ ଲୋକ ପାଖ ବଜାର ଦେଓପାଲି ନଚେତ୍ ଖାତିଗୁଡା ଉପରେ ନିର୍ଭର କରନ୍ତି । ସମୟ ସମୟରେ ଲୋକମାନେ ମାଛ ମାରିବା ପାଇଁ ଇନ୍ଦ୍ରାବତୀ ନଦୀକୁ ଯାଆନ୍ତି । ଛୋଟ ଛୋଟ ପିଲା ପାଠ ପଢ଼ିବା ପାଇଁ ଅଗ୍ରଗାମୀ ଏକ ରାତିସ୍କୁଲର ବ୍ୟବସ୍ଥା କରି ଦେଇଛି । ସେହି ଗାଁର ଗୋଟିଏ ପିଲାକୁ ଶିକ୍ଷକ ଭାବରେ ନିଯୁକ୍ତି ଦେଇଛି । ଗାଁଟିରେ ଦୁଇଟି ଜାତିର ଲୋକ ରହୁଥିଲେ ମଧ୍ଯ ଲୋକଙ୍କ ମଧ୍ୟରେ ସୁସଂପର୍କ ରହିଛି । ବର୍ତ୍ତମାନ ଏକାଠି ହୋଇ ସେମାନେ ନିଜ ନିଜ ଉଦ୍ୟମରେ ଗାଁ ଚାରିପାଖ ଜମିରେ ପଥର ଘାଟୁ ବାନ୍ଧି ଜମି ମରାମତି କାମ କରୁଛନ୍ତି । ଲୋକଙ୍କର ବିଶ୍ୱାସ ଅଛି ଏଭଳି ପଥର ଘାଟୁ ବାନ୍ଧିଲେ ଜମିରେ ଭଲ ଫସଲ ହେବ । ପେଟ ପାଇଁ ଅଧିକା ଆଶା ରଖି ସେମାନେ କାମ କରି ଚାଲିଛନ୍ତି । ସରକାରଙ୍କ ଉପରୁ ସେମାନଙ୍କର ବିଶ୍ୱାସ ତୁଟି ଯାଇଛି, କାଳେ ସେମାନଙ୍କୁ ଆଉ କେଉଁଠିକି ସରକାର ଉଠାଇ ଦେବେ । କିଏ କହି ପାରିବ ସେମାନଙ୍କ ଭାଗ୍ୟରେ ପୁଣି ସେହି ଘଟଣାର ପୁନରାବୃତ୍ତି ନ ହେବ ବୋଲି ।

ମାର୍ଚ୍ଚ - ୧୯୯୮



# ଅନ୍ୟ ଏକ ଗାଁ କାଙ୍ଗାନାଡ଼ା

ପଶ୍ଚିମ ଓଡ଼ିଶାର ଅନ୍ୟ ଏକ ଆଦିବାସୀ ବହୁଳ ଜିଲ୍ଲା କନ୍ଧମାଳର ଦକ୍ଷିଣ ପୂର୍ବ ଦିଗରେ ୨୦ କି.ମି. ଗଲେ ପଡ଼େ କାଙ୍ଗାନାଡ଼ା ଗାଁ । ପାହାଡ଼ିଆ ଇଲାକା, କିନ୍ତୁ ଜଙ୍ଗଲରେ ପରିପୂର୍ଣ୍ଣ । ପୂର୍ବ ଦିଗର କେତେକାଂଶରେ ଚାଷପୋଯୋଗୀ କିଛି ସମତଳ ଜମି ରହିଛି । ଗାଁଟିର ଅଧିକାଂଶ ଲୋକ ଆଦିବାସୀ । ମୁଖ୍ୟତଃ କନ୍ଧ ଜାତିର ଲୋକ ଗାଁଟିରେ ବାସ କରନ୍ତି । ବିଭିନ୍ନ ପର୍ବପର୍ବାଣୀରେ ନାଚଗୀତ, ମଉଜ ମଜଲିସ୍ କରିବାକୁ ଭଲ ପାଆନ୍ତି । ସେମାନେ ଶାନ୍ତିପ୍ରିୟ, କିନ୍ତୁ ନିଜର ଅଧିକାର ପାଇଁ ଲଢ଼େଇ ମଧ୍ୟ କରିପାରନ୍ତି । ସେମାନଙ୍କ ମୁଖ୍ୟ ଜୀବିକା ହେଉଛି ଚାଷ । ଏହା ବ୍ୟତୀତ ସେମାନେ ଜଙ୍ଗଲ ଉପରେ ନିର୍ଭର କରି ବର୍ଷର ୬ରୁ ୮ ମାସ ଚଳନ୍ତି । ନିଜର ଉତ୍ପାଦିତ ଫସଲ ଓ ଲଘୁ ବନଜାତ ଦ୍ରବ୍ୟ ହିଁ ସେମାନଙ୍କର ଜୀବିକା ନିର୍ବାହର ମୁଖ୍ୟ ଉତ୍ସ । ମୋଟାମୋଟି ଭାବରେ କହିବାକୁ ଗଲେ ସେମାନଙ୍କର ଅର୍ଥନୈତିକ ଅବସ୍ଥା ସେତେ ଭଲ ନହେଲେ ବି ଖରାପ ନୁହେଁ । ଗାଁର କିପରି ଉନ୍ନତି ହେବ, ଭଲ ଫସଲ କିପରି ଉତ୍ପାଦନ ହେବ, ଜଳସେଚନ କିପରି କରାଯାଇ ପାରିବ ଏ ସବୁ ବିଷୟରେ କିଛି ଲୋକ ଚିନ୍ତା କରୁଥିବା ବେଳେ ସରକାରଙ୍କ ଆଇଟିଡ଼ିଏ ତରଫରୁ ଏକ ଚେକ୍ ଡ୍ୟାମ୍ ହେବାର ଯୋଜନା ଆସି ପହଞ୍ଚିଲା । ସେହି କାମ ଆରମ୍ଭ ହେବା ପୂର୍ବରୁ କେତେଜଣ ସରକାରୀ କର୍ମଚାରୀ ଆସି ସର୍ଭେ କାମ ଆରମ୍ଭ କଲେ । ସେମାନଙ୍କ ସୁବିଧା ଅନୁଯାୟୀ ସ୍ଥାନ ନିରୁପଣ କରି ଚାଲିଗଲେ ।

ଏହାର କିଛି ଦିନ ପରେ ଇଞ୍ଜିନିଅର ଓ ଅନ୍ୟାନ୍ୟ ଅଫିସର ଆସି ଗାଁ ମୁଖିଆ ଦେବେଶ୍ୱର କହଁରଙ୍କୁ ସେହି ଜାଗା ଦେଖାଇବା ପାଇଁ ନେଇଗଲେ । କିନ୍ତୁ ଗାଁର ମୁଖିଆ ସେହି ସ୍ଥାନ ଗାଁ ପାଇଁ ସୁବିଧା ହେବ ନାହିଁ କହି ଅନ୍ୟ ଏକ ଜାଗାରେ ଡ୍ୟାମ୍ କରିବା ପାଇଁ ପରାମର୍ଶ ଦେଲେ । ସେଦିନ ସେହି ଜାଗା ସେହି ସରକାରୀ ଜମିରେ ପାଣି ମାଡ଼ି ପାରିବ ସେହି ଲୋକଙ୍କୁ ମତାଇ ପୂର୍ବ ନିର୍ଦ୍ଧାରିତ ସ୍ଥାନରେ କାମ ଆରମ୍ଭ କଲେ । ଗାଁ ଲୋକ ଏ ବିଷୟରେ ଜାଣିବା ପରେ ଆଇ.ଟି.ଡି.ଏ. ଅଫିସରଙ୍କ ପାଖକୁ ଦରଖାସ୍ତ

ଲେଖିଲେ । କିନ୍ତୁ କୌଣସି ଅଫିସର ସେଥିପ୍ରତି କର୍ଣ୍ଣପାତ କଲେ ନାହିଁ । ଏହାପରେ ଗାଁ ଲୋକ ଜିଲ୍ଲାପାଳ, ବିଡ଼ିଓ ଏବଂ ପଞ୍ଚାୟତକୁ ମଧ୍ୟ ଦରଖାସ୍ତ ଦେଇଥିଲେ । କିନ୍ତୁ ଫଳ କିଛି ହେଲା ନାହିଁ । ଆଇ.ଟି.ଡ଼ି.ଏ.ର ଇଂଜିନିଅର ଗାଁର ଜଣେ ଲୋକଙ୍କୁ ଏଜେଣ୍ଟ ରଖି ଗାଁର କିଛି ଲୋକ ଓ କିଛି ବାହାର ଲୋକଙ୍କୁ ନେଇ ୧୫ ଦିନ ମଧ୍ୟରେ ପ୍ରାୟ ଅଧା କାମ ଶେଷ କରିଦେଲେ ।

ଏହାର କିଛିଦିନ ପରେ ସେହି ଗାଁର ବିଶ୍ୱମ୍ବର ଓ ଗଣେଶ ସେହି ସ୍ଥାନକୁ ଯାଇ କାମ କେବେ ଆରମ୍ଭ ହେଲା ଏବଂ ଏହି ଡ୍ୟାମର ଉଚ୍ଚତା କେତେ ହେବ ବୋଲି ଇଂଜିନିଅରଙ୍କୁ ପ୍ରଶ୍ନ କରିଥିଲେ । ସେ କହିଲେ ଏହି କାମ ୧୫ ଦିନ ହେବ ଆରମ୍ଭ ହେଲାଣି ଏବଂ ଏହା ୪ଫୁଟ ଉଚ୍ଚତା ହେବ । ଏହାପରେ ସେମାନେ କହିଲେ, ଯଦି ଏହି ଡ୍ୟାମ ମାତ୍ର ୪ଫୁଟ ଉଚ୍ଚତା ହୁଏ, ତେବେ ମାତ୍ର ଦୁଇ ଜଣଙ୍କ ଜମିରେ ପାଣି ମାଡ଼ି ପାରିବ । ତେଣୁ ଆଉ ଦୁଇଫୁଟ ଉଠାଇଲେ ଏହା ଦ୍ୱାରା ଆଉ କିଛି ଲୋକ ମଧ୍ୟ ଉପକୃତ ହୋଇ ପାରିବେ । କିନ୍ତୁ ଜେ.ଇ. କହିଲେ, ଏହା ବେଶୀ ଟଙ୍କାର କାମ ନୁହେଁ । କେବଳ ଦେଢ଼ଲକ୍ଷ ଟଙ୍କାର କାମ । ତେଣୁ ଆମର ରାଜିନାମା ଅନୁଯାୟୀ ଆମେ କାମ କରିବୁ । ସେମାନେ କହିଲେ, ଦେଢ଼ ଲକ୍ଷ ଟଙ୍କାର କାମ ହେବ, ଅଥଚ ଆମେ କେତେ ଉପକୃତ ହେବୁ ? ଆଉ ଟିକେ ଉଚ୍ଚତା ହେଲେ କିଛି ଅଧିକ ଜମିରେ ପାଣି ମାଡ଼ିବ । ଧାନ ଚାଷ ପରେ ଲୋକମାନେ କିଛି ପନିପରିବା ଲଗାଇ ପାରିବେ । ଜେ.ଇ. କହିଲେ, ଆମେ କିଛି ଜାଣିନାହୁଁ । ତୁମ ଗାଁ ଲୋକଙ୍କ କହିବା ଅନୁଯାୟୀ ଏହି କାମ ହୋଇଛି । ଏହାପରେ ଗାଁ ଲୋକ କହିଲେ, ଯଦି ଆମେ ଗାଁ ଲୋକେ ଲେଖି ଦେଇଥିଲୁ, ତେବେ କେତେ ଜଣ ଗାଁ ଲୋକ ଏଠାରେ କାମ କରୁଛନ୍ତି ? ବାହାର ଲୋକମାନେ ଏଠାକୁ କାମ କରିବାକୁ ଆସୁଛନ୍ତି କାହିଁକି ? ଏହିପରି କିଛି ସମୟ ଯୁକ୍ତିତର୍କ ହେବା ପରେ ଜେ.ଇ. ଓ ଅନ୍ୟ ଲୋକମାନେ ଆମ ଉପରେ ରାଗିଗଲେ । ଆମେ ଦୁଇଜଣ ହୋଇଥିବାରୁ ସେଠାରୁ ସେଦିନ ଚାଲି ଆସିଲୁ । ଆସିବା ପରେ ଏ କଥା ଗାଁ ଲୋକଙ୍କୁ ବୁଝାଇଛୁ । ଗାଁ ଲୋକ ମଧ୍ୟ ଏଥିରେ ସମସ୍ତେ ସହଯୋଗ କରିବା ପାଇଁ ରାଜି ହୋଇଛନ୍ତି ।

ଏଥିରୁ ସରକାରଙ୍କର ଗାଁ ଲୋକଙ୍କ ପ୍ରତି ଉଦାସୀନ ଭାବ ସ୍ପଷ୍ଟ ଅନୁମେୟ । ଯେଉଁ ସବୁ ଯୋଜନା ଲୋକଙ୍କ ପାଇଁ କାର୍ଯ୍ୟକାରୀ କରାଯାଉଛି, ତା'ଦ୍ୱାରା ଗରିବ ଲୋକମାନେ କେତେଦୂର ଉପକୃତ ହେଉଛନ୍ତି, ତାହା ଆମ୍ଭେମାନେ ସମୀକ୍ଷା କରିବା କଥା । କେବଳ କାଙ୍ଗାନାଡ଼ା କାହିଁକି, ଓଡ଼ିଶାର ଏହିପରି ଅନେକ ଗାଁମାନଙ୍କରେ , ହିଁ ସମସ୍ୟା ଦେଖା ଯାଉଛି । ତେବେ, ସରକାରଙ୍କର ଜିଦ୍‌କୁ ଲୋକଙ୍କର ଜିଦ୍, କିଏ ଜିତୁଛି ଦେଖାଯାଉ ।

ଜୁନ୍ - ୧୯୯୮

# ଗୋଡିବାଲି ପଞ୍ଚାୟତ କଥା

କାଶୀପୁର ବ୍ଲକ ଠାରୁ ଟିକିରି ବାଟଦେଇ ୩୨କିଲୋମିଟର ଗଲେ କୁଚେଇପଦର ଗ୍ରାମ ପଞ୍ଚାୟତ ପଡେ । ବର୍ତ୍ତମାନ କାଶୀପୁର ନାଁ'ଟି କେବଳ ଭାରତରେ ନୁହେଁ ଏହା ସମଗ୍ର ବିଶ୍ୱବାସୀଙ୍କର ଦୃଷ୍ଟି ଆକର୍ଷଣ କରିଛି । ଗଣମାଧ୍ୟମରେ ବି ସ୍ଥାନ ପାଇଛି । ପୂର୍ବେ କାଶୀପୁର ବି ଏକ ଅବହେଳିତ ସ୍ଥାନ ଥିଲା । ଏହି ସ୍ଥାନ ସମସ୍ତଙ୍କ ପାଇଁ ଥିଲା ଅଗମ୍ୟ । ବିଶେଷ କରି ଚାକିରି କ୍ଷେତ୍ରରେ ବଦମାସି କାମ କଲେ ଏଭଳି ଦୁର୍ଗମ ଅଞ୍ଚଳକୁ ଦଣ୍ଡଦେବା ହିସାବରେ ସ୍ଥାନାନ୍ତରିତ କରାଯାଉଥିଲା । କିନ୍ତୁ ଏବେ ସରକାରୀ ପ୍ରଶାସନଠାରୁ ଆରମ୍ଭ କରି ରାଜନୈତିକ ନେତା ପର୍ଯ୍ୟନ୍ତ ସମସ୍ତଙ୍କ ମୁହଁରେ କାଶୀପୁର ଏକ ଚର୍ଚ୍ଚାର ବିଷୟ । କାରଣ ଏ ଅଞ୍ଚଳରେ ଖଣି ପାଇଁ ବହୁରାଷ୍ଟ୍ରୀୟ କମ୍ପାନୀ କସମେତ ଦେଶୀ କମ୍ପାନୀମାନେ ମଧ୍ୟ ଏଠାରେ ସେମାନଙ୍କ ପ୍ରବେଶ କଲେଣି । ଯଦି ଏସବୁ ହୁଏ ତେବେ ଏଠାରେ ବାସ କରୁଥିବା ଆଦିବାସୀ ଓ ହରିଜନଙ୍କ ଅବସ୍ଥା କ'ଣ ହେବ ? କାରଖାନା ନ ହେଉଣୁ ଏଠାକାର ଲୋକମାନେ ଯାହା ହଇରାଣ ହରକତ ହେଲେଣି ତାହା ନିମ୍ନ ଉଦାହାରଣରୁ ସହଜରେ ଜଣା ପଡେ-

କାରଖାନା ପ୍ରତିଷ୍ଠା ହେବାକୁ ଥିବା ପାଖାପାଖି ଗ୍ରାମ ଯଥା; କରଏ କମ୍ପର, ହାତିଗୁଡା, ବାଗ୍ରିଝୋଲା ଇତ୍ୟାଦି ଗ୍ରାମଗୁଡିକରେ ସରକାରଙ୍କ ତରଫରୁ ୧୯୯୭ ମସିହା ଫେବୃୟାରୀ ମାସଠାରୁ ଜମି ଅଧିଗ୍ରହଣ କରିବା କାମ ଆରମ୍ଭ ହେଲା । ଲୋକେ ଏହାର ବିରୋଧ କରିବା ସତ୍ତ୍ୱେ ସରକାର ଜୋରଜବରଦସ୍ତ ତାହା ଗ୍ରହଣ କଲେ । ଯେଉଁ ଜମିକୁ ଗରିବଲୋକେ ପୁରୁଷ ପୁରୁଷ ଧରି ଚାଷ କରିଆସୁଥିଲେ ଓ ପରିବାର ଭରଣପୋଷଣ କରି ପାରୁଥିଲେ, ତାହା ସେମାନଙ୍କଠାରୁ ଛଡାଇ ନିଆଯାଇ ସେମାନଙ୍କ ପେଟରେ ଲାତ ମରାଗଲା । ସାମାନ୍ୟ କେଇ ଟଙ୍କାରେ ସେମାନେ ସର୍ବସ୍ୱ ହରାଇଲେ । ଯେଉଁ ଲୋକ ଏକ ସଂଗରେ ଏତେ ପରିମାଣର ଟଙ୍କା ତା ଜୀବନରେ ଦେଖିନି ସେ ବା କିପରି ତାକୁ କାମରେ ଲଗାଇ ପାରିବ ? ପଇସା ବ୍ୟାଙ୍କରେ ବାନ୍ଧିଯିବାଠାରୁ ଉଠାଇବା ପର୍ଯ୍ୟନ୍ତ

ସବୁକାମ ମଧ୍ୟସ୍ଥିମାନଙ୍କ ସହାୟତାରେ କରାଗଲା । ଆଉ ସେହି ଟଙ୍କା ସରକାରୀ ସାହାଯ୍ୟ ଆକାରରେ ଗାଁରେ ପହଞ୍ଚିଲା ବେଳକୁ ଅଧା ସରିଯାଉଥିଲା ।

ଘେନୁ ଝୋଡିଆ ଓ ସାଧବ ଝୋଡିଆଙ୍କ ପରିବାର କୁଚେଇପଦର ଗ୍ରାମ ପଞ୍ଚାୟତ ହାତିଗୁଡା ଗ୍ରାମରେ କେଉଁ ପୂର୍ବପୁରୁଷରୁ ବାସ କରି ଆସୁଥିଲେ । ଇତି ମଧ୍ୟରେ ସାଧବ ଝୋଡିଆ ୨୦ବର୍ଷ ହେବ ଗୋଡିବାଲି ଗ୍ରାମପଞ୍ଚାୟତର ଧୋବାଶିଳ ଗ୍ରାମରେ ବାସ କରିଆସୁଅଛି । କାରଣ କୁଚେଇପଦରରେ ସେ ଦୁଇଭାଇ ଚଳିବା ପାଇଁ ଯଥେଷ୍ଟ ଜମି ନ ଥିଲା କି ଜଙ୍ଗଲ ମଧ୍ୟ ନଥିଲା । ଯାହା କିଛି ଥିଲା ତାହା ମଧ୍ୟ ଦୁଇଜଣଙ୍କୁ ଅଣ୍ଟୁ ନଥିବାରୁ ଅଧିକାଂଶ ସମୟ ସେଥିନେଇ ଦୁଇଭାଇଙ୍କ ମଧ୍ୟରେ ଗଣ୍ଡଗୋଳ ସୃଷ୍ଟି ହେଉଥିଲା । ତେଣୁ ସାଧବ ଝୋଡିଆ ଧୋବାଶିଳ ଗ୍ରାମକୁ ଉଠି ଆସିଥିଲେ ।

ଧୋବାଶିଲ ଆସିଲା ପରେ ପାଖରେ ଥିବା ଶିକରପାଇର ଜଣେ ସାହୁକାରଙ୍କ ଗାଈଗୋରୁ ଚରାଇ ସାଧବ ଝୋଡିଆ ଚଳୁଥିଲେ । ପରେ ଡଙ୍ଗର ମାରି ଚାଷକରିବା ସହିତ ପାଖ ଜଙ୍ଗଲରୁ କିଛି ଆୟ କରି ମଧ୍ୟ ଚଳି ଯାଉଥିଲେ । ଗତ ବର୍ଷ ୧୯୯୭ ମସିହା ଫେବୃୟାରୀ ମାସରେ ତାଙ୍କର ୨ଏକର ୬୦ଡିସିମିଲି ଜମି କାରଖାନା ନିମନ୍ତେ ସରକାର ଅଧିଗ୍ରହଣ କଲେ । ଏହି ଜମି ଅଧିଗ୍ରହଣ ବାବଦରେ ଜଣକା ୫୬,୦୬୦ଟଙ୍କା ଲେଖାଏଁ ଦୁଇ ଭାଇଙ୍କୁ ମୋଟ ୧,୧୨,୧୨୦ଟଙ୍କା ମିଳିଥିଲା । ଦୁଇ ଭାଇଙ୍କ ନାମରେ ଅଲଗା ପାସ୍‌ବହି ଟିକିରି ପଞ୍ଚବଟୀ ଗ୍ରାମ୍ୟବ୍ୟାଙ୍କରେ ଖୋଲାଗଲା ଓ ସେଥିରେ ଏହି ଟଙ୍କା ଜମା କରାଗଲା । ଏଥିରେ ସାଧୁ ଝୋଡିଆଙ୍କ ପାସ୍ ବହି ନଂ- ୧୫/୫୦୧ ଥିଲା ।

ଶ୍ରୀ ସାଧବ ଝୋଡିଆ ଗୋଡିକାଲି ପଞ୍ଚାୟତରେ ରହୁଥିବା ହେତୁ ଏବଂ ସେଠାରୁ ଦୀର୍ଘ ୬୦ କି.ମି. ଦୁର ଟିକିରି ବ୍ୟାଙ୍କରେ ଟଙ୍କା ଉଠାଇବାରେ ଅସୁବିଧା ହେବା ହେତୁ ସେ ସେଠାକାର ବ୍ୟାଙ୍କ କର୍ମଚାରୀଙ୍କ ସହ ନିକଟରେ ଥିବା ଶିକର ପାଇ ପଞ୍ଚବଟୀ ବ୍ୟାଙ୍କରେ ଟଙ୍କା ରଖିବା ପାଇଁ ପରାମର୍ଶ କଲେ । ବ୍ୟାଙ୍କ (ଟିକିର ବ୍ୟାଙ୍କ) କର୍ମଚାରୀମାନେ ଜମି କିଣିଲେ ହିଁ ଟଙ୍କା ଦିଆଯିବ ଏବଂ ଟଙ୍କା ନେଲେ ଅଯଥାରେ ଖର୍ଚ୍ଚ ହୋଇଯିବ ବୋଲି ଉପଦେଶ ଦେଇଥିଲେ । ଫଳରେ ସାଧବ ଝୋଡିଆ ଆସି ଶିକରପାଇର ଜନୈକ ସାହୁକାରଙ୍କ (ପୂର୍ବରୁ ସଂପର୍କ ଥିବା ବ୍ୟକ୍ତି) ସହ କଥାବାର୍ତ୍ତା କରିଥିଲେ । ସେ(ସାହୁକାର) କହିଲେ, 'ମୋର ଜମିକୁ ତୁ କିଣିବୁ ବୋଲି ବ୍ୟାଙ୍କରେ କହିବୁ ଓ ମୁଁ ତୋ ସାଙ୍ଗରେ ଟିକିରି ଯାଇ ମୋ ଜମି ବିକୁଛି ବୋଲି କହିବି ।'

ପରେ ଦୁହେଁ ମିଶି ତା ୧୩.୦୩.୧୯୯୭ରିଖରେ ଟିକିରି ଯାଇ ବ୍ୟାଙ୍କ ଡ୍ରାଫ୍ଟ ଆକାରରେ ଟଙ୍କା ୫୨,୦୦୦/- ଉଠାଇ ଆଣି ଶିକରପାଇ ପଞ୍ଚବଟୀ ବ୍ୟାଙ୍କରେ ଏକ

ପାସ୍ ବହି ଖୋଲି ଶ୍ରୀ ସାଧବ ଝୋଡିଆଙ୍କ ନାମରେ ଟଙ୍କା ଜମା କରାଇଥିଲେ । ପରେ ପାସ୍ ବହିଟିକୁ ଜନୈକ ସାହୁକାର ନିଜ ପାଖରେ ରଖିଥିଲେ । କିଛିଦିନ ପରେ ତାଙ୍କ ଟଙ୍କା ଆବଶ୍ୟକ ହେବାରୁ ସାଧବ ଝୋଡିଆଙ୍କୁ ନ ଜଣାଇ ଶିକରପାଇ ପଞ୍ଚାୟତର ଖୁରାଳି ଗ୍ରାମର ଜଣେ ଆଦିବାସୀ ଲୋକକୁ ଡାକିଆଣି ବ୍ୟାଙ୍କରେ ସାଧବ ଝୋଡିଆ ବୋଲି କହି ଦସ୍ତଖତ କରି ସମସ୍ତ ଟଙ୍କା ଉଠାଇ ଆଣିଲା । ପରେ ସାଧବ ଯାଇ ବ୍ୟାଙ୍କରୁ ଟଙ୍କା ଉଠାଇବ ବୋଲି ସାହୁକାରଙ୍କୁ କହିବାରୁ ସାହୁକାର କହିଲେ ଯେ ସେ ତା'ର ସବୁ ଟଙ୍କା ଉଠାଇ ଦେଇଛି । କେତେଥର କେଉଁଥିପାଇଁ କେତେ ଟଙ୍କା ଉଠାଇଛି ତା'ର ଏକ ବିବରଣୀ ସାହୁକାର ନିମ୍ନପ୍ରକାରେ ଦେଇଥିଲେ ।

ପ୍ରଥମ ଥର ୧୦,୦୦୦ଟଙ୍କା (ଜମି କିଣିବା ପାଇଁ), ଦ୍ୱିତୀୟ ଥର ୧୫,୦୦୦ଟଙ୍କା (ସୁନା କିଣିବା ପାଇଁ), ତୃତୀୟ ଥର ୭,୦୦୦ଟଙ୍କା (ହଳ ବଳଦ କିଣିବା ପାଇଁ), ଚତୁର୍ଥ ଥର ୬୦୦ଟଙ୍କା (ମା ମଲାବେଳକୁ ଶୁଦ୍ଧକ୍ରିୟା କରିବା ପାଇଁ), ପଞ୍ଚମ ଥର ୧୫୦୦ଟଙ୍କା (ପୂର୍ବ ଋଣ ପରିଶୋଧ କରିବା ପାଇଁ) ମୋଟ ୩୪,୦୦୦ଟଙ୍କା ଦିଆଯାଇଥିଲା ଓ ତୁମର ବାକି ଟଙ୍କା ସଉଦାପତ୍ର/ଅନ୍ୟଜିନିଷ ନେବା ବାବଦରେ ଛିଡି ଯାଇଥିଲା । ତା' ପରେ ଘରେ ଆସି ସାଧବ ଝୋଡିଆ ମନ ଦୁଃଖରେ ନିଜ ଦୁଇ ପୁଅ ସହ ଏ ସଂପର୍କରେ ଆଲୋଚନା କଲା ଏବଂ ୩ଜଣ ମିଶି ଏକା ସାଙ୍ଗରେ ଯାଇ ସେ ସାହୁକାର କୁ ଟଙ୍କା ମାଗିଲେ ଏବଂ ବଡପୁଅ ଅଖିଳ ସାହୁକାରଙ୍କୁ ଧମକାଇଲେ । ଫଳରେ ମିଛ ହିସାବ କରିବା ବାହାନାରେ ପୁଣିଥରେ ହିସାବ କରି ସାହୁକାର ଏମାନଙ୍କୁ ୨୦୦୦ଟଙ୍କା ଦେଇଥିଲା । ହିସାବ କଲାବେଳେ ବଡ ପୁଅ ଅଖିଳ ଝୋଡିଆଙ୍କୁ ପାଖରେ ବସାଇଲା ନାହିଁ । ଏହିପରି ମୋଟ ୧୯,୧୦୦/-ଟଙ୍କାର ଜିନିଷ ଏମାନଙ୍କୁ ଦେଇଛି ବୋଲି ସାହୁକାର କହିଲା ।

ସାହୁକାର ପାଖରେ ଟଙ୍କା ଥିବାରୁ ଏମାନେ ତା ଦୋକାନରୁ ନିତ୍ୟବ୍ୟବହାର୍ଯ୍ୟ ଜିନିଷପତ୍ର ଆଣୁଥିଲେ । ଦେଇଥିବା ଜିନିଷପତ୍ରର ସବୁ ହିସାବ କରି ଏମାନଙ୍କର ଆଉ କିଛି ଟଙ୍କା ନାହିଁ ବୋଲି ଜଣାଇଦେଲା । ସାଧବ ଝୋଡିଆ କହେ 'ଆମେ ହିସାବ ଜାଣିପାରୁ ନ ଥିବାରୁ ସେ ଆମଠାରୁ ଠିକି କରି ବଳକା ଟଙ୍କା ନେଇଗଲା ।' ବର୍ତ୍ତମାନ ସାଧବ ଝୋଡିଆ ପାଖରେ ପୂର୍ବ ଜମି ବିକା ପଇସାରୁ କେବଳ ୧/୨ ଏକର ଜମି, ୨ତୁଳା ସୁନା ଓ ଏକ ହଳ ବଳଦ ଛଡା ଆଉ କିଛି ନାହିଁ । ବଳକା ସମସ୍ତ ଟଙ୍କା ଅନ୍ୟ ଉପାୟରେ ଖର୍ଚ୍ଚ କରିବା କଥା କହି ସାହୁକାର ଠକି ନେଇ ଚାଲିଗଲା । ଏମାନଙ୍କ ସରଳତାର ସୁଯୋଗ ନେଇ ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ ଶୋଷଣ ଆରମ୍ଭ କରିଦେଇଛନ୍ତି । ଏହା ଭିତରେ କେତେ ଯେ ସାଧବ ଝୋଡିଆ ଏହିପରି ବଞ୍ଚିତ, ଶୋଷିତ ହୋଇ ନ

ଥିବେ ତା'ର ହିସାବ କିଏ ରଖୁଛି । ଏମାନଙ୍କ ଭବିଷ୍ୟତ ପାଇଁ କୌଣସି ବ୍ୟବସ୍ଥା ନ କରି  ବିକାଶ ନାମରେ ବିନାଶ ହିଁ ଘଟୁଛି ।

**ଗ୍ରାଫାଇଟ୍ ଖଣି:**

ରାୟଗଡା ଜିଲ୍ଲାର କାଶୀପୁରକୁ ଖଣିର ଗନ୍ତାଘର କହିଲେ ଅତ୍ୟୁକ୍ତି ହେବ ନାହିଁ । କାଶୀପୁରରେ ଆଲୁମିନାଠାରୁ ଆରମ୍ଭ କରି ମାଙ୍ଗାନିଜ, ଗ୍ରାଫାଇଟ୍ ପ୍ରଭୃତି ପ୍ରଚୁର ପରିମାଣରେ ଗଚ୍ଛିତ ହୋଇ ରହିଛି । ଫଳରେ ଖଣି ବ୍ୟବସାୟୀଙ୍କ ଦୃଷ୍ଟିରେ କାଶୀପୁର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରୂପେ ଚିତ୍ରିତ ହୋଇଛି । ଏଠାରେ ଧାତୁ ଉତ୍ତୋଳନ କରାଗଲେ ସରକାର ତଥା ବ୍ୟବସାୟୀଙ୍କ ଉନ୍ନତି ହେବ । ଏକଥା ଉପର ଠାରୁ ତଳ ପର୍ଯ୍ୟନ୍ତ ଲୋକ ଅବିଶ୍ୱାସ କରନ୍ତି । କିନ୍ତୁ ଏହା ଫଳରେ ଗରିବ ଆଦିବାସୀମାନଙ୍କର କେତେ ଲାଭ ହେବ ସେ କଥା କମ୍ ଲୋକ ବିଚାରକୁ ନିଅନ୍ତି । ଏହାକୁ ଦେଖି ଆଗରେ ରଖି ଆରୋହଣ ଏକ ଉଦାହରଣ ଭାବେ ଏଠାରେ ହେଉଥିବା ଏକ ଗ୍ରାଫାଇଟ୍ ଖଣିର ବିଷୟକୁ ଆଲୋଚନା ଭିତରକୁ ଆଣିଛି ।

କାଶୀପୁର ବ୍ଲକ ଅନ୍ତର୍ଗତ ଗୋଡିବାଲି ପଞ୍ଚାୟତର ଏକ ଗ୍ରାଫାଇଟ୍ ଖଣି ବିଷୟରେ ଅନୁଧ୍ୟାନ କରିବାରୁ ଜଣାପଡେ ଯେ ଏହା ପ୍ରଧାନ ଇଣ୍ଡଷ୍ଟ୍ରି ନାମରେ ପରିଚିତ । ଏହାକୁ ସ୍ଥାନୀୟ ଲୋକେ 'ସୁରମା ଫେକ୍ଟୋରୀ' ବୋଲି କହନ୍ତି । ଏହି ସୁରମା ଫେକ୍ଟୋରୀ ବା ପ୍ରଧାନ ଇଣ୍ଡଷ୍ଟ୍ରୀ ୧୯୯୧-୯୨ ମସିହାଠାରୁ ବନ୍ଧମାଣ୍ଡି ନିକଟସ୍ଥ ପ୍ରାୟ ୫ଏକର ଭଙ୍ଗା ଜମିରେ ତାର କାୟାବିସ୍ତାର କରି ଆସୁଅଛି । ପାଖରେ ଥିବା ଡଙ୍ଗରରୁ ଗ୍ରାଫାଇଟ୍ ଖଣି ଉତ୍ତୋଳନ କରି ପରିସ୍ରବଣ ପଦ୍ଧତିରେ ଗ୍ରାଫାଇଟ୍ ନିଷ୍କାସନ କରିଆସୁଅଛି । ବନ୍ଧମାଣ୍ଡି ଗ୍ରାମର ଶ୍ରୀ ସମନା ମାଝୀ କହନ୍ତି, 'ଏହି କମ୍ପାନୀର ଲୋକେ ପ୍ରଥମେ ଆସି ଭିତରେ ଭିତରେ ତହସିଲଦାର୍‌ଙ୍କୁ ଧରି ସେହି (ମୋ) ଜାଗା ତାଙ୍କ ନାମରେ କରାଇନେଲେ । ମୁଁ ସେହି ଜାଗାରେ ମୋ ପୂର୍ବପୁରୁଷ ଅମଳରୁ ଚାଷ କରି ଆସୁଥିଲି । ଏଣୁ ଜମି ବାବଦରେ ତାଙ୍କୁ ପଚାରିଲେ ସେ ଏହା ସରକାରୀ ଜମି ଓ ତାକୁ ଆମେ ସରକାରଙ୍କଠାରୁ ଲିଜ୍ ନେଇଛୁ ବୋଲି କହୁଛନ୍ତି । ବାରମ୍ବାର ମୁଁ ଏ ବାବଦରେ ସରକାରଙ୍କୁ ଜଣାଇବା ପରେ ମଧ୍ୟ କୌଣସି ସୁଫଳ ମିଳି ନଥିବାରୁ ଏବେ ଆଉ କିଛି କହୁନାହିଁ । ବନ୍ଧମାଣ୍ଡି ଗ୍ରାମର କେତେ ଜଣଙ୍କୁ ହାତରେ ରଖି ଏହି ମାଇନିଂ ତାର ରାଜୁତି ଚଳାଇଛି ।'

ସେହି ଗ୍ରାମର ଗଅଁତିଆ ଶ୍ରୀ ରାଇସିଂ ମାଝୀ କହନ୍ତି, 'ପ୍ରଥମେ ଲୋକେ ଏଥିରେ କାମ ପାଉଥିଲେ । ଲୋକମାନଙ୍କ ଦ୍ୱାରା ଖଣି ଖୋଳାଯାଉଥିଲା ଓ ପ୍ରକ୍ରିୟାକରଣ କରାଯାଇଥିଲା । କିନ୍ତୁ ବର୍ତ୍ତମାନ ଯନ୍ତ୍ର ସାହାଯ୍ୟରେ ଖଣି ଖୋଳାଯାଉଛି ଓ ଏସକେଭେଟରର ବେଲ୍‌ଟ ସାହାଯ୍ୟରେ ଗୁଣ୍ଡ ମାଟି ବୋହୁଛି । ଫଳରେ ଆଗଭଳିଆ ଆଉ

ଲୋକେ କାମ ପାଉନାହାନ୍ତି । ଲୋକେ ମାସଟିଏ କାମ କଲେ ନେବେ ୫୦ଟଙ୍କା କେବେ ୧୦୦ଟଙ୍କା ଲେଖା ଦେଉଛି । ଏଣୁ ଆମ ଗାଁରେ ଲୋକେ ଆଉ ଆଗଭଳି କାମକୁ ଯାଉନାହାନ୍ତି । ଆମେ ଗରିବ ଲୋକ ପେଟ ପାଇଁ କାମ କରୁଛୁ । ସେ ଆମକୁ ଠିକ୍ ସମୟରେ ପଇସା ନ ଦେଲେ କ'ଣ ଖାଇ କାମ କରିବୁ । ଧୋବାସିଲ ଗ୍ରାମର କୁମାର ଓ୍ୱାନ ମାଝୀ କହନ୍ତି, 'ସେଠାକୁ ତୁଛାରେ (ବୋକାରେ) କାମ କରି ଯିବାକଥା, ପଇସାତ ଠିକ୍ ସମୟରେ ମିଳୁନି । ଖାଲି ଦେହରେ ଗ୍ରାଫାଇଟ୍ କଳା ଲଗେଇ ହୋଇ ଆସିବା କଥା ।'

ଏହି ମାଇନିଂ ଦ୍ୱାରା ଯେଉଁ ମଇଳା ପାଣି ଗୋଡିବାଲି ପଞ୍ଚାୟତର ଉହାଗାଡ ନଦୀରେ ଛଡାଯାଇଛି ତା'ଦ୍ୱାରା ପଞ୍ଚାୟତର ଛଅଟି ଗ୍ରାମ ଯଥା; ନାରିଙ୍ଗିବାଡି, ପଣସଗୁଡା, ଢେରକା, ପୋଡେଙ୍ଗ, ଗିର୍ଲିଗୁମ୍ମା, ବାହାରଦେରବା ତଥା ପାଖରେ ଥିବା କଲ୍ୟାଣସିଂପୁର ବ୍ଲକର  ବୁଡାଗୁଡା, ଜଳଜିଆ, ଗରତଲି, କଦେଲଚୁଆଁ, କୁମ୍ଭାରସାହି, ଡେପାଗୁଡା, ଚାମରଯୋଡି, ଦେଉଳବାଡି, ଓଲଣ୍ଡା, ପେବରିଗୁଡା, କିଷବପାତ୍ରଗୁଡା, କୁମ୍ଭାରଗୁଡା ଓ ଶିକରପାଇ ଗ୍ରାମପଞ୍ଚାୟତର ଶିକରପାଇ ଗାଁର ଲୋକେ ନଦୀଜଳ ବ୍ୟବହାର କରିବାରୁ ବଞ୍ଚିତ ହେଉଛନ୍ତି । ଏହି ପାଣି ବ୍ୟବହାର କଲେ ଦେହରେ ରାସାୟନିକ ପ୍ରତିକ୍ରିୟା ସୃଷ୍ଟି ହୋଇ ଫୋଟକା ସୃଷ୍ଟି ହେଉଛି । ତା'ପରେ ଘା' ହୋଇଯାଉଛି । ପାଖରେ ଥିବା ଗାଁର ଗାଈଗୋରୁ ପଡି ମରୁଛନ୍ତି । ଏହାର ପ୍ରତିକାର ନିମନ୍ତେ ଗରତଲି ଗ୍ରାମର ଲୋକେ ଥରେ ମାଇନିଂର ମେନେଜରଙ୍କୁ ମାଡ ମାରି ସେହି ମଇଳା ପାଣି ପିଆଇଥିଲେ, ଫଳରେ କମ୍ପାନୀ କର୍ତ୍ତୃପକ୍ଷ କିଛିଦିନ ପାଖରେ(ଫେକ୍ଟ୍ରୋରୀ) ଗୋଟିଏ ବନ୍ଧଖୋଳି ମଇଳାପାଣିକୁ ରଖି ରାତିରେ ନଦୀରେ ଛାଡୁଥିଲେ । କିନ୍ତୁ ବନ୍ଧ ପୋତି ହୋଇଯିବା ଫଳରେ ଯେଉଁ ଅବସ୍ଥାକୁ ସେହି ଅବସ୍ଥା । ଲୋକମାନେ ଏହାର ପ୍ରତିକାର କଲେ ଗାଁରେ ପ୍ରଲୋଭନ ଦେଖାଇ କଥାକୁ ଚପାଇ ଦିଆଯାଇଛି ।

ଏହି ନଦୀରେ ୧୯୯୬ ମସିହାରେ ଆଦିବାସୀ ଉନ୍ନୟନ ପ୍ରକଳ୍ପ ଦ୍ୱାରା ୩୦ଲକ୍ଷ ଟଙ୍କାରେ ଏକ କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନାରିଙ୍ଗିବାଡି ଗ୍ରାମଠାରେ ନିର୍ମାଣ କରାଯାଇଛି । ଏହି ପ୍ରକଳ୍ପ ଦ୍ୱାରା ପଣସଗୁଡା ଗ୍ରାମ ପ୍ରାୟ ୨୦୦ଏକର ଜମିରେ ଜଳସେଚିତ ହେଉଅଛି ।

ମାଇନିଂରୁ ଯାଉଥିବା ମଇଳା ପାଣିରେ ଗ୍ରାଫାଇଟ୍ ଅଂଶ ରହୁଥିବା ଯୋଗୁଁ ଏହା ମୁଣ୍ଡାକୁ ନଷ୍ଟ କରିବା ସହ ଜଳସେଚିତ ଜମି ଉପରେ  ଗ୍ରାଫାଇଟ୍‌ରେ ଏକ ଆବରଣ ପଡୁଛି । ଏ ବାବଦରେ ପ୍ରକଳ୍ପ କ୍ଷେତ୍ରାଧିକାରୀ କମ୍ପାନୀ କର୍ତ୍ତୃପକ୍ଷଙ୍କୁ ପ୍ରତିକାର ପାଇଁ ମଧ୍ୟ ଜଣାଇଥିଲେ । କିନ୍ତୁ ତାର କୌଣସି ପ୍ରତିକ୍ରିୟା କମ୍ପାନୀକୁ ହେଲା ନାହିଁ । ସରକାର

ବର୍ତ୍ତମାନ ଏହାର କୌଣସି ପ୍ରତିକାର ନ କଲେ ପଣସଗୁଡା ଗ୍ରାମରେ କିଛିଦିନ ପରେ ଜମିରେ ମାଟି ବଦଳରେ ଗ୍ରାଫାଇଟ୍ ଆବରଣ ସୃଷ୍ଟି କରିବା ଫଳରେ ଲୋକେ ପାଣିଥାଇ ମଧ୍ୟ ଚାଷ କରିବାରୁ ବଞ୍ଚିତ ହେବେ ।

ଏଠିକାର ଲୋକେ ଯେଉଁ ଡଙ୍ଗର ଓ ସରକାରୀ ଜମିରେ ବର୍ଷାଦିନିଆ ଫସଲ କରି ଜୀବିକା ଅର୍ଜନ କରୁଥିଲେ ବର୍ତ୍ତମାନ ସେହି ଜମିରେ କମ୍ପାନୀରୁ ବାହାରୁଥିବା ଗୁଣ୍ଡ ଏବଂ ଧୂଳିରେ ଭର୍ତ୍ତି ହୋଇଯାଉଛି । ସରକାର ଲୋକମାନଙ୍କୁ ଦୁଇ ଡିସ୍‌ମିଲ୍ ଜାଗା ଯୋଗାଇ ଦେଇ ପାରୁନଥିବାବେଳେ ଲୋକମାନେ କେତେ ପରିଶ୍ରମ କରି ଡଙ୍ଗର କାଟି ଯେଉଁ ଜମି ତିଆରି କରିଛନ୍ତି, ତାହାକୁ ନଷ୍ଟ କରିବା ପାଇଁ କମ୍ପାନୀମାନଙ୍କୁ ଆଣି ଆଦିବାସୀ ଅଞ୍ଚଳରେ ସ୍ଥାନ ଦେଉଛନ୍ତି । ଖାଲି ଏତିକି ନୁହେଁ ବରଂ ଏଥିପାଇଁ ଲୋକମାନଙ୍କୁ ପଦୁଟିଏ ହେଲେ ପଚରା ଯାଉନାହିଁ; ଏକଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ଗତବର୍ଷ କଥା । ଏହି କାରଖାନାରେ କାମ କରୁଥିବାବେଳେ କୁମାର ଝୋଡିଆଙ୍କର ଲୁଗା ମେସିନ୍‌ରେ ଲାଗି ଯାଇଥିଲା ଓ ସେ ମେସିନ୍ ଭିତରେ ଚାପି ହୋଇଥିଲା । ଫଳରେ ଘଟଣାସ୍ଥଳରେ ତାଙ୍କର ମୃତ୍ୟୁ ହୋଇଥିଲା । ଏହା ଭିତରେ ବର୍ଷେ ବିତିଯାଇଥିଲେ ମଧ୍ୟ ତାଙ୍କ ପରିବାରକୁ କ୍ଷତିପୂରଣ ଦିଆଯାଇ ନାହିଁ । ଏ ବିଷୟରେ କୁମାରଙ୍କର ପରିବାରବର୍ଗ ସରକାରଙ୍କୁ ଲିଖିତ ଭାବେ ଜଣାଇଥିଲେ ମଧ୍ୟ ତାଙ୍କୁ କୌଣସି ପ୍ରକାର ସାହାଯ୍ୟ ମିଳିନାହିଁ । ଗରିବ ଲୋକ ନିଜ ପେଟ ପାଇଁ ନିଜର ଜୀବନ ଦେବାକୁ ପଛାଉ ନ ଥିବା ସ୍ଥଳେ ଲାଭଖୋର ଗୋଷ୍ଠୀ ନିଜ ପାଇଁ ଅନ୍ୟର ଜୀବନ ନେବାକୁ ମଧ୍ୟ ପଛାଉ ନାହାନ୍ତି । ସରକାର ଯଦି ଏହାର କୌଣସି ପ୍ରତିକାର ନ କରନ୍ତି ତେବେ ଏହି ପଞ୍ଚାୟତର ଅନେକ ଅଧିବାସୀ ନିଜର ଚାଷ ଜମି ହରାଇବା ସଂଗେ ସଂଗେ ସେମାନଙ୍କର ଜୀବିକା ହରାଇ ଗରିବରୁ ଅଧିକ ଗରୀବ ହେବେ ଏକଥା ସଂପୂର୍ଣ୍ଣ ସତ୍ୟ । ସରକାର ଶିଳ୍ପାଞ୍ଚଳ ସୃଷ୍ଟି କରି ଗରୀବ ଲୋକମାନଙ୍କର ଉନ୍ନତି ହେଉଛି ବୋଲି ଭାବିଗଲେ ଯେ ଗାଁର ଉନ୍ନତି ହୋଇଯାଏ ତାହାର ସତ୍ୟାସତ୍ୟ ଖୋଜିବା ପାଇଁ ଏହି ଅଞ୍ଚଳକୁ ଆସିବା ଦରକାର ।

ମାର୍ଚ୍ଚ - ୧୯୯୯



# ମୋ ଅନୁଭୂତିରୁ

*କୃତୀ ଶିକ୍ଷକ ରୂପ ନାରାୟଣ ମାଝୀ ଙ୍କ ସହ  ଆରୋହଣର ଏକ ସାକ୍ଷାତକାର*

**ଆରୋହଣ** - ଆପଣଙ୍କ ନାଁ ?

**ଶ୍ରୀଯୁକ୍ତ ମାଝୀ** - ରୂପନାରାୟଣ ମାଝୀ ।

**ଆରୋହଣ** - ଆପଣ କେବେଠାରୁ ଶିକ୍ଷକତା କରି ଆସୁଛନ୍ତି ?

**ଶ୍ରୀଯୁକ୍ତ ମାଝୀ** - ଦୀର୍ଘ ୨୦ ବର୍ଷ ହେଲା ମୁଁ ଶିକ୍ଷକତା କରି ଆସୁଛି । ପ୍ରଥମେ କୋରାପୁଟର ନାରାୟଣ ପାଟଣାରେ ଯୋଗଦେଇ  ସେଠାରେ ୧୦ ବର୍ଷ ରହିଲି । ତା ପରଠାରୁ ୧୦ ବର୍ଷ ହେବ କାଶୀପୁର ବ୍ଲକର ଏହି ରେଙ୍ଗା ଗାଁରେ ରହିଆସୁଛି । ସେତେବେଳେ ନାରାୟଣ ପାଟଣା ବ୍ଲକଟା କାଶୀପୁରଠାରୁ ଟିକେ ଉନ୍ନତ ମାନର ଥିଲା ।

**ଆରୋହଣ** - ଆଗେ ଏ ଅଞ୍ଚଳରେ ତ ସ୍କୁଲ ନଥିଲା, ଆପଣ କିପରି ପାଠ ପଢ଼ିପାରିଲେ ?

**ଶ୍ରୀଯୁକ୍ତ ମାଝୀ** - ଆଗେ ଏ ଅଞ୍ଚଳରେ ସ୍କୁଲ ଥିଲା । କିନ୍ତୁ ଖୁବ୍ କମ୍ ସ୍କୁଲ ଥିଲା । ଆମ ଗାଁର ସ୍କୁଲଟି ୧୯୪୭ ମସିହାରୁ ଅଛି । ମୁଁ ଯେତେବେଳେ ପଢୁଥିଲି, ସେତେବେଳେ ଶିକ୍ଷକମାନେ ଠିକ୍‌ରେ ସ୍କୁଲକୁ ଆସୁଥିଲେ । ସେତେବେଳେ ସେମାନେ ସ୍କୁଲରେ ରହି ପାଠ ପଢ଼ଉଥିଲେ । ତେଣୁ ପିଲାମାନେ ମଧ୍ୟ ବେଶି ଆସୁଥିଲେ । ଆଜିକାଲି ପିଲାମାନେ ସ୍କୁଲ ନ ଆସିବାର କାରଣ ମୂଳରେ ଶିକ୍ଷକମାନଙ୍କର ଦୋଷ ବେଶି । ସେମାନେ ଠିକ୍‌ରେ ସମୟ ନ ଆସିବାରୁ ପିଲାଙ୍କ ସଂଖ୍ୟା କମି ଯାଉଛି । ଅବଶ୍ୟ ଏଥିପାଇଁ ଅନ୍ୟ କାରଣ ବି ଅଛି ।

**ଆରୋହଣ** - ଶିକ୍ଷକତା ବ୍ୟତୀତ ଆପଣ ଅନ୍ୟ କିଛି କରନ୍ତି କି ?

**ଶ୍ରୀଯୁକ୍ତ ମାଝୀ** - ବର୍ତ୍ତମାନ କେବଳ ଶିକ୍ଷକତା ହିଁ କରୁଛି । ପୂର୍ବରୁ ଆମ ଗାଁରେ ଗୋଟେ ସଂଘ  କରିଥିଲି । ଅନ୍ୟ କେତେଜଣ ସହଯୋଗୀ ବନ୍ଧୁଙ୍କୁ ନେଇ ଗାଁରେ ତଥା ପାଖାପାଖି ଗାଁରେ ଲୋକଙ୍କୁ ଯାଇ ଶିକ୍ଷା, ସ୍ୱାସ୍ଥ୍ୟ, ତଥା କୁସଂସ୍କାର ଓ ଅନ୍ଧବିଶ୍ୱାସ ଉପରେ ସଚେତନ କରାଉଥିଲି । ବର୍ତ୍ତମାନ ତାହା କରିପାରୁନି । କାରଣ ଅଧିକାଂଶ ସମୟ ତ

ସ୍କୁଲରେ ଯାଉଛି, ବାକି ସମୟତକ ଅନ୍ୟମାନଙ୍କ ସହଯୋଗ ଅଭାବରୁ ଠିକ୍‌ରେ ବିନିଯୋଗ କରିପାରୁନି ।

**ଆରୋହଣ** – ପଢ଼ାଇବା କ୍ଷେତ୍ରରେ ଆପଣଙ୍କୁ କିପରି ସହଯୋଗ ମିଳୁଛି ? ବିଶେଷ କରି ଆପଣ ପଢ଼ାଉଥିବା ଗାଁରୁ କିପରି ସହଯୋଗ ମିଳୁଛି ?

**ଶ୍ରୀଯୁକ୍ତ ମାଝୀ** – ରେଙ୍ଗାରେ ଶିକ୍ଷାପ୍ରତି ଗାଁ ଲୋକଙ୍କର କୌଣସି ସହଯୋଗ ନାହିଁ । ଅଭିଭାବକମାନେ ପିଲାମାନଙ୍କୁ ବୁଝାଇ କରି ସ୍କୁଲ ପଠାଉ ନାହାନ୍ତି କିମ୍ବା ସ୍କୁଲ ଦେଖିବାକୁ ମଧ୍ୟ ଆସୁନାହାନ୍ତି । ମୁଁ ପ୍ରଥମେ ଆସିଲାବେଳେ ସ୍କୁଲକୁ ପିଲା ଆସୁନଥିଲେ । ମୁଁ କେତେଥର ଡଙ୍ଗର ଯାଇ ପିଲାଙ୍କୁ ଡାକି ଆଣିଛି । ବହୁତ ବୁଝାଇବା ପରେ ସ୍କୁଲରେ ପିଲା ସଂଖ୍ୟା ଧୀରେ ଧୀରେ ବୃଦ୍ଧି ପାଉଛି ।

**ଆରୋହଣ** – ଆପଣଙ୍କ ସ୍କୁଲରେ କେତୋଟି ଶିକ୍ଷକ ପଦବୀ ଅଛି ଏବଂ ବର୍ତ୍ତମାନ କେତେଜଣ ଶିକ୍ଷକ ଅଛନ୍ତି ?

**ଶ୍ରୀଯୁକ୍ତ ମାଝୀ** – ଆମ ସ୍କୁଲରେ ପଦବୀ ସଂଖ୍ୟା ଛରି । କିନ୍ତୁ ବର୍ତ୍ତମାନ ଆମେ ୫ଜଣ ଅଛୁ । ପ୍ରଧାନ ଶିକ୍ଷକ ଅଧିକାଂଶ ସମୟ ଅଫିସ୍ କାମରେ ବ୍ୟସ୍ତ ରହୁଥିବାରୁ ଆଉଜଣେ ଶିକ୍ଷକଙ୍କର ଆବଶ୍ୟକତା ଉପଲବ୍ଧ କରି ଚେୟାରମ୍ୟାନ ଜଣେ ଶିକ୍ଷକଙ୍କୁ ଡେପୁଟେସନରେ ଦେଇଛନ୍ତି ।

**ଆରୋହଣ** – ଏ ଅଞ୍ଚଳରେ ଆଦିବାସୀ ପିଲାଙ୍କ ପାଇଁ ପ୍ରଚଳିତ ଶିକ୍ଷା ଶୈଳୀ ଠିକ୍ ଅଛିକି ?

**ଶ୍ରୀଯୁକ୍ତ ମାଝୀ** – ବର୍ତ୍ତମାନ ଆମ ଅଞ୍ଚଳରେ ଯେଉଁ ପଦ୍ଧତିରେ ଶିକ୍ଷା ଦିଆଯାଉଛି, ତାହା ଠିକ୍ ନୁହେଁ । ଏବେ ପାଶ୍ଚାତ୍ୟ ସଭ୍ୟତା ଢାଞ୍ଚାରେ ଆମ ସ୍କୁଲରେ ଶିକ୍ଷା ଦିଆଯାଉଛି । ପିଲାର ଚରିତ୍ର ଗଠନ ଉଦ୍ଦେଶ୍ୟରେ ଶିକ୍ଷା ଦିଆଯାଉନି । ତେଣୁ ସେମାନେ କେବଳ ଚାକିରିକୁ ନିର୍ଭର କରି ରହି ଯାଉଛନ୍ତି । ନା ଚାକିରି ପାଉଛନ୍ତି, ନା ଅନ୍ୟ କିଛି ଶିଖି ପାରୁଛନ୍ତି ।

**ଆରୋହଣ** – ଶିକ୍ଷକମାନେ ଚାହିଁଲେ ପିଲାଙ୍କୁ ଚରିତ୍ର ଗଠନ ଦିଗରେ ଶିକ୍ଷା ଦେଇ ପାରିବେ । ମାତ୍ର ତାହା ହୋଇପାରୁନି କାହିଁକି ?

**ଶ୍ରୀଯୁକ୍ତ ମାଝୀ – ହଁ ଜଣେ ଶିକ୍ଷକ ଚାହିଁଲେ ଭଲ ଚରିତ୍ର ଗଠନ ପାଇଁ ଶିକ୍ଷା ଦେଇ ପାରିବ । ମାତ୍ର ସେଥିରେ ଅନେକ ପ୍ରତିବନ୍ଧକ ଅଛି । ସେଥିପାଇଁ ଭଲ ପରିବେଶ ଦରକାର । ବର୍ତ୍ତମାନର ପରିବେଶରେ ଚରିତ୍ର ଗଠନ ଶିକ୍ଷା ଦେବା କଷ୍ଟ, କାରଣ ପିଲାର ଚାରିପଟେ ଯେଉଁ କଳୁଷିତ ପରିବେଶ ଅଛି ତାହା ତାର ଚରିତ୍ର ଗଠନ ଦିଗରେ ଆଦୌ ସହାୟକ ନୁହେଁ । ବରଂ ଏହି ପରିବେଶର କୁପ୍ରଭାବ ପିଲା ଉପରେ ବେଶି ପଡୁଛି ।**

**ଆରୋହଣ** - ଆପଣ ଏପରି ଶିକ୍ଷା ଦେବାପାଇଁ କେବେ ଚେଷ୍ଟା କରିଛନ୍ତି କି ?

**ଶ୍ରୀଯୁକ୍ତ ମାଝୀ** - ମୁଁ ବହୁତ ଚେଷ୍ଟା କରିଛି । ପ୍ରାଚୀନ ଭାରତୀୟ ଶିକ୍ଷା ପଦ୍ଧତିରେ ଶିକ୍ଷା ଦେବାପାଇଁ । ଅଲଗା ସମୟରେ ପିଲାମାନଙ୍କୁ ଧନ୍ଦାମୂଳକ ଶିକ୍ଷା ବିଷୟରେ ଅନେକ ବୁଝାଇଛି । ସେଥିମଧ୍ୟରୁ ଅନେକ ପିଲା ତାହା ଗ୍ରହଣ କରିଛନ୍ତି । ମାତ୍ର ଏବେ ସୁଦ୍ଧା ସେମାନେ ଛାତ୍ର ଥିବାରୁ ସଫଳତା କିଛି ଜଣାପଡ଼ିନି ।

**ଆରୋହଣ** - ଆଦିବାସୀ ଅଞ୍ଚଳରେ ଅନେକ ସ୍କୁଲ ଠିକ୍‌ରେ ଚାଲୁନାହିଁ । ଏହାର କାରଣ କ'ଣ ହୋଇପାରେ ?

**ଶ୍ରୀଯୁକ୍ତ ମାଝୀ** - ଆମ ଅଞ୍ଚଳରେ ସ୍କୁଲ ଠିକ୍ ଭାବରେ ଚାଲୁ ନାହିଁ । ଏହା ସତକଥା । ଶିକ୍ଷକମାନଙ୍କର ଠକାମି ପ୍ରବୃତ୍ତି ଏବଂ ବିଭାଗୀୟ ଅଧିକାରୀ ତଥା କର୍ମଚାରୀମାନଙ୍କର ଅବହେଳା ଏହାର ମୁଖ୍ୟ କାରଣ । ଗାଁ ଲୋକ ଏବଂ ଅଭିଭାବକମାନେ ବାରମ୍ବାର ଅଭିଯୋଗ କଲେ ମଧ୍ୟ କିଛି ଫଳ ହେଉନି । କାରଣ ଉପରିସ୍ଥ ଅଧିକାରୀମାନେ ଏଥିପାଇଁ କୌଣସି ପଦକ୍ଷେପ ନେଉନାହାଁନ୍ତି ।

**ଆରୋହଣ** - ଆପଣଙ୍କ ସ୍କୁଲ ଠିକ୍‌ରେ ଚାଲିଛି କି? ସ୍କୁଲରେ ଯଥେଷ୍ଟ ପାଠ୍ୟୋପକରଣ ଅଛି କି ?

**ଶ୍ରୀଯୁକ୍ତ ମାଝୀ** - ମୁଁ ଯେଉଁଠି ଅଛି ସେ ସ୍କୁଲ ଠିକ୍‌ରେ ଚାଲୁଛି । ମୋ ନିଜ ଗାଁ ସ୍କୁଲଟି ଠିକ୍‌ରେ ଚାଲୁନାହିଁ । ମୁଁ ସେଥିପାଇଁ ଖୁବ୍ ଦୁଃଖିତ । ଏଥିପାଇଁ ବିଭାଗୀୟ କର୍ତ୍ତୃପକ୍ଷ ଦାୟୀ । ଗାଁ ଲୋକ ଅଭିଯୋଗ କଲେ ବିଭାଗୀୟ କର୍ତ୍ତୃପକ୍ଷ ଗାଁ ଲୋକଙ୍କ ଆଗରେ ଶିକ୍ଷକଙ୍କୁ ଧମକାଉଛନ୍ତି । କିନ୍ତୁ ପରେ ସେମାନେ ଶିକ୍ଷକଙ୍କଠାରୁ ଲାଞ୍ଚ ନେଇ ପୁଣି ସେଇ ଏକା ଅବସ୍ଥା ସୃଷ୍ଟି କରୁଛନ୍ତି । ଆମ ସ୍କୁଲରେ ଯଥେଷ୍ଟ ପାଠ୍ୟୋପକରଣ ନଥିଲେ ବି ଯାହା ଅଳ୍ପ କିଛି ଅଛି, ସେଥିରେ ଆମେ ଚଳେଇ ନେଉଛୁ । ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ବହି ବ୍ଲକ ତରଫରୁ ମିଳୁଛି କିନ୍ତୁ ତାହା ଠିକ୍ ସମୟରେ ଏବଂ ଯଥେଷ୍ଟ ପରିମାଣରେ ମିଳୁନାହିଁ । ଲାଇବ୍ରେରୀରେ ୩୦୦-୪୦୦ ବହି ଅଛି । ସରକାରଙ୍କ ତରଫରୁ ଅନ୍ୟ ସାହାଯ୍ୟ ମଧ୍ୟ ମିଳୁଛି ।

**ଆରୋହଣ** - ଶିକ୍ଷାଦାନ କ୍ଷେତ୍ରରେ ତଥା ସରକାରଙ୍କ ଅନ୍ୟ କାର୍ଯ୍ୟକ୍ରମରେ ସାମିଲ ହେବାରେ କିଛି ସମସ୍ୟା ସୃଷ୍ଟି ହେଉ ଛି କି ?

**ଶ୍ରୀଯୁକ୍ତ ମାଝୀ** - ହଁ ହେଉଛି । ପଢ଼ାଇଲାବେଳେ ପିଲାଙ୍କୁ ଯାହା ପଢ଼ାଯାଉଛି ତାହା ସେମାନେ ଘରେ ଯାଇ ପଢୁନାହାନ୍ତି । ସେମାନେ ଡଙ୍ଗର ଯାଉଛନ୍ତି । ଘର କାମ କରୁଛନ୍ତି । ବାପା, ମା' ମଧ୍ୟ ଯଥେଷ୍ଟ ସଚେତନ ନଥିବାରୁ ସେମାନଙ୍କୁ କିଛି କହୁନାହାନ୍ତି । ପାଠ ପଢାରେ ନିୟମିତତା ରହୁନି । ତେଣୁ ସେମାନଙ୍କୁ ପଢ଼ାଇବା କଷ୍ଟ

ହେଉଛି । ପାଠ ପଢ଼ାକୁ ଆଗେଇ ନେବାରେ ଅସୁବିଧା ହେଉଛି । ଏହା ବ୍ୟତୀତ ସରକାରଙ୍କ ଅଲଗା କାମ ଯେମିତିକି ଜନଗଣନା, ନିର୍ବାଚନ, ପଲ୍ସପୋଲିଓ, ସର୍ବେକ୍ଷଣ ଇତ୍ୟାଦିରେ ନିୟୋଗ ହେଲାବେଳେ ପିଲାଙ୍କର କ୍ଷତି ହେଉଛି । କିନ୍ତୁ ଯେହେତୁ ଏହା ସରକାରଙ୍କ କାମ ସେଥିପାଇଁ କେହି କିଛି କୁହନ୍ତି ନାହିଁ । ପୁଣି ଯେହେତୁ ଏହା ପୂର୍ବରୁ ଶିକ୍ଷକମାନଙ୍କ ଦ୍ୱାରା ହୋଇ ଆସିଛି ସେଥିପାଇଁ କେହି ଅଭିଯୋଗ ମଧ୍ୟ କରୁନାହାନ୍ତି ।

ତା'ଛଡ଼ା ଆଦିବାସୀ ଅଞ୍ଚଳରେ ବେଶି ଅଶିକ୍ଷିତ । ଏ ଅଞ୍ଚଳରେ ଯେତେ ସବୁ ଅବହେଳା ହେଉଛି ତାକୁ ସଠିକ୍ ବାଟରେ ପହଞ୍ଚାଇବାକୁ କାହାର ତତ୍ପରତା ନାହିଁ । ଯେଉଁଥିପାଇଁ ଏଠି ଅବହେଳାଟା ବେଶି ମାତ୍ରାରେ ବଢ଼ିଚାଲିଛି ।

**ଆରୋହଣ** – ଜିଲ୍ଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ଠିକ୍‌ରେ କାର୍ଯ୍ୟକାରୀ ହେଉଛି କି ?

**ଶ୍ରୀଯୁକ୍ତ ମାଝୀ** – ଡି.ପି.ଇ.ପି ସବୁଆଡ଼େ ଚାଲିଛି । ଯୋଜନା ଚାଲିଛି, ତାଲିମ୍ ମଧ୍ୟ ଦିଆଯାଉଛି । କିନ୍ତୁ ତାହା କାର୍ଯ୍ୟକାରୀ ହେଉନାହିଁ । ଶିକ୍ଷକମାନେ ଜାଣିଶୁଣି ଠକୁଛନ୍ତି । ତେଣୁ କେମିତି ବା କାର୍ଯ୍ୟକାରୀ ହେବ ? ଉପରୁ କୌଣସି ଚାପ ପଡୁନଥିବା ଯୋଗୁଁ ଶିକ୍ଷକମାନେ ଢ଼ିଲା କରୁଛନ୍ତି ।

**ଆରୋହଣ** – ମଧ୍ୟାହ୍ନ ଭୋଜନ ଦେବା ଦ୍ୱାରା ଶିକ୍ଷାର ପ୍ରସାର ଅଧିକ ହୋଇପାରିଛି କି ?

**ଶ୍ରୀଯୁକ୍ତ ମାଝୀ** – ମଧ୍ୟାହ୍ନ ଭୋଜନ ଦେବା ଦ୍ୱାରା ଶିକ୍ଷାର ପ୍ରସାର ଦିଗରେ କିଛି ଲାଭ ହେବା ମୁଁ ଅନୁଭବ କରୁନି । ଯେତିକି ପିଲା ଥିଲେ ସେତିକି ରହୁଛନ୍ତି ବରଂ କେତେକ ପିଲା ମଧ୍ୟାହ୍ନ ଭୋଜନ ଖାଉ ନାହାନ୍ତି । କାରଣ ଆମ ଅଞ୍ଚଳରେ ତାହା ସେମାନଙ୍କ ରୁଚିକର ଖାଦ୍ୟ ନୁହେଁ । ତା'ଛଡ଼ା ଯେଉଁ ଡାଲି ଦିଆଯାଇଛି ତାକୁ ଦିନସାରା ଶିଝାଇଲେ ମଧ୍ୟ ଶିଝୁନାହିଁ । ଆହୁରି ମଧ୍ୟ ଅନେକ ସ୍କୁଲରେ ଏହି ମଧ୍ୟାହ୍ନ ଭୋଜନ ସାମଗ୍ରୀର କଳାବଜାରୀ ହେବାର ଅଭିଯୋଗ ହେଉଛି । ମୁଁ ନିଜେ ମଧ୍ୟ କ୍ଷୋଭ ପ୍ରକାଶ କରେ ଏଥିପାଇଁ । କିନ୍ତୁ କିଛି କରିହେଉନି ।

**ଆରୋହଣ** – କ'ଣ କଲେ ଆଦିବାସୀ ଅଞ୍ଚଳରେ ଶିକ୍ଷାର ପ୍ରସାର ଘଟିବ ବୋଲି ଆପଣ ଭାବୁଛନ୍ତି ?

**ଶ୍ରୀଯୁକ୍ତ ମାଝୀ**– ଏଥିପାଇଁ ଆମର ଶିକ୍ଷା ପଦ୍ଧତି ବଦଳିବା ଦରକାର । ଡି.ପି.ଇ.ପିର ଉଦ୍ଦେଶ୍ୟ ସମସ୍ତେ ଶିକ୍ଷାପ୍ରତି ଆକର୍ଷିତ ହେବା ଏବଂ ସାକ୍ଷରତା ବଢ଼ିବା । କିନ୍ତୁ ଚରିତ୍ର ଗଠନ ଶିକ୍ଷାର ପ୍ରଣାଳୀ ସେଥିରେ ନାହିଁ । ମୋ ମତରେ ଏମିତି ଶିକ୍ଷା ଦିଆ ଯାଆନ୍ତା ଯେମିତି ପିଲାମାନେ ଆତ୍ମନିର୍ଭରଶୀଳ ହୋଇପାରନ୍ତେ । ଆଉ ଚାକିରୀକୁ ଆଦୌ ଅପେକ୍ଷା କରନ୍ତେ ନାହିଁ ।

**ଆରୋହଣ** - 'ପାଠ ପଢ଼ିଲେ ପିଲାମାନେ ଅଳସୁଆ ହୋଇଯିବେ, ଡଙ୍ଗର କାମ କରିବେନି'- ଏହା ଉପରେ ଆପଣଙ୍କ ଯୁକ୍ତି କ'ଣ ?

**ଶ୍ରୀଯୁକ୍ତ ମାଝୀ-** ଏବେ ଲୋକମାନେ ପାଠ ପଢ଼ାର ମର୍ଯ୍ୟାଦା ବୁଝିଲେଣି । ତେଣୁ ପ୍ରାୟ ଆଉ ସେମିତି କହୁନାହାନ୍ତି । ତେବେ ଶିକ୍ଷିତ ଦୁଇ ପ୍ରକାରର । ଗୋଟେ ଚରିତ୍ରବାନ୍ ଶିକ୍ଷିତ, ଆଉଗୋଟେ ଦୁଶ୍ଚରିତ୍ର ଶିକ୍ଷିତ । ଯଦି ଶିକ୍ଷିତ ହୋଇ ଜଣେ ଟାଉଟର ହେଲା ତେବେ ଆମର ଅବନତି ନିଶ୍ଚୟ । ହେଲେ ଆମ ଭାରତୀୟ ଶିକ୍ଷା ନୀତି ଭୁଲ ଅଛି ଯେଉଁଥି ପାଇଁ କି ବେଶି ଶିକ୍ଷିତ ଟାଉଟର ବାହାରୁଛନ୍ତି ।

**ଆରୋହଣ** - ଆଦିବାସୀ ଶିକ୍ଷକ ହିସାବରେ ପିଲାଙ୍କୁ ଶିକ୍ଷା ଦେବାରେ ଆପଣଙ୍କର ଅଧିକ ସକ୍ଷମତା ଅଛି କି ?

**ଶ୍ରୀଯୁକ୍ତ ମାଝୀ-** ବର୍ତ୍ତମାନ ପାଠ୍ୟକ୍ରମରେ ଅନେକ କଠିନ ଶବ୍ଦ ଅଛି । ତେଣୁ ପିଲାମାନେ ତାହା ବୁଝୁ ନାହାନ୍ତି । ସେଠି ମୋତେ ସେତେବେଳେ ଆମ ସ୍ଥାନୀୟ ଭାଷା ପ୍ରୟୋଗ କରିବାକୁ ପଡୁଛି । ଫଳରେ ପିଲାମାନେ ସହଜରେ ବୁଝି ପାରୁଛନ୍ତି । ଏ ଦୃଷ୍ଟିରୁ ମୁଁ ଅନ୍ୟମାନଙ୍କଠାରୁ ନିଶ୍ଚୟ ଅଧିକ ସକ୍ଷମ ହେବି ଭାବୁଛି ।

**ଆରୋହଣ-** ଆଦିବାସୀ ଅଞ୍ଚଳରେ ଝିଅମାନେ ନ ପଢ଼ିବାର କାରଣ କ'ଣ ? ଏଥିପାଇଁ କ'ଣ କରି ହେବ ?

**ଶ୍ରୀଯୁକ୍ତ ମାଝୀ-** ଆମ ଅଞ୍ଚଳରେ ଅନେକଙ୍କ ଧାରଣା ଯେ ଝିଅ ତ ବିଭାହୋଇ ପରଘରକୁ ଯିବ । ତାକୁ କାହିଁକି ଆମେ ପଇସା ଖର୍ଚ୍ଚ କରି ପାଠ ପଢ଼ାଇବୁ । ଏହା ଛଡା ଆହୁରି ଅନେକ କୁସଂସ୍କାର, ଅନ୍ଧବିଶ୍ୱାସ ଇତ୍ୟାଦି ମଧ୍ୟ ରହିଛି ଯାହା ଝିଅମାନେ ପଢ଼ିବା କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁଛି । ଏଥିପାଇଁ ସମସ୍ତେ ସଚେତନ ହେବା ଦରକାର ।

**ଆରୋହଣ-** ବାହାରକୁ ବଦଳିହୋଇଗଲେ ଆପଣଙ୍କୁ ଭଲ ଲାଗିବ କି ?

**ଶ୍ରୀଯୁକ୍ତ ମାଝୀ-** ବାହାରକୁ ବାହାରକୁ ବଦଳି ନହୋଇ ମୁଁ ଚାହୁଁଛି ମୋ ନିଜ ଗାଁକୁ ବଦଳି ହୋଇ ଯିବାପାଇଁ । କିନ୍ତୁ ଏଥିପାଇଁ ୩୦୦୦ଟଙ୍କା ଲାଞ୍ଚ ଦେବାକୁ ପଡିବ ବୋଲି ଜାଣି ଚୁପ୍ ରହିଯାଇଛି ।

**ଆରୋହଣ** - ବର୍ତ୍ତମାନ ପରିସ୍ଥିତିରେ ଅଭିଭାବକ ଏବଂ ଶିକ୍ଷକମାନଙ୍କର କର୍ତ୍ତବ୍ୟ କ'ଣ ହେବା ଉଚିତ୍ ବୋଲି ଆପଣ ଭାବୁଛନ୍ତି ?

**ଶ୍ରୀଯୁକ୍ତ ମାଝୀ-** ଶିକ୍ଷକ ଏବଂ ଅଭିଭାବକଙ୍କ ମଧ୍ୟରେ ସୁସଂପର୍କ ରହିବା ଉଚିତ୍ । ବାପା,ମା'ମାନେ ଯଦି ପିଲାଙ୍କୁ ସ୍କୁଲ ପଠାଉ ନାହାନ୍ତି ତେବେ ଶିକ୍ଷକ ଯାଇ ସେମାନଙ୍କୁ ବୁଝାଇ ପିଲାଙ୍କୁ ଆଣିବା ଦରକାର । ଆଉ ଶିକ୍ଷାର ମହତ୍ତ୍ୱ ଅଭିଭାବକମାନେ ବୁଝି ଶିକ୍ଷା କ୍ଷେତ୍ରରେ ଶିକ୍ଷକ ତଥା ପିଲାଙ୍କୁ ସହଯୋଗ କରିବା ଉଚିତ୍ ।

ଜୁନ୍ - ୧୯୯୯

# ଏ ଶିକ୍ଷା ମୁହଁରେ ନିଆଁ- ହୀରାଦେଈ ଅନୁଭୂତିରୁ

ଘର ତାର କନ୍ଧମାଳ ଜିଲ୍ଲା ବାଲନ୍ଦାପଡା ପଞ୍ଚାୟତର କେନ୍ଦୁଗୁଡା ଗାଁରେ । ସେଇ ଗାଁକୁ ଯିବାକୁ ହେଲେ ବାଲନ୍ଦାପଡାଠାରୁ ପାଞ୍ଚକିଲୋମିଟର ଚାଲି ଚାଲି ଯିବାକୁ ହୁଏ । ଗାଁର ଲୋକମାନେ ଉଭୟ ଚାଷ ଏବଂ ଜଙ୍ଗଲ ଉପରେ ନିର୍ଭର କରି ଚଳନ୍ତି । ଏବେ ବି ସେମାନେ ଜୀବନ ଜୀବିକା ସହିତ ସଂଘର୍ଷ କରି ଚାଲିଛନ୍ତି । କାହିଁ କେବେଠାରୁ ବର୍ଷ ବର୍ଷ ଧରି ଗାଁକୁ ଭଲ ରାସ୍ତା ନ ଥିବା ଆଳରେ ସରକାରୀ କର୍ମଚାରୀମାନଙ୍କ ସବୁ କ୍ଷେତ୍ରରେ ପ୍ରତାରଣା ଓ ସ୍କୁଲ ଶିକ୍ଷକଙ୍କ ପ୍ରତାରଣା କଥା ଶୁଣିଲେ ସହଜରେ ବିଶ୍ୱାସ କରିହୁଏ ନାହିଁ ।ଏମିତି ଦିନେ ଆମେ ଗାଁ ମିଟିଂ କରିବାକୁ ଯାଇଥିଲୁ ସେ ଗାଁକୁ । ଗାଁରେ ପହଞ୍ଚୁ ପହଞ୍ଚୁ ଦେଖିଲୁ ପିଲାଗୁଡିଏ ଖେଳୁଥିଲେ ଗାଁ ଦାଣ୍ଡରେ । ଆମକୁ ଦେଖି ଅଟକିଗଲେ ସମସ୍ତେ । ଆମେ ମଧ୍ୟ ସେମାନଙ୍କ ପାଖକୁ ଯାଇ ପାଠ ପଢ଼ା କଥା ପଚାରିଲୁ । ଆମ କଥା ଶୁଣି ସାମନା ପିଣ୍ଡାରେ ବସିଥିବା ସ୍ତ୍ରୀଲୋକ ଜଣେ ଭୀଷଣ ଜୋର୍‌ରେ ଗାଳିଦେବାର ଶୁଣି ଆମେ ତାଙ୍କ ପାଖକୁ ଯାଇ କଥା କ'ଣ ବୁଝିବାକୁ ଚେଷ୍ଟା କଲୁ । ସେ କହୁଥାନ୍ତି "ଆଜିକାଲି ମାଷ୍ଟ୍ରଗୁଡା କ'ଣ ମାଷ୍ଟ୍ର ହୋଇ ରହିଛନ୍ତି ଯେ ପିଲେ ତାଙ୍କ ପାଖରେ ପାଠ ପଢ଼ିବେ ? ଶେଷରେ ମାଷ୍ଟ୍ରମାନେ ଯଦି ଏମିତି ହେବେ ତେବେ ଆମେ ଭରସା କରିବୁ କାହାକୁ ? ଆମେ ସିନା ମୂରୁଖ ବୋଲି ଏତେ ହଇରାଣ ହେଉଛୁ ।"

ଆମେ କହିଲୁ, "ହେ ଇୟା(ମା') ! କିଏ କହିଲା ତମେ ମୂର୍ଖ ବୋଲି । ତମେ ଯଦି ମୂର୍ଖ ହୋଇଥାନ୍ତ ତେବେ ତମେ ଏତେକଥା ଜାଣି କହିପାରି ନଥାନ୍ତ ।" ତଥାପି ସେ ଆମ କଥା ଶୁଣି ମନକୁ ମନ ଗପି ଚାଲିଥାନ୍ତି । ବାସ୍ତବିକ୍ ଯିଏ ପାଠ ନପଢ଼ି ଶିକ୍ଷାର ମହତ୍ତ୍ୱ ତଥା ଗୁରୁତ୍ୱ ବୁଝିଛି ତାକୁ କ'ଣ ଆମେ ମୂର୍ଖ କହିପାରିବା ? ଆଦୌ ନୁହେଁ । ଏତେ ସ୍ପଷ୍ଟ ଏବଂ ନିର୍ଭୀକ ଭାବରେ କହିପାରୁଥିବା , ଗାଁର ପ୍ରତ୍ୟେକ ଉନ୍ନତି

ମୂଳକ କାମରେ ସାମିଲ ହୋଇପାରୁଥିବା ଓ ଦରକାର ବେଳେ ଅସମୟରେ ଅଣ୍ଟାଭିଡି ଆଗକୁ ବାହାରି ପାରୁଥିବା ତଥା ସେଦିନ ସେ ପିଣ୍ଡାରେ ବସି ଅନର୍ଗଳ ଗପି ଚାଲିଥିବା ମହିଳା ଜଣକ ଥିଲେ ହୀରାଦେଈ କହଁର। ତାଙ୍କର ମୁହଁରୁ ଶୁଣିଥିବା ସେଦିନର ସେଇ ଘଟଣା, ଯାହା ତାଙ୍କ ମନରେ ଶିକ୍ଷାପ୍ରତି ଘୋର ନୈରାଶ୍ୟଭାବ ସୃଷ୍ଟି କରିଥିଲା।

ଦିନଥିଲା ଆମେ ଆମ ବାପା, ମା'ଙ୍କ ସହିତ ଖଟିବା, ଖାଇବା ଆଉ ଯେ କୌଣସି ପ୍ରକାରେ ବଞ୍ଚିଯିବାକୁ ଶ୍ରେୟ ମଣୁଥିଲୁ। ଧୀରେ ଧୀରେ ସବୁ ନିଜକୁ ଧିକ୍ ମଣୁଛୁ। କାରଣ ସବୁ କ୍ଷେତ୍ରରେ ଯେତେବେଳେ ହଇରାଣ ହେଉଛୁ ସେତେବେଳେ ପାଠ ପଢ଼ାର ମହତ ବୁଝିପାରୁଛୁ। ଆମ ଗାଁରେ ସବୁ ମା'ମାନେ ମିଶି ସଂଚୟ ଦଳ ଗଢ଼ିଛୁ; କିନ୍ତୁ ହିସାବ କରିପାରୁନୁ । ମୋତେ ଆମ ମହିଳା ମଣ୍ଡଳର ସମ୍ପାଦିକା କରାଯାଇଛି, କିନ୍ତୁ ମୁଁ ନିଜେ କିଛି ଲେଖି ପାରୁନାହିଁ। ସରକାରୀ ଅଫିସରୁ କ'ଣ ଚିଠିପତ୍ର ଆସିଲେ କେହିଜଣେ ନପଢ଼ି ଦେଲା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡୁଛି। ସେଥିପାଇଁ ଆମ ପିଲାମାନେ କିପରି ଭଲରେ ପାଠ ପଢ଼ିପାରିବେ ସେ ଉପରେ ଆମେ ବେଶି ଗୁରୁତ୍ୱ ଦେଇ ଆସୁଥିଲୁ। ଏଠାରେ ଅଗ୍ରଗାମୀ କାମ କରିବା ପରେ ପରେ ତାଙ୍କ ସହିତ ମିଶି ମୁଁ ଅନେକ କିଛି କରିବାର ଚେଷ୍ଟା କରିଛି।ତଥାପି ଅନେକ କ୍ଷେତ୍ରରେ ମୋତେ ହାରିଗଲାଭଳି ଲାଗୁଥିବାରୁ ମୋର ଆଉ ଆଗକୁ ଯିବାକୁ ସାହାସ ହେଉନି।

ମାତ୍ର ଦୁଇବର୍ଷ ତଳର ଘଟଣା। ଆମ କେନ୍ଦୁଗୁଡାରେ ଥିବା ସରକାରୀ ସ୍କୁଲରେ ଟିକାବାଲି ବ୍ଲକ୍ ଅଞ୍ଚଳରେ ଟିକେଶ୍ୱର କହଁର ବୋଲି ଜଣେ ଶିକ୍ଷକ ଥିଲେ। ସେ ଗାଁରେ ନ ରହି ଏଠାରୁ ୫କି.ମି. ଦୂର ବାଲନ୍ଦାପଡାଠାରେ ରହୁଥିଲେ। ତାଙ୍କର ସ୍କୁଲକୁ ଆସିବା କେହି ଦେଖନ୍ତି ନାହିଁ। ମାସରେ କେତେଥର ଆସନ୍ତି ସେ କଥା ପଚାରିବାପାଇଁ ଇଚ୍ଛାଥିଲେ ମଧ୍ୟ ତାଙ୍କର ଦେଖା ମିଳେନାହିଁ। ଏମିତି ଅନେକ ମାସ କଟିଯିବା ପରେ ଭାବିଲି, ଯେ କୌଣସିମତେ ମାଷ୍ଟରଙ୍କୁ ଭେଟିବି; ଆଉ ସେ କେତେଦିନ ସ୍କୁଲ କରୁଛନ୍ତି ପଚାରିବି। ଏମିତି ଭାବରେ ମାଷ୍ଟରଙ୍କୁ ଜଗି ଜଗି ଦୁଇ ତିନି ମାସ କଟିଗଲା।ତଥାପି ମାଷ୍ଟରଙ୍କ ଦେଖା ନାହିଁ।

ତା'ପରେ ଏକଥା ଥରେ ଗାଁ ମିଟିଂରେ ପଡିଲା। ମୁଁ କହିଲି "ଯଦି ପ୍ରକୃତରେ ସ୍କୁଲକୁ ମାଷ୍ଟର ଆସୁନାହିଁ ଆଉ ଆମ ପିଲାମାନେ ପଢ଼ିପାରୁ ନାହାନ୍ତି ତେବେ ଆମ ଗାଁରେ ସ୍କୁଲ ଥାଇ ଲାଭ କ'ଣ? ପିଲାମାନେ ପାଠ ପଢ଼ିବା ପାଇଁ ସ୍କୁଲ୍ ହେଲା। କିନ୍ତୁ ସ୍କୁଲକୁ ନା ମାଷ୍ଟର ଆସୁଛି ନା ପିଲାମାନେ ଯାଉଛନ୍ତି। ତେବେ ଆମେ କ'ଣ

ଚୁପ୍ ହୋଇ ବସିରହିବା ନା ଏଥିପାଇଁ କିଛି କରିବା?" ସମସ୍ତେ ଆଲୋଚନା ମାଧ୍ୟମରେ ମାଷ୍ଟରଙ୍କ ଦୋଷ ଦେଉଥାନ୍ତି । ମୁଁ କହିଲି, "ଏଥିରେ କେବଳ ମାଷ୍ଟରଙ୍କୁ ଦୋଷ ଦେବା ଠିକ୍ ନୁହେଁ । ଆମର ମଧ୍ୟ ଦୋଷ ଅଛି । ଅର୍ଥାତ୍, ଆମ ଗାଁ ଏବଂ ପାଖ ଗାଁର ଲୋକମାନେ ହିଁ ଏହି ସ୍କୁଲର ପରିଚାଳନା ଦାୟିତ୍ୱରେ ଅଛନ୍ତି । ସବୁଠାରୁ ବଡ କଥା ହେଉଛି ନିଜେ ସଭାପତି ହେଉଛନ୍ତି ଆମ ଗାଁର । ନିୟମ ଅନୁଯାୟୀ ସଭାପତି ଦସ୍ତଖତ କଲେ ଶିକ୍ଷକ ଦରମା ପାଇବେ । ତେଣୁ ମାଷ୍ଟର ନ ଆସିଲେ ବି ସଭାପତି ମଦପାଣି ନେଇ କିପରି ଦସ୍ତଖତ କରୁଛନ୍ତି ? ଏକଥା ପ୍ରଥମେ ତାଙ୍କୁ ପଚରାଯାଉ ।" ସେ କହିଲେ ମୁଁ ତ ଛ'ମାସ ତଳେ ଦସ୍ତଖତ ଦେଇଥିଲି, ଆଉ ଦେଇନାହିଁ । ଏକଥା ଶୁଣି ସମସ୍ତେ ଚୁପ୍ ପଡିଗଲେ । କେହି ଜାଣି ପାରିଲେନି ଏତେ ମାସ ଧରି ସଭାପତି ଦସ୍ତଖତ ନ ଦେଲେ ବି ଶିକ୍ଷକ ଦରମା ନେଉଛି କେମିତି? ଆମ ବ୍ଲକର ବଡ ବଡ ଅଫିସରମାନେ ଏମିତିଆ ପାଠ ପଢ଼ିଛନ୍ତି, ଯେମିତିକି କିଛି କାମ ନକରି ବି ସେମାନେ ଦରମା ନେବେ ।

ଆଲୋଚନା ଶେଷରେ ଗାଁ ଲୋକାମାନେ ଏ ବିଷୟରେ ବି.ଡି.ଓ ଏବଂ ସ୍କୁଲ ନିରୀକ୍ଷକଙ୍କୁ ଜଣାଇବା ପାଇଁ ନିଷ୍ପତ୍ତି ନେଇ ଦରଖାସ୍ତ ଲେଖି ପଠେଇଲେ । କିନ୍ତୁ ଏହାର କିଛି ଫଳ ହେଲା ନାହିଁ । ସ୍କୁଲର ଅବସ୍ଥା ଯେମିତି ଥିଲା ସେମିତି ହୋଇ ରହିଲା । ପୁଣି କିଛି ଦିନ ଗଲାପରେ ଏକଥା ଜିଲ୍ଲାପାଳଙ୍କ ଦୃଷ୍ଟିକୁ ଆଣିବୁ ବୋଲି ଭାବିଲୁ । ବି.ଡି.ଓଙ୍କୁ ଜଣାଇଲା ପରେ କିଛି ନ ହେଲାରୁ ଜିଲ୍ଲାପାଳଙ୍କ ପାଖକୁ ଦରଖାସ୍ତ ଲେଖି ସେଥିରେ ଗାଁର ଅଧିକାଂଶ ଲୋକ ଦସ୍ତଖତ କରି ଜିଲ୍ଲାପାଳ ମଧୁସୂଦନ ପାଢ଼ୀଙ୍କ ପାଖକୁ ନେଇକରି ଗଲି । ପରେ ଶୁଣିବାକୁ ପାଇଲୁ ଯେ ଜିଲ୍ଲାପାଳ ବି.ଡି.ଓଙ୍କୁ ଫୋନ୍ କରି ଆମ ସ୍କୁଲ ବିଷୟରେ ବୁଝି ତାଙ୍କୁ ବିବରଣୀ ଦେବାପାଇଁ କହିଛନ୍ତି ।

କିଛିଦିନ ପରେ ଥରେ ସ୍କୁଲ ଏସ୍.ଆଇ ଆସି ମୋତେ ଡକାଇ ପଠାଇଲେ । ସେ ଆମ ଗାଁ ସ୍କୁଲକୁ ଆସିବା ସମୟରେ ବାଲନ୍ଦାପଡା ଦେଇ ଆସିଲେ ଏବଂ ସ୍କୁଲ ମାଷ୍ଟରଙ୍କୁ ସାଙ୍ଗରେ ଧରି ଆସିଥିଲେ । ମୁଁ ଯାଇ ପହଞ୍ଚିବା ପରେ କହିଲେ, "ତମ ନାଁ ହୀରାଦେଈ? ତମେ ଏ ଶିକ୍ଷକଙ୍କ ନାମରେ ଜିଲ୍ଲାପାଳଙ୍କ ଆଗରେ ଅଭିଯୋଗ କରିଛ?" ମୁଁ କହିଲି, "ଏକୁଟିଆ ମୁଁ ନୁହେଁ । ଗାଁର ଲୋକମାନେ ମଧ୍ୟ ମୋ ସହିତ ମିଶିଛନ୍ତି ।" ତା'ପରେ ସେ ମୋତେ ଧମକାଇ କହିଲେ- "ତମେ କ'ଣ ଜାଣିନାହଁ ସେ ଜଣେ ସରକାରୀ କର୍ମଚାରୀ ବୋଲି, ତାଙ୍କ ନାମରେ ମିଛ ଅଭିଯୋଗ କଲେ ତମ ନାଁରେ କେସ୍ ହୋଇଯିବ । ଏକଥା ଶୁଣି ମୁଁ ଜୋର୍‌ରେ ରାଗିଗଲି ଆଉ

କହିଲି, ସେ ମାଷ୍ଟର ଏଠି ଜଏନ୍ କଲା ଦିନଠାରୁ ସ୍କୁଲକୁ ଆସୁନାହିଁ କି ପିଲାଙ୍କୁ ପାଠ ପଢ଼ାଉ ନାହିଁ । ଏ କଥା ଗାଁ ସାରା ଲୋକଙ୍କୁ ପଚାର, ତା'ପରେ ଯାଇ କହିବ ଆମ ଠିକ୍ ଲେଖିଛୁ କି ଭୁଲ ଲେଖିଛୁ । ଆମେ ସତକଥା ଲେଖିଛୁ । ତମର ଯଦି କେସ୍ କରିବାର ଅଛି ଯାଅ କରିବ । ମୁଁ କାହାକୁ ଡରିନି । କଲେକ୍ଟରୁ ମିଶା ଡରିବି ନାଇଁ ।"

ତା'ପରେ ସେ ଏସ୍.ଆଇ ଟିକେ ଧୀରେ କହିଲା ଶିକ୍ଷକଙ୍କର ତ ପୁଣି ଭଲ ମନ୍ଦ ଅଛି । ଯଦି ସେ ସ୍କୁଲ ନ ଆସିଲେ ତେବେ ତମ ସଭାପତି ତାଙ୍କୁ କହିଲା ନାହିଁ । ମୁଁ ପୁଣି ରାଗିଗଲି ଏବଂ କହିଲି, "ସେ ମାଷ୍ଟରର ତ ଦେଖାନାହିଁ, କହିବ କାହାକୁ ?" ତା'ପରେ ସେ ଆଉ ମତେ କିଛି ନ କହି ସଭାପତିଙ୍କ ସାଙ୍ଗରେ କଥା ହେବ କହି ଚାଲିଗଲା ।

ଏଣେ ଏସ୍.ଆଇ ମୋ ସହିତ କଥାହେବା ମଧ୍ୟରେ ସେ ମାଷ୍ଟର ସଭାପତିଙ୍କ ଘରକୁ ଯାଇ ସିଧା ତାଙ୍କ ଗୋଡତଳେ ପଡି କାନ୍ଦିବାକୁ ଲାଗିଲା ଏବଂ କହିଲା ମତେ ତମେ ଏଇଥରକ ବଞ୍ଚେଇ ଦିଅ, ଆଉ କେବେ ମୁଁ ଏମିତି ଭୁଲ କରିବି ନାହିଁ । କିଛି ସମୟ ପରେ ଆମ ସଭାପତି ଆସି ଆମ କୁଇ ଭାଷାରେ କହିଲା, ସେ ମାଷ୍ଟର ଆସି ମୋ ଗୋଡତଳେ ପଡି କେତେ କାନ୍ଦିଲାଣି । କହୁଛି ତାର ଚାକିରି ଚାଲିଯିବ ଆଉ ତା ପିଲାଛୁଆ ଭାସିଯିବେ । ଏ ଥରକ ପାଇଁ ତାକୁ ଛାଡିଦେବା ।

ସେତେବେଳେ ସେ ମାଷ୍ଟର ଅବସ୍ଥା ଦେଖି ଭାରି ଦୟା ହେଲା । ତା' ଉପରେ ରାଗି ହେଲାନାହିଁ । ତଥାପି ମୁଁ କହିଛି ଆଜ୍ଞା ଆମ ଗାଁ ଲାଗି ସରକାର ପଇସା ଖର୍ଚ୍ଚ କରିଛି । ସେଇଟା କେମିତି ଭଲରେ ଚାଲିବ ତାହା ଆମର ଦାୟିତ୍ୱ ଭାବି ଆମେ ଲେଖିକରି ଦେଲୁ । ଏଥରକ ମାଷ୍ଟରଙ୍କୁ ଛାଡି ଦେଉଛୁ । ଯାପରେ ସ୍କୁଲ ନ କଲେ ପୁଣି ଜିଲ୍ଲାପାଳଙ୍କୁ ଜଣାଇବୁ । ଏମିତି ଘଟଣା ପରେ ସେ ମାଷ୍ଟର ଅଳ୍ପ କିଛି ଦିନ ଠିକ୍‌ରେ ସ୍କୁଲକୁ ଆସିଲା । ତା'ପରେ ପୁଣି ଯେଉଁ କଥାକୁ ସେଇକଥା । ପୁଣି ଆମେ ଜିଲ୍ଲାପାଳଙ୍କୁ ଦରଖାସ୍ତ ଲେଖି ଦେବାରୁ ସେ ମାଷ୍ଟରର ବଦଳି ହୋଇଗଲା । କିନ୍ତୁ ଆମ ସ୍କୁଲ ଆଉ ବଦଳିଲା ନାହିଁ । କେବଳ ଆମ ସ୍କୁଲ ନୁହେଁ, ପାଖାପାଖି ପଞ୍ଚାୟତର ଅନେକ ସ୍କୁଲ ଏମିତି ମାସ ମାସ , ବର୍ଷ ବର୍ଷ ଧରି ବନ୍ଦ ରହୁଛି । କିନ୍ତୁ ମାଷ୍ଟରମାନେ ଦରମା ନେବାରେ ମୋଟେ ହେଳା କରୁ ନାହାନ୍ତି । ମୁଁ ବୁଝିପାରୁନି ଆମ ଆଦିବାସୀ ଅଞ୍ଚଳକୁ ଯେଉଁମାନେ ପଢ଼ାଇବାକୁ ଆସୁଛନ୍ତି ସେମାନେ କାହିଁକି ଏମିତି ଠକୁଛନ୍ତି । ଆମ ପିଲାଙ୍କ ଭଳି ସେମାନଙ୍କ ପିଲାମାନେ ଯଦି ପାଠ

ନପଢ଼ିପାରି ଆମ ଭଳି ଠକେଇ, ଶୋଷଣର ସାମନା କରନ୍ତେ, ତେବେ ସେମାନେ ଜାଣନ୍ତେ ଠକିଲେ କେମିତି ହଇରାଣ ହେବାକୁ ପଡେ ।

କିନ୍ତୁ ଆମ ମନରେ ବେଳେ ବେଳେ ପ୍ରଶ୍ନ ଉଠୁଛି, ଯିଏ ଏତେ ପାଠ ପଢ଼ିଛି । ସିଏ କ'ଣ ଶିଖିଲା ? ଯିଏ ଶିଖିଥିବ ସିଏ ଯଦି ନ ଶିଖେଇବ ତେବେ ସେ ଶିଖିବାର କି ଲାଭ । ମାଷ୍ଟର ପଢ଼ାଇବା ପାଇଁ ଟ୍ରେନିଂ ନେଲା, କିନ୍ତୁ ପଢ଼ାଇଲା ନାହିଁ । ଏସ୍.ଆଇ. ସ୍କୁଲଗୁଡିକୁ ଠିକ୍ ଭାବରେ ଚଳାଇବା ପାଇଁ ଚେଷ୍ଟା କରିବା ବଦଳରେ, ସ୍କୁଲ ବନ୍ଦ କରି ମାଷ୍ଟରଙ୍କଠାରୁ ଲାଞ୍ଚ ନେଉଛି । ବି.ଡି.ଓଙ୍କ ଅବସ୍ଥା ମଧ୍ୟ ସେହିଭଳି । ତେବେ ଏଠି କିଏ କାହାକୁ ଶିଖେଇବ, ଆଉ କିଏ କାହାଠାରୁ ଶିଖିବ । ଏମାନେ ପାଠ ପଢ଼ି ଯଦି ଏମିତି ଠକିବେ, ତେବେ ସେମାନେ ଆମ ପିଲାଙ୍କୁ କି ଶିକ୍ଷା ଦେବେ ? ଆମ ପିଲା ଯଦି ଏମାନଙ୍କ ଭଳି ଠକ, ଟାଉଟର ହୋଇ ବାହାରିବେ ତେବେ ଆମେ ଆମ ପିଲାଙ୍କୁ ପଢ଼ାଇବାର କି ମୂଲ୍ୟ ରହିବ ? ଶିକ୍ଷାଟା ଯଦି ଲୋକଙ୍କ ଭଲ କାମରେ ନଲାଗି କ୍ଷତି କରିବ ତେବେ ପାଠ ପଢ଼ି ଶିକ୍ଷିତ ହେବା ଅପେକ୍ଷା ଅପାଠୁଆ ହୋଇ ରହିବା ବରଂ ଭଲ । ସେଥିପାଇଁ ମୁଁ କହିଛି, 'ଏ ଶିକ୍ଷା ମୁହଁରେ ନିଆଁ' ।

ଜୁନ୍ - ୧୯୯୯



# ସେଇ କୁନି ଝିଅଟି

ସାଧାରଣଭାବେ କହିବାକୁ ଗଲେ ଯିଏ ଶିଖାଇବ ସିଏ ଅଧିକ ଜାଣିବା ଦରକାର । ସେହି ଅର୍ଥରେ ଆମ ଦେଶର ଟିକି ଛୁଆଠାରୁ ଆରମ୍ଭ କରି ବୟସ୍କା ମହିଳାମାନେ ସବୁଠାରୁ ଅଧିକ ଜାଣିବା କଥା । କିନ୍ତୁ ମହିଳା ସାକ୍ଷରତା ହାର ଗାଁ ମାନଙ୍କରେ ବହୁତ କମ୍ । ବିଶେଷକରି ଆଦିବାସୀ ବହୁଳ ଜିଲ୍ଲାମାନଙ୍କରେ ଶତକଡା ୩ରୁ ୫ଭାଗ ମହିଳା ପଢ଼ିବାର ସୁଯୋଗ ପାଉଛନ୍ତି । ଯେଉଁଠି ଶହେ ଜଣରେ ମାତ୍ର ୩ଜଣ ମହିଳା ପାଠ ପଢୁଛନ୍ତି, ସେଠାରେ ପାରିବାରିକ ଶୃଙ୍ଖଳା ଆସିବ ବା କିପରି ?

ନାରୀଶିକ୍ଷାର ପ୍ରସାରକୁ ଆଖିଆଗରେ ରଖି ନାରୀ ସାକ୍ଷରତା ବୃଦ୍ଧି କରାଇବା ଏବଂ ସେମାନଙ୍କ ମନରେ ଶିକ୍ଷାର ଆବଶ୍ୟକତା ବିଷୟରେ ଆଗ୍ରହ ଜନ୍ମାଇବା ପାଇଁ ୧୯୮୬ ଶିକ୍ଷା ନୀତି ଅନୁଯାୟୀ ସରକାରଙ୍କ ତରଫରୁ ବିଭିନ୍ନ ସ୍ଥାନରେ ଆବାସିକ କନ୍ୟାଶ୍ରମ ଖୋଲାଗଲା । ସରକାରଙ୍କର ଅଷ୍ଟମ ପଞ୍ଚବାର୍ଷିକ ଯୋଜନାରେ ମହିଳା ସାକ୍ଷରତାକୁ ଅଧିକ ପ୍ରାଧାନ୍ୟ ଦିଆଯାଇଥିଲା । ଆଦିବାସୀ ଅଞ୍ଚଳରେ ମହିଳା ସାକ୍ଷରତା ହାର ବୃଦ୍ଧି ନିମନ୍ତେ 'ଆବାସିକ ବାଳିକା ଶିକ୍ଷାୟତନ' ଭଳି ଯୋଜନା ପ୍ରସ୍ତୁତ କରାଯାଇ ସ୍ୱେଚ୍ଛାସେବୀ ସଂଗଠନଗୁଡ଼ିକୁ ସାମିଲ କରାଗଲା । ଏହି ଯୋଜନା ଅନୁସାରେ ଆଦିବାସୀ ବାଳିକାମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ ଯୋଗାଇ ଦେଇ ଶିକ୍ଷାଦେବାର ବ୍ୟବସ୍ଥା ଗ୍ରହଣ କରାଯାଇଛି । ଏପରିକି ଯେଉଁ ପିଲାମାନେ ଶିକ୍ଷାୟତନରେ ରହି ପାଠ ପଢ଼ିବେ, ସେମାନଙ୍କର ବାପ-ମା'ଙ୍କୁ ମାସିକ ଉତ୍ସାହମୂଳକ ଭତ୍ତା ପ୍ରଦାନ କରିବାର ବ୍ୟବସ୍ଥା ମଧ୍ୟ ଗ୍ରହଣ କରାଯାଇଛି । ଫଳରେ ବାପ-ମା'ମାନେ ଉତ୍ସାହିତ ହୋଇ ସେମାନଙ୍କର ପିଲାମାନଙ୍କୁ ପାଠ ପଢ଼ାଇବା ପାଇଁ ଆଗ୍ରହ ପ୍ରକାଶ କରିବେ । ବସ୍ତୁତଃ ଆଦିବାସୀ ଅଞ୍ଚଳରେ ମହିଳା ସାକ୍ଷରତା ହାର ବୃଦ୍ଧି ପାଇବାର ପ୍ରୟାସ ଫଳପ୍ରସୂ ହୋଇ ପାରିବ । ନବରଙ୍ଗପୁର ଜିଲ୍ଲାର ତେନ୍ତୁଳି ଖୁଣ୍ଟି ବ୍ଲକଟି ଏକ ଆଦିବାସୀ ଅଞ୍ଚଳ ଯେଉଁଠି ମହିଳା ସାକ୍ଷରତା ହାର ମାତ୍ର ୩ପ୍ରତିଶତ ଥିରେ ।

ଏହାକୁ ଆଖିଆଗରେ ରଖି 'ଭାରତ ସରକାରଙ୍କ କଲ୍ୟାଣ ମନ୍ତ୍ରଣାଳୟ' ସହାୟତାରେ ନବରଙ୍ଗପୁର ଜିଲ୍ଲା ତେନ୍ତୁଳିଖୁଣ୍ଟି ବ୍ଲକର ଗୌଡଗୁଡାଠାରେ ଏକ କନ୍ୟାଶ୍ରମ ସ୍ଥାପନ କରାଗଲା । ସାଧାରଣତଃ ଆଦିବାସୀ ଅଞ୍ଚଳରେ ପିଲାମାନଙ୍କୁ ସେମାନଙ୍କର ପିତାମାତା ଠିକ୍ ସମୟରେ ଶିକ୍ଷାଦାନ ଓ ଶିକ୍ଷଣ ସାମଗ୍ରୀ ଯୋଗାଇ ପାରୁନଥିବାରୁ ସେମାନେ ପାଠପଢ଼ାରୁ ବଞ୍ଚିତ ହୋଇଥାଆନ୍ତି । ତେଣୁ ସରକାର ଆବାସିକ ବିଦ୍ୟାଳୟମାନଙ୍କରେ ପିଲାମାନଙ୍କୁ କେତେକ ଶିକ୍ଷଣ ସାମଗ୍ରୀ ମାଗଣାରେ ଯୋଗାଇ ଦେଇଥାଆନ୍ତି । ସେହି ଅନୁସାରେ ଗୌଡଗୁଡା ଆବାସିକ ବିଦ୍ୟାଳୟରେ ପିଲାମାନଙ୍କୁ ମାଗଣାରେ ପ୍ରତିବର୍ଷ ସେମାନଙ୍କର ଆବଶ୍ୟକ ମୁତାବକ ଶିକ୍ଷା ଓ ଶିକ୍ଷାଦାନ ସାମଗ୍ରୀ ବ୍ୟତୀତ ସେମାନଙ୍କର ରହଣି, ଖାଦ୍ୟପେୟ ଓ ପୋଷାକପତ୍ର ସବୁକୁ ପିଲାମାନଙ୍କୁ ମାଗଣାରେ ଯୋଗାଇ ଦିଆଯାଉଛି ।

ଆଦିବାସୀ ଅଞ୍ଚଳରେ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ସେମାନେ ସେମାନଙ୍କର ପିଲାମାନଙ୍କୁ ଆୟକାରୀ ଯୋଜନାରେ ନିୟୋଜିତ କରିଥାଆନ୍ତି । ଅର୍ଥାତ୍; ସେମାନେ ପିଲାମାନଙ୍କୁ କ୍ଷେତକାମ, ଗାଈ, ଛେଳି ରଖିବା ବା ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଲଗାଇଥାନ୍ତି । ଯାହାଫଳରେ ପିଲାମାନେ ପାଠପଢ଼ାରୁ ବଞ୍ଚିତ ହୋଇଥାଆନ୍ତି । ତେଣୁ ପିତାମାତାଙ୍କର ଶିକ୍ଷାପ୍ରତି ଆଗ୍ରହ ସୃଷ୍ଟି କରିବା ପାଇଁ ଓ ସେମାନଙ୍କର ଆର୍ଥିକ ସ୍ଥିତିରେ କିଛିଟା ସହଯୋଗ କରିବା ନିମନ୍ତେ ଶିକ୍ଷାୟତନ ତରଫରୁ ସେମାନଙ୍କୁ ମାସିକ ୩୦ ଟଙ୍କା ଲେଖାଏଁ ପ୍ରୋତ୍ସାହନ ଭତ୍ତା ଦେବାର ବ୍ୟବସ୍ଥା କରାଯାଇଛି । ଏହି ଭତ୍ତା, ପ୍ରତି ପିଲାର ପିତାମାତାଙ୍କୁ ପ୍ରତି ମାସରେ ଯୋଗାଇ ଦିଆଯାଉଛି । ଏହା ବ୍ୟତୀତ ପିଲାମାନଙ୍କର ପାଠପଢ଼ା ପ୍ରତି ଧ୍ୟାନ ଦେବା ସହିତ ସେମାନଙ୍କର ସ୍ୱାସ୍ଥ୍ୟପ୍ରତି ଆବାସିକ ବିଦ୍ୟାଳୟ ସବୁବେଳେ ଧ୍ୟାନ ଦେଇ ଆସିଛି । ଏଥିପାଇଁ ସ୍ଥାନୀୟ ଗୋଷ୍ଠୀ, ସ୍ୱାସ୍ଥ୍ୟକେନ୍ଦ୍ର, ତେନ୍ତୁଳିଖୁଣ୍ଟିର ଡାକ୍ତରଙ୍କୁ ଆଂଶିକ ଭାବରେ ନିଯୁକ୍ତି ଦେଇଅଛି । ସେ ପ୍ରତି ସପ୍ତାହରେ ଥରେ ପିଲାମାନଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରିବା ସହ ଉତ୍ତମ ସ୍ୱାସ୍ଥ୍ୟ ସଂପର୍କରେ ଉପଦେଶ ଦେଇଥାଆନ୍ତି । ସ୍ୱାସ୍ଥ୍ୟ ପରୀକ୍ଷା ନିମନ୍ତେ ପ୍ରତି ପିଲାକୁ ଗୋଟିଏ ଲେଖାଏଁ ସ୍ୱାସ୍ଥ୍ୟ କାର୍ଡ ଯୋଗଇ ଦିଆଯାଇଛି । ଶିକ୍ଷାୟତନରେ ପ୍ରତି ରବିବାର ଦିନ ପିଲାମାନଙ୍କୁ ସାପ୍ତାହିକ ଛୁଟି ଦିଆଯାଇଥାଏ ।

ଏହା ବ୍ୟତୀତ ସରକାରଙ୍କ ନିୟମାନୁଯାୟୀ ଛୁଟି ଦିଆ ନଯାଇ ପିତାମାତାଙ୍କ ସହିତ ଆଲୋଚନା କରି ସେମାନଙ୍କର ଆବଶ୍ୟକତା ଏବଂ ଆଞ୍ଚଳିକ ପର୍ବପର୍ବାଣିକୁ ଆଖିରେ ରଖି ଛୁଟିଦିନଗୁଡିକୁ ସ୍ଥିର କରାଯାଇଥାଏ । ୧୯୯୪ ମସିହା ଡିସେମ୍ବର ୨୪ତାରିଖ ପ୍ରଥମ ଦଫାରେ ୨୪ଜଣ ପିଲାଙ୍କୁ ତାଲିକାଭୁକ୍ତ କରି 'ଆବାସିକ ବାଳିକା ଶିକ୍ଷାୟତନ' ତାହାର କାର୍ଯ୍ୟ ଆରମ୍ଭ କରିଥିଲା । ବର୍ତ୍ତମାନ ବିଦ୍ୟାଳୟରେ ଛାତ୍ରୀଙ୍କ ସଂଖ୍ୟା ୪୩ ।

ଯେଉଁ ଅଞ୍ଚଳ ବାଲ୍ୟ ବିବାହର କୁସଂସ୍କାରରେ ପରିପୂର୍ଣ୍ଣ ଥିଲା, ଘରଯୋଗ୍ୟା ନହୋଇଥିବା ଝିଅକୁ ଘର କରିବା ପାଇଁ କୁହାଯାଉଥିଲା; ସେହି ଝିଅ ତା'ର ସବୁ ସୁଖକୁ

ଜଳାଞ୍ଜଳି ଦେଇ ଟିକି ଶାଢ଼ୀଟିଏ ପିନ୍ଧି, ୧୦/୧୨ବର୍ଷରୁ ଶାଶୁଘରେ ଯାଇ ଡଙ୍ଗର ପାହାଡରେ କାମ କରି ଗୋଟିଏ ପରିବାରକୁ ସମ୍ଭାଳିବାର ଦାୟିତ୍ୱ ନେଉଥିଲା । ମାତ୍ର ୧୪/୧୫ବର୍ଷରେ ମା' ହୋଇ ନିଜକୁ ସଂସାରୀ କରି ତୋଳୁଥିଲା । ସେଠି ଆଜି 'ଆବାସିକ ବାଳିକା ଶିକ୍ଷାୟତନ' ହେବାଦ୍ୱାରା ଲୋକେ ବେଶ୍ ସଚେତନ ହେଲେଣି । ଶିକ୍ଷାର ପ୍ରସାର ହେବା ସହିତ ସେମାନେ ଅନେକ କଥା ଜାଣି ଶିଖି ପାରିଲେଣି ଏବଂ ଆଗକୁ ଅନେକ କିଛି ପାରିବାର ଆଶା ନେଇ ଆଗେଇଲେଣି । ଲୋକମାନଙ୍କ ମଧ୍ୟରେ ଅନେକ ସଚେତନତା ମନୋଭାବ ବୃଦ୍ଧି ପାଇଛି ଯଥା; ମଦ ବନ୍ଦ, ଠକେଇ ଶୋଷଣରୁ ମୁକ୍ତି, ଶିକ୍ଷା, ସ୍ୱାସ୍ଥ୍ୟ, ସଂଗଠନ, ଜଳ, ଜମି, ଜଙ୍ଗଲର ସୁରକ୍ଷା ଇତ୍ୟାଦି । ସେହି ଅଞ୍ଚଳରେ ଏହି ସ୍କୁଲଟି ସମସ୍ତଙ୍କ ପାଇଁ ଏକ ଆଦର୍ଶ ଭାବେ ପ୍ରତୀୟମାନ । ପିଲାମାନଙ୍କ ପାଇଁ ରହିବା, ଖାଇବା ଇତ୍ୟାଦି ସମସ୍ତ ସୁବିଧା ସୁଯୋଗ ଦିଆଯାଇଛି । ଏହା ଇନ୍ଦ୍ରାବତୀ ପ୍ରକଳ୍ପ କାମ କରୁଥିବା ଗାଁ ଓ ତା'ର ଆଖପାଖ ଅଞ୍ଚଳରେ ଅନେକ ପ୍ରଭାବ ପକାଇ ପାରିଛି । ସେଥିମଧ୍ୟରୁ ଟିକି ଝିଅଟିଏ ଏକ ନୂଆ ଜୀବନର ସନ୍ଧାନରେ ଡଙ୍ଗାଶିଲ୍ ଗାଁରୁ ଆସି ଗୌଡଗୁଡା ବାଳିକା ଶିକ୍ଷାୟତନର ତୃତୀୟ ଶ୍ରେଣୀରେ ପଢୁଛି । ନାଁ ତାର ଦାମିନୀ । ତା'ସହିତ ଅରୋହଣର ଏକ ଅନ୍ତରଙ୍ଗ ଆଲୋଚନା:

**ଆରୋହଣ-** ତମ ନାଁ କ'ଣ , ଘର କେଉଁଠି ?

**ଦାମିନୀ-** ମୋ ନାଁ ଦାମିନୀ ଜାନି । ଆମର ଘର ସ୍କୁଲଠାରୁ ତିନି କିଲୋମିଟର ଦୂର ଡଙ୍ଗାଶିଲ ଗାଁରେ ।

**ଆରୋହଣ-** ତମେ କେମିତି ସ୍କୁଲକୁ ପଢ଼ିବାକୁ ଆସିଲ ?

**ଦାମିନୀ-** ମୋର ଆବା ମତେ ଆଣି ସ୍କୁଲରେ ଛାଡିଦେଇ ଗଲା । ତାର ପରେ ଆମ ଗାଁ ପାଖ ପିଲାମାନଙ୍କ ସାଙ୍ଗେ ରହି ମୁଁ ପାଠ ପଢ଼ିଲି ।

**ଆରୋହଣ-** ତମେ କେତେ ଭାଇ ଭଉଣୀ ? ସମସ୍ତେ ପାଠ ପଢୁଛ କି ?

**ଦାମିନୀ-** ଆମେ ଦୁଇ ଭଉଣୀ ଜନ୍ମ ହେଲାପରେ ମୋର ମା ମରିଗଲେ । ତାର ଦୁଇ ବରଷ ପରେ ମୋର ଆବା ଆର୍ ଗୋଟେ ନୂଆ ମା' ଆଣିଲା । ଏବେ ଆମେ ଚାରି ଭଉଣୀ । ମୁଁ ସବା ବଡ, ମୋର ତଳକେ ରାତି ସ୍କୁଲରେ ପଢ଼ିଛି । ତାକେ ଆମର ଆବାସିକ ସ୍କୁଲ ଛାଡିବାକେ କହିବାରୁ ମୋର ନୂଆ ମା' ମନା କରଲା । କହିଲା ମୋର ସାନ ଭଉଣୀକେ ଧରବାକେ କେହି ନାଇଁନି ।

**ଆରୋହଣ-** ନୂଆ ନୂଆ ଆସିଲାବେଳେ କେମିତି ଲାଗୁଥିଲା ?

**ଦାମିନୀ-** ନୂଆ ନୂଆ ଆସିଲାବେଳେ ବେଶି ଡର ଲାଗୁଥିଲା । ପାଠ ପଢ଼ବାକେ ଡର୍ ଲାଗୁଥିଲା, ଦିଦି ମାନେ କାଳେ ଗାଳି କରିବେ ବୋଲି ଦିଦି ମାନକେ ମିଶା ଡର ଲାଗୁଥିଲା ।

**ଆରୋହଣ-** ତମ ସ୍କୁଲରେ କ'ଣ କ'ଣ ସବୁ ପଢ଼ା ଯାଉଛି ? ଦିନ୍‌ବେଳେ ପାଠ ପଢ଼ା ସିର୍‌ଲେ ତମେ କ'ଣ କରୁଛ ?

**ଦାମିନୀ-** ଆମର ଅଙ୍କ, ସାହିତ୍ୟ, ବିଜ୍ଞାନ, ସାମାଜିକ, ଇଂରାଜୀ ପଢ଼ା ହେଉଛି । ଆର ଗୀତ, ଗପ, ନାଚ, ଚିତ୍ରଅଙ୍କା, ସିଲେଇ, ବୁଣାବୁଣି ମିଶା ଶିଖା ଯାଉଛି । ସ୍କୁଲ ପଢ଼ା ସରିଲେ ଆମ ଖେଳୁଛୁ, ସାଇକେଲ ଶିଖୁଛୁ, ସ୍କୁଲ ବଗିଚାରେ ଗଛ ଲଗାଉଛୁ । ବେଳେ ବେଳେ ପନିପରିବା ମିଶି ଲଗାଉଛୁ ।

**ଆରୋହଣ-** ତମ ଗାଁର ସବୁ ଝିଅମାନେ କାହିଁକି ନାଇଁ ପଢ଼ିବାର ?

**ଦାମିନୀ-** ଆମର ଗାଁରେ ବହୁତ ଟୁକି ଅଛନ୍ । କିନ୍ତୁ ଘରର କାମ ଲାଗି ତାଙ୍କର ମା'ମାନେ ତାଙ୍କ ମାନକେ ନାଇଁ ଛାଡିବାର । ସେମାନେ କହୁଛନ୍ କି ପାଠ ପଢ଼ିଲେ ଟପ କେଲମାନେ ଘରର କାମ ନାଇଁ ଶିଖିପାରିବା ।

**ଆରୋହଣ-** ତମ ଗାଁର ଝିଅମାନଙ୍କର ସାଙ୍ଗେ ତମେ ସାଙ୍ଗ ହେଲାବେଳେ ସେମାନେ କିସ୍ କହୁଛନ୍ ?

**ଦାମିନୀ-** ଗାଁରେ ମୋର ସାଙ୍ଗମାନକେ ପାଠ ପଢ଼ବାର କଥା କହିଲେ ସେମାନେ ମନ ଦୁଃଖ କରୁଛନ୍ । କହୁଛନ୍ କି ଆମର ମା' ଆମକେ ନାଇଁ ଛାଡିବାର ।

**ଆରୋହଣ-** ପାଠ ପଢ଼ଲାବେଳେ ତମ ଦିଦି ମାନେ ଯାହା ପଢ଼ାଉଛନ୍ ସବୁ ବୁଝିବାର କି ନାହିଁ ?

**ଦାମିନୀ-** ସବୁ ବୁଝିବାର । ମାତ୍ର ଗଣିତ, ଇଂରାଜୀ ବୁଝବାକେ ଟିକେ କଷ୍ଟ ହେଇଛି ।

**ଆରୋହଣ-** ସ୍କୁଲରେ ରହିବା ଲାଗି କିଛି ଅସୁବିଧା ହେଉଛି କି ? ସବୁ ଜିନିଷ ଠିକ୍‌ରେ ମିଳିବାର କି ନାହିଁ ?

**ଦାମିନୀ-** କିଛି ଅସୁବିଧା ନାଇଁ ହୁଏ । ସବୁ ଜିନିଷ ଦିଦି ମାନେ ଦେବାର ଆର୍ ଆମର ସବୁକଥା ମିଶି ବୁଝିବାର ।

**ଆରୋହଣ-** ତମର ବେଶି ପଢ଼ବାକେ ଇଛା ଅଛି କି ନାହିଁ ? ପାଠ ପଢ଼ି କ'ଣ କରିବ ?

**ଦାମିନୀ-** ମୋର ବେଶି ପାଠ ପଢ଼ିବାକେ ଇଛା ଅଛି । ଏଠୁ ପଢ଼ା ସିରଲେ ମୁଁ ତେନ୍ତୁଳିଖୁଣ୍ଟିରେ ଯାଇ ପଢ଼ିବି । ବେଶି ପାଠ ପଢ଼ି ମୁଁ ଡାକ୍ତର ହେବି ।

**ଆରୋହଣ-** ଡାକ୍ତର ହେଲେ ଭଲ କି ? ତମେ ଡାକ୍ତର ହେଲେ କ'ଣ କରିବ ?

**ଦାମିନୀ-** ଆମର ଏଠି ବେଶି ଲୋକ ରୋଗରେ ମରିଯାଉଛନ୍ । ସେମାନେକେ ମୁଁ ଭଲ କରିବି ।

ଜୁନ୍ - ୧୯୯୯

# ଶିକ୍ଷକତା ଜୀବନରୁ

*ଆଦିବାସୀ ଅଞ୍ଚଳର ପିଲା ଯେତେ ପଢ଼ିଲେ ମଧ୍ୟ ଉପରକୁ ପଳାଶ ଫୁଲ ଏବଂ ଶେଷରେ ବଣମଲ୍ଲୀ ଭଳି ସୁବାସ ଶୂନ୍ୟ ଓ ଅଦୃଶ ରହିଯାଉଛନ୍ତି । ବାପାଙ୍କ ମୃତ୍ୟୁପରେ ଅର୍ଥାଭାବରୁ ଅଧିକ ପାଠ ପଢ଼ି ନପାରି ଏବଂ ସରକାରୀ ଚାକିରୀ ପାଇଁ ଅଧିକ ଲାଞ୍ଚ ଯୋଗାଡ କରି ନ ପାରି ଏକ ସ୍ତରରେ ରହିଯାଇଥିଲେ ଜୟରାମ ମାଝୀ । ବର୍ତ୍ତମାନ ସେ ଭାରତ ସରକାରଙ୍କ ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ ତରଫରୁ ଅଗ୍ରଗାମୀ ଦ୍ୱାରା ଚାଲୁଥିବା ନବସୃଜନ ଶିକ୍ଷାକେନ୍ଦ୍ରରେ ଶିକ୍ଷକତା କରୁଛନ୍ତି । ତାଙ୍କ ସହି ଆରୋହଣର ଏକ ସାକ୍ଷାତ୍‌କାର-*

ଆରୋହଣ- ଆପଣଙ୍କ ନାମ କ'ଣ ଓ ଗାଁ କେଉଁଠି ଏବଂ କ'ଣ କରୁଛନ୍ତି ?

**ଶ୍ରୀଯୁକ୍ତ ମାଝୀ-** ମୋ ନାଁ ଜୟରାମ ମାଝୀ ଓ ମୋ ଘର ଟିକିରି ପଞ୍ଚାୟତ ମଇଲିଗୁଡା ଗାଁରେ । ମୁଁ ବର୍ତ୍ତମାନ ଶରିପାଲ ପଞ୍ଚାୟତର ସିଲିଯୋଡି ଶିକ୍ଷାକନ୍ଦ୍ରର ଅଗ୍ରଗାମୀ ଦ୍ୱାରା ଚାଲୁଥିବା ସନବୃଜନ ଶିକ୍ଷାକେନ୍ଦ୍ରର ଗୁରୁଭାଇ ଅଛି । ଛୋଟଘର ସ୍କୁଲଘର ସହ ମିଶା ତୋଳି ନେଇଛନ୍ତି । ମୁଁ ସେଠି ରହୁଛି ।

**ଆରୋହଣ-** ଆପଣ କେବେଠାରୁ ଓ କିପରି ଶିକ୍ଷକତା କରୁଛନ୍ତି ?

**ଶ୍ରୀଯୁକ୍ତ ମାଝୀ-** ମୁଁ ୧୪ମାସ ହେବ ଶିକ୍ଷକତା କରୁଛି ।୧୯୯୫ ମସିହାରେ ମୁଁ ମାଟ୍ରିକ୍ ପାଶ୍ କଲି । ସେହି ବର୍ଷ ମୋ ବାପା ମରିଗଲେ । ତେଣୁ ଅର୍ଥାଭାବରୁ ମୁଁ ଆଉ ଅଧିକ ପଢ଼ିପାରିଲି ନାହିଁ । ଗତବର୍ଷ ଅଗ୍ରଗାମୀର ଏହି ଶିକ୍ଷାକେନ୍ଦ୍ରରେ ମୁଁ ଯୋଗ ଦେଲି ।

**ଆରୋହଣ-** ଆପଣ ସରକାରୀ ସ୍କୁଲରେ ଶିକ୍ଷକତା କରିବାକୁ ଚେଷ୍ଟା କରିଥିଲେ କି ?

**ଶ୍ରୀଯୁକ୍ତ ମାଝୀ-** ହଁ, ମୁଁ ସରକାରୀ ସ୍କୁଲରେ ଶିକ୍ଷକତା କରିବାକୁ ଚେଷ୍ଟାକରିଥିଲି । ଏଥିପାଇଁ ଲାଞ୍ଚ ଦେବାକୁ ପଡୁଥିବାରୁ ମୁଁ ସୁନାବନ୍ଧା ରଖି ଦଶହଜାର ଟଙ୍କା ମଧ୍ୟ ଯୋଗାଡ କରିଥିଲି । ମାତ୍ର କୋଡିଏ ହଜାର ଟଙ୍କା ଲାଞ୍ଚ ଦେଇଥିଲେ ମୋର ଚାକିରି ହୋଇଯାଇଥାନ୍ତା । କିନ୍ତୁ ମୁଁ ଆଉ ଦଶହଜାର ଟଙ୍କା ଦେଇ ନପାରିବାରୁ ମୋର ଚାକିରି ହୋଇପାରିଲା ନାହିଁ । ତେଣୁ ମୁଁ ଏଠାରେ ଶିକ୍ଷକତା କଲି ।

ଆରୋହଣ- ଆପଣଙ୍କର ଏହି ନବସୃଜନ ଶିକ୍ଷାକେନ୍ଦ୍ର ଏବଂ ସରକାରୀ ସ୍କୁଲ ମଧ୍ୟରେ କ'ଣ ଫରକ ଲକ୍ଷ୍ୟ କରୁଛନ୍ତି ?

ଶ୍ରୀଯୁକ୍ତ ମାଝୀ-. ପାଠପଢ଼ା ଦୃଷ୍ଟିରୁ ଏ ସ୍କୁଲ ଭଲ ଲାଗୁଛି । କାରଣ ଏଠାରେ ପିଲାମାନଙ୍କୁ ସଂପୂର୍ଣ୍ଣ ସ୍ୱାଧୀନତାରେ ଅଞ୍ଚଳଭିତ୍ତିକ ଶିକ୍ଷା ଦିଆଯାଉଛି ଯାହାକି ସରକାରୀ ସ୍କୁଲରେ ହେଉନାହିଁ । କିନ୍ତୁ ସରକାରୀ ସ୍କୁଲରେ ଏଠା ଅପେକ୍ଷା ବେଶୀ ପାରିଶ୍ରମିକ ମିଳୁଛି ।

ଆରୋହଣ- ଶିକ୍ଷକତା କରିବା ବ୍ୟତୀତ ଆଉ କ'ଣ କରୁଛନ୍ତି ?

ଶ୍ରୀଯୁକ୍ତ ମାଝୀ- ପିଲାମାନଙ୍କୁ ପାଠ ପଢ଼ାଇବା ବ୍ୟତୀତ ଆମେ କିଛି ଅଲଗା କାମ ମଧ୍ୟ କରୁଛୁ, ଯେମିତି ସ୍ୱାସ୍ଥ୍ୟ , ଶିକ୍ଷା, ପାନୀୟଜଳ ବିଷୟରେ ଲୋକଙ୍କୁ ସଚେତନ କରାଇବା ଇତ୍ୟାଦି । କିନ୍ତୁ ସେ କାମରେ ମୋର ସ୍ୱତନ୍ତ୍ର ଆଗ୍ରହ ଅଛି । କାରଣ ଆମ ଅଞ୍ଚଳର ଲୋକେ ଶିକ୍ଷା ଅଭାବରୁ ଏତେ ଠକେଇ ଶୋଷଣର ଶିକାର ହେଉଛନ୍ତି ଯେ ଦେଖିଲେ ସହି ହେଉନି । ମୁଁ ଯେଉଁ ଗାଁରେ ପଢ଼ାଉଛି ସେହି ଗାଁ ବ୍ୟତୀତ ପାଖାପାଖି ଅନ୍ୟ ଗାଁ ମାନଙ୍କରେ, ଲୋକମାନଙ୍କ ପାଖକୁ ଯାଇ ମୁଁ ବିଭିନ୍ନ କ୍ଷେତ୍ରରେ ସଚେତନ କରାଉଛି । ତା'ଛଡା ଡ୍ରେନ୍ ସଫା, ନଳକୂଅ ଚାରିପଟ ସଫା, ରାସ୍ତାକାମ ଭଳି ସାମୂହିକ କାର୍ଯ୍ୟରେ ଲୋକମାନଙ୍କ ସହ ମିଶି କାମ ମଧ୍ୟ କରିଛି ।

ଆରୋହଣ- ପଢ଼େଇବା କ୍ଷେତ୍ରରେ ଗାଁରୁ କିପରି ସହଯୋଗ ମିଳୁଛି ?

ଶ୍ରୀଯୁକ୍ତ ମାଝୀ- ପିଲାମାନଙ୍କୁ ପଢ଼େଇବା କ୍ଷେତ୍ରରେ ଗାଁଲୋକଙ୍କଠାରୁ ଯେତିକି ସମ୍ଭବ ସେତିକି ସହଯୋଗ ମିଳୁଛି । ମୁଁ ସବୁଦିନ ସକାଳ ୮ଟାରୁ ପିଲାମାନେ ଯେତେବେଳେ ପର୍ଯ୍ୟନ୍ତ ଚାହାନ୍ତି ସେତେବେଳେ ପର୍ଯ୍ୟନ୍ତ ପଢ଼ାଏ । ପୁଣି ସନ୍ଧ୍ୟା ୬ଟାରୁ ରାତି ୯ଟା ପର୍ଯ୍ୟନ୍ତ ପଢ଼ାଉଚି । ଯେଉଁ ପିଲାମାନେ ଦିନବେଳେ ଡଙ୍ଗର ଯାଉଛନ୍ତି, ସେମାନେ ସନ୍ଧ୍ୟାରେ ଆସୁଛନ୍ତି ।

ଆରୋହଣ- ଆପଣଙ୍କ ପାଖରେ କେତେ ଜଣ ପିଲା ପଢୁଛନ୍ତି ?

ଶ୍ରୀଯୁକ୍ତ ମାଝୀ- ମୋ ପାଖରେ ମୋଟ ୩୫ଜଣ ପିଲା ପଢୁଛନ୍ତି । ସେଥିମଧ୍ୟରୁ ୧୬ଜଣ ଝିଅ ପଢୁଛନ୍ତି । ସିର୍ଲିଯୋଡି ବ୍ୟତୀତ ପାଖ ଦୁଇଟି ଗାଁରୁ ଚାରି ଜଣ ଝିଅ ଏବଂ ଚାରିଜଣ ପୁଅ ପଢ଼ିବାକୁ ଆସୁଛନ୍ତି । ପାଖରେ ସରକାରୀ ସ୍କୁଲ ଥିଲେ ମଧ୍ୟ ସେମାନେ ସେଠାକୁ ନ ଯାଇ ଆମ ସ୍କୁଲକୁ ଆସୁଛନ୍ତି । କାରଣ ପଚାରିଲେ ପିଲାମାନେ କହନ୍ତି, ସେଠି ଭଲ ନାଇ ଲାଗିବାର୍, ମାଷ୍ଟର୍ ମାଡ୍ ଦେବାର୍ ।

ଆରୋହଣ- ଏ ଅଞ୍ଚଳରେ ଆଦିବାସୀ ପିଲାଙ୍କ ପାଇଁ ପାଠପଢ଼ା ଶୈଳୀ ଠିକ୍ ଅଛି କି ନାହିଁ ?

**ଶ୍ରୀଯୁକ୍ତ ମାଝୀ-** ସରକାରୀ ସ୍କୁଲରେ ପାଠପଢ଼ା ଶୈଳୀ ଠିକ୍ ନୁହେଁ। କାରଣ ସେମାନେ ଯାହା ପଢ଼ାଉଛନ୍ତି ତାହା ଆମକୁ ବଞ୍ଚିବାରେ ସାହାଯ୍ୟ କରୁନାହିଁ। ଆମକୁ ଶିକ୍ଷିତ କରିବା ବଦଳରେ ଆମର ବେଶୀ କ୍ଷତି କରୁଛି। ଆଜିକାଲି ତ୍ ଚାକିରି ମିଳୁନି ପାଠପଢ଼ା ପିଲାମାନେ ଡଙ୍ଗର କାମ ଅଭ୍ୟାସ ନ ଥିବାରୁ ବାପା ମା'ଙ୍କୁ ଛାଡି ଚାକିରି ଖୋଜିବାକୁ ବାହାରକୁ ଚାଲି ଯାଉଛନ୍ତି। ଫଳରେ ସେମାନେ ସେମାନଙ୍କର ଏ ସଂସ୍କୃତି, ପରିବାର ଓ ସମାଜଠାରୁ ଦୂରେଇ ଯାଉଛନ୍ତି।

**ଆରୋହଣ-** କେମିତି ପାଠ ପଢ଼ା ହେଲେ ଆଦିବାସୀ ପିଲାମାନେ ଭଲରେ ଚଳିପାରିବେ ?

**ଶ୍ରୀଯୁକ୍ତ ମାଝୀ-** ଆମ ଅଞ୍ଚଳରେ ଏମିତି ପାଠ ପଢ଼ା ହୁଅନ୍ତା, ଯେମିତିକି ସେଇ ପାଠପଢ଼ାଟା ଆମ ଜୀବିକା ଅର୍ଜନରେ ସାହାଯ୍ୟ କରିପାରନ୍ତା। ବିଶେଷକରି ଆମ ଆଦିବାସୀମାନଙ୍କ ସଂସ୍କୃତିକୁ ଆଖିଆଗରେ ରଖି, ସେମାନଙ୍କୁ କୃଷି କ୍ଷେତ୍ରରେ ବୈଷୟିକ ତାଲିମ୍ ତଥା ଧନ୍ଦାମୂଳକ ଶିକ୍ଷା ଦେବା ଉଚିତ୍।

**ଆରୋହଣ-** ଆପଣଙ୍କ ସ୍କୁଲରେ ଆପଣ ପିଲାମାନଙ୍କୁ କେମିତି ପଢ଼ାଉଛନ୍ତି ?

**ଶ୍ରୀଯୁକ୍ତ ମାଝୀ-** ସରକାରୀ ପାଠ୍ୟଖସଡା ଅନୁସାରେ ନପଢ଼ାଇ ଆମ ପରିବେଶକୁ ନେଇ ପିଲାଙ୍କ ଇଚ୍ଛା ଅନୁସାରେ ପଢ଼ାଉଛି। ଟିକେ ବଡ ପିଲାମାନଙ୍କୁ ପନିପରିବା ଚାଷ ବିଷୟରେ ମଧ୍ୟ ଶିକ୍ଷା ଦେଉଛି। ସେମାନଙ୍କ ଚାଷକାମ ତଥା ପର୍ବପର୍ବାଣି ଅନୁସାରେ ଛୁଟି ମଧ୍ୟ ଦିଆହେଉଛି।

**ଆରୋହଣ-** ଆଦିବାସୀ ପିଲାମାନେ କାହିଁକି ଅଧିକ ପଢ଼ିପାରୁ ନାହାଁନ୍ତି ?

**ଶ୍ରୀଯୁକ୍ତ ମାଝୀ-** ଆଦିବାସୀ ପିଲାମାନେ ଅଧିକ ପାଠ ନ ପଢ଼ିବାର ଅନେକ କାରଣ ରହିଛି। ପ୍ରଥମତଃ ସେମାନେ ବହୁତ ଗରିବ। ଆର୍ଥିକ ଅନଟନ ଯୋଗୁଁ ସେମାନେ ପଢ଼ିପାରୁ ନାହାନ୍ତି। ଦ୍ୱିତୀୟତଃ କାମ ନକଲେ ସେମାନଙ୍କ ଖାଇବା ମଧ୍ୟ ବନ୍ଦ ହୋଇଯାଏ। ଏଣୁ ସେମାନଙ୍କ ପାଠ ପଢ଼ିବାକୁ ନ ଯାଇ ବାପା ମା'ମାନଙ୍କୁ କାମରେ ସାହାଯ୍ୟ କରନ୍ତି। ତୃତୀୟତଃ ଅନେକ ସ୍ଥାନରେ ଭାଷାର ସମସ୍ୟା ଓ ମାଡ ଯୋଗୁଁ ପିଲାମାନେ ପାଠ ଛାଡି ଦେଉଛନ୍ତି। ଏଠି ପଢ଼ିବାର ଏକ ଉପଯୁକ୍ତ ପରିବେଶ ମଧ୍ୟ ନାହିଁ।

**ଆରୋହଣ-** ଆଦିବାସୀ ଅଞ୍ଚଳରେ ସ୍କୁଲ ଠିକ୍‌ରେ ଚାଲୁନି କାହିକି ?

**ଶ୍ରୀଯୁକ୍ତ ମାଝୀ-** ଆମ ଅଞ୍ଚଳରେ ସ୍କୁଲ ନ ଚାଲିବାର ମୁଖ୍ୟତଃ ଶିକ୍ଷକମାନେ ଦାୟୀ। ତାଙ୍କ କର୍ତ୍ତବ୍ୟ ହେଲା ସ୍କୁଲରେ ରହି ପାଠ ପଢ଼େଇବା। ସେମାନେ ସେଥିପାଇଁ ଦରମା ପାଆନ୍ତି। କିନ୍ତୁ ସେମାନେ ମୋଟେ ସ୍କୁଲ ଆସୁ ନାହାଁନ୍ତି। ତେଣୁ ପିଲାମାନେ

ପାଠ ପଢ଼ିବେ କେମିତି, ସ୍କୁଲ ଚାଲିବ ବା କେମିତି ? ତା'ଛଡା ଆଦିବାସୀ ଲୋକମାନେ ବି ଏତେ ସଚେତନ ନୁହଁନ୍ତି ଯେ ସେମାନେ ଏଥିପାଇଁ କିଛି ପଦକ୍ଷେପ ନେଇ ପାରିବେ । ଶିକ୍ଷା କମିଟି ଠିକ୍‌ଭାବେ କାର୍ଯ୍ୟକଲେ ତେବେ କିଛିଟା ପରିବର୍ତ୍ତନ ହୋଇପାରେ । ତଥାପି କେତେକ ଜାଗାରେ ଶିକ୍ଷାକମିଟି ଅଭିଯୋଗ ନଶୁଣି ଶିକ୍ଷାବିଭାଗର ଉପରିସ୍ଥ କର୍ମଚାରୀମାନେ ଲାଞ୍ଚ ନେଇ ଚୁପ୍‌ଚାପ୍ ବସି ପଡୁଛନ୍ତି । ସେଭଳି କ୍ଷେତ୍ରରେ ବିରାଟ ଆନ୍ଦୋଳନ ଦରକାର ।

**ଆରୋହଣ-** ପିଲାଙ୍କୁ ପଢ଼େଇବାରେ ଅପାଣଙ୍କର ଅସୁବିଧା ହେଉଛି କି ?

**ଶ୍ରୀଯୁକ୍ତ ମାଝୀ-** ପିଲାମାନଙ୍କୁ ନୂଆ ନୂଆ ପଢ଼େଇବାବେଳେ ଭାରି କଷ୍ଟ ଲାଗୁଥିଲା । ସେତେବେଳେ ସେମାନେ ପାଠ କ'ଣ ଜାଣି ନ ଥିଲେ, ପୁଣି ଏଣେତେଣେ ବୁଲି ଚଗଲାମି କରୁଥିଲେ । ଏବେ ସେସବୁ ସେତେ ପରିମାଣରେ ନାହିଁ । ତଥାପି ଏତେ ପିଲାଙ୍କୁ ଅଲଗା ଅଲଗା କରି ପଢ଼େଇବାରେ ଅସୁବିଧା ହେଉଛି । କାରଣ ସମସ୍ତେ ତ ଏକା ପଢୁନାହାନ୍ତି । କିଏ ସଂଖ୍ୟା ଶିଖିବାକୁ କହୁଛି ତ' କିଏ ଅକ୍ଷର ଶିଖିବାକୁ କହୁଛି । କିଏ ଗପ ଶୁଣିବାକୁ ଚାହିଁଲେ କିଏ ଗୀତ ଗାଇବାକୁ କହୁଛି । ଆଉ ଗୋଟିଏ ଅସୁବିଧା ହେଲା କେତେଜଣ ପିଲାଙ୍କୁ ଡାକିଯିବାକୁ ପଡୁଛି । ଯଦିଓ ଅନ୍ୟ କେତେଜଣ ନିୟମିତ ଭାବେ ପଢ଼ିବାକୁ ଆସୁଛନ୍ତି ।

**ଆରୋହଣ-** ଆପଣଙ୍କର ବ୍ୟକ୍ତିଗତ ଅସୁବିଧା କିଛି ହେଉଛି କି ?

**ଶ୍ରୀଯୁକ୍ତ ମାଝୀ-** ମୁଁ ଆମ ଘରଠାରୁ ୩୨କି.ମି. ଦୂର ସିର୍ଲିଯୋଡି ଗାଁରେ ରହୁଥିବାରୁ ଚାଷ ସମୟରେ ଖୁବ୍ ଅସୁବିଧାର ସମ୍ମୁଖୀନ ହେଉଛି । ବଡ ଭାଇ ଅଲଗା ରହୁଥିବାରୁ ଘରେ ମୋ ମା' ଏକୁଟିଆ ରହୁଛି । ତେଣୁ ତାକୁ ଟିକେ ହଇରାଣ ହେବାକୁ ପଡୁଛି ।

**ଆରୋହଣ-** ପାଠ ପଢ଼ିଲେ ପିଲାମାନେ ଅଳସୁଆ ହୋଇ ଡଙ୍ଗର କାମ ନକରିବା କଥାଟା କେତେ ଦୂର ସତ ?

**ଶ୍ରୀଯୁକ୍ତ ମାଝୀ-** ଏହା ସଂପୂର୍ଣ୍ଣ ସତ ନ ହେଲେ ମଧ୍ୟ ଆଂଶିକ ସତ । କାରଣ ପାଠ ପଢ଼ିଲେ ପିଲାମାନେ ସ୍କୁଲକୁ ଆସନ୍ତି । ଆଗରୁ ପିଲାବେଳୁ ବାପାମା'ଙ୍କୁ ଯେଉଁ ଡଙ୍ଗର କାମରେ ସାହାଯ୍ୟ କରୁଥିଲେ, ସେଭଳି କରନ୍ତି ନାହିଁ । ପିଲାବେଳୁ ଅଭ୍ୟାସ ନ ଥିବାରୁ ସେମାନେ ବଡ ହେଲେ କାମ କରିବାକୁ କୁଣ୍ଠାବୋଧ କରନ୍ତି । କିନ୍ତୁ ପ୍ରକୃତ ଶିକ୍ଷା ଦେଲେ ସେମାନେ ଅଧିକ ସମୟ କାମ ନକରି ପାରିଲେ ବି, କମ୍ ସମୟ କରିପାରିବେ ନିଶ୍ଚୟ ।

**ଆରୋହଣ-** ଆଦିବାସୀ ଝିଅମାନେ ପାଠ ନପଢ଼ିବାର କାରଣ କ'ଣ ବୋଲି ଭାବୁଛନ୍ତି ?

**ଶ୍ରୀଯୁକ୍ତ ମାଝୀ-** ପ୍ରକୃତରେ ଆମ ଝିଅମାନେ ଏପର୍ଯ୍ୟନ୍ତ ଶିକ୍ଷାର ଗୁରୁତ୍ୱ ବୁଝିନାହାନ୍ତି । ସେମାନେ ପିଲା ଧରିବାଠାରୁ ଆରମ୍ଭ କରି ଘରର ସବୁକାମ କରୁଥିବାରୁ

ପାଠ ପଢ଼ିବାକୁ ସମୟ ପାଆନ୍ତି ନାହିଁ । ଏବେ ବି ଆମ ଅଞ୍ଚଳରେ ଛୋଟ ବେଳୁ ଝିଅମାନଙ୍କୁ ବିଭା ଦେଇ ଦେଉଛନ୍ତି । ତେଣୁ ସେମାନେ ଲାଜରେ ପଢ଼ିବାକୁ ଆସୁନାହାନ୍ତି । ଏସବୁ କ୍ଷେତ୍ରରେ ପ୍ରଥମେ ବାପା, ମା'ଙ୍କୁ ସଚେତନ କରାଇବା ଦରକାର । ବାପା, ମା'ମାନେ ସଚେତନ ହେଲେ ଝିଅମାନଙ୍କୁ ପାଠ ପଢ଼ିବା ପାଇଁ ଏତେ ଅସୁବିଧା ହେବ ନାହିଁ ବୋଲି ମୁଁ ଭାବୁଛି ।

**ଆରୋହଣ–** ଆପଣଙ୍କୁ ଅନ୍ୟ ସ୍କୁଲକୁ ବଦଳି କଲେ ଭଲ ଲାଗିବକି ?

**ଶ୍ରୀଯୁକ୍ତ ମାଝୀ–** ମୋଟେ ନୁହେଁ, ମୋତେ ସେଇ ଗାଁରେ ବେଶି ଭଲ ଲାଗୁଛି । ସେଠୁ ଛାଡି ଅନ୍ୟ ସ୍ଥାନକୁ ଗଲେ ମୋ ପରେ ଯେଉଁ ଶିକ୍ଷକ ଆସିବେ, ସେ ଯଦି ପିଲାମାନଙ୍କୁ ଠିକ୍‌ରେ ନ ପଢ଼ାଇବେ ବା ଅବହେଳା କରିବେ, ତେବେ ମୋତେ ବେଶି କଷ୍ଟ ଲାଗିବ । ତା'ଛଡା ଗାଁ ଲୋକଙ୍କ ସହିତ ଏତେ ମିଶିଯାଇଛି ଯେ, ଏଠୁ ଗଲେ ଭଲ ଲାଗିବ ନାହିଁ ।

**ଆରୋହଣ–** ପିଲାଙ୍କ ପାଠପଢ଼ାରେ ଶିକ୍ଷକ ଓ ଅଭିଭାବକଙ୍କ ଦାୟିତ୍ୱ କ'ଣ ହେବା ଉଚିତ୍ ?

**ଶ୍ରୀଯୁକ୍ତ ମାଝୀ–** ଅଭିଭାବକମାନେ ନିଜ ପିଲାଙ୍କୁ ବୁଝାଇ ନିୟମିତ ସ୍କୁଲକୁ ପଠାଇବା ଉଚିତ୍ । ଶିକ୍ଷକମାନେ ମଧ୍ୟ ପିଲାଙ୍କୁ ବିରକ୍ତ ନ ହୋଇ ଭଲ ପାଇବା ଉଚିତ୍ । ପିଲାମାନେ ନଆସିଲେ ବୁଝାଇ ସୁଝାଇ ସେମାନଙ୍କୁ ଡାକି ଆଣିବା ଉଚିତ୍ । ଏସବୁ ପରେ ଶିକ୍ଷକ ଓ ଅଭିଭାବକମାନଙ୍କ ମଧ୍ୟରେ ମଧ୍ୟ ସୁସଂପର୍କ ରହିବା ଉଚିତ୍ ।

ଜୁନ୍ - ୧୯୯୯



# କାହାଣୀ ଏକ ଗାଁର: ନାଁ ତା'ର କଲାଟି

ମୁଁ ଚାଲୁଥିବା ସମୟରେ ମୋ ସାଥୀ ମୋତେ କହିଲା 'ଏଇ ଦେଖନା । ପ୍ରକୃତରେ ଦେଖିବା ପରି ଦେଖାଯାଉଥିଲା, ତାକୁ ଟିକିଏ ନିରେଖି ଦେଖିଲେ ପ୍ରକୃତରେ ତାହା ଇନ୍ଦ୍ରାବତୀ ଜଳଭଣ୍ଡାର ।' ତା' ପାଖରେ ପାହାଡ ତଳର ଶାଗୁଆ ଫସଲ ଭିତରେ ଧାଡି ଧାଡିକା ଝାଟିମାଟି ଘର ଥିବା କଲାଟି ଗାଁ ଗୋଟିଏ ରହସ୍ୟମୟ ବିନ୍ଦୁ ପରି ଦିଶେ । ଏହି ଗାଁଟି ଲାଗେ ସତେଯେମିତି କୋରାପୁଟ ସହରର ସବାଶେଷ ଗାଁ । ଦୁଇଘଣ୍ଟାର ପାଦଚଲା ରାସ୍ତା ପରେ ଆହୁରି ଅଧାଘଣ୍ଟା ପାଦଚଲା ରାସ୍ତା ଥିଲା । କିଛି ରାସ୍ତା ପାର ହେବା ବେଳେ ଚମତ୍କାର ବନ୍ୟ ଗଛଲତା ଆମ ଆଖିରେ ପଡିଲା ଓ ଶେଷରେ ଆମେ ସେହି ଗାଁରେ ଯାଇ ପହଞ୍ଚିଲୁ । ଗାଁ ଲୋକମାନେ ଆମ ଯୁବ ଇଂଜିନିୟରଙ୍କୁ ଘେରି ରହିଥାନ୍ତି ଓ ଆମକୁ ଅପେକ୍ଷା କରିଥାନ୍ତି । ଏହି କଠିନ ବାଟଚଲା ପରେ ଆମର ଇଚ୍ଛା ହେଉଥିଲା କିଛି କଥା ହେବା ପାଇଁ । ଗୋଟିଏ ଛୋଟ ଅଗଣାର ଛାଇରେ ଆରାମ ପାଇଁ ଆମେ ବସିଲୁ । ଗାଁ ଶେଷମୁଣ୍ଡରେ ଥିବା ଗୋଟିଏ ଶାଳଗଛ ଛାଇରେ ଲୋକମାନେ ଚାଞ୍ଚି ସଫାସୁତୁରା କରି ଏକ ମସିଣା ପକାଇ ବସିଥାନ୍ତି । ମୁଁ ମୋ ଦଳ ସହିତ ମସିଣାର ଶେଷ ମୁଣ୍ଡରେ ବସିଲି । ପୁରୁଷମାନେ ଛୋଟ ଛୋଟ ପଥର ଉପରେ ବସିଲେ ଓ ମହିଳାମାନେ ଛଣରେ ତିଆରି ଆସନରେ ବସିଲେ । ବାହାରେ ଠିଆ ହୋଇଥିବା ଲୋକମାନଙ୍କୁ ଆମେ ବସିବା ପାଇଁ ଡାକିଲୁ । କିନ୍ତୁ ସେମାନେ ସଂକୋଚର ସହିତ ଆସି ମସିଣାରେ ବସିଲେ ଯାହାକୁ ସେମାନେ ଜଙ୍ଗଲି ବାଉଁଶ ପାତିଆରେ ତିଆରି କରିଥିଲେ ।

ଧୀରେ ଧୀରେ ବାର୍ତ୍ତାଳାପ ବେଶ୍ ଜମିଲା । ଆଲୋଚନା କଲାବେଳେ ଆମେ ଅନୁଭବ କଲୁ ଗାଁର ଲୋକମାନେ ବଜାର, ବ୍ୟାଙ୍କ ଏବଂ ସ୍ୱାସ୍ଥ୍ୟ ସୁବିଧାଠାରୁ ଯଥେଷ୍ଟ ଦୂରରେ । ଆମେ ସେମାନଙ୍କୁ 'କେଉଁଠାକୁ ସାପ୍ତାହିକ ହାଟ ପାଇଁ ଯାଅ' ବୋଲି ପଚାରିଲୁ । ସେମାନେ ଆମକୁ କହିଲେ, 'ଏଥିପାଇଁ ଗୁମା ଓ ଝାଲିଆଗୁଡା ଯିବାକୁ ହୁଏ । ସେହି ସ୍ଥାନରେ ପହଞ୍ଚିବାକୁ ହେଲେ ଡଙ୍ଗାରେ ତିନି ଘଣ୍ଟା ସମୟ ଲାଗିବ ।'

ତୁମ୍ଭେମାନେ କେଉଁଠାରୁ ଡଙ୍ଗା ଧରୁଛ ବୋଲି ପଚାରିବାରୁ, 'ଏହି ପାଖରେ ଦେଖାଯାଉଥିବା ପାହାଡ ପାଖର ଜଳଭଣ୍ଡାରରେ', କହି ସେମାନେ ଆମକୁ ଦେଖାଇ ଦେଲେ । ସେମାନେ ପାଖରେ ବୋଲି କହୁଥିଲେ ମଧ୍ୟ ଆମକୁ ବେଶ୍ ଦୂର ଜଣା ପଡୁଥିଲା । ଯାହାକି ଅତିକମ୍‌ରେ ଆଉ ଏକ ଘଣ୍ଟାର ରାସ୍ତା ଥିଲା, ପୁଣି ଦୁଇଟି ପର୍ବତ ଡେଇଁ ଯିବାକୁ ପଡୁଥିଲା । 'ଯେଉଁମାନେ ବହୁତ ସାହସୀ ଲୋକ, ସେମାନେ ହିଁ ଝାଲିଆଗୁଡା ଯାଆନ୍ତି । ବାକି ସମସ୍ତେ ଗୁମାକୁ ବଜାର କରିବା ପାଇଁ ଯାଆନ୍ତି । ଗୁମା ଠାରୁ ଆମେ ଏଇମାତ୍ର ପର୍ବତ ନଦୀ ରାସ୍ତାକୁ ଅତିକ୍ରମ କରିଆସିଛୁ ।'

ଦୁଇ ବର୍ଷ ତଳେ ଗାଁର ସାତଜଣ ବ୍ୟକ୍ତି ଜଳଭଣ୍ଡାର ପାରିହେବା ବେଳେ ପାଣିରେ ବୁଡି ଯାଇଥିଲେ । ଏହି ଗାଁକୁ ଜିଲ୍ଲାପାଳ ପରିଦର୍ଶନ କରି ଆସିଥିଲେ । ଜିଲ୍ଲାପାଳଙ୍କର ପରିଦର୍ଶନ କଥା ଆମେ ତାଙ୍କୁ ପଚାରିଲୁ । ଗାଁର ମହିଳାମାନେ ସେହି ବିଷୟରେ ମନେ ପକାଇ ପାରିଲେ ନାହିଁ । କିଛି ଲୋକ 'ହଁ ଆସିଥିଲେ' ବୋଲି ନିରୁତ୍ସାହିତ ଢ଼ଙ୍ଗରେ କହିଲେ । ତା'ପରେ ଆମେ ପୁଣି ପ୍ରଶ୍ନ କଲୁ, 'କିଛି କ୍ଷତିପୂରଣ ଦେଲେ କି ? ତୁମକୁ କିଛି କାମ ଯୋଗାଇ ଦେଲେ କି ? ସେମାନେ କହିଲେ,' ଯେଉଁ ପରିବାରରୁ ଲୋକ ମରିଛନ୍ତି, ସେମାନଙ୍କୁ କ୍ଷତିପୂରଣ ଦେବେ ।' କିନ୍ତୁ ବର୍ତ୍ତମାନ ସୁଦ୍ଧା ମାତ୍ର ତିନୋଟି ପରିବାର କ୍ଷତିପୂରଣ ପାଇଛନ୍ତି । ବାହାର ସମାଜରୁ କଲାଟି ଗାଁ ବିଚ୍ଛିନ୍ନ ହୋଇ ରହିଛି, ଯେଉଁଠି ବେପାରୀମାନେ ମଧ୍ୟ ଉତ୍ପାଦିତ ଦ୍ରବ୍ୟକୁ କିଣିବାକୁ ଆସନ୍ତି ନାହିଁ । ଆମେ ଏହି ଉତ୍ପାଦିତ ଜିନିଷ ଗୁଡିକୁ ଡଙ୍ଗାରେ ବୋହି ଝୋଲିଆଗୁଡା ବଜାରରେ ବିକ୍ରି କରିଥାଉ । ଖଲିପତ୍ର ଓ ଝାଡୁ ବିଷୟରେ ଆମେ ପଚାରିଲୁ ।

ଏହି ପ୍ରଶ୍ନ ସେମାନଙ୍କୁ ଅତି ହାସ୍ୟକର ମନେ ହେଲା । ଆମେ କେବଳ ଘରଖର୍ଚ୍ଚ ପାଇଁ ଝାଡୁ ସଂଗ୍ରହ କରୁଛୁ ବୋଲି ଧୈର୍ଯ୍ୟର ସହିତ ବର୍ଣ୍ଣନା କଲେ ଏବଂ ଆମକୁ ପ୍ରଶ୍ନ କଲେ ଯେ ଆମେ ଯଦି ବହୁତ ମାତ୍ରାରେ ଝାଡୁ ସଂଗ୍ରହ କରିବୁ, ତା'ହେଲେ କେଉଁଠି ବିକ୍ରୟ କରିବୁ ? ଖଲିପତ୍ର ଓ ଫୁଲଝାଡୁ ମିଳେ, ଯାହାକି ଏହି ଛୋଟ ଡଙ୍ଗାରେ ନେବାଟା କଷ୍ଟକର ହୋଇଥାଏ । ପୁଣି ଏହା ସେତେଟା ଲାଭଦାୟକ ନୁହେଁ । ତା' ପରେ ଆମେ ଲୋକମାନଙ୍କୁ ପଚାରିଲୁ ଯେ କାହାର ଦେହ ଅସୁସ୍ଥ ହେଲେ ତୁମେମାନେ କେଉଁଠାକୁ ଯାଅ ? ଏହାପରେ ସେମାନେ ଆମକୁ କେବଳ ଚାହିଁ ରହିଲେ । ପ୍ରଶ୍ନଟି ସ୍ୱାଭାବିକ ଭାବରେ ସ୍ଥାଣୁ ପାଲଟିଗଲା । ଗାଁ ଲୋକମାନେ ସ୍ୱାସ୍ଥ୍ୟବାନ ଦେଖାଯାଉଥିଲେ । ପିଲାମାନଙ୍କ ଠାରେ ପୁଷ୍ଟିହୀନତାର କୌଣସି ଚିହ୍ନ ନଥିଲା । ଯଦିଓ ସେମାନେ ବେଳେବେଳେ ଅସୁସ୍ଥ ହୁଅନ୍ତି, ତଥାପି ସେମାନେ ସରକାରଙ୍କ କାର୍ଯ୍ୟକ୍ରମ ବା ପଦ୍ଧତି ଉପରେ ନିର୍ଭର କରିବା ଶିଖି ନାହାନ୍ତି । ସେମାନେ ନିଜ ନିଜର ପଦ୍ଧତି ତଥା ଦିଶାରୀ

ଦ୍ୱାରା ଆୟୁର୍ବେଦିକ ଚିକିତ୍ସା କରୁଛନ୍ତି । ଅନେକ ପ୍ରକାରର ଭଗବାନଙ୍କ ଉପରେ ବିଶ୍ୱାସ ରଖି ପୂଜାପଦ୍ଧତି କରିବା ଆଦିବାସୀ ସଂପ୍ରଦାୟର ଏକ ନିଶ୍ଚିତ ପଦ୍ଧତି । ଗାଁକୁ ଅଙ୍ଗନୱାଡି କର୍ମୀ କେବେକେବେ କେମିତି ଥରେମାତ୍ର ଆସନ୍ତି । ଅଙ୍ଗନୱାଡି କର୍ମୀ କେନ୍ଦ୍ରରୁ ଦୁଇ ତିନି ମାସ ହେବ ଖାଦ୍ୟସାମଗ୍ରୀ ଉଠାଇ ନାହାନ୍ତି । ଗାଁରେ ଚାରିଟି ପରିବାରକୁ ଛାଡିଦେଲେ ସମସ୍ତେ ବି.ପି.ଏଲ. ତାଲିକାଭୁକ୍ତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ କେତେଜଣ ସ୍ୱଚ୍ଛମିଆଦୀ ରାସନ୍ କାର୍ଡ ପାଇଁ ତାଙ୍କର ବି.ପି.ଏଲ. କାର୍ଡକୁ ବଦଳ କରିଛନ୍ତି । ଜଳଭଣ୍ଡାର ତିଆରି ଏବଂ ଇନ୍ଦ୍ରାବତୀ ଡ୍ୟାମ୍ ହେବା ପୂର୍ବରୁ ଏହା କିପରି ଥିଲା ବୋଲି ଆମେ ପଚାରିଲୁ । ସେମାନେ କହିଲେ ଯେ ଏହାରି ତଳେ ଅନେକ ଗାଁ ଥିଲା । ସେମାନେ ଗାଁ ଛାଡି କୁଆଡେ ଗଲେ, ଆମେ ଆଜିପର୍ଯ୍ୟନ୍ତ କିଛି ଜାଣିନୁ । ତା'ପରେ ଆମେ ସେମାନଙ୍କୁ ପଚାରିଲୁ, 'ଯଦି ସେମାନଙ୍କ ମଧ୍ୟରୁ କେହି ତୁମ ଗାଁ ପାଖରେ ରହିବାକୁ ଆସିବେ ସେମାନଙ୍କୁ ରଖିବ କି ?' ସେମାନେ କହିଲେ, 'ଆମ ନିଜ ପାଇଁ ତ ଜମି ନାହିଁ; ଅନ୍ୟମାନେ ଆସି କିପରି ଏଠାରେ ରହିବେ ?

ଆମେ ଫେରିବା ସମୟରେ କଲାଟି ଗାଁର ଜଣେ ବୃଦ୍ଧା ମହିଳାଙ୍କୁ ଭେଟିଲୁ । ସେ ନାରଙ୍ଗ ଦେବରଙ୍କ ସହ ବାର୍ଦ୍ଧକ୍ୟ ଭତ୍ତା ପାଇଁ ଯାଇଥିଲେ । କିନ୍ତୁ ଅସୁସ୍ଥତା ଯୋଗୁଁ ସେ ପଛରେ ରହିଗଲେ । ଅନ୍ୟ ଜଣକ ଘରେ ରାତିରେ ଆଶ୍ରୟ ନେଇ ତା' ପରଦିନ ଗୁମା ନ ଯାଇ ନିଜ ଗାଁକୁ ସେ ଫେରିଥିଲେ । ସେ ସକାଳୁ କିଛି ଖାଇ ନଥିଲେ । ଖରାରେ ଆସିବାରୁ ତାଙ୍କ ମୁଣ୍ଡ ତାତୁଥିଲା ଏବଂ ଦୀର୍ଘ ଦୁଇଘଣ୍ଟାର ରାସ୍ତା ଉପାସରେ ଚାଲି ଚାଲି ଫେରୁଥିବା ସମୟରେ ଆମେ ତାଙ୍କୁ ଭେଟିଲୁ । ପଚାରିଲୁ 'ତୁମେ କିପରି ଏତେ ରାସ୍ତା ଚାଲି ଫେରିବ ?' ସେ ଆମକୁ ଉତ୍ତର ଦେଲେ, ମୁଁ ଫେରି ଯାଇପାରିବ ।' ତାଙ୍କୁ ସେଠାରେ ଛାଡି ଆସିବା ଆମ ପାଇଁ ଯନ୍ତ୍ରଣା ଦାୟକ ଥିଲା । ଆମେ ତାଙ୍କୁ ଏକ ବିସ୍କୁଟ୍ ପ୍ୟାକେଟ୍ ଦେଲୁ । ସେ କୃତଜ୍ଞତାର ସହିତ ଗ୍ରହଣ କଲେ ଏବଂ ଆମେ ଆମ ରାସ୍ତାରେ ଆଗେଇଲୁ ।

ଗତକାଲି ଚାରିଜଣ ବ୍ୟକ୍ତି ସେମାନଙ୍କର ବାର୍ଦ୍ଧକ୍ୟ ଭତ୍ତା ଆଣିବା ପାଇଁ ଗୁମା ଯାଇଥିଲେ । ଏହାପରେ ଆମକୁ ନାରଙ୍ଗି ଦେବର କହିଲେ ଯେ, 'ଏହା ଆମକୁ ତିନି ମାସରେ ଥରେ ମିଳୁଛି । ଆମେ ନିଜେ ଯାଇ ଆଣିବାକୁ ପଡୁଛି । ସେମାନେ ଗାଁର ଅନ୍ୟ କାହା ହାତରେ ଦେଉନାହାନ୍ତି ।' ଗାଁର ଲୋକମାନେ ପଞ୍ଚାୟତ ମିଟିଂରେ ଯୋଗ ଦେଇଥିଲେ ବୋଲି କହିଲେ । ଏହି ମିଟିଂରେ କ'ଣ ହେଲା ବୋଲି ପ୍ରଶ୍ନ କରିବାରୁ ସେମାନେ କହିଥିଲେ ଯେ ଏହି ମିଟିଂରେ କିଏ ଇନ୍ଦିରା ଆବାସ ଘର ପାଇବ ଏବଂ ବୁଢ଼ାବୁଢ଼ୀ ଭତ୍ତା ପାଇବ ଇତ୍ୟାଦି ନିଷ୍ପତ୍ତି ନିଆଯାଇଥିଲା ।' କଲାଟି ଗୋଟିଏ ଗାଁ,

ସତେକି ସମାଜ ତାକୁ ଭୁଲିବା ପାଇଁ ବାଛି ନେଇଛି । ତଥାପି ସେମାନେ ଜୀବନ ଅତିବାହିତ କରୁଛନ୍ତି । ଯେତେବେଳେ ସେମାନଙ୍କର ଋଣ ଦରକାର ହୁଏ, ଗୁମାଠାରେ ଥିବା ସାହୁକାରଙ୍କ ପାଖକୁ ଯାଇଥାନ୍ତି ନହେଲେ ଜଙ୍ଗଲଜାତ ଦ୍ରବ୍ୟକୁ ଝାଲିଆଗୁଡା ବଜାରରେ ବିକ୍ରିକରି ପଇସା ପାଇଥାନ୍ତି । ଖାଦ୍ୟାଭାବ ସମୟରେ ସେମାନେ ପାହାଡକୁ ଯାଇ ଖାଦ୍ୟୋପଯୋଗୀ କନ୍ଦା ସଂଗ୍ରହ କରି ନିଜର କ୍ଷୁଧା ନିବାରଣ କରିଥାନ୍ତି । ଗାଁରେ ଏ ପର୍ଯ୍ୟନ୍ତ ମହାମାରୀ ରୋଗ ଦେଖାଯାଇନି, ଯାହାକି ଗତ ଚାରି ପାଞ୍ଚବର୍ଷ ହେଲା ଗିର୍ଲିଗୁମା ପଞ୍ଚାୟତର ବିଭିନ୍ନ ଗାଁକୁ ଆକ୍ରମଣ କରିଛି ।

ସମାଜ ସହିତ ଏଇ ଲୋକମାନେ ଆଉ କେବେ ସଂଶ୍ଳିଷ୍ଟ ହେବେ ? ହଁ, ନିଶ୍ଚିତ ଭାବେ ସେମାନେ ସଂଶ୍ଳିଷ୍ଟ ହେବ । ହେଲେ ଏହା ଶୀଘ୍ର ହୋଇପାରେ ବା ଡେରିରେ ହୋଇପାରେ । କିନ୍ତୁ ସେଥିପାଇଁ ଲୋକମାନଙ୍କର ପ୍ରସ୍ତୁତି କ'ଣ ହେବ ? ସେମାନଙ୍କ ଜୀବନର ପରିପୋଷଣ କରୁଥିବା ପାହାଡ ପର୍ବତ ଗୁଡିକୁ କେତେକ ବ୍ୟବସାୟିକ ଲକ୍ଷ୍ୟ ନେଇ ବ୍ୟବହାର କରାଯାଉଥିବାବେଳେ ସେମାନେ କ'ଣ କରିବେ ? ସେମାନେ କ'ଣ କେବଳ ଦିନମଜୁରିକୁ ଗ୍ରହଣ କରିନେଇ ନିଜ ଜମିକୁ ଅନ୍ୟମାନଙ୍କର ବ୍ୟବହାର ପାଇଁ ତିଆରି କରିବେ ? ୟୁକାଲିପଟାସ୍ ଗଛ ସବୁସ୍ଥାନରେ ମାଡିଯାଇଛି, ଅନ୍ୟ ସ୍ଥାନଗୁଡିକରେ କାଜୁବଗିଚା ପାଇଁ ଘରୋଇ ପ୍ରତିଷ୍ଠାନଗୁଡିକ ଲିଜ୍ ନେଇ ସାରିଛନ୍ତି । ସମୟ ଆସିବ, କଲାଟି ଗାଁର ଜମି ଓ ଜଳ ସଂପଦ ଉପରେ ବ୍ୟବସାୟୀମାନଙ୍କର ଆଖି ପଡିବ ।

ଡ୍ୟାମ୍ ତିଆରି ହେବା ପୂର୍ବରୁ ନିକଟରେ ବିଭିନ୍ନ ଗାଁ ସହିତ ସେମାନଙ୍କର ସଂପର୍କ ଥିଲା । ବର୍ତ୍ତମାନ ଜଳଭଣ୍ଡାର ସେମାନଙ୍କୁ ବିଚ୍ଛିନ୍ନ କରିଛି ସତ; କିନ୍ତୁ ସେମାନଙ୍କର ଗୋଟିଏ ସମସ୍ୟା ହେଲା ଝିଙ୍କ ତାଙ୍କର ଶସ୍ୟ ସବୁକୁ ନଷ୍ଟ କରିଦେଉଛି । ଦିନରାତି ଜଗି ରହିବାକୁ ସେମାନଙ୍କୁ ବାଧ୍ୟ କରୁଛି । ବେଳେବେଳେ ଜଣେ ରାଜସ୍ୱ ନିରୀକ୍ଷକ ଆସି ସେମାନଙ୍କଠାରୁ ପୋଡୁଚାଷ ପାଇଁ ଜୋରିମାନା ଆଦାୟ କରିଥାନ୍ତି । 'ଆମେ ଜଙ୍ଗଲ ଚାହୁଁନାହୁଁ,' ସେମାନେ କହିଲେ ମଧ୍ୟ ୩୦ହେକ୍ଟର ଜଙ୍ଗଲ ରଖିଛନ୍ତି ଓ ଏଥିପାଇଁ ଜଙ୍ଗଲ କମିଟି ମଧ୍ୟ ଗଢ଼ିଛନ୍ତି । ନାରଙ୍ଗି ଦେଇ ଚାଷ ହୋଇଥିବା ଡଙ୍ଗର ଦେଖାଇଦେଲେ, ଅଗ୍ରଗାମୀ କଲମୀ ଆମ୍ବ ଚାରା ଲଗେଇବାକୁ ଦେଇଥିଲେ । ଏ ବର୍ଷ ଚାଷ ନୂଆରେ ସେତେଟା ଭଲ ହୋଇନି । ଆମେ ଏହାକୁ ଏ ବର୍ଷ ତିଆରି କରିଛୁ । ଆସନ୍ତା ବର୍ଷ ଚାଷ ଭଲ ହେବ' ବୋଲି ସେ କହିଥିଲେ । ସେ ଆମକୁ ସେହି ଜଙ୍ଗଲରେ ହୋଇଥିବା ଏକ ଛୋଟ ଗଛକୁ ଦେଖାଇଲା ଏବଂ ମୋତେ କହିଲା, ସେହି ଗଛ ଯେତେଦିନ ପର୍ଯ୍ୟନ୍ତ ବଞ୍ଚିଥିବ, ସେତେଦିନ ପର୍ଯ୍ୟନ୍ତ ଆମ ଗାଁରେ ମରୁଡି ହେବ ନାହିଁ ।

ଦକ୍ଷିଣ ଓଡ଼ିଶା ମୁଖ୍ୟତଃ ଆଦିବାସୀ ଅଞ୍ଚଳ ଏବଂ ଅନୁନ୍ନତ ଅଞ୍ଚଳ । ଏହି ଅଞ୍ଚଳ ମୁଖ୍ୟତଃ ଯନ୍ତ୍ରଣାଯୁକ୍ତ ମୃତ୍ୟୁର ଏକ ଜ୍ୱଳନ୍ତ ପ୍ରମାଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି

ଅଞ୍ଚଳ ଅନୁନ୍ନତ  ହେବା ପଛରେ ଥିବା କାରଣ ଖୁବ୍ ଜଟିଳ ଓ କଷ୍ଟକର । ନିରକ୍ଷରତା, ଅଜ୍ଞାନତା ଓ ଶୋଷଣ ସେମାନଙ୍କର ଚିରଦିନର ସାଥୀ । ତଥାପି ଲୋକମାନେ ବଞ୍ଚିବା ପାଇଁ ସଂଘର୍ଷ ଜାରି ରଖିଛନ୍ତି । କମ୍ ପୁଷ୍ଟିହୀନତା ଯୋଗୁଁ ସେମାନେ ବିଭିନ୍ନ ପ୍ରକାର ରୋଗରେ ପଡିଛନ୍ତି । ସେମାନଙ୍କର ଉପାର୍ଜନ ମଧ୍ୟ ଖୁବ୍ କମ୍ । ଅତି ନିଘଞ୍ଚ ଗ୍ରାମମାନଙ୍କରେ ସ୍ୱାସ୍ଥ୍ୟର ସୁବିଧା ପାଇଁ ସରକାରଙ୍କ ଦ୍ୱାରା ସରକାରୀ କାର୍ଯ୍ୟକ୍ରମ ପହଞ୍ଚି ପାରେନାହିଁ । ପାହାଡ ଓ ନଦୀଭରା ଏହି ଅଞ୍ଚଳରେ ସରକାରୀ କାର୍ଯ୍ୟକ୍ରମ ଠିକ୍ ଭାବରେ ପରିଚାଳନା ହୁଏ ନାହିଁ । ଅନ୍ୟ ପକ୍ଷରେ ଲୋକମାନଙ୍କ କଥା ସରକାରୀ ଲୋକ ଖୁବ୍ କମ୍ ଶୁଣନ୍ତି ଏବଂ କର୍ମଚାରୀ ଓ ସ୍ଥାୟୀ ବାସିନ୍ଦାମାନଙ୍କ ଭିତରେ ଖୁବ୍ କମ୍ ସଂପର୍କ ରହିଥାଏ ।

ଅଗ୍ରଗାମୀ ୨୦୦୧ ମସିହା ଫେବୃୟାରୀ ମାସରେ ବିଶ୍ୱ ଖାଦ୍ୟ ଯୋଜନା ଆରମ୍ଭ କରିଛି । ଏହି କାର୍ଯ୍ୟକ୍ରମ ଦ୍ୱାରା ଡଙ୍ଗର ଜମିକୁ ହୁଡା ବାନ୍ଧିବା, କମ୍ପୋଷ୍ଟ ପିଟ୍, ପଥରହୁଡା, ମେକାନିକାଲ ଚେକ୍‌ଡ୍ୟାମ୍ ଇତ୍ୟାଦି କାମ ହୋଇଛି । ଆଲୋଚନା ବେଳେ ଆମକୁ ଗାଁ ଲୋକ କହିଲେ, ଆମେ ପୂର୍ବରୁ କୁଲି ମଜୁରି ପାଉ ନ ଥିଲୁ । ଖାଦ୍ୟଭାବ ଯୋଗୁଁ ବିଭିନ୍ନ ଜୀବକୁ ହତ୍ୟାକରି ତା'ର ମାଂସକୁ ଶୁଖାଇ ଆଠ ଦିନ ପର୍ଯ୍ୟନ୍ତ ରଖି ଖାଇବାରୁ ପ୍ରତିବର୍ଷ ଆଠ/ଦଶ ଜଣ ମୃତ୍ୟୁମୁଖରେ ପଡୁଥିଲେ । କିନ୍ତୁ ଏହି ଯୋଜନା କାର୍ଯ୍ୟକାରୀ ହେବାରୁ ଖାଦ୍ୟର ଅଭାବ ନାହିଁ । ଗାଁର ଲୋକମାନେ ପ୍ରତିଦିନ କୁଲିମଜୁରି ପାଉଛନ୍ତି ଓ ଉନ୍ନତିମୂଳକ କାମ କରାଯାଉଛି । ଗାଁର ଲୋକମାନେ ଧୀରେ ଧୀରେ ସଚେତନ ହୋଇ ବିଭିନ୍ନ ସମସ୍ୟା ବିଷୟରେ ଜିଲ୍ଲାପାଳଙ୍କୁ ଲିଖିତ ଆକାରରେ ଜଣାଉଛନ୍ତି,  କିନ୍ତୁ କିଛି ନିଷ୍ପତ୍ତି ନିଆଯାଉ ନାହିଁ ।

ମାର୍ଚ୍ଚ - ୨୦୦୨



# ଜଙ୍ଗଲ ଆମର ଜୀବନ

ଜଙ୍ଗଲ ଆମର ବାପା, ମା ତଥା ଦୈନନ୍ଦିନ ଚଳଣିରେ ଅତ୍ୟନ୍ତ ଆବଶ୍ୟକ ବୋଲି କହନ୍ତି ଗିରିବେଡା ଗାଁର ମହିଳା ମଣ୍ଡଳର ସଭ୍ୟାମାନେ । ଉକ୍ତ ଗାଁଟି ଠାକୁରମୁଣ୍ଡା ମୁଖ୍ୟ କାର୍ଯ୍ୟାଳୟଠାରୁ ମାତ୍ର ୯କି.ମି. ଦୂରରେ ଥିଲେ ମଧ୍ୟ, ବିଭିନ୍ନ ସରକାରୀ କାର୍ଯ୍ୟକ୍ରମ ଓ ସରକାରୀ ଅଫିସରମାନଙ୍କ ସଂପର୍କରେ ଉକ୍ତ ଗାଁର ଲୋକମାନେ ସଂପୂର୍ଣ୍ଣ ଅଜ୍ଞ ।୧୯୯୪ ମସିହାରେ ଅଗ୍ରଗାମୀ ଏହି ଗାଁରେ ଜଳଛାୟା କାର୍ଯ୍ୟକ୍ରମ ଆରମ୍ଭ କରିବା ସହିତ ବିଭିନ୍ନ ଜନ ସଚେତନାମୂଳକ କାର୍ଯ୍ୟକ୍ରମ ମଧ୍ୟ ହାତକୁ ନିଏ । ଉକ୍ତ ଗାଁର ଲୋକଙ୍କର ମୁଖ୍ୟ ଜୀବିକା କୃଷି ଓ ଜଙ୍ଗଲଜାତ ଦ୍ରବ୍ୟର ବିକ୍ରିରୁ ଆୟ । ବିଶେଷତଃ ଶାଳପତ୍ରର ଖଲିରୁ ସେମାନେ ବାର୍ଷିକ ଆୟ ପରିବାର ପ୍ରତି ପ୍ରାୟ ୭ରୁ ୮ ହଜାର ଟଙ୍କା ପାଇଥାନ୍ତି । ସେହି ଗାଁର ହୋ, ସାନ୍ତାଳ ଓ ବାଥୁଡି ସଂପ୍ରଦାୟର ଲୋକମାନେ ବସବାସ କରନ୍ତି । ସାନ୍ତାଳ ଓ ବାଥୁଡି ସଂପ୍ରଦାୟର ଲୋକମାନେ ମଦ ପିଇ ଗଣ୍ଡଗୋଳ କରିବା, ସ୍ଥାନୀୟ ଅସାଧୁ ବନକର୍ମଚାରୀଙ୍କ ସହାୟତାରେ ଜଙ୍ଗଲ କାଟି ଗଛ ବିକ୍ରି କରିବା କାର୍ଯ୍ୟ କରିବାରେ ଲିପ୍ତ ଥାଆନ୍ତି । ମାତ୍ର ହୋ ସଂପ୍ରଦାୟର ଲୋକାମାନେ ମଦ ପିଇଥିଲେ ମଧ୍ୟ ଗାଁର ଲୋକହିତକର କାର୍ଯ୍ୟକ୍ରମ ପ୍ରତି ପ୍ରାଧାନ୍ୟ ଦେବା ସହିତ ସାମୂହିକ କାର୍ଯ୍ୟରେ ସହଯୋଗ କରନ୍ତି । ସେହି ହୋ ସଂପ୍ରଦାୟର ଶିକ୍ଷକ ନରସିଂହ ଚାତାଙ୍କର ସ୍ତ୍ରୀ ଶ୍ରୀମତୀ ସାବିତ୍ରୀ ଚାତା ତାଙ୍କ ସଂପ୍ରଦାୟର ସ୍ତ୍ରୀଲୋକଙ୍କୁ ଏକାଠି କରି ଗାଁରେ ମଦ ବନ୍ଦ ଆନ୍ଦୋଳନର ନେତୃତ୍ୱ ନେଇ ସଫଳ ହେଲେ । ତାପରେ ଟାଉଟର ଗୋଷ୍ଠୀଙ୍କ ଦ୍ୱାରା ଉଜୁଡି ଯାଇଥିବା ଜଙ୍ଗଲର ସୁରକ୍ଷା ପାଇଁ ହୋ ଓ ସାନ୍ତାଳ ସଂପ୍ରଦାୟର ବୈଠକ କରିବା ସହିତ ସେମାନଙ୍କୁ ବ୍ୟକ୍ତିଗତ ଭାବରେ ମଧ୍ୟ ବୁଝାଇଲେ । ପାଖ ଗାଁର ଲୋକମାନେ ଆସିବା ଫଳରେ ଜଙ୍ଗଲ ଆସ୍ତେ ଆସ୍ତେ ସଫା । ଏହି ସମୟରେ ମହିଳା ମଣ୍ଡଳର ସଭ୍ୟାମାନଙ୍କ ସହ ୫ଟା ଆଣିଥିବା ଲୋକମାନେ ରାଗିଯାଇ

ଗଣ୍ଡଗୋଳ କଲେ । ମହିଳାମଣ୍ଡଳର ସଭ୍ୟାମାନେ ଡରି ନ ଯାଇ ଗ୍ରାମର ମୁରୁବି ଲୋକଙ୍କ ସହାୟତାରେ ଜଙ୍ଗଲ ଜଗିବା ନିମନ୍ତେ ଚିନ୍ତା କଲେ ।

ଏହି ସମୟରେ ପାଖ ଗାଁ ଜାମୁଖଞ୍ଜାରୀରେ ଲୋକମାନେ ଜଙ୍ଗଲ ସୁରକ୍ଷା କମିଟି ଗଢ଼ି ଜଙ୍ଗଲ ସୁରକ୍ଷା କରୁଥିଲେ । ସୁରକ୍ଷିତ ଜଙ୍ଗଲରୁ ଗଛ କାଟିବା, ଝଟା କାଟିବା ଦାନ୍ତକାଠି ଆଣିବା, ଏମିତିକି ପତ୍ର ମଧ୍ୟ ମନା ଥିଲା । ଏ ସବୁ ଦେଖି ଗିରିବେଡା ଗାଁର ଲୋକମାନେ ମିଶି ସନ୍ଧ୍ୟାରେ ଏକ ବୈଠକ କରି ନିଷ୍ପତ୍ତି ନେଲେ ଯେ ଆମ ଜଙ୍ଗଲ ଆମେ ରଖିବୁ । ସେହି ଦିନଠାରୁ ପ୍ରତିଦିନ ୪ଜଣ ଲୋକ ପାଳିକରି ଜଙ୍ଗଲ ଜଗିଲେ । ଯେଉଁମାନେ ପାଳି ଅନୁଯାୟୀ ଜଙ୍ଗଲ ନ ଜଗିବେ, ସେମାନଙ୍କୁ ୫୦ଟଙ୍କା ଜୋରିମାନା ଦେବାକୁ ପଡିବ । ଜଙ୍ଗଲ ଜଗିବା ଦ୍ୱାରା ଆଖପାଖ ଗ୍ରାମ ଲୋକମାନେ ଗଛ ଓ ଅନ୍ୟାନ୍ୟ ଝଟାବୁଦା କାଟିବାକୁ ସାହାସ କଲେନାହିଁ । ଏମିତି ତାଙ୍କ ଗ୍ରାମର ଲୋକମାନେ ମଧ୍ୟ ହଣାଯାଇଥିବା ଗଛର ଶୁଖିଲା ମୂଳକୁ ଆଣି ଜାଳେଣି ରୂପେ ବ୍ୟବହାର କଲେ । ଜଙ୍ଗଲ ସୁରକ୍ଷା ବିଷୟରେ ସ୍ଥାନୀୟ ବନଅଧିକାରୀଙ୍କୁ ମୌଖିକ ଆକାରରେ ଜଣାଇ ଦେଲେ । ଦିନେ ବନ ଅଧିକାରୀ ଆସି, ଜଙ୍ଗଲ ସୁରକ୍ଷା ହେଲେ ସରକାରଙ୍କଠାରୁ କି ସୁବିଧା ମିଳିପାରି ବ, ଏହାଦ୍ୱାରା କି କି ଉପକାର ମିଳିବ ? ବୋଲି ଲୋକଙ୍କୁ ବୁଝାଇଲେ ।

ଜଙ୍ଗଲରେ ନିଆଁ ଲାଗିବା ଜଙ୍ଗଲ ନଷ୍ଟ ହେବାର ଗୋଟିଏ ମୁଖ୍ୟ କାରଣ । ନିଆଁ ଲାଗିଲେ ଗାଆଁ ଲୋକ ଯାଇ ଲିଭାଇବାକୁ ପଛାନ୍ତି ନାହିଁ । ଜଙ୍ଗଲ ଜଗିବାର ଏକମାସ ପରେ ଜଙ୍ଗଲ ଧାରରେ ଏକ ରାସ୍ତା ଗିରିବେଡା ଠାରୁ ଚମ୍ପାଝର ପର୍ଯ୍ୟନ୍ତ ପିଚୁରାସ୍ତା ପରିଣତ ହେବାର କଥା ଥିଲା । କିନ୍ତୁ ପିଚୁ ତରଳାଇବା ପାଇଁ କାଠ ଦରକାର । କଣ୍ଟ୍ରାକ୍ଟର ବନ ଅଧିକାରୀଙ୍କୁ ଜଙ୍ଗଲରୁ ଗଛ କାଟିବା ପାଇଁ ହଜାରେ ଟଙ୍କା ଲାଞ୍ଚ ଦେଇଥିଲେ । ଦିନେ କଣ୍ଟ୍ରାକ୍ଟରର ଲୋକ ବନ ଅଧିକାରୀଙ୍କ ନିର୍ଦ୍ଦେଶ କ୍ରମେ ଗଛ କାଟୁଥିଲେ । ଜଙ୍ଗଲ ଜଗୁଥିବା ଲୋକ ତାହା ଦେଖି ମନା କରିଥିଲେ । ସେହି ଲୋକ ସେମାନଙ୍କ କଥା ନମାନି ଗଛ କାଟିବାରେ ଲାଗିଲା । ଫଳରେ ଜଗୁଥିବା ଲୋକ ଶୀଘ୍ର ଗାଁକୁ ଆସି ଏ ସଂପର୍କରେ ଲୋକଙ୍କୁ ଜଣାଇଲେ । ଗାଁ ଲୋକ ଯାଇ ସେମାନଙ୍କୁ ମନା କରୁଥିବା ବେଳେ 'ଆମେ ବନ ଅଧିକାରୀଙ୍କ ପାଖରୁ ଅନୁମତି ପାଇ ଗଛ କାଟୁଛୁ' ବୋଲି କହିଲେ । ସେ କହିଲା ଯେ, ଏବେ ବନ ଅଧିକାରୀଙ୍କୁ ଡକାଇ ଆଣିଲେ ସବୁକିଛି ଜଣାପଡିବ । କିନ୍ତୁ ବନ ଅଧିକାରୀ ଗଛମୂଳକୁ ନ ଯାଇ ଟିକିଏ ଦୂରରେ ଥାଇ ଏସବୁ ଘଟଣା ଦେଖୁଥିଲେ । ଲୋକମାନେ ତାଙ୍କୁ ଦେଖିବା ପରେ ଗଛମୂଳକୁ ଧରି ନେଇଥିଲେ ଓ କହିଲେ ଯେ 'ଆପଣ ଆମ୍ଭମାନଙ୍କୁ ଜଙ୍ଗଲ ସୁରକ୍ଷା ବିଷୟରେ ବୁଝାଇଥିଲେ । ଆମେ ଆଗ୍ରହର ସହିତଜଙ୍ଗଲ ସୁରକ୍ଷା କଲୁ । ପୁଣି ଏବେ

ଆପଣ ଆମ ସଂରକ୍ଷିତ ଜଙ୍ଗଲରୁ କାହିଁକି ଗଛ କାଟିବା ପାଇଁ କଣ୍ଟ୍ରାକ୍ଟରମାନଙ୍କୁ ଅନୁମତି ହେଉଛନ୍ତି ?

ଏକଥା ଶୁଣି ବନ ଅଧିକାରୀଙ୍କ ମୁଣ୍ଡ ଲାଜରେ ତଳକୁ ହୋଇଗଲା । ସେଦିନ ଠାରୁ ସେହି ବନ ଅଧିକାରୀ ଘଣାବାବୁ ଗାଁକୁ ବୁଲିବା ପାଇଁ ମଧ୍ୟ ଆସନ୍ତି ନାହିଁ । ଜଙ୍ଗଲ ଜଗିବା କାମ ଏବେ ମଧ୍ୟ ପ୍ରତିଦିନ ଚାଲୁ ରହିଛି । ଜଙ୍ଗଲରେ ଶାଳ, କେନ୍ଦୁ, କୁସୁମ ଓ ପିଆଶାଳ ଗଛମାନ ବଢ଼ିଯାଇ ଯେଉଁଠି ଠେକୁଆଟିଏ ଆଶ୍ରୟ ପାଉ ନଥିଲା,ସେଇଠି ଭାଲୁ, ଶିଆଳ, ଠେକୁଆମାନେ ଲୁଚକାଳି ଖେଳୁଛନ୍ତି । ବନବିଭାଗରୁ ଜଙ୍ଗଲ ସୁରକ୍ଷାକମିଟି ପ୍ରମାଣପତ୍ର ମଧ୍ୟ ପାଇଛି । ପ୍ରତି ମାସର ପ୍ରଥମ ରବିବାର ଦିନ ଜଙ୍ଗଲ କମିଟି ଜଙ୍ଗଲର ସୁରକ୍ଷା ବିଷୟରେ ଆଲୋଚନା କରନ୍ତି । ଉପରୋକ୍ତ ଘଟଣାରୁ ସେମାନଙ୍କର ମନୋବଳ ଦୃଢ଼ ହୋଇଛି । ସରକାରୀ ଲୋକଙ୍କ ସହିତ ସଂପର୍କ ରଖିବା ସହ ଅନ୍ୟାୟ ଅତ୍ୟାଚାରର ପ୍ରତିବାଦ କରି ପାରୁଛନ୍ତି । ସେମାନେ ଜଙ୍ଗଲ ସୁରକ୍ଷାର ମହତ୍ତ୍ୱ ସଂପର୍କରେ ସଂପୂର୍ଣ୍ଣ ବୁଝି ପାରିଛନ୍ତି । ଏବେ ସେମାନେ କହନ୍ତି, 'ଆମ ଜଙ୍ଗଲର ସୁରକ୍ଷା ପାଇଁ ବନ ଅଧିକାରୀ ନୁହେଁ, ଆମେ ନିଜେ ଜଗୁଛୁ ।'

ମାର୍ଚ୍ଚ - ୨୦୦୩



# ଶିରିଗୁଡା ଗୌଡଗୁଡା ଗ୍ରାମର
# ସଫଳ କୁଟୁମ୍ବ ପାଣ୍ଡି

ବର୍ତ୍ତମାନ କାଶ୍ରୀପୁର ଏକ ଗରିବ ଓ ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳ ବୋଲି ଦେଶ ସାରା ପ୍ରଚାର ହୋଇଛି । ୨୦୦୧ ମସିହାରେ ଯେଉଁ କାଶୀପୁର ଆଦିବାସୀ ଅଞ୍ଚଳରେ ଅନାହାର ମୃତ୍ୟୁ ହେଲା, ସେଥିରେ ଜଣାପଡିଲା କି ଏହି ଅଞ୍ଚଳ ଗୁଡିକ ସ୍ୱାଧୀନତାର ୫୪ବର୍ଷ ପରେ ବି ଯେମିତି ସେମିତି ରହିଛନ୍ତି । ସରକାର କୋଟି କୋଟି ଟଙ୍କା ଖର୍ଚ୍ଚ କରି ସାରିବା ପରେ ବି କିଛି ଉନ୍ନତି ହୋଇନାହିଁ । ଏହାର ମୂଳକାରଣ ହେଲା ଲୋକମାନଙ୍କର ଜମି ବହୁତ କମ୍ । ଆଦିବାସୀ ଲୋକମାନେ ସାଧାରଣତଃ ଡଙ୍ଗର ଓ ଭାଗ ଚାଷ ଉପରେ ନିର୍ଭର କରି ଚଳନ୍ତି । ଯାହା ଅମଳ ହୁଏ ସେଥିରେ ତିନିଚାରି ମାସ ଭଲରେ ଚଳି ଅନ୍ୟ ସମୟରେ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ବର୍ଷା ମାସ ଆରମ୍ଭ ସମୟରେ ଲୋକମାନେ କୁଆଡେ ଯିବେ ?

ଲୋକଙ୍କ ପାଖରେ ସେତେବେଳ ଖାଦ୍ୟଶସ୍ୟ ନ ଥାଏ । କୌଣସି କୁଲି ଭୂତି ମଧ୍ୟ ମିଳେ ନାହିଁ । ସେହି ସମୟରେ ଗାଆଁର ଲୋକମାନେ ଜୀବନ ବଞ୍ଚାଇବା ପାଇଁ ବାଧ୍ୟହୋଇ ସାହୁକାରଙ୍କ ଠାରୁ ଚାଷ ସମୟରେ ଯେଉଁ ଶସ୍ୟ ନିଅନ୍ତି ସେ ଫସଲ ଅମଳ ସମୟରେ ୧୦୦ଭାଗରୁ ୪୦୦% ଭାଗ ସୁଧ ନେଇଥାଏ । ଲୋକମାନେ ଋଣ ପରିଶୋଧ କରିନ ପାରିଲେ ସେମାନଙ୍କର ଜମି, ଘର ଇତ୍ୟାଦି ଜିନିଷ ପତ୍ରକୁ ଜବରଦସ୍ତ ବନ୍ଧକ ପକାଇ ନେଇ ଯାଆନ୍ତି । ବର୍ଷା ସମୟରେ ଗାଁର ଲୋକମାନେ ଏହି ଭଳି ସାହୁକାରକୁ ସୁଧ ଦେଇଦେଇ ଦାରିଦ୍ର୍ୟତାରୁ ମୁକୁଳି ପାରନ୍ତି ନାହିଁ । ଆଜିକାଲି ତ ଜଙ୍ଗଲ ନାହିଁ । ତେଣୁ ଆଦିବାସୀମାନଙ୍କର ଆତ୍ମନିର୍ଭରଶୀତଳା ଭାଙ୍ଗି ଯାଇଛି ତଥାପି ଏହି ସଙ୍କଟରୁ ବଞ୍ଚିବାର ବାଟ ଅଛି । ଅନେକ ଗାଁରେ ଦେଖାଯାଇଛି ଅମଳ ସମୟରେ ଆଦିବାସୀ ଲୋକମାନଙ୍କ ପାଖରେ ଖାଦ୍ୟ ଯଥେଷ୍ଟ ପରିମାଣରେ ଥାଏ କିନ୍ତୁ ପର୍ବପର୍ବାଣୀ ଅନାବଶ୍ୟକ ଖର୍ଚ୍ଚରେ ତାଙ୍କର ଆୟକୁ ସାରିଦିଅନ୍ତି । ଖର୍ଚ୍ଚ କମ୍ ହୋଇପାରିଲେ

ସେମାନେ ଭଲରେ ଚଳିପାରିବେ । ଏହି କଥାକୁ ପରୀକ୍ଷା କରିବାକୁ ଯାଇ ଅଗ୍ରଗାମୀ ଅନେକ ଗାଁର ଲୋକମାନଙ୍କ ସହିତ ବାର୍ତ୍ତାଳାପ ଆରମ୍ଭ କଲେ । ଲୋକଙ୍କଠାରୁ ଉତ୍ତର ଆସିଲା ଯଦି ଗାଁ ସମୂହ ଶସ୍ୟ ପାଣ୍ଠି କରାଯାଏ ତାହା ହେଲେ ତାଙ୍କର ଭୋକର ଅନେକ ସମସ୍ୟା ଦୂର ହୋଇପାରିବ ।

ତା'ପରେ ଆରମ୍ଭ ହେଲା ଖାଦ୍ୟ ନିରାପତ୍ତା ଅଭିଯାନ । ଗାଁ ଗାଁରେ ଲୋକମାନେ ସଂଗଠିତ ହେଲେ ତାଙ୍କର ଉତ୍ପାଦିତ ଶସ୍ୟକୁ ସଂଗ୍ରହ କରି ଗ୍ରାମ୍ୟ କୁଟୁମ୍ବ ପାଣ୍ଠି ଆରମ୍ଭ କଲେ । ନିଷ୍ପତ୍ତି ନେଲେ ଯେ ବର୍ଷା ଦିନରେ ସାହୁକାର ପାଖକୁ ନ ଯାଇ ଏହି ପାଣ୍ଠିରୁ ଅସୁବିଧା ସମୟରେ ଋଣ ନେବେ । ଆସନ୍ତୁ ଯିବା ଶିରୁଗୁଡା ଗୌଡଗୁଡା ଓ ସରମବାଇ ଗାଁକୁ ଏହି ସଫଳ ରୂପାୟନ ଦେଖିବା ପାଇଁ ।

**ଆସିଲା ବରଷା ଝଡି ହୋ,**

**ପରଜାର ପେଟ ଯାଉଛି ପୋଡି ହୋ ।**

୧୯୯୩ ମସିହାରେ ଅଗ୍ରଗାମୀ ଦେଖିଲା ଗାଁର ମୁଖ୍ୟ ସମସ୍ୟା ହେଲା ସାହୁକାର । ଉକ୍ତ ସମସ୍ୟାକୁ ଆଖିଆଗରେ ରଖି ଗାଁରେ କୁଟୁମ୍ବ ପାଣ୍ଠି ଗଠନ କରାଗଲା । ଶସ୍ୟପାଣ୍ଠି ଗଠନ ସମୟରେ ଅଗ୍ରଗାମୀ ୧୩ବସ୍ତା ମାଣ୍ଡିଆ ପାଣ୍ଠିକୁ ଅନୁଦାନ ଦେଇଥିଲା । ଗ୍ରାମର ୬୫ଟି ପରିବାର ଘରପିଛା ୧୨କେଜି ଲେଖାଁ ମାଣ୍ଡିଆ ଆଦାୟ କରି ଶସ୍ୟ ପାଣ୍ଠି ଆରମ୍ଭ କଲେ । ପ୍ରଥମବର୍ଷ ୨୬ବସ୍ତା ପାଣ୍ଠି ହୋଇଥିଲା । ଗାଁ ଲୋକଙ୍କର ଭୂମିକା ହେଲା ପାଣ୍ଠି କମିଟି ଗଠନକରି ପରିଚାଳନା କରିବା । ଏହି କମିଟିରେ ୩ଜଣ ମହିଳା ଓ ୨ଜଣ ପୁରୁଷ ସଭ୍ୟସଭ୍ୟା ଅଛନ୍ତି । ପ୍ରତିମାସରେ ସମସ୍ତ ଲୋକ ବୈଠକ କରି ପାଣ୍ଠିକୁ କିପରି ପରିଚାଳନା କରିବେ ଓ ତାର ତଦାରଖ କରିବା ବିଷୟରେ ଆଲୋଚନା କରି ନିଷ୍ପତ୍ତି ନେଇଥାନ୍ତି । ଗାଆଁରେ ପାଣ୍ଠି ଗଠନ ପରେ ଅସୁବିଧା ସମୟରେ ଗାଁର ଲୋକମାନେ ସେହି ଗାଁ ପାଣ୍ଠିରୁ ଋଣ ନେଇ କମ୍ ସୁଧରେ ପରିଶୋଧ କରନ୍ତି ।

୧୯୯୪ ମସିହାରେ ଗାଁର ପ୍ରତ୍ୟେକ ଲୋକ ମିଳିତ ହୋଇ ଡଙ୍ଗର ଚାଷ କଲେ । ସେହି ଚାଷରୁ ୧୨ ବସ୍ତା ମାଣ୍ଡିଆ ଓ ୩ବସ୍ତା ଅଳସୀ ଅମଳ କରି ପାଣ୍ଠିରେ ରଖିଥିଲେ । ଦ୍ୱିତୀୟ ବର୍ଷ ୩୯ବସ୍ତା ଗାଁରେ ପାଣ୍ଠି ରହିଲା । ଉକ୍ତ ଗାଁରେ ପାଣ୍ଠି ବଢ଼ାଇବା ପାଇଁ ଉଦ୍ୟମ ଜାରି ରହିଲା । ଆମେ ଯଦି ବିଗତ ୫ବର୍ଷକୁ ଅନୁଧ୍ୟାନ କରି ଦେଖିବା, ୧୯୯୭ ମସିହାରେ ୮୦ବସ୍ତା ତା ପର ବର୍ଷରେ ୧୨୦ ବସ୍ତା ତା'ପର ବର୍ଷରେ ୧୪୭ବସ୍ତା ଏବଂ ୨୦୦୦ ମସିହାରେ ୧୨୧ବସ୍ତା ୬୦କେଜି ଓ ବର୍ତ୍ତମାନ ୧୧୬ବସ୍ତା ପାଣ୍ଠି ରଖିବାରେ ସକ୍ଷମ ହୋଇଛନ୍ତି, ଯାହାକି ଘରପିଛା ୧କ୍ୱିଣ୍ଟାଲ ୮୦କେଜି ଶସ୍ୟ କୁଟୁମ୍ବ ପାଣ୍ଠିରେ ଗଛିତ ରଖିଛନ୍ତି । ପାଣ୍ଠି ପରିଚାଳନା କରିବା ପାଇଁ

ଏକ କମିଟି ଗଠନ କରାଯାଇଛି । ଉକ୍ତ କମିଟିରେ ୭ଜଣ ସଭ୍ୟ/ସଭ୍ୟା ଅଛନ୍ତି । ପାଣ୍ଠି କିପରି ଠିକ୍ ଭାବରେ ଉଠିବ ଓ ତାର ତଦାରଖ ଏବଂ ସୁଧର ହାର ନିଷ୍ପତ୍ତି ଏହି କମିଟି କରୁଛି । ଗାଁର ଲୋକମାନେ ଯଦି ୪କେଜି ମାଣ୍ଡିଆ ନେଉଛନ୍ତି ତା' ହେଲେ ସେମାନେ ସୁଧବାବଦକୁ ୧କେଜି ୫୦୦ଗ୍ରାମ ପାଣ୍ଠିକୁ ଦେଉଛନ୍ତି । ବର୍ତ୍ତମାନ ଗାଁର ସମସ୍ତ ଲୋକ ମିଶି ନିଷ୍ପତ୍ତି ନେଇ ୪କେଜି ମାଣ୍ଡିଆରେ ୭୫୦ଗ୍ରାମ ସୁଧ ଆଦାୟ କରୁଛନ୍ତି । ଗ୍ରାମରେ କୌଣସି ସ୍ୱତନ୍ତ୍ର ପାଣ୍ଠି ଗୃହ ନ ଥିବାରୁ ବହୁତ ଅସୁବିଧା ହେଉଥିଲା । ବର୍ତ୍ତମାନ ପଞ୍ଚାୟତ ତରଫରୁ ବିହନ ରଖିବା ପାଇଁ ଗୃହ ନିର୍ମାଣ କାମ ଚାଲିଛି । ଉକ୍ତ ଗ୍ରାମର ସମସ୍ତ ଲୋକ ଶ୍ରମଦାନ କରି ଘର ତିଆରି କରୁଛନ୍ତି ।

ଏହି ଗ୍ରାମଟିରେ ପାଣ୍ଠିଗଠନ ହେବା ଦ୍ୱାରା ଉନ୍ନତିମୂଳକ କାର୍ଯ୍ୟ ତଥା ସରକାରୀ ଯୋଜନା ଗୁଡିକୁ ରୂପାୟନ କରିବା ଓ ଠିକାଦାର ପରିବର୍ତ୍ତେ ଗ୍ରାମକମିଟି ଜରିଆରେ ବିଭିନ୍ନ କାମ କରୁଛନ୍ତି । କୃଷି କାର୍ଯ୍ୟରେ ତ୍ୱରାନ୍ୱିତ ହେବା ସହିତ ଅର୍ଥକରୀ ଫସଲ କରିବାକୁ ସମର୍ଥ ହୋଇପାରିଛନ୍ତି ଓ ଗାଁର ଲୋକମାନଙ୍କର ସଞ୍ଚୟ ମନୋଭାବ ବୃଦ୍ଧି ପାଇଛି । ଏହାଛଡା ବାହର ଗ୍ରାମକୁ ମଧ୍ୟ ଅସୁବିଧା ସମୟରେ ସାହାଯ୍ୟ କରୁଛନ୍ତି । ଅଧିକ ପାଣ୍ଠି ଉଠାଇବାକୁ ନିଷ୍ପତ୍ତି ନେଇଛନ୍ତି ।

ସେହିପରି ଆଉ ଗୋଟଏ ଗାଁର ମଧ୍ୟ କୁଟୁମ୍ବ ପାଣ୍ଠି ବିଷୟରେ ଉଦାହରଣ ଆମ ପାଖରେ ଅଛି । ସୁଙ୍ଗେର ପଞ୍ଚାୟତରେ ସରାମବାଇ ଗାଁ ଅବସ୍ଥିତ । ଉକ୍ତ ଗାଁର ଆଦିବାସୀ ୯୦ଘର, ହରିଜନ ୧୪ଘର ଓ ଗୌଡ ସଂପ୍ରଦାୟର ୧୮ଟି ପରିବାର ବସବାସ କରୁଛନ୍ତି । ଗାଁର ଲୋକମାନେ ସାଧାରଣତଃ ଚାଷ ଉପରେ ନିର୍ଭର କରି ନିଜର ଭରଣପୋଷଣ କରନ୍ତି । ଯାହା ଚାଷ କରନ୍ତି ସେଥିରୁ ୧୨ମାସରୁ ମାତ୍ର ତିନି ଚାରିମାସ ଭଲରେ ଚଳନ୍ତି, ଆଉ ସାତ ମାସ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରନ୍ତି ଏବଂ ସାହୁକାର ପାଖରୁ ଋଣ ଆଣୁ ଥିବାରୁ ସେ ଶସ୍ୟ ଅମଳ ସମୟରେ ଅଧିକ ପରିମାଣରେ ସୁଧ ନିଏ, ଯାହା ଫଳରେ ଖାଦ୍ୟ ଅଭାବ ଦେଖାଦିଏ । ୧୯୯୧ ମସିହାରେ ଯେତେବେଳେ ଅଗ୍ରଗାମୀ ସରାମବାଇ ଗାଁକୁ ଯାଇ ଦେଖିଲା ଯେ ଗାଁ ଲୋକଙ୍କର ଏହି ସବୁ ସମସ୍ୟା ଅଛି, ସେ ଗାଁର ଲୋକମାନଙ୍କୁ କୁଟୁମ୍ବ ପାଣ୍ଠି ବିଷୟରେ ବୁଝାଇଲା ଯେ ପାଣ୍ଠି ଗଠନ ହେଲେ ସାହୁକାର ଦ୍ୱାରସ୍ଥ ନ ହୋଇ, ଅସୁବିଧା ସମୟରେ ନିଜ ପାଣ୍ଠିରୁ ଋଣ ନେଇ କମ୍ ସୁଧ ଦେଇ ପରିଶୋଧ କରିବେ ।

ଏହାପରେ ଗାଁର ଲୋକମାନେ ବୁଝିପାରି ଉତ୍ସାହର ସହିତ ପାଣ୍ଠି ଗଠନ କରିବାକୁ ନିଷ୍ପତ୍ତି ନେଲେ । କିନ୍ତୁ ପୌଷ, ମାଘ ମାସରେ ପାଣ୍ଠି ନ ଉଠିବାରୁ ଅଗ୍ରଗାମୀଠାରୁ ୨୦୦୦ଟଙ୍କା ଉଧାର ନେଇ ସେହି ଟଙ୍କାରେ ବାହାର ଗାଁରୁ ୮ବସ୍ତା ମାଣ୍ଡିଆ

କିଣିଥିଲେ । ତା'ପରେ ୧୯୯୨ମସିହାରେ ଗାଁର ସମସ୍ତ ଲୋକ ମିଶି ନିଷ୍ପତ୍ତି ନେଲେ ଯେ ଖାଲି ମାଣ୍ଡିଆ ରଖିଲେ ହେବ ନାହିଁ, ତା' ସହିତ ଧାନ ଏକମାଣ ଲେଖାଏଁ ଉଠାଇ ମୋଟ ୧୦ମାଣ ଉଠାଇଥିଲେ । ଏହିପରି ତିନି ବର୍ଷ ଲଗାତାର ପାଣ୍ଠି ଉଠିବାରୁ ଆଠ ବସ୍ତା ମାଣ୍ଡିଆ ସଂଚୟ ହୋଇଥିଲା, ଏବଂ ପୂର୍ବରୁ କିଣା ହୋଇଥିବା ଆଠ ବସ୍ତା ପାଣ୍ଠି ମିଶି ମୋଟ ୧୬ବସ୍ତା ହୋଇଯିବାରୁ ପାଣ୍ଠି କମିଟି ନିଷ୍ପତ୍ତି ଅନୁଯାୟୀ ୮ବସ୍ତା ପାଣ୍ଠିକୁ ବିକ୍ରୀ କରି ଆଉ ୮ବସ୍ତା ପାଣ୍ଠି ଗାଁ ଲୋକଙ୍କ ପାଖରେ ରହିଥିଲା ।

୧୯୯୪ମସିହାରେ ଯେତେବେଳେ ଅଗ୍ରଗାମୀ ଗାଁକୁ ମାଣ୍ଡିଆ ପାଣ୍ଠି ଦେବାକୁ ଆରମ୍ଭ କଲା ସେତେବେଳେ ଦେଖିଲା ଯେ ଏହି ଗାଁଟିରେ ଧାନ ୮ବସ୍ତା, ମାଣ୍ଡିଆ ୧୨ବସ୍ତା ଥିଲା । ଯେ ଗାଁର ଲୋକମାନେ ନିଜେ ଉତ୍ସାହର ସହିତ ଏତକି ପାଣ୍ଠି ରଖିଥିବାରୁ ଅଗ୍ରଗାମୀ ଗାଁ ଲୋକଙ୍କ ପ୍ରତି ଖୁସି ହୋଇ ସେମାନଙ୍କୁ ୨୦ବସ୍ତା ମାଣ୍ଡିଆ ପାଣ୍ଠି ଦେଇଥିଲେ । ମୋଟ ୪୦ବସ୍ତା ପାଣ୍ଠି ହୋଇଯିବାରୁ ସେହିବର୍ଷ ଗାଁର ସମସ୍ତ ଲୋକ ଋଣ ନେଇଥିଲେ ଏବଂ ତା' ପରବର୍ତ୍ତୀ ବର୍ଷରେ ମୋଟ ୬୦ବସ୍ତା ପାଣ୍ଠି ଉଠାଇଥିଲେ । ଏହାପରେ ଗାଁର କମିଟି ନିଷ୍ପତ୍ତି ନେଇ ଯେ ସୁଧର ହାର ତିନି ଭାଗରୁ ଏକ ଭାଗ କରାଇଥିଲେ । ଏହିପରି ପ୍ରତି ବର୍ଷ ପାଣ୍ଠି ଉଠାଇ ବର୍ତ୍ତମାନ ୮୮ବସ୍ତା ପାଣ୍ଠି ଅଛି । ଉକ୍ତ ଗାଁଟିରେ ଅଧିକ ଘର ନ ଥିବାରୁ ପାଣ୍ଠି ରଖିବାକୁ ଅସୁବିଧା ହେଉଥିବାରୁ ଗାଁର ୧୦/୧୨ ଜଣଙ୍କ ଘରେ ଭାଗ ଭାଗ ହୋଇ ରଖାଯାଇଛି । ଏଥିପାଇଁ ବି.ଡି.ଓ. , କଲେକ୍ଟରଙ୍କୁ ଲିଖିତ ଭାବରେ ଜଣାଇଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ କିଛି ନିଷ୍ପତ୍ତି ନଆଯାଇ ନାହିଁ ।

ମାର୍ଚ୍ଚ - ୨୦୦୩



# ପିଲାଦିନରୁ ଗୋତିଶ୍ରମିକ ସଦା ଝୋଡ଼ିଆ
# ବନ୍ଦମାଣ୍ଡି କଲୋନି

ମାର୍ଗଶୀର ମାସର ପ୍ରଭାତରେ ଗୋଟିଏ ପିଲାଳିଆ ସ୍ୱରରେ ଦେଶୀଆ ଗୀତ ଶୁଣାହେଲା । ତା'ପରେ ମୁଁ ତାକୁ ଚାରିଆଡ଼େ ଖୋଜିଲି, ସେ ଜଙ୍ଗଲ ଭିତରେ ପ୍ରାୟ ୨୦/୨୫ଟି ଗାଈଙ୍କୁ ଚରାଇବାକୁ ନେଉଥିଲା । ସକାଳର କୁହୁଡ଼ିରେ ମୁହଁକୁ ମୁହଁ ଦିଶୁ ନଥିଲା । ପିଲାଟି ଦେଖିବାକୁ ପ୍ରାୟ ସାତ ଆଠ ବର୍ଷ ବୟସର ହେବ । ତନୁ ପତଳା, ଖାଲି ଦେହ, ଖଣ୍ଡିଏ  ଗାମୁଛା ପିନ୍ଧି ହାତରେ ଗୋଟିଏ ଲମ୍ବା ବାଡ଼ି ଓ କାନ୍ଧରେ କୁରାଢ଼ିଟିକୁ ପକାଇ ଗାଈମାନଙ୍କୁ ନେଉଥାଏ । ତାକୁ ଦେଖିବା ପରେ ମୁଁ ତା' ପାଖକୁ ଗଲି ଏବଂ ତା' ସହିତ କିଛି କଥାବାର୍ତ୍ତା କଲି । ମୁଁ ତାକୁ ପଚାରିଲି, ତୁମ ନାଁ କ'ଣ ? ସେ ଲାଜ ନକରି ନିର୍ଭୟରେ ସବୁକଥା କହୁଥିଲା । ସେ କହୁଥାଏ ଯେ, ମୋର ବାପାଙ୍କ ନାମ ଲେଲି ଝୋରିଆ, ମାଆ ତାରା ମଣି ଝୋଲିଆ । ମୋର ମାଆ ଆଜକୁ ଦୁଇବର୍ଷ ହେବ ମୃତ୍ୟୁବରଣ କଲେଣି । ମୋର ଗୋଟିଏ ସାନ ଭଉଣୀ ଅଛି । ସେ ଦ୍ୱିତୀୟ ଶ୍ରେଣୀରେ ପାଠ ପଢୁଛି । ଆମର ବାର୍ତ୍ତାଳାପ ଧୀରେ ଧୀରେ  ବେଶ୍ ଭଲ ଭାବେ ଜମିଲା । ତା' ସହିତ ଆଲୋଚନା କଲାବେଳେ ମୁଁ ଯାହା ଅନୁଭବ କଲି, ତାଙ୍କର ପୂର୍ବରୁ ବହୁତ ଜମିବାଡ଼ି ଥିଲା । ତା'ର ବାପା ମଦ ପିଇବା ପାଇଁ ଅଧାରୁ ଅଧିକ ଜମି ବିକ୍ରି କରି ଦେଇଛନ୍ତି । ସେ କହେ ଯେ, "ଯେତେବେଳେ ମୁଁ ଘରେ ଥିଲି ସେତେବେଳେ ମୁଁ ଦ୍ୱିତୀୟ ଶ୍ରେଣୀରେ ପାଠ ପଢୁଥିବା ସମୟରେ ମୋର ବାପା ମୋତେ ପ୍ରଥମେ ନିଜ ଘରର ମଇଁଷିମାନଙ୍କୁ ଚରାଇବାର ଅଭ୍ୟାସ କରାଇଲେ । ତା'ପରେ ମୋର ବାପା ଏହି ଗାଆଁର ନିର ଝୋଲିଆଙ୍କ ଘରେ ବୁଝାବୁଝି କରି ଗାଈ ଚରାଇବା ପାଇଁ ଆଜିକୁ ଦୁଇବର୍ଷ ହେବ  ମୋତେ ରଖାଇଛନ୍ତି ।

ସଦା ପ୍ରଥମେ  ସକାଳୁ ଉଠି ଦାନ୍ତ ଘଷି ଖାଇସାରି ଗାଈମାନଙ୍କୁ  ଗୁହାଳୁ ଫିଟାଇ ହାତରେ ବାଡ଼ି ଧରି  ଓ କାନ୍ଧରେ କୁରାଢ଼ି  ପକାଇ ଜଙ୍ଗଲକୁ ପଳାଇ ଆସେ । ଗାଈ

ଚରାଇବା ସଙ୍ଗେ ସଙ୍ଗେ ମାଲିକ ଘର ପାଇଁ ଜଙ୍ଗଲରୁ ଜାଳେଣି କାଠ ମଧ୍ୟ ସଂଗ୍ରହ କରିଥାଏ । ଚାଷ ବାସ ସମୟରେ ସବୁ ଜମିରେ ହଳ କାମ, ବିଲ ବାଛିବା, ଜମିରେ ପାଣି ମଡ଼ାଇବା, ଶସ୍ୟ କାଟିବା ଇତ୍ୟାଦି କାମ କରେ । ସଂଧ୍ୟାରେ ଗାଈଗୋରୁ ଘରକୁ ଆସିବା ପରେ ମଧ୍ୟ ମାଲିକର ଛୋଟପିଲାମାନଙ୍କୁ ଧରିଥାଏ । କିନ୍ତୁ ଦିନକୁ ମାତ୍ର ଦୁଇଥର ଖାଦ୍ୟ ଖାଏ । ମୁଁ ତାକୁ ଏଠି ପ୍ରଶ୍ନ କରିଥିଲି ଯେ ତୋର ମାଲିକାଣୀ କେବେ ତୋ ଉପରେ ରାଗନ୍ତି କି ? ଖାଦ୍ୟ ଠିକ୍ ଭାବରେ ଖାଇବାକୁ ଦିଅନ୍ତି କି ? ଏହା ପରେ ସେ ମୋତେ ଉତ୍ତର ଦେଇ କହିଲା ଯେ, "ମୋର ମାଲିକ ବହୁତ ଭଲ, ସେ କେବେ ରାଗନ୍ତି ନାହିଁ, କିନ୍ତୁ ମୋର ମାଲିକାଣୀ ବେଳେବେଳେ ରାଗନ୍ତି ଓ ବହୁତ କଟୁ କଥା ମଧ୍ୟ କହି ଗାଳି କରନ୍ତି । କିନ୍ତୁ ଖାଇବାକୁ ଠିକ୍ ଭାବରେ ପେଟପୂରା ଭାବେ ଦିଅନ୍ତି ।" ମୋତେ ଜରଦୁଖା ହେଲେ ମୁଁ ଆମ ଘରକୁ ପଳାଇଆସେ । ମୋର ମାଲିକ ଆମ ଘରକୁ ଆସି ଔଷଧପତ୍ର ଦେଇଯାଆନ୍ତି ।

ସଦାର ଦେହ ଭଲ ହେଲେ ମାଲିକ ଘରକୁ କାମ କରିବାକୁ ଯାଏ । ବର୍ଷକୁ ଯେତେ ପର୍ବ-ପର୍ବାଣି ପଡ଼େ, ସେହିଦିନମାନଙ୍କରେ ସେ ଛୁଟିରେ ଯାଏ । ସେ କହେ, "ମୁଁ ଏଠି କାମ କରୁଥିବାରୁ ମୋର ବାପା କିମ୍ବା ପରିବାର ଲୋକମାନେ କିଛି କୁହନ୍ତି ନାହିଁ ।" ସଦା ବର୍ଷସାରା କାମ କରିବା ପରେ ତାକୁ ବର୍ଷ ଶେଷକୁ ମାତ୍ର ଦୁଇଶହ ଟଙ୍କା, ଦୁଇବସ୍ତା ଧାନ ଓ ଦୁଇହଳ ପ୍ୟାଣ୍ଟ ସାର୍ଟ ପିନ୍ଧିବାକୁ ଦିଅନ୍ତି । ପିଲାଟିର କଥାରୁ ଯାହା ଜଣାପଡୁଥିଲା, ଦୁଇବର୍ଷର ଟଙ୍କା ତାର ବାପା ମାଲିକଠାରୁ ଆଗୁଆ ୨୦୦ ଟଙ୍କା ନେଇଯାଇ ମଦ ପିଇଛନ୍ତି ।

ମୁଁ ତାକୁ ଯେତେବେଳେ ତାର ଲକ୍ଷ୍ୟ ବିଷୟରେ ପଚାରିଲି, "ସଦା କହେ ମୁଁ ଭାବୁଛି ମାଲିକ ଘରେ ଆହୁରି ଆଠ ବର୍ଷ ରହି କାମ କରିବି । କାରଣ ଆଗକୁ ମୋର ବିଭାଘର ଅଛି । ଆମ ଜାତିରେ ବିଭା ହେଲେ କନିଆ ଘରକୁ ବହୁତ ଜିନିଷ ଦେବାକୁ ପଡ଼େ । ତେଣୁ କରି ମୁଁ ମୋ ମାଲିକ ସହିତ କଥା ହୋଇସାରିଛି, ମୋର ବାପାଙ୍କୁ ଆଉ ଟଙ୍କା ନ ଦେଇ ଆଠବର୍ଷପରେ ମୋତେ ହିସାବ କରି ସବୁ ଟଙ୍କା ଦେବା ପାଇଁ । ସେ ମଧ୍ୟ ମୋ କଥାରେ ରାଜି ହୋଇଛନ୍ତି ।" ସେ ପୁଣି କହେ, ଯଦି ଏହି ମାଲିକଠାରୁ ଯେଉଁ ମାଲିକ ଅଧିକ ଟଙ୍କା ମୋତେ ଦେବ, ମୁଁ ତା ଘରକୁ କାମ କରିବାକୁ ଯିବି ବୋଲି ନିଷ୍ପତ୍ତି ନେଇଛି ।

ସଦାର ପାଠ ପଢ଼ିବାକୁ ବହୁତ ଇଛା ଥିଲେ ମଧ୍ୟ ତାର ପରିବାରର ଲୋକମାନେ ମନା କରୁଛନ୍ତି । ଶେଷରେ ସେ ବାଧ୍ୟ ହୋଇ ଏହି ରାସ୍ତା ବାଛି ନେଇଛି । ସେ କହେ, "ମୁଁ ଯେତେବେଳେ ଗାଈ ଚରାଇବାକୁ ଆସେ ଗାଆଁର ଅନ୍ୟପିଲାମାନେ ସ୍କୁଲକୁ

ପାଠପଢ଼ିବାକୁ ଯାଆନ୍ତି । ମୋର ମଧ୍ୟ ପାଠ ପଢ଼ିବାକୁ ବହୁତ ଇଛା ହୁଏ, କିନ୍ତୁ ମୁଁ ଯାଇପାରେ ନି । କାରଣ ମୁଁ ମାଲିକ ଘରେ ମୁଣ୍ଡ ବିକିଛି ।"

ସଦା ଝୋଡ଼ିଆ ଏକା ନୁହେଁ । କାଶୀପୁର ବ୍ଲକ ଧୋବାସିଲ ପଞ୍ଚାୟତର ବନ୍ଧ ମାଣ୍ଡି କଲୋନୀର ତା ଭଳି ଅନେକ ପିଲା ଅଛନ୍ତି, ସେଥି ମଧ୍ୟରୁ ଆଉଜଣେ ପିଲା ଦରା ଏହିପରି କାମ କରୁଛି । ଦରା ଝୋଡ଼ିଆକୁ ପ୍ରାୟ ୧୨ ବର୍ଷ ବୟସ ହେବ । ସେ ଦେଖିବାକୁ କଳାବର୍ଣ୍ଣର ଓ ତାର ମଧ୍ୟମ ସ୍ୱାସ୍ଥ୍ୟ । ତା'ର ବାପା କେତନ ଝୋଡ଼ିଆ ଓ ମାଆ କତାଇ ଝୋଡ଼ିଆ । ସେ ଆଜକୁ ତିନିବର୍ଷ ହେବ ଉକ୍ତ ଗାଆଁର ବଡ଼ରାମ ଝୋଡ଼ିଆଙ୍କ ଘରେ ଗୋତି ଶ୍ରମିକ ଭାବେ କାମ କରିଆସୁଛି । ତାଙ୍କର ମଧ୍ୟ ପୂର୍ବରୁ ବହୁତ ଜମିବାଡ଼ି ଥିଲା । ତାର ବାପା ମଦ ପିଇବା ପାଇଁ ବହୁତ ଜମି ବିକ୍ରି କରିଛନ୍ତି ଏବଂ ଆଉ କେତକ ଜମି ଆଜିକୁ ଦୁଇବର୍ଷ ହେବ ବନ୍ଧକ ପକାଇଛନ୍ତି । ଦରାର ଇଛା ନଥିଲେ ମଧ୍ୟ ତାର ବାପା ସବୁବେଳେ ପରଘରେ କାମ କରିବାକୁ ବାଧ୍ୟ କରନ୍ତି ।

ଦରା ସକାଳୁ ଉଠି ପ୍ରଥମେ ମୁହଁ ଧୋଇ ଗାଈମାନଙ୍କୁ ଗୁହାଳ ଭିତରୁ ଫିଟାଇ ସିଧା ଜଙ୍ଗଲକୁ ଗାଈ ଚରାଇବାକୁ ପଳାଇଆସେ । ଗାଈମାନଙ୍କୁ ଚରାଇବା ସଙ୍ଗେ ସଙ୍ଗେ ନିଜେ ଦାନ୍ତ ଘସେ ଦିନ ଦଶଟା ବେଳକୁ । ଗାଈମାନଙ୍କୁ ଛାଡ଼ି ମାଲିକ ଘରକୁ ଯାଇ ମାଣ୍ଡିଆ ପେଜ ଖାଇ ପୁଣି ଜଙ୍ଗଲକୁ ପଳାଇଆସେ । ମାଲିକ ଘର ପାଇଁ ଦାନ୍ତକାଠି, ଜାଳେଣି କାଠ, ମହୁଲ ଓ ବିଭିନ୍ନ ଲଘୁବନଜାତ ଦ୍ରବ୍ୟ ଇତ୍ୟାଦି ସଂଗ୍ରହ କରି ସଂଧ୍ୟାରେ ଘରକୁ ଫେରେ ଏବଂ ଚାଷବାସ ସମୟରେ ମାଲିକ ଘରର ପ୍ରତ୍ୟେକ ଜମିରେ ହଳକାମ, ଜମିରେ ପାଣି ମଡ଼ାଇବା ଇତ୍ୟାଦି କାମ ସାରି ପୁଣି ଗାଈମାନଙ୍କୁ ଚରାଇବାକୁ ନିଏ । କିନ୍ତୁ ଦିନକୁ ଦୁଇଥର ଖାଲି ମାଣ୍ଡିଆ ପେଜ ହିଁ ଖାଇଥାଏ । ଦରା ମଧ୍ୟ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢ଼ିଛି । ତା'ର ବହୁତ ପଢ଼ିବାକୁ ଇଛା ଥିଲେ ବି ସେ ପାଠ ପଢ଼ିପାରୁ ନାହିଁ । କାରଣ ତା'ର ବାପା ମନା କରିବାରୁ ସେ ବାଧ୍ୟହୋଇ ବଡ଼ରାମ ମାଝି ଘରେ କାମ କରୁଛି । ପର୍ବପର୍ବାଣିରେ ଛୁଟିରେ ସେ ଘରକୁ ଯାଏ । ବର୍ଷ ଶେଷକୁ ମାଲିକ ମାତ୍ର ୧୦୦ ଟଙ୍କା ଓ ଧାନ ଏକ ବସ୍ତା ଦିଅନ୍ତି । କିନ୍ତୁ ଗତ ବର୍ଷଠାରୁ ଦରାର ବାପା ଆଗୁଆ ମାଲିକଠାରୁ ୧୦୦ ଟଙ୍କା ନେଇଯାଇଛନ୍ତି । ସେ ଲକ୍ଷ୍ୟ ରଖିଛି ଯେ, ତା'ର ବାପା ଯେଉଁ ଜମିକୁ ବନ୍ଧକ ପକାଇଛନ୍ତି, ତାକୁ ମୁକୁଳାଇବା ପରେ ତା'ର ମାଲିକ ଘରେ ଆଉ କାମ ନକରି ସେ ତା'ର ନିଜ ଘରେ ରହି କାମ କରିବାକୁ ଭବିଷ୍ୟତ ଯୋଜନା କରିଛି ।

ଗାଆଁଟିକୁ ଦେଖିଲେ ଜଣାପଡ଼େ ମାର୍ଗଶୀର ମାସର ସୁପ୍ତ ରାତ୍ରୀର ନିରୀହ ପ୍ରଭାତର ଶିଶିର ବିନ୍ଦୁପରି ଟିପ୍ ଟିପ୍ କାକର ଟୋପାରେ ଗଛ ପତ୍ର କନକନିଆ ପାଣି ଭିଜା ମୃଦୁମୟ ମଳୟ ପବନରେ ଦୋହଲି ଦୋହଲି ଉଚାଟ ହୋଇଥିଲେ । ଧାଡ଼ିରେ

ଚାଲୁଥିବା ପିମ୍ପୁଡ଼ି, ସାଁବାଲୁଆ, ଉଇଙ୍କର ସାଙ୍ଗରେ ଚାପା ଗଳାରେ ଆଳାପ କରୁଥିବାର ଦୃଶ୍ୟମାନ ହେଉଥିଲା । ରୂପାର ଆକାଶରେ ସୂର୍ଯ୍ୟକିରଣର ଝଲମଲ ଶାନ୍ତ ସକାଳରେ ସତେ ଯେମିତି ସାରା ଗାଆଁକୁ ମହୁଲି ଆଲିଙ୍ଗନରେ ଜାବିଧରିଥିଲା କିମ୍ଭୂତ ମମତାରେ । ସତେ ଯେମିତି ଗାଆଁଟି ସଦା-ସର୍ବଦା ମେଘାଛନ୍ନ ହୋଇ ରହିଛି । ପାହାଡ଼, ଜଙ୍ଗଲ ଓ ଝରଣାରେ ପରିପୂର୍ଣ୍ଣ । ଉକ୍ତ ଗ୍ରାମଟି ରାୟଗଡ଼ା ଜିଲ୍ଲାର କାଶୀପୁର ବ୍ଲକ ନିକଟରେ ଅବସ୍ଥିତ । ଏହି ଗାଆଁଟିରେ ମୋଟ ୫୪ ଜଣ ପିଲା ଅଛନ୍ତି । ଗାଆଁ ଭିତରେ ସରକାରୀ ସ୍କୁଲ ଥାଇ ମଧ୍ୟ ଅନେକ ପିଲାଙ୍କର ବାପାମାନେ ମଦ ପିଉଥିବାରୁ ତାଙ୍କର ପିଲାମାନଙ୍କୁ ଗୋତି ଶ୍ରମିକ ଭାବେ ଅନ୍ୟଜଣଙ୍କ ଘରେ ରଖାଇଛନ୍ତି । ଗାଆଁର ଯେଉଁ ଲୋକଙ୍କର ଜମିବାଡ଼ି କିଛି ନାହିଁ, ସେମାନେ ତାଙ୍କ ପିଲାମାନଙ୍କୁ ପାଠପଢ଼ାଇବାକୁ ଇଛା ଥିଲେ ମଧ୍ୟ ଅର୍ଥ ଅଭାବରୁ ପାଠ ପଢ଼ାଇ ପାରୁନାହାନ୍ତି । ତାଙ୍କର ପିଲାମାନଙ୍କୁ ଭଲ ପ୍ୟାଣ୍ଟ , ସାର୍ଟ ପିନ୍ଧିବାକୁ ଦେଇ ପାରୁ ନାହାନ୍ତି । ଗାଆଁର ଲୋକମାନଙ୍କୁ କୁଲିମଜୁରି ମଧ୍ୟ ଠିକ୍ ଭାବରେ ମିଳୁନାହିଁ । ଗାଆଁର କିଛି ଦୂରରେ ଏକ ଗ୍ରାଫାଇଟ୍ ଖଣି ଅଛି, ଯାହାଦ୍ୱାରା କି ଉକ୍ତ ଅଞ୍ଚଳର ପ୍ରାକୃତିକ ସୁସ୍ଥ ପରିବେଶଟିକୁ ଦୂଷିତ ଓ କଳୁଷିତ କରିଦେଉଛି । ଏହି ଗ୍ରାଫାଇଟ୍ ଖଣି ହେବାଦ୍ୱାରା ଗାଆଁର ବହୁତ ଲୋକଙ୍କର ଜମିବାଡ଼ି ମଧ୍ୟ ପଳାଇଛି । ବର୍ତ୍ତମାନ ତାଙ୍କର ବାପା, ମାଆମାନେ ଡଙ୍ଗର ଚାଷ ଓ ଜଙ୍ଗଲ ଉପରେ ନିର୍ଭର କରି ବହୁତ ଦୁଃଖ କଷ୍ଟରେ ଦିନ କାଟୁଛନ୍ତି । ଯଦି ଆଗକୁ ବା ଭବିଷ୍ୟତରେ ଏହିପରି ଆଉ କିଛି ଗ୍ରାଫାଇଟ୍ ଖଣି ପ୍ରକଳ୍ପ ଆସେ, ଲୋକମାନଙ୍କର ଯେତିକି ବି ଜଙ୍ଗଲ ଓ ଡଙ୍ଗର ଜମି ଅଛି, ସିଏ ମଧ୍ୟ ପଳାଇବ । ତା'ପରେ ଏହି ଛୋଟଛୋଟ ପିଲାମାନେ କଣ ଏହିପରି ଜୀବନସାରା ଗୋତିଶ୍ରମିକ ଭାବେ ଖଟୁଥିବେ? ସେମାନେ କ'ଣ ଶିକ୍ଷା ସଚେତନତାରୁ ଏପରିଭାବେ ବଞ୍ଚିତ ହେଉଥିବେ ? ଯଦି ଏହିପରି ସ୍ଥିତି ହୁଏ, ତା ହେଲେ ଏମାନଙ୍କର ଭବିଷ୍ୟତ କଣ ହୋଇପାରେ ?

ମାର୍ଚ୍ଚ - ୨୦୦୩



# ଜଙ୍ଗଲ ସୁରକ୍ଷା

ଅଡ୍ରି ଗ୍ରାମପଞ୍ଚାୟତ ଗ୍ରାମ ଗୁଡିକ ମଧ୍ୟରୁ ତିନୋଟି ଗାଁ ଯାହାକି ଇନ୍ଦ୍ରାବତୀ ନଦୀବନ୍ଧ ଯୋଜନାରେ ବୁଡି ଅଞ୍ଚଳ ଭାବେ ଚିହ୍ନଟ ହୋଇଛି । ଏହି ଗାଁ ଲୋକଙ୍କର ଜଳାଶୟ କୂଳେକୂଳେ ପୋଡୁଚାଷ କରିବା ବ୍ୟତୀତ ମାଛ ଧରିବା ମଧ୍ୟ ଗୋଟିଏ ମୁଖ୍ୟ ପନ୍ଥା । ସେହି ଗାଁ ଗୁଡିକ ମୁସ୍କୁଟା, କମଳାଗୁଡା ଓ ଶୀଳାତୁବୀ ପଞ୍ଚାୟତର ପୁର୍ନଃଗଠନ ପରେ ନୂତନ ଭାବେ ପଞ୍ଚାୟତ ମାନ୍ୟତା ପାଇଥିବା କାଳି ଗାଁ ହେଉଛି ଅନ୍ୟ ଦୁଇଟି ପଞ୍ଚାୟତ । ଏହି (ଅଡ୍ରି ଗୋପନାଥପୁର) ତୁଳନାରେ କିଛିଟା ଫରକ୍ । କାରଣ ମାଳି ଗାଁ ପଞ୍ଚାୟତରେ ଗୋଟିଏ ପରିବାର ହିଁ ଏହି ପଞ୍ଚାୟତର ସର୍ବେସର୍ବା ସାଜିଛନ୍ତି । ଶିକ୍ଷାର ବିକଳ୍ପ ବ୍ୟବସ୍ଥା ପାଇଁ କେବଳ ଗୋଟିଏ ଡି.ପି.ଇ.ପି. ବିଦ୍ୟାଳୟ ଗତ ତିନିବର୍ଷ ଧରି ନାମକୁ ମାତ୍ର ରହିଛି । ଯେଉଁଠି କି ଶିକ୍ଷାର ପ୍ରଭାବ ବର୍ତ୍ତମାନ ସୁଦ୍ଧା ପଡିପାରିନାହିଁ । ପଞ୍ଚାୟତର ଗ୍ରାମ ଗୁଡିକ ମଧ୍ୟରୁ ଅନେକ ପିଲା ଅଗ୍ରଗାମୀ ଦ୍ୱାରା ପରିଚାଳିତ ନବସୃଜନ ଶିକ୍ଷା କେନ୍ଦ୍ରରୁ ପାଠପଢ଼ି ବର୍ତ୍ତମାନ ସରକାରୀ ସ୍କୁଲରେ ଅଧ୍ୟୟନରତ । ତଥାପି ଉକ୍ତ ଶିକ୍ଷା କେନ୍ଦ୍ର ଅନେକ ସମୟରେ ସ୍ଥାନୀୟ ଟାଉଟର ଗୋଷ୍ଠୀଙ୍କ ଦ୍ୱାରା ଅଙ୍ଗୁଳି ପ୍ରଦର୍ଶନର ଶିକାର ହୋଇଛି । ରାଜ୍ୟ ସରକାରଙ୍କଦ୍ୱାରା ପରିଚାଳିତ ନିଶ୍ଚିତ ଶିକ୍ଷା ଯୋଜନା ଦ୍ୱାରା ଲୋକମାନଙ୍କୁ ବିଭିନ୍ନ କୁମନ୍ତ୍ରଣା, ପ୍ରଲୋଭନ ଓ ପ୍ରତାରଣା କରି ନବସୃଜନ ଶିକ୍ଷାକେନ୍ଦ୍ରକୁ ବନ୍ଦ କରି ନିଶ୍ଚିତ ଶିକ୍ଷା ଯୋଜନା ଚାଲୁ ରଖିବା ପାଇଁ ପରାମର୍ଶ ଦେଇଥିଲେ ।

ଆଉ ତାହା କାର୍ଯ୍ୟକାରୀ ମଧ୍ୟ ହୋଇଥିଲା । କିନ୍ତୁ, ଯେତେବେଳେ ଲୋକମାନେ ନିଜର ଭୁଲ ଓ ସ୍ଥାନୀୟ ଟାଉଟରଙ୍କ ଅସିଲି ଚେହେରା ଜାଣିଲେ ସେତେବେଳେ ପୁନରାୟ ନବସୃଜନ ଶିକ୍ଷା କେନ୍ଦ୍ରକୁ ଚାଲୁ ରଖିଲେ । 'ଅଗ୍ରଗାମୀ' ଏକ ପ୍ରକାର ମାଧ୍ୟମର ଉତ୍ସ ଯେଉଁଠି ସେ ଲୋକମାନଙ୍କର ମତାମତକୁ ପ୍ରାଧାନ୍ୟ ଦିଏ । ବ୍ୟକ୍ତି ବିଶେଷଙ୍କ ମତାମତକୁ ସମ୍ମାନ ଦିଏ ଏବଂ ସମୂହ ଲୋକଙ୍କ ପାଇଁ ହିଁ କାମ କରେ । ତେଣୁ ଲୋକମାନେ ମୁସ୍କୁଟା ଗ୍ରାମରେ ପୁନର୍ବାର ସ୍କୁଲ ଚାଲୁ ରଖିବା ପାଇଁ ଆମନ୍ତ୍ରଣ ପରେ ପୂର୍ବଭଳି ସ୍କୁଲ ଆରମ୍ଭ କଲେ ।

ସ୍କୁଲ ଚାଲିବା ପରେ ପରେ କେତୋଟି ସୁନ୍ଦର ପଦକ୍ଷେପ ସ୍କୁଲରେ ପାଠ ପଢୁଥିବା ପିଲାମାନେ ନେଇଛନ୍ତି । ଏଠାରେ ପିଲାମାନେ ଅନେକ ପ୍ରକାର କାର୍ଯ୍ୟ କରିଛନ୍ତି । ସେଥିମଧ୍ୟରୁ ପନିପରିବା ଚାଷ, ଜଙ୍ଗଲ ସୁରକ୍ଷା, କୁକୁଡା ଚାଷ ଓ ନିଜ ନିଜ ବାଡିପଛପଟେ ୫ଟି ଲେଖାଏଁ କଖାରୁ, ଅମୃତ ଭଣ୍ଡା, ସଜନା, କଦଳୀ ଇତ୍ୟାଦି ଗଛ ଲଗାଇଛନ୍ତି ।

ଜଙ୍ଗଲ ସୁରକ୍ଷାକୁ ନେଇ ଅନେକ ଥର ଲୋକମାନଙ୍କୁ ବୁଝା ହେଉଥିଲା । କିନ୍ତୁ ଯାହା ସେମାନଙ୍କ ଦ୍ୱାରା ହୋଇ ନଥିଲା ପିଲାମାନେ ତାହା କରି ଦେଖାଇ ଦେଲେ । ପିଲାମାନେ ଜଙ୍ଗଲ ସୁରକ୍ଷା କରିଛନ୍ତି । ଉକ୍ତ ଜଙ୍ଗଲଟି ଗ୍ରାମର ପୂର୍ବ ପାର୍ଶ୍ୱରେ ଅବସ୍ଥିତ । କୁଲାପାର ପାହାଡର ପାଦ ଦେଶରେ ୩୫ଏକର ବିଶିଷ୍ଟ ଛୋଟ ଡିଙ୍ଗରଟିର ଅଧା ଅର୍ଥାତ୍ ୧୭ ଏକର ବିଶିଷ୍ଟ ଜଙ୍ଗଲକୁ ସ୍କୁଲ ପିଲାମାନେ ସମସ୍ତେ ସୁରକ୍ଷା କରିଛନ୍ତି । ଗାଁର ସମସ୍ତଙ୍କୁ ଡାକି ଏହି ବିଷୟରେ କଥାବାର୍ତ୍ତା ହେବା ପରେ ଜଙ୍ଗଲରୁ ସ୍ଥାନୀୟ ଲୋକଙ୍କୁ ଗଛ କାଟିବାକୁ ଦେଉନାହାଁନ୍ତି । ଭବିଷ୍ୟତରେ ଏହାର ପ୍ରଭାବ ନିଶ୍ଚୟ ଅନ୍ୟ ଗାଁ ଗୁଡିକ ଉପରେ ପଡିବ ଏଥିରେ ଦ୍ୱିମତ ନାହିଁ । କାରଣ ପଡୋଶୀ ଗାଁ କଣ୍ଠାବାଗ ମଧ୍ୟ ତାଙ୍କର ଦେବତା ଡଙ୍ଗରରୁ ୧୨ଏକର ବିଶିଷ୍ଟ ଜଙ୍ଗଲ ସୁରକ୍ଷା କରିଛନ୍ତି । ଏହା ବ୍ୟତୀତ ସ୍କୁଲ ପିଲାମାନେ ନିଜ ସ୍କୁଲର ପରିଚାଳନା ପାଇଁ ପନିପରିବା ଚାଷ କରିଥିଲେ । ସେଥିରୁ ହୋଇଥିବା ଆୟକୁ ନେଇ ଏକ ପାଣ୍ଠି କରିଛନ୍ତି । ଯାହାକୁ 'ଶିଶୁ ପାଣ୍ଠି' ନାମ କରଣ କରାଯାଇଛି ।

ସେମାନେ କହନ୍ତି ଆବଶ୍ୟକ ହେଲେ ଏହି ପାଣ୍ଠିରୁ ସ୍କୁଲର ଅନେକ କାର୍ଯ୍ୟରେ ଲଗାଇ ପାରିବେ । ଉକ୍ତ ଶିଶୁ ପାଣ୍ଠିରେ ମୋଟ ୫୨୦ଟଙ୍କା ଅଛି । ବର୍ତ୍ତମାନ ସେହି ଟଙ୍କାକୁ ଋଣ ଆକାରରେ ପିଲାମାନଙ୍କ ମଧ୍ୟରେ ହିଁ ନେଇଛନ୍ତି । ଯଦି ଋଣ ବାବଦକୁ ୫୦% ସୁଧ ଆସେ ତେବେ ଉକ୍ତ ଶିଶୁ ପାଣ୍ଠିର ଟଙ୍କା ୨୦୦୪ ମସିହା ସୁଦ୍ଧା ଟ୧୫୩୩.୭୫ପଇସା ହେବ । ଏହା ବ୍ୟତୀତ କୁକୁଡା ଚାଷ କରିଛନ୍ତି । ବର୍ତ୍ତମାନ କୁକୁଡା ୧୪ଟି ଅଛି । ଯାହାର ଆନୁମାନିକ ମୂଲ୍ୟ ୭୫୦ଟଙ୍କା ହେବ । ଯଦି ସ୍କୁଲ ନିୟମିତ ଚାଲେ ତେବେ ପିଲାମାନେ ନିଶ୍ଚୟ ଅଧିକରୁ ଅଧିକ ସଂଚୟ ମନୋଭାବ ବଢ଼ାଇ କିଛି ନୂଆ କାମ କରିପାରିବେ । ଉକ୍ତ ପାଣ୍ଠିକୁ ଚଳାଇବା ପାଇଁ ପିଲାମାନଙ୍କ ମଧ୍ୟରୁ ହିଁ କମିଟି ମେମ୍ୱର ରଖାଯାଇଛି । ଫଳରେ ସେମାନେ ତାଙ୍କ ଦେଣ ନେଣ ହିସାବପତ୍ର ଠିକ୍ ରଖି ପାରୁଛନ୍ତି । ପରିଚାଳନା କମିଟିରେ ବାତି ମାଝୀ, ସନ୍ତ ମୁଦୁଲି, ସୁଭାସ ମୁଦୁଲି ଓ ଦୀପ୍ ସିଂ ମାଝୀ ଅଛନ୍ତି । ଆଉ ୩୧ଜଣ ମଧ୍ୟ ସଭ୍ୟ ସଭ୍ୟା ଅଛନ୍ତି । ବର୍ତ୍ତମାନ ଉକ୍ତ ଗାଁରେ ସଂସ୍ଥା ତରଫରୁ ସ୍କୁଲ ବନ୍ଦ ଅଛି କିନ୍ତୁ ସେମାନେ ନିଜେ ସ୍କୁଲ ଚଳାଇବା ପାଇଁ ପଦକ୍ଷେପ ନେଇଛନ୍ତି ।

ମାର୍ଚ୍ଚ - ୨୦୦୪

# ଦୁର୍ନୀତିର ଏକ ସ୍ପଷ୍ଟ ଚିତ୍ର

## କୁମ୍ଭାରଶିଳା ଗାଁର ଦାନାପାଣି ଯୋଜନା

ଆଦିବାସୀମାନଙ୍କ ଉନ୍ନତି ପାଇଁ କେତେ କେତେ ଯୋଜନା ହେଲାଣି ତାର ହିସାବ ଆମେ ଜାଣିପାରୁ ନାହୁଁ । କିନ୍ତୁ ଖବର କାଗଜ ପୃଷ୍ଠାକୁ ଓଲଟାଇଲେ ମନେ ହୁଏ ଆମ ଆଦିବାସୀମାନେ ମୋଟେ ଅସୁବିଧାର ସମ୍ମୁଖୀନ ହେଉ ନାହାନ୍ତି । ଆମେ ଲୋକ ପ୍ରତିନିଧି ହୋଇ ମଧ୍ୟ ବର୍ତ୍ତମାନ ଅବସ୍ଥାରେ ନାଚାର । ଆମର ଅଜ୍ଞତା ଯୋଗୁଁ ଫାଇଦା ଉଠାଇବା ପାଇଁ ଉପରୁ ତଳସ୍ତର ପର୍ଯ୍ୟନ୍ତ ଯେମିତି ସମସ୍ତେ ବେଢ଼ି ହେଇଛନ୍ତି । ଏଠାରେ ତାହାର ଏକ ସ୍ପଷ୍ଟ ଉଦାହାରଣ ଉପସ୍ଥାପନ କରୁଛି ।

୨୦୦୩ ଜୁଲାଇ ମାସରେ କାଶୀପୁର ବ୍ଲକର ଗୋଷ୍ଠୀ ଉନ୍ନୟନ ଅଧିକାରୀ ସୁଶ୍ରୀ ଶାଳିନୀ ପଣ୍ଡିତ କୁମ୍ଭାରଶିଳା ଗାଁ ପରିଦର୍ଶନ କରିଥିଲେ । ଘର ଘର ବୁଲି ପୁରୁଷ ଓ ମହିଳାମାନଙ୍କଠାରୁ ତାଙ୍କର ଖାଦ୍ୟାଭାବ ଏବଂ ଚଳଣି ବିଷୟରେ ବୁଝି ସର୍ଭେ କରି ନେଇଥିଲେ । ସେ କହିଥିଲେ ଯେ ଗାଁର ସମସ୍ତ ଲୋକମାନେ ମିଶି ଏକ ପଲ୍ଲୀସଭା ଓ ଗ୍ରାମସଭା କରି କେଉଁ କାମ ଗାଁକୁ ଆଣିବାକୁ ଚାହୁଁଛନ୍ତି ତାହା ନିଷ୍ପତ୍ତି ନେଇ ଜଣାଇଲେ ଆମେ ପଦକ୍ଷେପ ନେବୁ । ଯେଉଁ କାର୍ଯ୍ୟ ଗାଁକୁ ଆସିବ ସେଥିରେ ବି.ପି.ଏଲ ତାଲିକାରେ ଅନ୍ତର୍ଭୁକ୍ତ ଥିବା ଘରପିଛା ଜଣେ ଲୋକ ହିଁ କାମ ପାଇପାରିବ । ଏହାପରେ ୨୦୦୩ ଜୁନ ମାସରେ ପଲ୍ଲୀସଭା ଓ ଗ୍ରାମସଭା ନିଷ୍ପତ୍ତି ଅନୁଯାୟୀ ବନ୍ଧ ମରାମତି କାମ ଆଣିବାକୁ ନିଷ୍ପତ୍ତି ନେଲେ । ଯେତେବେଳେ ଗାଁକୁ କାମ ଆସିଲା ଗାଁର ଠିକାଦାରମାନଙ୍କୁ କାମ ଦିଆନଯାଇ ଗାଁ କମିଟି ନାମରେ କାମ ଆସିଲା । ଗାଁ କମିଟିର ଲୋକଙ୍କ ମଧ୍ୟରୁ ଗଣପତି ନାଏକଙ୍କ ନାମରେ କାର୍ଯ୍ୟାଦେଶ ଆସିଥିଲା ।

ଯେତେବେଳେ ଗାଁରେ କାମ ଆରମ୍ଭ ହେଲା ତାଙ୍କର ନିଜର ସଂପର୍କୀୟ ଘରପିଛା ତିନି-ଚାରି ଜଣ ଓ ଏ.ପି.ଏଲ କାର୍ଡ ଅନ୍ତର୍ଭୁକ୍ତ ପରିବାରର ଲୋକମାନେ କାମ କରିବାକୁ ଆସିଲେ । ୨୦ଦିନ ପାଇଁ କାମ ଆସିଥିଲା । ମାତ୍ର ୬ଦିନ କାମ ହୋଇ ବନ୍ଦ

ହୋଇଗଲା । ତା'ପରେ ବ୍ଲକ୍‌ରୁ କନିଷ୍ଠ ଯନ୍ତ୍ରୀ ଏବଂ ଗ୍ରାମ ସେବକ ନରନିଂହ ମାଣ୍ଡାଙ୍ଗି ଗାଁକୁ ମେଜରମେଣ୍ଟ ଓ ବିଲ୍ କରିବାକୁ ଆସିଥିଲେ । ସେତେବେଳେ ମାତ୍ର ୨୫ବସ୍ତା ଚାଉଳ ବିଲ୍ କଲେ । ଏହାଦେଖି ଗାଁ ଲୋକମାନେ ସେମାନଙ୍କୁ ପ୍ରତିବାଦ କରିବାରୁ ଆଉ ୫ବସ୍ତା ବଢ଼ାଇ ମୋଟ ୩୦ ବସ୍ତା ଚାଉଳ ବିଲ୍ କରାଇଲେ । ଏହା ଶୁଣି ଗାଁର ଲୋକମାନେ ନିଜେ ହିସାବ କରି ଜାଣିଲେ ଯେ ଦିନକୁ ୧୦ କି.ଗ୍ରା. ଚାଉଳ ବା ୫୦ ଟଙ୍କା ୫୦ପଇସା ହିସାବରେ ପାଇବା ଉଚିତ୍ । ଏତିକି ଚାଉଳ କେମିତି ବାଣ୍ଟି କରି ନେବୁ । ସେହି ୬ଦିନରେ ମଜୁରିକୁ ମିଶାଇଲେ ୧୦୦୮ଟା ମଜୁରି ହେଉଛି । ଏହାପରେ ଗଣପତି ନାଏକ କହିଲେ ଆଉ ଅଧିକ ଦେଇହେବ ନାହିଁ । ଗାଁର ସମସ୍ତ ଲୋକମାନେ ମିଶି ବ୍ଲକ୍‌କୁ ଯାଇ ବି.ଡି.ଓ.ଙ୍କୁ କହିଲେ 'ଆଜ୍ଞା ଆମେ ୫୦ ଟଙ୍କା ହିସାବରେ ଦିନକୁ ୧୦କି.ଗ୍ରା. ଚାଉଳ ପାଇବା କଥା କିନ୍ତୁ ଏହି ୩୦ବସ୍ତା ଚାଉଳ ନେଲେ ଘରପିଛା ମାତ୍ର ୨କି.ଗ୍ରା ଲେଖା ଚାଉଳ ପଡୁଛି, ଆମେ ତାହା କେମିତି ନେବୁ ? ଗାଁର ଲୋକମାନେ ବି.ଡି.ଓ, ଜେ.ଇ ଓ ଭି.ଏଲ.ଡବ୍ଲ୍ୟୁଙ୍କୁ ବହୁତ କାକୁତି ମିନତି ହୋଇ କହିଲେ । କିନ୍ତୁ ବର୍ତ୍ତମାନ ନୂଆ ବି.ଡି.ଓ. କହିଲେ ଯେ ସେତିକିରୁ ଅଧିକ କୌଣସି ମତେ ଦେଇ ହେବ ନାହିଁ । ଏହା ଶୁଣି ଲୋକମାନେ ବାଧ୍ୟ ହୋଇ ଗାଁକୁ ଫେରିଲେ ।

ଏହାର କିଛି ଦିନ ପରେ ଗାଁର କିଛି ପିଲା ବ୍ଲକ୍‌କୁ ଯାଇ ଶୁଣିବାକୁ ପାଇଲେ ଯେ କୁମ୍ଭାରଶିଳା ଗାଁ ପାଇଁ ଅଧିକ ବିଲ୍ କରାଯାଇଛି । ସେମାନେ ଆସି ଗାଁରେ କହିବା ପରେ ଗ୍ରାମର ସମସ୍ତ ମହିଳା ଓ ପୁରୁଷ ଲୋକମାନେ ବି.ଡି.ଓ.ଙ୍କ ପାଖକୁ ଯାଇ ପଚାରିଲେ । ଆମ ଗାଁକୁ କେତେ ବସ୍ତା ଚାଉଳ ଆସିଛି ? ସେ ଫାଇଲ ଆମକୁ ଦେଖାଅ । ବି.ଡି.ଓ. ମନାକରିବାରୁ ଲୋକମାନେ ପାଟିତୁଣ୍ଡ କରିଲେ । ସେମାନେ ନିଜେ ବାଧ୍ୟ ହୋଇ ଫାଇଲ କାଢ଼ି ଦେଖିଲେ ଯେ ଗାଁ ପାଇଁ ୬୦ବସ୍ତା ଚାଉଳ ବିଲ୍ କରାଯାଇଛି । ଏହାପରେ ବି.ଡି.ଓ.ଙ୍କୁ ଅବଶିଷ୍ଟ ୩୦ବସ୍ତା ଚାଉଳ ସଂପର୍କରେ ପ୍ରଶ୍ନ କରିବାକୁ ବି.ଡି.ଓ. ପତ୍ୟୁତ୍ତର ଦେଇ କହିଲେ 'ମୁଁ ଏ ବିଷୟରେ କିଛି ଜାଣି ନାହିଁ ତୁମ୍ଭେମାନେ ଥାନାକୁ ଯାଇ ଏ ସଂପର୍କରେ କେଶ୍ ଦିଅ । ଏହାପରେ ଆମ ଗାଁର ସମସ୍ତ ଲୋକମାନେ ଥାନାକୁ ଯାଇ କେଶ୍ ନ ଦେଇ ଓ.ଆଇ.ସି.ଙ୍କୁ ବଳକା ୩୦ବସ୍ତା ଚାଉଳ ପାଇବା ପାଇଁ ଆପତ୍ତି କଲେ । ଏହା ଶୁଣି ଥାନା ବାଲା କହିଲେ ମୁଁ ବି.ଡି.ଓ, ଜେ.ଇ, ଓ ଭି.ଏଲ୍.ଡବ୍ଲ୍ୟୁ ନରସିଂହ ମାରାଣ୍ଡୀ ଏବଂ ସରପଞ୍ଚଠାରୁ ବୁଝି କି ତୁମ ଗାଁର ବଳକା ଚାଉଳ ପଠାଇ ଦେବି । ପୁଣି ଚାରି ଦିନ ପରେ ଗାଁର ସମସ୍ତ ଲୋକମାନେ ବ୍ଲକ୍‌କୁ ଗଲେ । ସେଠି ସରପଞ୍ଚ କହିଲେ ମୁଁ ଆଉ ୩୦ବସ୍ତା ରାଉଳ ଦେବି ।

ଏହାର କିଛି ଦିନ ପରେ 'ସରପଞ୍ଚ ମାତ୍ର ୨୦ବସ୍ତା ଚାଉଳ ଦେଇ କହିଲେ ଯେ ଆଉ ୧୦ବସ୍ତା ଚାଉଳ ଦେଇ ହେବନି, କାରଣ ଜେ.ଇଙ୍କ ଖର୍ଚ୍ଚ ଓ ପି.ସି ବାବଦକୁ କାଟି

ଦିଆଗଲା ।' ଏ ସଂପର୍କରେ ସମସ୍ତଙ୍କୁ ଜଣାଇ ମଧ୍ୟ ଅସଲି ଦୁର୍ନୀତିଗ୍ରସ୍ତ ଲୋକ ଧରାପଡିଲେ ନାହିଁ । ଏହି ପ୍ରକ୍ରିୟାରେ ବି.ଡି.ଓ, ଜେ.ଇ., ଭି.ଏଲ୍.ଡବ୍ଲ୍ୟୁ ଓ ସରପଞ୍ଚ ଏଥିରେ ସଂପୂର୍ଣ୍ଣ ଭାବେ ସଂପୃକ୍ତ ଅଛନ୍ତି ବୋଲି ଗ୍ରାମବାସୀଙ୍କ ବିଶ୍ୱାସ । ସେହିପରି ଆଉ ଗୋଟିଏ ଘଟଣା ୨୦୦୨ମସିହାରେ ପଲ୍ଲୀସଭା ଓ ଗ୍ରାମସଭା ନିଷ୍ପତ୍ତି ଅନୁଯାୟୀ ପଞ୍ଚାୟତ ତରଫରୁ ଆମ ଗାଁ ପାଇଁ ଦୁଇଟି କାମ ଆସିଥିଲା । ସେଥିମଧ୍ୟରୁ ଗୋଟିଏ ପଞ୍ଚାୟତ ସ୍ତରୀୟ ରାସ୍ତା କାମ ଓ ଅନ୍ୟ କାମଟିକୁ ଠିକାଦାରମାନେ କରିବା ପାଇଁ ଚାହୁଁଥିଲେ । ଏହା ପୁଣି ଆମ ଯୁବକ ସଂଘର ପିଲାମାନେ ଗାଁର ନେତାମାନଙ୍କୁ କହିବାରୁ ପଞ୍ଚାୟତରୁ ଆସିଥିବା ରାସ୍ତା କାମଟିକୁ ଆମ ପିଲାମାନଙ୍କ ନାମରେ ଦିଆଯାଇଥିଲା । ଏହାର ବଜେଟ୍ ଥିଲା ୩୦ହଜାର ଟଙ୍କା । ବ୍ଲକ୍‌ରୁ ଆସୁଥିବା ରାସ୍ତା କାମିଟି ଏକ ଲକ୍ଷ ଟଙ୍କାର ବଜେଟ୍ ଭିତ୍ତିକ ରାସ୍ତାକାମ ସଂପର୍କରେ ଆମ୍ଭେ ଜାଣିପାରିଲୁ ନାହିଁ । ଆମ ଯୁବକ ସଂଘ ତରଫରୁ ଯେଉଁ କାମ କରାଗଲା ତାହା ନାମକୁ ମାତ୍ର କାର୍ଯ୍ୟାଦେଶ ଦେଇଥିଲେ । ଗାଁର ଆଦିବାସୀ ସାହି, ହରିଜନ ସାହି ଓ କୁମ୍ଭାର ସାହିର ଲୋକମାନେ ଉକ୍ତ ରାସ୍ତା କାମଟି କରିଥିଲେ । ଏହା ମାତ୍ର ୩୦ଦିନ କାମ ହୋଇଥିଲା । ଦିନକୁ ୫୦ଟଙ୍କା ୫୦ପଇସା ହିସାବରେ ମଜୁରି ଦିଆଯିବାକୁ ନିଷ୍ପତ୍ତି ନିଆଯାଇଥିଲା କିନ୍ତୁ ଅଦ୍ୟାବିଧି ଲୋକମାନଙ୍କୁ ମଜୁରି ଦିଆଯାଇନାହିଁ । ଆମେ ଲୋକମାନଙ୍କୁ ମଜୁରି ନଦେଇ ପାରିବାରୁ ବାଧ୍ୟ ହୋଇ ଗାଁର ୱାର୍ଡମେମ୍ବର ପାଖରୁ ୫୦୦୦ଟଙ୍କା ଋଣ ନେଇ ରାସ୍ତା କାମ ପାଇଁ ଆସିଥିବା ଉପକରଣ ନିମନ୍ତେ ଗାଡି ଭଡା ବାବଦକୁ ଦିଆଯାଇଛି ।

ଆଜକୁ ଏକ ବର୍ଷ ବିତି ଦିଆଯାଇଥିଲେ ସୁଦ୍ଧା ବ୍ଲକ୍‌କୁ ଦୌଡି ଦୌଡି ବିଲ୍ ହୋଇପାରିଲା ନାହିଁ । ଚାନ୍ଦା ଆଦାୟ କରି ସଂପୃକ୍ତ ଜେ.ଇ. ଓ ଭି.ଏଲ.ଡବ୍ଲ୍ୟୁଙ୍କୁ ୨୦୦୦ଟଙ୍କା ଲାଞ୍ଚ ଦେବାପରେ ଗତ ବର୍ଷ କାମର ବିଲ୍ ଚଳିତ ବର୍ଷ ପାଶ୍ କରାଗଲା । ବ୍ଲକ୍‌ରୁ ଆସିଥିବା କାମ ପାଇଁ ଲାଞ୍ଚ ଦେଇଥିବାରୁ ସେହିବର୍ଷ ବିଲ୍ ପାଶ୍ କରିଦେଇଛନ୍ତି । ଆମେ ଲାଞ୍ଚ ଦେଇନଥିବାରୁ ଏକ ବର୍ଷ ଲୋକମାନଙ୍କୁ ମଜୁରି ନ ଦେଇ ପାରି ଅପେକ୍ଷା କରିବାକୁ ପଡିଲା । ହୁଏତ ଲାଞ୍ଚ ନ ଦେଇଥିଲେ ଆଜି ପର୍ଯ୍ୟନ୍ତ ଏମିତି ପଡି ରହି ନଥାଆନ୍ତା ।

ମାର୍ଚ୍ଚ - ୨୦୦୪



# ଗୋଡିବାଲି ପଞ୍ଚାୟତ କଥା

ପଞ୍ଚାୟତି ରାଜ ବ୍ୟବସ୍ଥାରେ ଗ୍ରାମାଞ୍ଚଳର ବିକାଶ ପାଇଁ ଗ୍ରାମବାସୀ ଯୋଜନା କରିବେ ଓ ସେଥିରେ ନିଜେ ସେମାନେ ଭାଗୀଦାର ହୋଇ ଗାଁର କଥା ନିଜେ ହିଁ ବୁଝିବେ । ଗାଁର ଉନ୍ନତି ପାଇଁ ଲୋକମାନେ ଯୋଜନା ତିଆରି କରିବେ । ୭୩ ତମ ସମ୍ବିଧାନ ସଂଶୋଧନ ବିଲ୍‌କୁ ଆଖି ଆଗରେ ରଖି ରାଜ୍ୟମାନଙ୍କୁ ଗ୍ରାମପଞ୍ଚାୟତ ଆଇନ କାର୍ଯ୍ୟକାରୀ କରିବା ପାଇଁ କୁହାଯାଇଛି । ଏହା ଖାଲି କାଗଜ ପତ୍ର ଏବଂ ଖବର କାଗଜ, ବିଭିନ୍ନ ପତ୍ରପତ୍ରିକା ମାଧ୍ୟମରେ ହିଁ ଲେଖା ହୋଇ ରହିଯାଉଛି । କିନ୍ତୁ, ତାହା ଠିକ୍ ଭାବେ କାର୍ଯ୍ୟକାରୀ ହେଉନାହିଁ । ଗାଁକୁ ଗ୍ରାମ ଶାସନ କ୍ଷମତା ଦିଆଯାଇଥିଲେ ମଧ୍ୟ ତାହକୁ କେତକ ବଡ ବଡ ରାଜନୈତିକ ଗୋଷ୍ଠୀର ଲୋକ ଓ ସ୍ୱାର୍ଥାନ୍ୱେଷୀ ଲୋକମାନେ ଠିକ୍ ବାଟରେ କାର୍ଯ୍ୟକାରୀ କରିବାକୁ ଦେଉନାହାନ୍ତି । ଏହା ହେଉଛି ଦୁଇଟି ଗାଁର ସ୍ପଷ୍ଟ ଓ ଜ୍ୱଳନ୍ତ ଉଦାହରଣ । ରାୟଗଡା ଜିଲ୍ଲା ଗୋଡିବାଲି ପଞ୍ଚାୟତରେ ନୂଆଗୋଟି ଗାଁ ଅବସ୍ଥିତ । ଏହି ଗାଁଟିରେ ଆଦିବାସୀ ଓ ଗୌଡ ସଂପ୍ରଦାୟର ମୋଟ ୧୮ଟି ପରିବାର ବସବାସ କରୁଛନ୍ତି । ସେଥି ମଧ୍ୟରୁ ୩ଟି ପରିବାର ରାଜ ବଂଶୀୟ ଅଟନ୍ତି । ଗାଁର ଲୋକମାନେ ମୁଖ୍ୟତଃ ଡଙ୍ଗର ଚାଷ ଓ କୁଲି ମଜୁରି ଉପରେ ନିର୍ଭର କରି ଚଳନ୍ତି ।

ଉକ୍ତ ଗାଁରେ ପାର୍ବତୀ ବୋଲି ଗୋଟିଏ ମହିଳା ଅଛି । ଯିଏକି ଗାଁର ପ୍ରତ୍ୟେକ କାମରେ ଆଗୁଆ ହୋଇ ବାହାରି ଥାଏ । ଗୋଟିଏ ପୁଅ ଏବଂ ଗୋଟିଏ ଝିଅକୁ ନେଇ ତା'ର ସଂସାର ଗଢ଼ିଛି । ଜମି କହିଲେ ମାତ୍ର ୧ ଏକର ଭଟ୍ଠା ଜମି ଅଛି । ପାର୍ବତୀ କହେ 'ହଠାତ୍ ଗୋଟିଏ ଦିନ ରାଜା ଘରର ଲୋକମାନେ ଗାଁର ସମସ୍ତ ଲୋକମାନଙ୍କୁ ଡାକିଲେ ଏବଂ କହିଲେ ସମସ୍ତେ ଏଥିରେ ଟିପ ଚିହ୍ନ ଦିଅ । ତାଙ୍କ କଥା ମାନି ସମସ୍ତେ ମଧ୍ୟ ସାଧା କାଗଜରେ ଟିପ ଦେଇ କିଛି ନ ପଚାରି ପଳାଇ ଆସିଲେ । ଗାଁରେ କେବେ ପଲ୍ଲୀ ସଭା ହୋଇ ନ ଥିଲା । ମୁଁ ଭାବୁଛି ଗାଁର ସମସ୍ତ ଲୋକ ଯେଉଁ ଦସ୍ତଖତ ଦେଲେ, ତାହା ବୋଧେ ପଲ୍ଲୀ ସଭା ଥିଲା । ଯିଏ ଆମ ଗାଁର ୱାର୍ଡମେମ୍ବର ସିଏ ଜଞ୍ଜାମାଣ୍ଡି ଗ୍ରାମରେ ରହନ୍ତି । ସେ ହଠାତ୍ ଦିନେ ଆମ

ଗାଁକୁ ଆସି କହିଲେ ଯେ ଆଜି ତୁମ ଗାଁକୁ ଚିରୁକୋଳି ଗାଁର ଲୋକମାନେ ରାସ୍ତା କାମ କରିବା ପାଇଁ ଆସିବେ । ଏହା ଶୁଣି ପାର୍ବତୀ ଆଗୁଆ ହୋଇ କହିଲା ଯେ ପଲ୍ଲୀସଭା ତ କେବେ ହେଲା ତାହା ଆମ ଗାଁ ଲୋକମାନେ କେହି ଜାଣିଲେନି । ପୁଣି କହୁଛି ରାସ୍ତା କାମ ଆସିଛି, ବାହାର ଗାଁର ଲୋକମାନେ କାମ ପାଇବେ । କିନ୍ତୁ ଆମ ନିଜ ଗାଁର କାମ ହୋଇକି ଗାଁ ଲୋକ କାମ ପାଇବେନି କେମିତି ? ଏହା କହି ଗାଁର ସମସ୍ତ ଲୋକଙ୍କୁ ଏକାଠି କରାଇ ଗାଁର କାମ କରାଇ ଦେବୁ ନାହିଁ ବୋଲି ନିଷ୍ପତ୍ତି ନେଲେ । କାମ କରାଇ ଦେଲେ ନାହିଁ । ଉକ୍ତ କାମଟିକୁ ରାଜ ବଂଶର ପଞ୍ଚାୟତ ସେକ୍ରେଟାରୀଙ୍କ ପୁଅ, ଯିଏକି ଇ.ଜି.ଏସ୍‌ରେ ଶିକ୍ଷକ ଭାବେ କାର୍ଯ୍ୟ କରୁଛନ୍ତି, ସେ ଏହି କାମଟିକୁ ଧରିଥିଲେ । ଏହି କାମଟି ବାଲିଗୁଡା ଗାଁଠାରୁ ନୂଆଗାଁ ପର୍ଯ୍ୟନ୍ତ ୧ କି.ମି. ରାସ୍ତା କାମ ଆସିଥିଲା । ବହୁତ ଗଣ୍ଡଗୋଳ ହେବା ପରେ ଗାଁର ଲୋକମାନେ କାମ ପାଇଲେ । ସେହି କାମ ପାଇଁ ମୋଟ ୨୫ହଜାର ଟଙ୍କା ଆସିଥିଲା । ଗାଁର ଲୋକମାନେ ଡ୍ରେନ୍ କାଟି ମାଟି ରାସ୍ତା ପକାଇ ଥିଲେ । ମୋଟ ୧୮କ୍ୱିଣ୍ଟାଲ ଚାଉଳରୁ ମାତ୍ର ୧୫କ୍ୱିଣ୍ଟାଲ ଚାଉଳକୁ ଘର ପିଛା ମାତ୍ର ୫୦କେଜି ଲେଖାଁ ପାଇଛନ୍ତି । ଆଉ ୩କ୍ୱିଣ୍ଟାଲ ଚାଉଳ ଆଜି ପର୍ଯ୍ୟନ୍ତ ନେଇ ନାହାନ୍ତି । ପାର୍ବତୀ ସବୁବେଳେ ସବୁ କ୍ଷେତ୍ରରେ ଆଗୁଆ ହୋଇ ବିଭିନ୍ନ ପ୍ରକାର କାମ କରୁଥିବାରୁ ଗାଁର କେତେକ ଲୋକ ତାକୁ ସବୁବେଳେ ବିରୋଧ କରୁଛନ୍ତି ।

ସେହିପରି ଉକ୍ତ ପଞ୍ଚାୟତର ବନ୍ଧମାଣ୍ଡି କଲୋନୀ ଗାଁରେ ମଧ୍ୟ କେତେ ଗୁଡିଏ କାର୍ଯ୍ୟକ୍ରମ ହୋଇଛି । ସେହି ଗାଁ ୱାର୍ଡମେମ୍ବର ଯୋଗୀ ଝୋଡିଆଙ୍କୁ ପ୍ରାୟ ୩୦ ବର୍ଷ ବୟସ ହେବ । ତାଙ୍କର ପୁଅ ଗୋଟିଏ ଓ ଝିଅ ୪ଟି ଅଛନ୍ତି । ସେ ସବୁବେଳେ ଚାଷ ଉପରେ ନିର୍ଭର କରି ନିଜର ପରିବାର ଚଳାଇ ଥାଆନ୍ତି । ସେ ଏହି ପଦବୀରେ ରହିବା ସମୟରେ ଗାଁ ପାଇଁ ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ କରିଛନ୍ତି । ବର୍ତ୍ତମାନ କାର୍ଯ୍ୟ କରିବା ପାଇଁ ମଧ୍ୟ ବହୁ ପରିମାଣରେ ଚେଷ୍ଟା କରୁଛନ୍ତି । ସେ କହନ୍ତି 'ଗାଁରେ ପଲ୍ଲୀସଭା କରାଯାଉଛି ସେଥିରେ ମହିଳାମାନେ ମଧ୍ୟ ଅଂଶଗ୍ରହଣ କରୁଛନ୍ତି ।

ଗ୍ରାମ ସଭାକୁ ମଧ୍ୟ ମହିଳାମାନେ ଯାଉଛନ୍ତି । ଗ୍ରାମ ସଭାରେ ସମସ୍ତ ଲୋକ କହିଲେ ଆମ ଗାଁ ସ୍କୁଲ ଘର ଭାଙ୍ଗି ଗଲାଣି ତାକୁ କିପରି ସଜଡା ଯିବ । ତାହା ପାଇଁ ଗୋଟିଏ ପଲ୍ଲୀସଭା କରାଯାଇ ସ୍କୁଲଘର ମରାମତି ହେବ ବୋଲି ନିଷ୍ପତ୍ତି ନିଆଗଲା । ତା'ପରଦିନ ନିଜେ ୱାର୍ଡମେମ୍ବର ଯାଇ ବି.ଡି.ଓ.ଙ୍କୁ ଦେଖାକରି କହିଲେ ଯେ ଆମେ ସରପଞ୍ଚଙ୍କୁ ବହୁତ ଥର ଏହି ବିଷୟରେ କହିଲୁଣି ହେଲେ କିଛି ନିଷ୍ପତ୍ତି ନେଉନାହାଁନ୍ତି । ବି.ଡି.ଓ ସବୁ କଥା ଶୁଣି ସାରିବା ପରେ କହିଲେ ସରପଞ୍ଚଙ୍କୁ ଲେଖି ଦେଉଛି ସେ ଖାଦ୍ୟ ପାଇଁ କାମ ଯୋଜନାରୁ ୪୦ହଜାର ଟଙ୍କା ଉକ୍ତ କାମ ପାଇଁ ଦେବେ । ସରପଞ୍ଚ ଲେଖା ଦେଖି କାମ

ବହୁତ ଡେରି କଲେ । ଏହା ପରେ ଗାଁରେ ସମସ୍ତ ଲୋକମାନଙ୍କୁ ଡାକି ଏକ ପଲ୍ଲୀ ସଭାର ଆୟୋଜନ କରି ଏହି କାମଟିକୁ ୱାର୍ଡମେମ୍ବର କରିବାକୁ ନିଷ୍ପତ୍ତି ନେଲେ । ଗାଁର ସମସ୍ତ ଲୋକ ସ୍କୁଲ ଘର କାନ୍ଥ ପ୍ଲାଷ୍ଟର, ଛାତ କାମ ଇତ୍ୟାଦି କରି ମଧ୍ୟ କୌଣସି ବ୍ୟକ୍ତି ମଜୁରି ପାଇ ନାହାଁନ୍ତି । ସେତେବେଳକୁ ୪୦ହଜାର ଟଙ୍କା ଖର୍ଚ୍ଚ ସରିଗଲାଣି ।

ଏହି ସମୟରେ କାମ ଦେଖିବା ପାଇଁ ଜିଲ୍ଲାପାଳ, ଗୋଷ୍ଠୀ ଉନ୍ନୟନ ଅଧିକାରୀ ଆସିଥିଲେ । ସେଠି ଗାଁର ସମସ୍ତ ଲୋକମାନେ କହିଥିଲେ ଯେ ଏତିକି ଟଙ୍କାରେ କାମ ସରିବ ନାହିଁ । ଏ କଥା କହିବାରୁ ସାଙ୍ଗେ ସାଙ୍ଗେ ଜିଲ୍ଲାପାଳ ବି.ଡି.ଓ.ଙ୍କୁ କହିଲେ ଆଉ ୨୦ହଜାର ଟଙ୍କା ମଞ୍ଜୁର କରିଦିଅ କାମ ଶେଷ ହୋଇଯିବ । କିଛିଦିନ ପରେ ୱାର୍ଡମେମ୍ବର ଆସି ବି.ଡି.ଓଙ୍କୁ ଦେଖାକରି ପଇସା ବିଷୟରେ କଥାବାର୍ତ୍ତା କରିବାରୁ ସେ କହିଲେ ପ୍ରଥମେ ତୁମେ ସରପଞ୍ଚଙ୍କ ପାଖରୁ ଦସ୍ତଖତ କରାଇଆଣ । ତା'ପର ମୁଁ ପଇସା ଦେଇଦେବି । ଏହା ପରେ ବି.ଡି.ଓ. ଏବଂ ଜେ.ଇ. ସରପଞ୍ଚଙ୍କ ପାଖକୁ ଇଂଲିଶ୍‌ରେ ଲେଖିକି ଦେବାରୁ ସେ ସରପଞ୍ଚଙ୍କ ପାଖକୁ ଲେଖା ନେଇଗଲେ । ସରପଞ୍ଚ ଦେଖି କହିଲେ ଯେ ଏହା ଇଂଲିଶ୍‌ରେ ଲେଖାଯାଇଛି ତାହା କିଛି ବୁଝି ହେଉନାହିଁ । ତୁମେ ଓଡ଼ିଆରେ ଲେଖିକି ଆଣ । ଏହା ଶୁଣି ୱାର୍ଡମେମ୍ବର ବି.ଡି.ଓ., ଜେ.ଇ.ଙ୍କ ଠାରୁ ଓଡ଼ିଆରେ ଲେଖା ନେଇ ଗଲା ପରେ ସରପଞ୍ଚ ଦେଖି କହିଲେ ଆଉ ଟଙ୍କା ଦେଇ ହେବନି । ମୁଁ ଦସ୍ତଖତ ଦେଇପାରିବିନି । ଏହା ଶୁଣି ଏକଥା ୱାର୍ଡମେମ୍ବର ଗାଁରେ ଆସି ସମସ୍ତଙ୍କୁ କହିଲେ ।

ତା'ପରେ ଗାଁର ସମସ୍ତ ଲୋକ ଏକାଠି ହୋଇ ସରପଞ୍ଚଙ୍କ ପାଖକୁ ଯାଇ ପାଟିତୁଣ୍ଡ କରିବା ପରେ ବହୁତ କଷ୍ଟରେ ସରପଞ୍ଚ କହିଲେ ଯେ ମୁଁ ମୋର ବରିଷ୍ଠ ନେତାମାନଙ୍କ ସହିତ କଥାବାର୍ତ୍ତା ପରେ ଦସ୍ତଖତ କରିବି । ତା'ପରେ ଗାଁ ଲୋକମାନେ ସରପଞ୍ଚଙ୍କୁ ୩ଦିନ ସମୟ ଦେଇ ଫେରିଆସିଲେ । ପୁଣି ୩ଦିନ ପରେ ୱାର୍ଡମେମ୍ବର ଯାଇ ସରପଞ୍ଚଙ୍କୁ ଦେଖାକଲେ । ସରପଞ୍ଚ ଦସ୍ତଖତ କରିଦେଲେ । କିନ୍ତୁ ୧ମାସ ପରେ ଟଙ୍କା ମିଳିଲା । ଏହି ସ୍କୁଲଘର କାମରେ ଗାଁରୁ ସମସ୍ତ ଲୋକ ଘରପିଛା ୨/୩ଜଣ ଲେଖା କାମ କରୁଥିଲେ । ଜେ.ଇ. ୨୦୦୦ଟଙ୍କା, ସରପଞ୍ଚ ଓ ପଞ୍ଚାୟତ ସେକ୍ରେଟାରୀଙ୍କୁ ମିଶାଇ ୪୦୦୦ଟଙ୍କା ଲାଞ୍ଚ ନେଇଥିଲେ । ଆଉ ଯାହା ଟଙ୍କା ସ୍କୁଲଘର କାମ ସାରି ଗାଁ ଲୋକ ବାଣ୍ଟି ନେଇଥିଲେ । ଗତ ମାସରେ ଗ୍ରାମସଭାରେ ୪ଟି ପଞ୍ଚାୟତର କୁଟୁମ୍ବ ପାଣ୍ଠି ଘରପାଇଁ ତାଲିକା କରାଯାଇ ଦିଆଯାଇଛି । କିନ୍ତୁ ଆମ ଗାଁର ଲୋକମାନେ ଜେ.ଇ.ଙ୍କୁ ୨୦୦୦ଟଙ୍କା ଲାଞ୍ଚ ଦେଇଥିବାରୁ ଉକ୍ତ କାମଟି ଗାଁକୁ ଆସିଛି । ଏହି ନୂତନ କାର୍ଯ୍ୟଟି ପୂର୍ଣ୍ଣ ଚନ୍ଦ୍ର ଝୋଡିଆ କରିବାକୁ ଗାଁ ଲୋକ ନିଷ୍ପତ୍ତି ନେଇଛନ୍ତି । ଏବେ ଭବିଷ୍ୟତରେ ଯେଉଁ କାମ ହେବ ତାହା ଗାଁର ମହିଳା ମଣ୍ଡଳ ନାମରେ କାମ କରିବାକୁ ନିଷ୍ପତ୍ତି ନିଆଯିବ ।

ମାର୍ଚ୍ଚ - ୨୦୦୪

